# ଶ୍ରୀବିଷ୍ଣୁ ପୁରାଣ



ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ଶ୍ରୀବିଷ୍ଣୁ ପୁରାଣ

ଅନୁବାଦ
ବଲ୍ଲଭ ନାରାୟଣ ମହାପାତ୍ର

ସଂପାଦନା
ସୁଦର୍ଶନ ଆଚାର୍ଯ୍ୟ
ଭାଗ୍ୟଲିପି ମଲ୍ଲ
ଗୌରାଙ୍ଗ ଚରଣ ଦାଶ

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ଶ୍ରୀବିଷ୍ଣୁ ପୁରାଣ

**ସମ୍ପାଦନା**

ସୁଦର୍ଶନ ଆଚାର୍ଯ୍ୟ

ଭାଗ୍ୟଲିପି ମଲ୍ଲ

ଗୌରାଙ୍ଗ ଚରଣ ଦାଶ

**ପ୍ରକାଶକ**

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

ଭୁବନେଶ୍ୱର

**ମୁଦ୍ରଣ**

ଶ୍ରୀ ସତ୍ୟନାରାୟଣ ପ୍ରେସ୍, ଡଗରପଡ଼ା

କଟକ -୨

**ପ୍ରକାଶନ ବର୍ଷ**

୨୦୧୩

ମୂଲ୍ୟ :

# ShreeVishnu Purana

**Edited by :**

Sudarsan Acharya

Bhagyalipi Malla

Gouranga Charana Dash

**Published by :**

Odisha State Museum

Bhubaneswar

**Printed at :**

Shree Satyanarayan Press,

Dagarpara, Cuttack-2

**Year of Publication**

2013

**Price :**

# ସୂଚିପତ୍ର



## ଦ୍ୱିତୀୟ ଅଂଶ





# ଗ୍ରନ୍ଥପ୍ରବେଶ

## ଏକ

'ପୁରାଣଂ ଶୃଣୁୟାନ୍ନିତ୍ୟମ୍' । ଭାରତୀୟ ସଂସ୍କୃତିରେ ପ୍ରତିଦିନ ପୁରାଣ ପଠନ ଓ ଶ୍ରବଣର ପରମ୍ପରା ବହୁ ପ୍ରଚଳିତ । ପୁରାଣପଣ୍ଡାମାନେ ସକାଳ ଓ ସନ୍ଧ୍ୟାରେ ଘର ଘର ବୁଲି ଗୃହସ୍ଥମାନଙ୍କୁ ପୁରାଣ ଶୁଣାଇବାର ପରମ୍ପରା ଏପର୍ଯ୍ୟନ୍ତ ଲୋପ ପାଇନାହିଁ । ଓଡ଼ିଶାରେ ଅତୀତରେ ଭାଗବତ ଘର ଓ ଭାଗବତ ଗାଦି ପୁରପଲ୍ଲୀରେ ପ୍ରତିଷ୍ଠିତ ଥିଲା । ଗ୍ରାମବାସୀ ସେଠାରେ ଏକତ୍ର ପୁରାଣ ଶୁଣୁଥିଲେ । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଥିଲା ସର୍ବାଦୃତ ପୁରାଣ । ଏହା ପଛକୁ ରାମାୟଣ, ମହାଭାରତ ଏବଂ ନୃସିଂହପୁରାଣର ଆଦର । ଶିକ୍ଷିତ ପରିବାରଗୁଡ଼ିକରେ ଗୃହିଣୀମାନେ ପିଲାମାନଙ୍କୁ ଭାଗବତ ଓ ରାମାୟଣ ଶୁଣାଉଥିଲେ । ଘରେ ମହାଭାରତ ଓ ନୃସିଂହପୁରାଣ ପାଠର ବାରଣ ଥିଲା । ତେଣୁ ଏଗୁଡ଼ିକ ଗାଁ ଦାଣ୍ଡରେ ଶ୍ରୋତାମାନଙ୍କ ଗହଣରେ ପାଠ କରାଯାଉଥିଲା । ପରବର୍ତ୍ତୀ କାଳରେ ପୁରାଣପଣ୍ଡାଙ୍କ ଅଭାବରେ ଗାଁର ଶିକ୍ଷିତ ଯୁବକମାନେ ଏହାର ଦାୟିତ୍ୱ ନେଉଥିଲେ । ରାମାୟଣ, ମହାଭାରତ ଓ ଭାଗବତ ଧର୍ମମତ ନିର୍ବିଶେଷରେ ଆଦୃତ ଥିବାଯୋଗୁଁ ବହୁ ପୁରାଣପ୍ରେମୀ ସଂସ୍କୃତ ପଣ୍ଡିତ ବାରମ୍ବାର ଏଗୁଡ଼ିକର ଅନୁବାଦ କରୁଥିଲେ ।

ସମୟକ୍ରମେ ବିଭିନ୍ନ ଅଞ୍ଚଳରେ ମଠ ଓ ମନ୍ଦିରମାନ ଗଢ଼ିଉଠିଛି । ମଠାଧୀଶମାନେ ଭାରତୀୟ ସଂସ୍କୃତିର ପରିପ୍ରଚାରର ଦାୟିତ୍ୱ ନେଇଛନ୍ତି । ମଠଗୁଡ଼ିକରେ ଅଷ୍ଟାଦଶ ପୁରାଣ ପାଠର ଆୟୋଜନ କରାଯାଇଛି । ଆବଶ୍ୟକ ପଡ଼ିଛି ପୁରାଣଗୁଡ଼ିକର ଅନୁବାଦ । ପଣ୍ଡିତ-କବିମାନେ ଏଥିପାଇଁ ଶ୍ରଦ୍ଧାଶୀଳ ହୋଇଛନ୍ତି । ଅନ୍ୟ ଭାରତୀୟ ଭାଷାଭାଷୀ ଅଞ୍ଚଳ ପରି ଓଡ଼ିଶାରେ ମଧ ଅଷ୍ଟାଦଶ ମହାପୁରାଣ ସହିତ ଉପ ଓ ଔପ ପୁରାଣଗୁଡ଼ିକର ଅନୁବାଦ ପ୍ରକ୍ରିୟା ଆରମ୍ଭ ହୋଇଛି । କେହି କେହି ଏଗୁଡ଼ିକର ଶ୍ଳୋକାନୁବାଦ ତ, ଅନ୍ୟ କେହି ମୁକ୍ତାନୁବାଦପାଇଁ ପ୍ରୟାସ କରିଛନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ଏହି ପରମ୍ପରା ବ୍ୟାହତ ହୋଇନାହିଁ । ପୁରାଣଗୁଡ଼ିକ ସଂସ୍କୃତ ଭାଷାରେ ଲେଖାଯାଇଥିବାରୁ, ସାଧାରଣ ଜନତାଙ୍କପାଇଁ ସୁବୋଧ ନଥିଲା ଏବଂ କାଳକ୍ରମେ ପୁରାଣ ପ୍ରତି ଲୋକମାନଙ୍କର ଆଗ୍ରହ ଦେଖାଦେବାରୁ ଓଡ଼ିଶାର ବହୁ ସଂସ୍କୃତ ଭାଷାଧୂରୀଣ ପଣ୍ଡିତ ମୂଳ ପୁରାଣଗୁଡ଼ିକୁ ଓଡ଼ିଆ ଭାଷାରେ ଭାଷାନ୍ତରୀକରଣପାଇଁ ଉଦ୍ୟମ କରିଛନ୍ତି ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବୌଦ୍ଧ ଓ ଜୈନ ପରମ୍ପରାର ଅନୁସରଣରେ ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ିଆମାନଙ୍କ ଭିତରେ ପୁରାଣ ରଚନାପାଇଁ ଆଗ୍ରହ ସୃଷ୍ଟି ହୋଇଛି । ତାହାର ପ୍ରବର୍ତ୍ତକ ମହାକବି ସାରଳା ଦାସ । ସାମସମୟିକ ଓଡ଼ିଶାର ସାମାଜିକ, ରାଜନୀତିକ, ଧାର୍ମିକ ପୃଷ୍ଠଭୂମିରେ ସେ ସଂସ୍କୃତ ରାମାୟଣ, ମହାଭାରତ ଏବଂ ଚଣ୍ଡୀପୁରାଣକୁ ଅଭିନବ ରୂପ ପ୍ରଦାନ କରିଛନ୍ତି । ଓଡ଼ିଆ ପାଠକମାନଙ୍କପାଇଁ ପୁରାଣ ପ୍ରସ୍ତୁତ କଲାବେଳେ ସର୍ବଥା ସଂସ୍କୃତ ପୁରାଣକୁ ଅକ୍ଷରଶଃ ଅନୁସରଣ କରିବା ଏକାନ୍ତ ଅପରିହାର୍ଯ୍ୟ, ଏହି ଧାରଣାର ଅସାରତା ସମ୍ପର୍କରେ ସେ ପ୍ରଥମେ ଯେଉଁ ଧାରଣା ସୃଷ୍ଟିକଲେ, ତାହା ପରବର୍ତ୍ତୀ

ସମୟରେ ବହୁ ପୁରାଣକର୍ତ୍ତାଙ୍କୁ ପ୍ରଭାବିତ କରିଛି । ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଦ୍ୱାରକା ଦାସ, ପୀତାମ୍ବର ଦାସ, ଗୌରାଙ୍ଗ ଦାସ, ନାରାୟଣ ରାୟଗୁରୁ ପ୍ରମୁଖ ଏହି ପରମ୍ପରାର ଉତ୍ତରଦାୟାଦ । ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ ଷୋଡ଼ଶ ଶତାବ୍ଦୀର, ଯଦିଚ ମୂଳ ଶ୍ରୀମଦ୍ ଭାଗବତର ସମ୍ପୂର୍ଣ୍ଣ ଶ୍ଳୋକାନୁବାଦ ନୁହେଁ, ପୁରାଣ ଲେଖକମାନଙ୍କୁ ପୁଣି ସଂସ୍କୃତାଭିମୁଖୀ କରାଇଛି । ତାଙ୍କ ପ୍ରଦର୍ଶିତ ମାର୍ଗର ଯାତ୍ରୀ ହୋଇଛନ୍ତି ରାଜା ଜୟସିଂହ, ରାଜା କୃଷ୍ଣସିଂହ, କୃଷ୍ଣଚରଣ ପଟ୍ଟନାୟକ, ଦୀନବନ୍ଧୁ ଖାଡ଼ଙ୍ଗା, ଗଙ୍ଗାପାଣି ମହାପାତ୍ର, ପରୀକ୍ଷିତ ଦାସ ; ଏପରିକି ଫକୀର ମୋହନ ସେନାପତି, ବାଳକୃଷ୍ଣ କର ପ୍ରମୁଖ ଆଧୁନିକ କାଳର ଲେଖକ । ଅତୀତର ଏହି ପୁରାଣକର୍ତ୍ତାମାନେ ମୂଳଗ୍ରନ୍ଥ ପ୍ରତି ଅଧିକ ବିଶ୍ୱସ୍ତ ଥିବା ଉପଲବ୍ଧ କରିହୁଏ । କିନ୍ତୁ ଦୁଃଖର କଥା, ଅଷ୍ଟାଦଶ ମହାପୁରାଣ ମଧ୍ୟରୁ ଅତୀତରେ ଯେଉଁଗୁଡ଼ିକ ଓଡ଼ିଆରେ ଅନୂଦିତ ହୋଇଥିଲା, ସେଗୁଡ଼ିକର ଶୁଦ୍ଧ ସଂସ୍କରଣ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇପାରିନାହିଁ । ଫଳରେ ଓଡ଼ିଶାର ପାଠକ, ଆଲୋଚକ, ସାହିତ୍ୟ ସମାଲୋଚକମାନେ ପୁରାଣଗୁଡ଼ିକର ମୂଳ ପ୍ରକୃତି ସହିତ ପରିଚିତ ହୋଇପାରୁନାହାନ୍ତି । ଉପଲବ୍ଧ ପୁରାଣଗୁଡ଼ିକର ଶୁଦ୍ଧପାଠ ତାଳପତ୍ର ପୋଥିର ଜୀର୍ଣ୍ଣପୃଷ୍ଠରୁ ଉଦ୍ଧାରକରି ପ୍ରକାଶପାଇଁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଉଦ୍ୟମ ଆରମ୍ଭ କରିଛି । ଅବଶ୍ୟ ଏହା ସହଜସାଧ୍ୟ ନୁହେଁ । ଓଡ଼ିଶା ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗ, ଭାରତ ସରକାର ଏବଂ ଜାତୀୟ ତାଳପତ୍ର ପୋଥି ସଂରକ୍ଷଣ ମିସନ୍‌ଙ୍କ ସହାୟତାରେ ଏହା ସମ୍ଭବ ହୋଇପାରିବ ବୋଲି ବିଶ୍ୱାସ । ବର୍ତ୍ତମାନ ପ୍ରଥମ ଉଦ୍ୟମରେ ବିଷ୍ଣୁପୁରାଣର ପ୍ରଥମ ଦୁଇଟି ଅଂଶର ପାଠୋଦ୍ଧାର, ଶୁଦ୍ଧପାଠ ନିର୍ଣ୍ଣୟ ଓ ସମ୍ପାଦନାପୂର୍ବକ ପ୍ରକାଶପାଇଁ ଆମେ ସମର୍ଥ ହୋଇପାରିଛୁ । ଏହାର ଅନ୍ୟାନ୍ୟ ଅଂଶ ଏବଂ ଅନ୍ୟାନ୍ୟ ପୁରାଣଗୁଡ଼ିକ ସମୟ କ୍ରମେ ଆମେ ପାଠକମାନଙ୍କ ହାତରେ ସମର୍ପଣ କରିବୁ ।

## ଦୁଇ

ଅଷ୍ଟାଦଶ ମହାପୁରାଣ ମଧ୍ୟରେ ବିଷ୍ଣୁ ପୁରାଣ ଅନ୍ୟତମ । କେତେକ ଶୈବ ଓ ଶାକ୍ତ ପୁରାଣ, ପୁରାଣ ପ୍ରରୂପ ଅନ୍ତର୍ଗତ କି ନା, ତତ୍‌ସମ୍ବନ୍ଧରେ ଗବେଷକମାନଙ୍କ ମଧ୍ୟରେ ଅବଶ୍ୟ ମତଦ୍ୱୈଧ ରହିଛି ; ମାତ୍ର ଶ୍ରୀ ବିଷ୍ଣୁପୁରାଣର ସନ୍ଦେହମୁକ୍ତ । ବିଭିନ୍ନ ପୁରାଣରେ ମହାପୁରାଣଗୁଡ଼ିକର ତାଲିକା ପ୍ରସ୍ତୁତ କରାଯାଇଛି ଏବଂ ସେଗୁଡ଼ିକ ମଧ୍ୟରେ ଶ୍ରୀବିଷ୍ଣୁ ପୁରାଣର ସ୍ଥାନ ତୃତୀୟ । କଳେବର ଦୃଷ୍ଟିରୁ ଅନ୍ୟାନ୍ୟ ମହାପୁରାଣ ଅପେକ୍ଷା ଏହା ନାତିଦୀର୍ଘ । ଉପଲବ୍ଧ ବିଷ୍ଣୁପୁରାଣ ଶହେଛବିଶ ଅଧ୍ୟାୟ ଏବଂ ପ୍ରାୟ ଛ'ହଜାର ଶ୍ଳୋକବିଶିଷ୍ଟ । କିନ୍ତୁ ନାରଦ ଓ ମତ୍ସ୍ୟପୁରାଣ ଅନୁଯାୟୀ ଏହାର ଶ୍ଳୋକ ସଂଖ୍ୟା ତେଇଶିହଜାର । ଏଥିପାଇଁ କେହିକେହି ପୁରାଣ - ସମାଲୋଚକ ଏହା ପୂର୍ବରୁ ଅନ୍ୟ ଏକ ବୃହତ୍ ବିଷ୍ଣୁପୁରାଣ ରହିଥିବା ଅନୁମାନ କରନ୍ତି । ଅନ୍ୟ କେତେକଙ୍କ ମତରେ ଉପପୁରାଣ ରୂପେ ଗୃହୀତ 'ବିଷ୍ଣୁଧର୍ମୋତ୍ତର ପୁରାଣ', 'ଶ୍ରୀବିଷ୍ଣୁ ପୁରାଣ'ର ଉତ୍ତରାର୍ଦ୍ଧ । ଉଭୟର ଶ୍ଳୋକ ସଂଖ୍ୟାକୁ ଯୋଗକଲେ, ଏହା ପ୍ରାୟ ତେଇଶି ହଜାର । କିନ୍ତୁ ମନେହୁଏ, ଉପଲବ୍ଧ ପୁରାଣ ହିଁ ପ୍ରକୃତ ବିଷ୍ଣୁପୁରାଣ । ଏହାର ବିଷୟବସ୍ତୁ ସଂହିତାଭାବେ ପ୍ରାୟଃ ସୂତ୍ରାତ୍ମକ ଶୈଳୀରେ ଗ୍ରଥିତ । ସ୍ୱୟଂ ପୁରାଣକର୍ତ୍ତା ଏହାକୁ ପୁରାଣସଂହିତା ଭାବେ ଅଭିହିତ କରିଛନ୍ତି । 'ପୁରାଣ ସଂହିତା କର୍ତ୍ତା ଭବାନ୍ ବତ୍ସ ଭବିଷ୍ୟତି । ଦେବତା ପରମାର୍ଥିକ ଯଥାବିତ୍ ବେତ୍ସ୍ୟତେ ଭବାନ୍' (୧/୩୦)

ନାମକରଣରୁ ହିଁ ଏହା ଏକ ସାତ୍ତ୍ୱିକ ବୈଷ୍ଣବପୁରାଣ ଥିବା ସୁସ୍ପଷ୍ଟ । ବିଷ୍ଣୁଙ୍କ ମହିମା ପ୍ରଖ୍ୟାପନ ଏହାର ଉଦ୍ଦେଶ୍ୟ । ସେ ହିଁ ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା, ପାଳନକର୍ତ୍ତା ଏବଂ ସଂହାରକର୍ତ୍ତା । ବ୍ରହ୍ମା ଓ ରୁଦ୍ର ତାଙ୍କଠାରୁହିଁ ଜାତ । ସମଗ୍ର ପୁରାଣଟି ଐକାନ୍ତିକ ବିଷ୍ଣୁ ଉପାସନାର ଦ୍ୟୋତକ ହେଲେ ସୁଦ୍ଧା ଏହାକୁ ଏକ ସାଂପ୍ରଦାୟିକ ପୁରାଣରୂପେ ଗ୍ରହଣ କରାଯାଇନପାରେ । ବୈଷ୍ଣବମାନଙ୍କଦ୍ୱାରା ଆଚରିତ ବ୍ରତ କିମ୍ବା ପର୍ବପର୍ବାଣି, ବିଷ୍ଣୁତୀର୍ଥଗୁଡ଼ିକର ମାହାତ୍ମ୍ୟ କିମ୍ବା ଶ୍ରୀବିଷ୍ଣୁ ଉପାସନାପଦ୍ଧତି ସମ୍ବନ୍ଧରେ ଏଥିରେ କୌଣସି ଉଲ୍ଲେଖ ନାହିଁ । ପରବର୍ତ୍ତୀ ସମୟରେ ଏହାକୁ 'ଶ୍ରୀବୈଷ୍ଣବ' ସମ୍ପ୍ରଦାୟ ସେମାନଙ୍କ ଧର୍ମଗ୍ରନ୍ଥର ମାନ୍ୟତା ଦେଇଛନ୍ତି । ଏହା ସେମାନଙ୍କ ପାଇଁ ପୁରାଣରତ୍ନ ।

ଅନ୍ୟାନ୍ୟ ପୁରାଣ ପରି ବିଷ୍ଣୁ ପୁରାଣର ସମୟ ନିର୍ଦ୍ଧାରଣ ସମ୍ଭବ ନୁହେଁ । ପାଶ୍ଚାତ୍ୟ ସମାଲୋଚକମାନେ ଏହାର ରଚନାକାଳ ପଞ୍ଚମ ଶତାବ୍ଦୀ, ଏପରିକି କେହି କେହି ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ପୂର୍ବବର୍ତ୍ତୀ ରୂପେ ନିର୍ଦ୍ଧାରଣ କରୁଥିବାବେଳେ, ଭାରତୀୟ ବିଶ୍ୱାସରେ ଏହା ପ୍ରାଚୀନ ମହାପୁରାଣଗୁଡ଼ିକ ମଧ୍ୟରୁ ପ୍ରଥମ ପୁରାଣ ହୋଇଥିବା ମଧ୍ୟ ଅସମ୍ଭବ ନୁହେଁ । ସାଧାରଣତଃ ପରାଶର ପୁତ୍ର ମହର୍ଷି ବ୍ୟାସଙ୍କୁ ଅଷ୍ଟାଦଶ ପୁରାଣ ସମୂହର କର୍ତ୍ତାଭାବେ ଗ୍ରହଣ କରାଯାଇଥାଏ । କିନ୍ତୁ ବିଷ୍ଣୁପୁରାଣର ଆଦି ପ୍ରବକ୍ତା ମହର୍ଷି ବେଦବ୍ୟାସଙ୍କ ପିତା ପରାଶର ଏବଂ ଶ୍ରୋତା ଶିଷ୍ୟ ମୈତ୍ରେୟ । ମୈତ୍ରେୟଙ୍କ ପ୍ରଶ୍ନରେ ପରାଶର ସ୍ମରଣ କରିଛନ୍ତି ପିତାମହ ବଶିଷ୍ଠଙ୍କଠାରୁ ଶୁଣିଥିବା ଜ୍ଞାନଗର୍ଭକ ବାଣୀ । ତାହା ସେ ମୈତ୍ରେୟଙ୍କ ନିକଟରେ ବ୍ୟକ୍ତ କରିଛନ୍ତି । ବଶିଷ୍ଠଙ୍କ ଦିବ୍ୟଜ୍ଞାନ ପରାଶରଙ୍କ ମାଧ୍ୟମରେ ମୈତ୍ରେୟଙ୍କ ନିକଟରେ ପହଞ୍ଚିଛି । ସେ ସେସବୁକୁ ପରବର୍ତ୍ତୀ ସମୟରେ ପରାଶର ପୁତ୍ର ମହର୍ଷି ବ୍ୟାସଙ୍କୁ ଶୁଣାଇବାରୁ, ବ୍ୟାସ ତାହାକୁ ବିଷ୍ଣୁପୁରାଣର ରୂପ ଦେଇଛନ୍ତି । ଉପଲବ୍ଧ ବିଷ୍ଣୁପୁରାଣ ବ୍ୟାସ ଏବଂ ମହାଭାରତ ରଚନାର ସମକାଳୀନ । ଏଣୁ ବିଷ୍ଣୁପୁରାଣ ଖ୍ରୀଷ୍ଟଜନ୍ମ ପୂର୍ବର ରଚନା ରୂପେ ଗୃହୀତ । ସଂହିତାତ୍ମକ ପ୍ରକାଶଭଙ୍ଗୀ, ଚତୁର୍ଥାଂଶର ଗଦ୍ୟଭାଗ ଏବଂ ଅସାଂପ୍ରଦାୟିକ ରୂପ ହିଁ ପୁରାଣର ପ୍ରାଚୀନତାର ପ୍ରମାଣ । ଏହା ଛଅଟି ଅଂଶରେ ବିଭକ୍ତ । ପ୍ରତ୍ୟେକ ଅଂଶ ପୁଣି କେତୋଟି ଅଧ୍ୟାୟରେ ନିବଦ୍ଧ । ପ୍ରଥମ ଅଂଶ ବାଇଶି, ଦ୍ୱିତୀୟ ଛବିଶି, ତୃତୀୟ ଅଠାଇଶି, ଚତୁର୍ଥ ଚବିଶି, ପଞ୍ଚମ ଅଠାଇଶି ଏବଂ ଷଷ୍ଠ ଅଂଶ ଆଠ ଅଧ୍ୟାୟ ବିଶିଷ୍ଟ । ପ୍ରସ୍ତୁତ ପ୍ରଥମାଂଶରେ ସୃଷ୍ଟି ପ୍ରକ୍ରିୟା, କଳ୍ପାନ୍ତ, ଦେବଦେବୀ, ଚତୁଃବର୍ଣ୍ଣ, ପ୍ରଳୟ, ସମୁଦ୍ର ମନ୍ଥନ ଓ ମହାଲକ୍ଷ୍ମୀଙ୍କ ଆବିର୍ଭାବ, ଧ୍ରୁବ-ବେଣ-ପ୍ରଚେତା, ମୈତ୍ରେୟ, ପ୍ରହ୍ଲାଦ ପ୍ରଭୃତିଙ୍କ ଚରିତ ସହିତ ଶ୍ରୀବିଷ୍ଣୁଙ୍କ ଚାରିପ୍ରକାର ବିଭୂତିର ବର୍ଣ୍ଣନା ରହିଛି । ଦ୍ୱିତୀୟ ଅଂଶରେ ଭରତ ବଂଶ, ଜମ୍ବୁଦୀପ, ଭାରତବର୍ଷ, ସପ୍ତଦ୍ୱୀପ, ସପ୍ତପାତାଳ, ସପ୍ତଲୋକ, ନରକ, ସୂର୍ଯ୍ୟବଂଶ, ଜଡ଼ଭରତ ଉପାଖ୍ୟାନ, ଋଭୁ ଓ ନିଦାଘ ସମ୍ବାଦ, ସୂର୍ଯ୍ୟଚନ୍ଦ୍ରାଦି ଗ୍ରହଙ୍କ ବିବରଣୀ ବର୍ଣ୍ଣିତ ।

"ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣିଚ । ବଂଶାନୁ ଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣମ୍ ।" – ମହାପୁରାଣର ଯେଉଁ ପାଞ୍ଚ ଲକ୍ଷଣର ଉଲ୍ଲେଖ ଅଛି, ବିଷ୍ଣୁପୁରାଣରେ ତାହା ସମ୍ପୂର୍ଣ୍ଣ ରୂପେ ଅନୁସୃତ । ଭାରତୀୟ ଭକ୍ତିଭାବନା ଓ ଜ୍ଞାନସାଧନାର ଏହା ମାର୍ଗଦର୍ଶକ । ଆଲୋଚକମାନଙ୍କ ମତରେ, ଶ୍ରୀମଦ୍‌ଭାଗବତର ସୃଷ୍ଟି ପ୍ରକ୍ରିୟା, ଖଗୋଳ ଓ ଭୂଗୋଳ, ଏପରିକି ଶ୍ରୀକୃଷ୍ଣଲୀଳା ବର୍ଣ୍ଣନା ବିଷ୍ଣୁପୁରାଣଦ୍ୱାରା ପ୍ରଭାବିତ । ସଂହିତାକାରରେ ଥିବା ବିଷୟବସ୍ତୁକୁ ମହର୍ଷି ଶୁକଦେବ ଶ୍ରୀମଦ୍ ଭାଗବତରେ ମଧୁର ଶବ୍ଦାବଳୀ ଓ ଲଳିତ ଛନ୍ଦ ମାଧ୍ୟମରେ ଅଧିକ ମନୋଜ୍ଞ କରିପାରିଛନ୍ତି । ନିଜ ନିଜର ସିଦ୍ଧାନ୍ତକୁ ପ୍ରତିଷ୍ଠା ଦେବାପାଇଁ ଅଦ୍ୱୈତବାଦୀ ଶଙ୍କର,

ବିଶିଷ୍ଟାଦ୍ୱୈତବାଦୀ ରାମାନୁଜ, ଦ୍ୱୈତାଦ୍ୱୈତବାଦୀ ନିମ୍ବାର୍କ, ଶୁଦ୍ଧାଦ୍ୱୈତବାଦୀ ବଲ୍ଲଭ, ଅଚିନ୍ତ୍ୟ ଭେଦାଭେଦବାଦୀ ବଳଦେବ ଉପାଧ୍ୟାୟ ପ୍ରଭୃତି ଆଚାର୍ଯ୍ୟ ବିଷ୍ଣୁପୁରାଣକୁ ଏକ ପ୍ରାମାଣିକ ଗ୍ରନ୍ଥଭାବେ ଗ୍ରହଣ କରିଛନ୍ତି । ସେମାନଙ୍କ ଉପନିଷଦ୍, ବ୍ରହ୍ମସୂତ୍ର, ଶ୍ରୀମଦ୍ ଭଗବଦ୍ ଗୀତା, ବିଷ୍ଣୁ ସହସ୍ରନାମ ପ୍ରଭୃତିର ଟୀକା ଓ ଭାଷ୍ୟରେ ଏହି ପୁରାଣର ଶ୍ଳୋକମାନ ଉଦ୍ଧୃତ । ରତ୍ନଗର୍ଭ, ଶ୍ରୀଧର ସ୍ୱାମୀ, ବିଷ୍ଣୁଚିତ୍ତ ପ୍ରମୁଖ ବିଦ୍ୱାନ୍ ସଂସ୍କୃଭାଷାରେ ଏହାର ଟୀକା ରଚନା କରିଛନ୍ତି । ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରେ ମଧ୍ୟ ଏହାର ଅନୁବାଦ ଉପଲବ୍ଧ । ବହୁ ଶାସ୍ତ୍ରଦର୍ଶୀ ବିଦ୍ୱାନ୍ ଶ୍ରୀ ବଲ୍ଲଭ ନାରାୟଣ ମହାପାତ୍ର ଏହାର ବ୍ୟାଖ୍ୟାତ୍ମକ ଅନୁବାଦ କରି ଭକ୍ତିପ୍ରବଣ ଓଡ଼ିଆ ପାଠକମାନଙ୍କର ଅଶେଷ ଉପକାର ସାଧନ କରିଛନ୍ତି । ଏପରି ଏକ ମହତ୍ୱପୂର୍ଣ୍ଣ ଗ୍ରନ୍ଥକୁ ପ୍ରକାଶ କରିବାପାଇଁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପକ୍ଷରୁ ପଦକ୍ଷେପ ନିଆଯାଉଛି ।

## ତିନି

ବଲ୍ଲଭ ନାରାୟଣ ମହାପାତ୍ରଙ୍କର ଜନ୍ମ ନନ୍ଦପୁର ରାଜ୍ୟର ଜୟପୁର । ସେ ଜଣେ ବିଶିଷ୍ଟ ସାରସ୍ୱତ ସାଧକ, ପଣ୍ଡିତ ପୃଷ୍ଠପୋଷକ ଏବଂ ସମର୍ଥ ପ୍ରଶାସକ । ସ୍ୱରଚିତ ଗ୍ରନ୍ଥଗୁଡ଼ିକରେ ନିଜର ପରିଚୟ ଦେବାକୁ ଯାଇ ସେ ଲେଖିଛନ୍ତି –

ସିଦ୍ଧାର୍ଥୀ ସମ୍ବତ୍ସରେ ଯେ ମାର୍ଗଶୀରିଷରେ ।
ନିର୍ଦ୍ଦୋଷ କୃଷ୍ଣପକ୍ଷ ପଞ୍ଚମୀ ରବିବାରେ ।।
ପୁନର୍ବସୁ ନକ୍ଷତ୍ର ମିଥୁନ ନାମେ ଚନ୍ଦ୍ର ।
ଉଚ୍ଚରେ ବସିଥିଲେ ସକଳ କ୍ଷେମଚନ୍ଦ୍ର ।।
କୁମ୍ଭଲଗ୍ନେ ଶ୍ରୀଲିଙ୍ଗରାଜଙ୍କ ଆଳୟରେ ।
ଆରମ୍ଭ ହେବାଠାରୁ ସପ୍ତଦିନଠାରେ ।।
ଶ୍ରୀ ଶିବଗୀତା ନାମେ ଅପୂର୍ବ ଇତିହାସ ।
ସର୍ବଶୁଭେ ଶଙ୍କର କୃପାରୁ ହେଲା ଶେଷ ।।
ନନ୍ଦପୁର ନାମରେ ବିରାଜେ ମହାରାଜ୍ୟ ।
ଅନୀତି କଥାମାନ ଯହିଁର ଅତିତ୍ୟାଜ୍ୟ ।।
ସେ ରାଜ୍ୟ ମଧ୍ୟେ ସାର ଅଟଇ ଜୟପୁର ।
ଅଯୁତେ ଧନ୍ୟ ବୋଲି ସଙ୍ଖ୍ୟାଯେ ଖ୍ୟାତ ଯାର ।।
ସେ ଯେଉଁ ଜୟପୁର ତହିଁର ନରପତି ।
ଶ୍ରୀରାମଚନ୍ଦ୍ର ଦେବ ନାମରେ ଚକ୍ରବର୍ତ୍ତୀ ।।
ଯାହାର କୀର୍ତ୍ତିଚନ୍ଦ୍ର କିରଣେ ପୂର୍ଣ୍ଣ ହୋଇ ।
ବସୁମତୀ ମଣ୍ଡଳ ସର୍ବଦା ବିରାଜଇ ।।
ରିପୁ ଗର୍ବ ପର୍ବତେ ଦମ୍ଭୋଳି ପରକାରେ ।
ଯାହାର ଆଜ୍ଞା ବ୍ୟାପୀ ରହିଛି ଜଗତରେ ।।
ସେ ଯଉଁ ନୃପକୂଳ କୁମୁଦ ଓଷଧୀଶ ।
ଅନଙ୍ଗକଷଙ୍କର ବଂଶର ଅବତଂସ ।।

ସେ ରାଜାଙ୍କ ସକଳ ସମ୍ପଦ ସ୍ୱରୂପରେ ।
କନକଦୁର୍ଗା ଦେବୀ ବିଜୟେ ନନ୍ଦପୁରେ ॥
ସେ ଯେଉଁ ଭକ୍ତଜନମାନଙ୍କ ସୁଖଦାତ୍ରୀ ।
ଯେବଣ ବିଷ୍ଣୁଙ୍କର ଅଟନ୍ତି ଅଧିଷ୍ଠାତ୍ରୀ ॥
ସେ ରାଜ୍ୟରେ ସେ ଯେଉଁ ବଲ୍ଲଭ ନାରାୟଣ ।
ତାହାଙ୍କ ଶ୍ରୀଚରଣ ପଙ୍କଜ ପରାୟଣ ॥
ରାମଚନ୍ଦ୍ର ଦେବଙ୍କ ସୁକୃତ ପୁଷ୍ପପୁଞ୍ଜ ମାତ୍ର ।
ଜଗନ୍ନାଥ ସାତୋଡ଼ା ବେହେରା ମହାପାତ୍ର ॥
ତାହାଙ୍କ ଜ୍ୟେଷ୍ଠ ଭ୍ରାତୃ ଅଟନ୍ତି ରାମଚନ୍ଦ୍ର ।
ମହାପାତ୍ର ସକଳ କ୍ଷତ୍ରିୟକୁଳ ଇନ୍ଦ୍ର ॥
ସେ ମହାଗୁରୁଙ୍କ ତନୁଜ ହୋଇ ଯେବେ ।
ଶଙ୍କର ଶ୍ରୀଚରଣେ ରସଇ ନାହିଁ ଲବେ ॥
ଅସାଧୁ ଜନ ସଙ୍ଗେ ବଞ୍ଚଇ ଦିବାରାତ୍ରି ।
ଯେ ଘେନି ଆନ୍ଦୋଳିତ ହେବାରୁ ମୋର ମତି ॥
ଶ୍ରୀ ଶିବଗୀତା ଗ୍ରନ୍ଥ ଜଗତଜନ ହିତେ ।
ତାଙ୍କର କୃପାରୁ ଯେ କହିଲି ପରାକୃତେ ॥
ପଣ୍ଡିତ ଜନେ ଶୁଣି ତା' ହେଲେ ପରସନ ।
ଯେମନ୍ତ ହେଲେ ସାର୍ଥ ହୋଇବ ମୋ ଜୀବନ ॥
ଶ୍ରୀ ପଦ୍ମପୁରାଣଙ୍କ ମଧରେ ଅତିଖ୍ୟାତ ।
ଶ୍ରୀ ଶିବଗୀତା ନାମେ ପରମ ଭାଗବତ ॥
ବ୍ରହ୍ମଭାଗେ ପ୍ରକଟ ଯେବଣ ବ୍ରହ୍ମବିଦ୍ୟା ।
ମୁନିଯେ ଯୋଗଶାସ୍ତ୍ର ବୋଲନ୍ତି ଯାକୁ ସଦା ।
ସୂତ ସର୍ବମୁନିଙ୍କ ସମ୍ବାଦ ପରସ୍ତାବ ।
ମୋକ୍ଷାଧିକାର ନାମେ ଯହିଁରେ ମହୋତ୍ସବ ॥
ଛାଣିଲା ସୁଧାଠାରୁ ମଧୁର ଯଉଁ ରସ ।
ସେ ଗ୍ରନ୍ଥର ଷୋଡ଼ଶ ଅଧ୍ୟାୟ ହେଲା ଶେଷ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ (ଶ୍ରୀ ଶିବଗୀତା, ଅ-୧୬)
ଶ୍ରୀ ବିଷ୍ଣୁପୁରାଣ ଯେ ପ୍ରଥମଅଂଶ ଗୀତ ।
ବିଷ୍ଣୁ ମହାତ୍ମ୍ୟ ବର୍ଣ୍ଣନା ଦ୍ୱାବିଂଶ ଅଧ୍ୟା ଖ୍ୟାତ ॥
ନନ୍ଦପୁର କ୍ଷିତୀଶ ଶ୍ରୀକୃଷ୍ଣ ଦେବ ନାମ ।
ତାଙ୍କ ମନ୍ତ୍ରୀ ପାପୟା ପାତ୍ର ଯେ ଅନୁପମ ॥
ତାହାଙ୍କ କୁଳମଣ୍ଡନ ଏକଇ ପଉତ୍ର ।
ଯା' ନାମ ବଲ୍ଲଭନାରାୟଣ ମହାପାତ୍ର ॥

ତାହା କୃତ ଗ୍ରନ୍ଥ ଏ ଯେ ଶ୍ରୀବିଷ୍ଣୁ ପୁରାଣ ।
ଭକ୍ତିପୂର୍ବ ହୋଇଣ ସକଳ ସାଧୁ ଶୁଣ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। (ବିଷ୍ଣୁ ପୁରାଣ, ୧/୨୨)
ଶ୍ରୀ ବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶ ଗୀତ ।
ସୌବୀର ମୁକ୍ତି ଷଷ୍ଠଦଶ ଅଧ୍ୟା ଖ୍ୟାତ ।।
ନନ୍ଦପୁର ଶ୍ରୀବିକ୍ରମ ଦେବ ମହୀପତି ।
ତାଙ୍କ ମନ୍ତ୍ରୀ ରାମଚନ୍ଦ୍ର ପାତ୍ର ଧୀରମତି ।।
ତାଙ୍କ କୁଳ ମଣ୍ଡନ ଏକଇ ଦିବ୍ୟ ପୁତ୍ର ।
ଯା ନାମ ବଲ୍ଲଭ ନାରାୟଣ ମହାପାତ୍ର ।।
ତାହା କୃତ ଗ୍ରନ୍ଥ ଏ ହୋଇଲା ସମାପତ ।
ସଜ୍ଜନ ହିତରେ ସଂସାରେ ହେଉ ଖ୍ୟାତ ।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। (ବିଷ୍ଣୁ ପୁରାଣ, ୨/୨୬)
ଶ୍ରୀବିଷ୍ଣୁ ପୁରାଣ ତୃତୀୟ ଅଂଶ ଗୀତ ।
ନଗ୍ନ ବ୍ୟବହାର ଅଷ୍ଟାଦଶ ଅଧ୍ୟା ଖ୍ୟାତ ।।
ନନ୍ଦପୁର ମହାରାଜ୍ୟ ଅବନୀ ତିଳକ ।
ଶ୍ରୀରାମଚନ୍ଦ୍ର ଦେବ ନୃପତି ଶ୍ରୀ ବିବେକ ।।
ତାହାଙ୍କର ମନ୍ତ୍ରୀବର ପରମ ପବିତ୍ର ।
ସୁବୁଦ୍ଧି ଜଗନ୍ନାଥ ବେହେରା ମହାପାତ୍ର ।।
ତାଙ୍କ ଜ୍ୟେଷ୍ଠଭ୍ରାତ ରାମଚନ୍ଦ୍ର ମହାପାତ୍ର ।
ତତ୍‌ପୁତ୍ର ବଲ୍ଲଭ ନାରାୟଣ ମହାପାତ୍ର ।।

X X X X

ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। (ବିଷ୍ଣୁ ପୁରାଣ, ୩/୧୮)
ଶ୍ରୀବିଷ୍ଣୁ ପୁରାଣ ଚତୁର୍ଥ ଅଂଶ ଏ ତ ।
ଚର୍ତୁବିଂଶ ଅଧ୍ୟାୟ ବଂଶାନୁସୁଚରିତ ।।
ଦେଶଭାଷାରେ ସାଧୁଜନ ବୁଝିବାରେ ।
ସଂସ୍କୃତ ଅର୍ଥ ଚାହିଁ କହିଲି ଆହେ ଧୀରେ ।।
ଅଗାଧ ସମୁଦ୍ର ଏ ମୋହର କାହିଁ ବଳ ।
ସବୁ କଥାକୁ ସାହା କେବଳ ଆଦିମୂଳ ।।
କେତେଠାରେ ଅର୍ଥ ବା ଚଳିଛି ଚଳିନାହିଁ ।
ଘଟାଘଟ କରି ହେ ପୁରାଣ କହିଲଇଁ ।।
ଚଉବର୍ଗ ମିଳିବ ଶୁଣିଲେ ଏ ପୁରାଣ ।

ପ୍ରସନ୍ନ ହେବେ ପ୍ରଭୁ ଶ୍ରୀ ଶିବ ନାରାୟଣ ॥
ନନ୍ଦପୁର ମହାରାଜ୍ୟ ଅବନୀ ତିଳକ ।
ଶ୍ରୀ ରାମଚନ୍ଦ୍ର ଦେବ ଶ୍ରୀ ନୃପତି ତିଳକ ॥
ତାହାଙ୍କର ମନ୍ତ୍ରୀବର ପରମ ପବିତ୍ର ।
ସୁବୁଦ୍ଧି ବଲ୍ଲଭ ନାରାୟଣ ମହାପାତ୍ର ॥
ତାହା କୃତ ଗ୍ରନ୍ଥ ଏ ସଂସାରେ ଖ୍ୟାତ ହେଉ ।
ଶ୍ରୋତା ବକତାଙ୍କୁ ଯେ ପରମ ମୁକ୍ତି ଦେଉ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ (ବିଷ୍ଣୁ ପୁରାଣ, ୪/୨୪)
ଶ୍ରୀ ବିଷ୍ଣୁ ପୁରାଣ ଏ ପଞ୍ଚମ ଅଂଶ ଗୀତ ।
ଅଷ୍ଟତ୍ରିଂଶ ଅଧ୍ୟାୟ ହୋଇଲା  ସମାପ୍ତ ॥
ପାଣ୍ଡବ ସ୍ୱର୍ଗାରୋହଣ ଶୁଭେ ହେଲା ଶେଷ ।
ସମାପ୍ତ ହୋଇଲା ଆସି ଏ ପଞ୍ଚମ ଅଂଶ ॥
ନନ୍ଦପୁର ମହାରାଜ ଅବନୀ ଈଶ୍ୱର ।
ଶ୍ରୀ ରାମଚନ୍ଦ୍ର ଦେବ ଯେ ନୃପତି ଶେଖର ॥
ତାହାଙ୍କ ସଚୀବବର ସୁକାଶ୍ୟପ ଗୋତ୍ର ।
ବିବେକୀ ବଲ୍ଲଭ ନାରାୟଣ ମହାପାତ୍ର ॥
ତାହା ମୁଖ ବାକ୍ୟ ଏ ସଂସାରେ ହୋଉ ଖ୍ୟାତ ।
ଶୁଣିବା ପଢ଼ିବା ଲୋକଙ୍କର ହେଉ ହିତ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
ଭଣଇ ବଲ୍ଲଭ ନାରାୟଣ ମହାପାତ୍ର ॥ (ବିଷ୍ଣୁ ପୁରାଣ, ୫/୩୮)
ଶ୍ରୀ ବିଷ୍ଣୁ ପୁରାଣ ଏ ଶ୍ରୀ ଷଷ୍ଠ ଅଂଶ ଅର୍ଥ ।
ଫଳଶ୍ରୁତି ଅଷ୍ଟମ ଅଧ୍ୟାୟ ସମାପତ ॥
ପରାଶର ମୈତ୍ରେୟ ସମ୍ବାଦ ଶୁଦ୍ଧତର ।
ନୌକା କରି ନରେ ସଂସାର ସିନ୍ଧୁତର ॥
ଶ୍ରୀ ନନ୍ଦପୁର ମହୀ କୁସୁମ ପୂର୍ଣ୍ଣଚନ୍ଦ୍ର ।
ଶ୍ରୀରାମ ଚନ୍ଦ୍ର ନୃପ ରାଜନକୁଳ ଇନ୍ଦ୍ର ॥
ତାଙ୍କର ବଂଶ ଅଗ୍ରଣୀ ଭାରଦ୍ୱାଜ ଗୋତ୍ର ।
ଶ୍ରୀ କନକ ଦୁର୍ଗା ଦେବୀଙ୍କର ବରପୁତ୍ର ॥
ଶ୍ରୀ ବଲ୍ଲଭ ନାରାୟଣଙ୍କର ମହାଭକ୍ତ ।
ପରମ ବୈଷ୍ଣବ ଯେ ସୁବୁଦ୍ଧି ସୁଚରିତ୍ର ॥
ତାହାଙ୍କର ସୁପବିତ୍ର ............
ଶୁଦ୍ଧ କ୍ଷତ୍ରିୟ ଜାତି ସୁପକ୍ଷପତି ଗାତ୍ର ॥
ନିଜ କୁଳ କମଳ ପ୍ରକାଶ ଅର୍ଥେ ମିତ୍ର ।

ଜଗନ୍ନାଥ ସାତୋଡ଼ା ବେହେରା ମହାପାତ୍ର ।।
ତାଙ୍କ ଜ୍ୟେଷ୍ଠଭ୍ରାତେ ଏକଇ ଯେ ପୁତ୍ର ।
ନାମ ତା ବଲ୍ଲଭ ନାରାୟଣ ମହାପାତ୍ର ।।
ତାହା କୃତ ଗ୍ରନ୍ଥ ଯେ ଶ୍ରୀ ବିଷ୍ଣୁ ପୁରାଣ ।
ଧର୍ମ ଅର୍ଥ କାମ ମୋକ୍ଷ ଅଟଇ ନିପୁଣ ।।
ଶକାବ୍ଦ ସତରଶ ଏକୋଇଶି ଠାରେ ।
ସିଦ୍ଧାର୍ଥ ବସ୍ସରେ ମାଘ ଶୁଦ୍ଧ ପଞ୍ଚମୀରେ ।।
ବୃହସ୍ପତି ବାସରେ ରେବତୀ ନାମ ଋକ୍ଷେ ।
କୁମ୍ଭଲଗ୍ନ ପ୍ରବେଶ ଯେ ହୁଅନ୍ତେ ପ୍ରତ୍ୟକ୍ଷେ ।।
ଶ୍ରୀ ମରକତ ଲିଙ୍ଗର ଉତ୍ତର ପାରୁଶେ ।
ସର୍ବଶୁଭ ଗ୍ରନ୍ଥପୂର୍ଣ୍ଣ ହେଲା ଭକ୍ତି ରସେ ।।
ଧାୟି ଶ୍ରୀ ଶିବରାମ ଚରଣ ଶତପତ୍ର ।
ଭଣଇ ବଲ୍ଲଭ ନାରାୟଣ ମହାପାତ୍ର ।। **(ବିଷ୍ଣୁ ପୁରାଣ, ୬/୮)**

ଗ୍ରନ୍ଥ ଓ ଗ୍ରନ୍ଥାଂଶଗୁଡ଼ିକରେ ଥିବା ଉଦ୍ଧୃତିଗୁଡ଼ିକରୁ ସ୍ପଷ୍ଟ ଜଣାଯାଏ, କବି ବଲ୍ଲଭ ନାରାୟଣ ମହାପାତ୍ର ସଂଯୁକ୍ତ ନନ୍ଦପୁର ରାଜ୍ୟର (କଲ୍ୟାଣ ସିଂହପୁର ଓ ନନ୍ଦପୁର) ରାଜଧାନୀ ଜୟପୁରଠାରେ ଜନ୍ମଗ୍ରହଣ କରିଛନ୍ତି । ତାଙ୍କ ଜନ୍ମ ସମୟ ନିର୍ଦ୍ଧାରଣ ଆତ୍ମପରିଚୟଗୁଡ଼ିକରୁ ସମ୍ଭବ ହେଉ ନାହିଁ । ସେ ଜୟପୁର ଅଧିପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ମନ୍ତ୍ରୀ ରୂପରେ କାର୍ଯ୍ୟ କରିଛନ୍ତି ଏବଂ ୧୮୦୦ ଖ୍ରୀଷ୍ଟାବ୍ଦରେ ବିଷ୍ଣୁପୁରାଣ ଓ ୧୭୯୯ ଖ୍ରୀଷ୍ଟାବ୍ଦରେ ଶିବଗୀତାର ରଚନା ସମାପ୍ତ କରିଛନ୍ତି । ତେଣୁ କବି ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଜନ୍ମଗ୍ରହଣ କରି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦେହତ୍ୟାଗ କରିଥିବା ପ୍ରମାଣସିଦ୍ଧ । ଜୟପୁରର କାଶ୍ୟପ ଗୋତ୍ରୀୟ ଏକ କୁଳୀନ ବିଶୁଦ୍ଧ କ୍ଷତ୍ରୀୟ ବଂଶରେ ତାଙ୍କର ଜନ୍ମ । ତାଙ୍କ ପିତାମହ ପାପୟା ପାତ୍ର ଥିଲେ ଜୟପୁରର ଶାସକ ଲାଲା କୃଷ୍ଣଦେବଙ୍କ ସୁଯୋଗ୍ୟ ସଚିବ । ପାପୟା ଦୁଇଟି ସନ୍ତାନର ଜନକ - ରାମଚନ୍ଦ୍ର ଓ ଜଗନ୍ନାଥ । ଲାଲା କୃଷ୍ଣଦେବଙ୍କ ପରେ ବିକ୍ରମ ଦେବ ପ୍ରଥମ ଖ୍ରୀ ୧୭୫୮-୧୭୮୧ ପର୍ଯ୍ୟନ୍ତ ଜୟପୁର ରାଜସିଂହାସନରେ ଅଧିଷ୍ଠିତ ଥିଲେ । ପାପୟାଙ୍କ ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ର ପାତ୍ର ପିତାଙ୍କ ପରେ ଏହି ବିକ୍ରମଦେବଙ୍କ ଶାସନ କାଳରେ ନନ୍ଦପୁର ରାଜ୍ୟର ମନ୍ତ୍ରୀ ପଦରେ ନିଯୁକ୍ତ ଥିଲେ । ରାମଚନ୍ଦ୍ରଙ୍କ ଅକାଳ ବିୟୋଗଯୋଗୁଁ ରାଜା ବିକ୍ରମ ଦେବ ତାଙ୍କ ବିଜ୍ଞ ଓ ସୁଯୋଗ୍ୟ କନିଷ୍ଠଭ୍ରାତା ଜଗନ୍ନାଥ ପାତ୍ରଙ୍କୁ ମନ୍ତ୍ରୀ ରୂପେ ନିଯୁକ୍ତ କରି ତାଙ୍କୁ ସାତୋଡ଼ା ବେହେରା ମହାପାତ୍ର ଉପାଧିରେ ଭୂଷିତ କରିଥିଲେ । ସାତୋଡ଼ା, ଅର୍ଥାତ୍, ସେ ରାଜସଭାକୁ ଗଲାବେଳେ ସାତୋଟି ମଶାଲ ଜଳାଇ ଯାଇପାରିବେ । ବିକ୍ରମ ଦେବଙ୍କ ଅନ୍ତେ ରାମଚନ୍ଦ୍ର ଦେବ ଦ୍ୱିତୀୟ ନନ୍ଦପୁରଠାରେ ଥିବା ବିତ୍ରିଶ ସିଂହାସନରେ ଯୁବରାଜ ରୂପେ ଅଭିଷିକ୍ତ ହୋଇ, ଜୟପୁରଠାରେ ରାଜସିଂହାସନ ଆରୋହଣ କରିଥିଲେ । ସେ ଖ୍ରୀ.ଅ. ୧୭୮୧ରୁ ୧୮୨୫ ପର୍ଯ୍ୟନ୍ତ ଜୟପୁର ରାଜ୍ୟର ଶାସକ ହୋଇଛନ୍ତି । ଏହା କୁମାର ବିଦ୍ୟାଧର ସିଂହଦେବଙ୍କ ନନ୍ଦପୁର ଇତିହାସରୁ ଜଣାଯାଏ । ବିକ୍ରମଦେବଙ୍କ ମନ୍ତ୍ରୀପ୍ରବର, ଶ୍ରୀ ରାମଚନ୍ଦ୍ର ଦେବଙ୍କ ସୁଯୋଗ୍ୟ ସଚିବ ଜଗନ୍ନାଥ ସାତୋଡ଼ା ବେହେରା ମହାପାତ୍ର ଅପୁତ୍ରକଯୋଗୁଁ ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ର ପାତ୍ରଙ୍କ ଏକମାତ୍ର

କୁଳନନ୍ଦନ ବଲ୍ଲଭ ନାରାୟଣ ମହାପାତ୍ର ରାଜା ରାମଚନ୍ଦ୍ର ଦେବଙ୍କ ମନ୍ତ୍ରୀପଦରେ ନିଯୁକ୍ତ ହୋଇଥିଲେ ।

ଜୟପୁର ରାଜ୍ୟର ପ୍ରସିଦ୍ଧ ଦେବତା ଶ୍ରୀ ବଲ୍ଲଭ ନାରାୟଣ । ତାଙ୍କୁ ଉପାସନାକରି ରାମଚନ୍ଦ୍ର ପୁତ୍ରଲାଭଯୋଗୁଁ ଦେବତାଙ୍କ ନାମାନୁସାରେ ପୁତ୍ରର ନାମ ରଖିଛନ୍ତି ବଲ୍ଲଭ ନାରାୟଣ । ବଲ୍ଲଭ ନାରାୟଣଙ୍କ ଆଶ୍ରୟରେ ରହି ୧୭୭୮ ଶକାବ୍ଦ ବା ୧୭୯୬ ଖ୍ରୀଷ୍ଟାବ୍ଦରେ ଶୈବୋତ୍ତର ପୁରାଣର ଅନୁବାଦ କରିଥିବା ଦ୍ୱିଜ ଭାଗିରଥି ସାମନ୍ତରାୟ ଆଶ୍ରୟଦାତାଙ୍କ ସମ୍ପର୍କରେ ଲେଖିଛନ୍ତି–

ସେ ମହାରାଜାଙ୍କ (ରାମଚନ୍ଦ୍ର ଦେବ) ମନ୍ତ୍ରୀ ବିଶୁଦ୍ଧ କ୍ଷତ୍ରିଜାତି
ପ୍ରଭୁକାର୍ଯ୍ୟ ଆସକ୍ତ ସର୍ବଦା କାଶ୍ୟପ ଋଷିଗୋତ୍ରି ।
ସମସ୍ତ ଗୁଣଗ୍ରାହୀ ଅନେକ ଗୁଣ ଯଶ
ସେବାଧର୍ମ ଆଶ୍ରିତ ଭାବନା ସେ ହରଷ ।
ଅଇରି ମିତ୍ର ସମ ସର୍ବଦା ଶୁଦ୍ଧଚିତ୍ତ
ଜଗନ୍ନାଥ ସାତୋଡ଼ା ବେହେରା ମହାପାତ୍ର ।
ତାଙ୍କ ଜ୍ୟେଷ୍ଠଭ୍ରାତ ସାକ୍ଷାତେ ଧର୍ମତରୁ
ଗୋଟିଏ କୁମର ହେଲେ ତାହାଙ୍କ କୋଳରୁ ।
ତାହାଙ୍କ ନାମ ବଲ୍ଲଭ ନାରାୟଣ ମହାପାତ୍ର
ସୁବୁଦ୍ଧି ଗୁଣ ସଦା ଧର୍ମରେ ରହେ ଚିତ୍ତ ।
ଅଲଙ୍ଘିତ ନୃପ ଆଜ୍ଞା ସମସ୍ତ କାର୍ଯ୍ୟକ୍ଷମ
ପିତୃବାକ୍ୟ ଅଲଙ୍ଘିତ ଆଶ୍ରିତ ଶୈବଧର୍ମ ।
ପୁରାଣ ଶାସ୍ତ୍ରସଦା ଅଭ୍ୟାସ ଶୁଦ୍ଧମନ
ତାହାଙ୍କ ଆଦେଶେ ହୋଇଲା ସଂପୂର୍ଣ୍ଣ ।(୪୩ ଅଧ୍ୟାୟ)

ଏଥିରୁ ଜଣାଯାଏ, ବଲ୍ଲଭ ନାରାୟଣ ଥିଲେ ପୁରାଣ ଓ ଶାସ୍ତ୍ରଜ୍ଞ, ସୁବୁଦ୍ଧି ଓ ଗୁଣଜ୍ଞ, ଆଚାରନିଷ୍ଠ ଓ ଧାର୍ମିକ ଏବଂ ରାଜାଙ୍କର ବିଶ୍ୱସ୍ତ ସଚିବ । ରାଜକାର୍ଯ୍ୟରେ ସୁଦକ୍ଷ ଏବଂ ଶୈବମତାବଲମ୍ବୀ । ଶିବ ତାଙ୍କର ଉପାସ୍ୟ ଦେବତା ହେଲେ ସୁଦ୍ଧା ବଲ୍ଲଭ ନାରାୟଣ ସ୍ୱାମୀଙ୍କ ଆଶୀର୍ବାଦରୁ ଜନ୍ମଲାଭ କରିଥିବାଯୋଗୁଁ ସେହି ବିଷ୍ଣୁ ଭଗବାନଙ୍କଠାରେ ମଧ ତାଙ୍କର ଅଚଳା ଭକ୍ତି ରହିଛି । ସେ ତାଙ୍କ ରଚନାରେ ସର୍ବତ୍ର ଶ୍ରୀ ଶିବରାମଙ୍କ ଚରଣାରବିନ୍ଦକୁ ସ୍ମରଣ କରିଛନ୍ତି । ଅନୁବାଦ କରିଛନ୍ତି ବୈଷ୍ଣବ ମହାପୁରାଣ 'ବିଷ୍ଣୁ ପୁରାଣ' ଏବଂ ଶୈବମତବାଦର ତାତ୍ତ୍ୱିକ ଗ୍ରନ୍ଥ ଶିବଗୀତା । ଉଭୟ ଗ୍ରନ୍ଥ ସେ ଶ୍ରୀମରକତଲିଙ୍ଗ, ଅର୍ଥାତ୍ ଜୟପୁର ସ୍ଥିତ ନୀଳକଣ୍ଠେଶ୍ୱର ମନ୍ଦିରରେ ବସି ରଚନା କରିଥିବା ଜଣାଇଛନ୍ତି ।

ଉଲ୍ଲିଖିତ ଦୁଇଟି ଗ୍ରନ୍ଥ ବ୍ୟତୀତ ସମାଲୋଚମାନେ ଭ୍ରମବଶତଃ 'ତୀର୍ଥ ଚିନ୍ତାମଣି' ନାମକ ଅନ୍ୟ ଏକ ଗ୍ରନ୍ଥକୁ ଆଲୋଚ୍ୟ ବଲ୍ଲଭ ନାରାୟଣ ମହାପାତ୍ରଙ୍କ ରଚନା ରୂପେ ଗ୍ରହଣ କରିଛନ୍ତି । ଏ ପ୍ରକାର ଭ୍ରାନ୍ତିର କାରଣ, ତୀର୍ଥ ଚିନ୍ତାମଣି ଗ୍ରନ୍ଥର ଭଣିତା । ରଚୟିତା ଗ୍ରନ୍ଥ ଶେଷରେ ଲେଖିଛନ୍ତି –

ସପ୍ତଶତ ବିଂଶତି ପ୍ରମାଣ ଶକାବ୍ଦରେ
କାଳଯୁକ୍ତି ନାମ ବ୍ୟାବହାରିକ ସମ୍ବତ୍ସରେ ।

ବିଶୁଦ୍ଧ ପୌଷ କୃଷ୍ଣ ଦ୍ୱିତୀୟା ସୋମବାରେ
ପୁନର୍ବସୁ ମିଥୁନେ ମକର ଲଗ୍ନଠାରେ ।
ସର୍ବଶୁଭେ ଏ ଗ୍ରନ୍ଥ ହୋଇଲା ସମାପତ
ଉଦ୍ଧରି ଧର ମୋତେ କମଳାଦେବୀ କାନ୍ତ ।
ଅତି ଅଧମ ଦୀନ ପାମର ମନ ମତି
ଦ୍ୱିଜ କବି ବଲ୍ଲଭ କହଇ କୃଷ୍ଣ ଚିନ୍ତି ।

ଏଥିରେ ଥିବା 'ଦ୍ୱିଜ କବି ବଲ୍ଲଭ'ଙ୍କୁ ବଲ୍ଲଭ ନାରାୟଣ ମହାପାତ୍ର ବୋଲି ଗ୍ରହଣକରିବା ଫଳରେ ଏ ପ୍ରକାର ଭ୍ରାନ୍ତି ସୃଷ୍ଟିହୋଇଛି । 'ବିଷ୍ଣୁପୁରାଣ' ଓ 'ଶିବଗୀତା'ର ରଚୟିତା ନିଜେ ଏବଂ ତାଙ୍କ ଆଶୀର୍ବାଦରୁ ଗ୍ରନ୍ଥ ରଚନାକରିଥିବା ଜୟପୁରବାସୀ ଅନ୍ୟାନ୍ୟ କବିମାନେ ତାଙ୍କୁ ବିଶୁଦ୍ଧ କ୍ଷତ୍ରିୟ କୁଳ-ସମ୍ଭୂତ ବୋଲି ପରିଚିତ କରାଇଥିବାବେଳେ, 'ତୀର୍ଥ ଚିନ୍ତାମଣି'ର ପ୍ରଣେତା ନିଜକୁ ଦ୍ୱିଜ ବୋଲି ଉଲ୍ଲେଖ କରିଛନ୍ତି । ଏହି କବି ଜୟପୁର ଅଧିପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କଠାରୁ କବି ବଲ୍ଲଭ ଉପାଧି ପ୍ରାପ୍ତ ହୋଇଥିବା ସମ୍ଭବ । ତେଣୁ ସେ ନିଜକୁ 'କବି ବଲ୍ଲଭ' ରୂପେ ପରିଚିତ କରାଇଛନ୍ତି । ଏଥିରେ ଥିବା 'ଦ୍ୱିଜ' ଶବ୍ଦକୁ ଆଧାର କରି ସଚ୍ଚିଦାନନ୍ଦ ମିଶ୍ର ବିଷ୍ଣୁପୁରାଣର ରଚୟିତାଙ୍କ କ୍ଷତ୍ରିୟ ପରିଚୟ ପ୍ରତି ସନ୍ଦେହ ପ୍ରକାଶ କରିଛନ୍ତି । କିନ୍ତୁ ଏ ଭ୍ରାନ୍ତି ଅମୂଳକ । ଉଭୟ ଗ୍ରନ୍ଥର ପ୍ରଣେତା ସ୍ୱତନ୍ତ୍ର । ତୀର୍ଥ ଚିନ୍ତାମଣିର କବି ରାଧାକୃଷ୍ଣ ବା ବିଷ୍ଣୁଭକ୍ତ । ଗ୍ରନ୍ଥର ଶେଷରେ ସେ ତାଙ୍କରି ଆଶୀର୍ବାଦରୁ ଗ୍ରନ୍ଥସମାପ୍ତି କଥା ଉଲ୍ଲେଖ କରି ଲେଖିଛନ୍ତି । ଯଥା :

ନମସ୍ତେ ବାସୁଦେବ ଅଧମ ଜନବନ୍ଧୁ
ଦୀନଜନ ସୋଦର କରୁଣା-ଜଳ-ସିନ୍ଧୁ ।
ଲକ୍ଷ୍ମୀ ମୁଖପଙ୍କଜ ପ୍ରମତ୍ତ ମଧୁକର
ଶଙ୍ଖଚକ୍ର କମଳ କୌମୁଦି ଚାରିକର ।
ପ୍ରଫୁଲ୍ଲ ତାମରସ ନୟନ ମହାବାହୁ
ବିଶାଳ ବକ୍ଷସ୍ଥଳ ବିଶଦ ଚନ୍ଦ୍ରରାହୁ ।
ଯାଦବକୂଳ ସିନ୍ଧୁ ସମ୍ପୂର୍ଣ୍ଣ ସୁଧାକର
ନବଘନ ଶ୍ୟାମଳ ସାରଙ୍ଗ ଧନୁର୍ଦ୍ଧର ।
ଦୈତ୍ୟକୁଳ ଅନ୍ଧାର ପ୍ରଚଣ୍ଡ ଦିନନାଥ
ବିବୁଧମାନଙ୍କର ମନୋଜ୍ଞ ମନୋରଥ ।
ପକ୍ଷୀରାଜବାହନ କନକବର୍ଣ୍ଣ ବାସ
ମୁନି-ଜନ-ମାନସ ଦୀର୍ଘିକା ରାଜହଂସ ।
ତୁମ୍ଭ ଆଜ୍ଞା ପ୍ରମାଣେ ବର୍ଣ୍ଣିଲି ଯେଉଁ ରସ
ସାଧୁଜନ ସଭାରେ ହୋଉ ଏ ପରକାଶ ।
ବାରମ୍ବାର ମୋହର ପ୍ରାର୍ଥନା ଏତେମାତ୍ର
ଦ୍ୱିଜ ବୃନ୍ଦାବନକୁ ଉଧର ପଦ୍ମନେତ୍ର ।

ଏଥିରୁ ସ୍ପଷ୍ଟହୁଏ, ତୀର୍ଥଚିନ୍ତାମଣିର କବି ବୃନ୍ଦାବନ କବି ବଲ୍ଲଭ ଏବଂ ସେ ଜାତିରେ ବ୍ରାହ୍ମଣ ଓ ବିଷ୍ଣୁ-ଉପାସକ । ତେଣୁ ବଲ୍ଲଭ ନାରାୟଣ ମହାପାତ୍ରଙ୍କ ପରି ସେ 'ଶିବରାମ'ଙ୍କ ପରିବର୍ତ୍ତେ

ବାସୁଦେବ ବିଷ୍ଣୁଙ୍କୁ ନିଜର ଆରାଧ ଦେବତା ରୂପେ ପ୍ରଣତି ଜ୍ଞାପନ କରିଛନ୍ତି । ଅବଶ୍ୟ କବି ଭାଗିରଥି ସାମନ୍ତରାୟଙ୍କ ପରି ସେ ମଧ ବଲ୍ଲଭ ନାରାୟଣ ମହାପାତ୍ରଙ୍କ ଆଶ୍ରିତ କିମ୍ବା ସାହାଯ୍ୟପ୍ରାପ୍ତ କିମ୍ବା ଆଶୀର୍ବାଦପ୍ରାପ୍ତ । ଏକଥା ମଧ ସେ ସ୍ୱ ଗ୍ରନ୍ଥର ସମାପ୍ତିରେ ସୂଚାଇ ଲେଖିଛନ୍ତି –

ଅକଳଙ୍କ ଶଙ୍କର ବଂଶର ଅବତଂଶ
ଶ୍ରୀରାମଚନ୍ଦ୍ର ଦେବ ନାମରେ ନୃପଈଶ ।
ତାହାଙ୍କ ରାଜକାର୍ଯ୍ୟମାନଙ୍କେ ଦଣ୍ଡନେତ୍ର
ଜଗନ୍ନାଥ ସାତୋଡ଼ା ବେହେରା ମହାପାତ୍ର ।
ତାହାଙ୍କ ଜ୍ୟେଷ୍ଠଭ୍ରାତାଙ୍କ ସୁକୃତପୁଞ୍ଜ ଗାତ୍ର
ବଲ୍ଲଭ ନାରାୟଣ ନାମରେ ହେଲେ ପୁତ୍ର ।
ତାହାଙ୍କ ମହାପାତ୍ର ପଦବୀ ପାରିଜାତ
ବିକାଶିବାରୁ ଭକ୍ତି ବାସନା ହେଲା ଖ୍ୟାତ ।
ଗନ୍ଧବହ ପରି ମୁଁ ସେ ଭକ୍ତି ପରିମଳ
ପ୍ରକଟ କରିବାକୁ ଯେ ହୋଇଲି ଚଞ୍ଚଳ ।
ପଣ୍ଡିତ ଜନମାନେ ଅବଶ୍ୟ ହୁଅ ବୋଧ
କଦାଚିତେ ମୋହର ନ ଘେନ ଅପରାଧ ।

ଉକ୍ତିରୁ ସ୍ପଷ୍ଟ, ବଲ୍ଲଭ ନାରାୟଣ ଉଭୟ ରାଜଧର୍ମ ଓ କବି କର୍ମରେ ସମାନ ଭାବରେ ଦକ୍ଷ ଥିଲେ । ନିଜର ବିଦ୍‌ବତା, ପାଣ୍ଡିତ୍ୟ, ପ୍ରାଜାବାତ୍ସଲ୍ୟ, ଧାର୍ମିକତା, ରାଜଭକ୍ତି, ସାରସ୍ୱତ ସିଦ୍ଧିଦ୍ୱାରା ସେ ଜୟପୁରରେ ଏକ ସାଂସ୍କୃତିକ ପରିମଣ୍ଡଳ ସୃଷ୍ଟି କରିଛନ୍ତି । ତାଙ୍କ ପ୍ରଭାବରେ ପ୍ରଭାବିତ ଦୁଇଜଣ କବିଙ୍କ ପରିଚୟ ମିଳୁଥିଲେ ସୁଦ୍ଧା ଅନ୍ୟମାନଙ୍କୁ ଜୟପୁର ଓ ନନ୍ଦପୁର ରାଜ୍ୟରେ ଅନୁସନ୍ଧାନ କରାଯାଇପାରେ ।

## ଚାରି

ବିଷ୍ଣୁ ପୁରାଣର ଦୁଇଟି ଅଂଶ ଦୁଇଟି ଭିନ୍ନଭିନ୍ନ ପାଣ୍ଡୁଲିପି ଆଧାରରେ ପ୍ରସ୍ତୁତ କରାଯାଇଛି । ଗୋଟିଏ ତାଳପତ୍ର ଏବଂ ଅନ୍ୟଟି କାଗଜ ପାଣ୍ଡୁଲିପି । ତାଳପତ୍ର ପାଣ୍ଡୁଲିପିର ପୃଷ୍ଠାସଂଖ୍ୟା ୧୫୫, ଆକାର ୩୮ସେ.ମି. X ୩.୭୩ । ପ୍ରତ୍ୟେକ ପୃଷ୍ଠାରେ ପାଞ୍ଚୋଟି ଧାଡ଼ି ଏବଂ ପ୍ରତ୍ୟେକ ଧାଡ଼ିରେ ପ୍ରାୟ ୧୧୦ଟି ଅକ୍ଷର । ସ୍ଥାନେ ସ୍ଥାନେ ପୋଥିଟି କୀଟଦଂଷ୍ଟ । ଅକ୍ଷରଗୁଡ଼ିକ ସ୍ପଷ୍ଟ, କିନ୍ତୁ ଅତ୍ୟନ୍ତ ଛୋଟଯୋଗୁଁ ପଢ଼ିବା ସହଜ ହୁଏନାହିଁ । ପୋଥି ଶେଷରେ କୌଣସି ପୁଷ୍ପିକା ନାହିଁ, ତେଣୁ ଲେଖନକାର କିମ୍ବା ଲିଖନ ସ୍ଥାନ ଓ ସମୟର ପରିଚୟ ପାଇବା ସମ୍ଭବ ନୁହେଁ । କିନ୍ତୁ ଦ୍ୱିତୀୟ ପୋଥି (ବିଷ୍ଣୁପୁରାଣର ଛଅଟି ଯାକ ଅଂଶ ତିନୋଟି ପୋଥିରେ ସମାପ୍ତ ହୋଇଅଛି) ଶେଷରେ ପ୍ରତିଲିପିକାରଙ୍କ ନାମ ଗଙ୍ଗାଧର ମିଶ୍ର ଉଲ୍ଲେଖ ଅଛି । ମନେହୁଏ, ସେ ଜଣେ ସଂସ୍କୃତ ଅଭିଜ୍ଞ ପଣ୍ଡିତ । ତେଣୁ ପାଠ ଯଥାସମ୍ଭବ ଶୁଦ୍ଧ । ତଥାପି ପୋଥି ଲିଖନର ସ୍ୱାଭାବିକ ରୀତିରେ ଏଥିରେ ମଧ ଜ ଓ ଯ, ସ ଶ ଷ, ହ୍ରସ୍ୱ ଓ ଦୀର୍ଘର ଯାଦୃଚ୍ଛିକ ପ୍ରୟୋଗ ଦେଖିବାକୁ ମିଳେ । ପ୍ରତିଲିପିକାର ପଦସଂଖ୍ୟା ଦେଇନାହାନ୍ତି ।

ଦ୍ୱିତୀୟ ପାଣ୍ଡୁଲିପ, କାଗଜରେ, ୧୯୨୦ ମସିହାରେ ପ୍ରସ୍ତୁତ । ଏଥିରେ ମଧ ଲେଖନକାରଙ୍କ ନାମ ନାହିଁ । ଯେଉଁ ସ୍ୱାକ୍ଷର ଅଛି, ତାହା ଅସ୍ପଷ୍ଟ । ଏହାର ପ୍ରତ୍ୟେକ ପୃଷ୍ଠାରେ ୨୦ଟି ପଦ

ନକଲ କରାଯାଇଛି । ପାଣ୍ଡୁଲିପିର ଆରମ୍ଭ, ଶେଷ ଓ ଅଧିକାଂଶ ଅଧ୍ୟାୟ ଶେଷରେ ପ୍ରସିଦ୍ଧ ପଣ୍ଡିତ ଓ ଗବେଷକ ଗୋପୀନାଥ ନନ୍ଦଶର୍ମାଙ୍କ ସ୍ୱାକ୍ଷର ରହିଛି । ମନେହୁଏ, ପଣ୍ଡିତ ମହାଶୟ ଅନ୍ୟଦ୍ୱାରା ପାଣ୍ଡୁଲିପିଟି ପ୍ରସ୍ତୁତ କରାଇ ନିଜ ଗବେଷଣା କାର୍ଯ୍ୟରେ ବିନିଯୋଗ କରିଛନ୍ତି । ସେ ବହୁ ସ୍ଥାନରେ ନାଲିସ୍ୟାହିରେ ସଂଶୋଧନ କରିଛନ୍ତି । କେବଳ ବିଷୟବସ୍ତୁ ପ୍ରତି ଧ୍ୟାନ ଦେଇଥିବାଯୋଗୁଁ ପଣ୍ଡିତ ମହାଶୟ ବର୍ଣ୍ଣାଶୁଦ୍ଧି, ବନାନଗତ ଅଶୁଦ୍ଧି ତଥା ଛାନ୍ଦୋନିୟମ ପ୍ରତି ଅଧିକ ଦୃଷ୍ଟି ଦେଇନାହାନ୍ତି । ପ୍ରତିଲିପିର ବିଶେଷତ୍ୱ, ଏଥିର ଅଧିକାଂଶ ସ୍ଥଳରେ ପାଦ ପୂରଣାତ୍ମକ ଅବ୍ୟୟଗୁଡ଼ିକୁ ବାଦ୍ ଦିଆଯାଇଥିବାଯୋଗୁଁ ସ୍ଥାନେସ୍ଥାନେ ଚତୁର୍ଦ୍ଦଶାକ୍ଷର ପାଦ ତ୍ରୟୋଦଶ କିମ୍ବା ଦ୍ୱାଦଶ ଅକ୍ଷରବିଶିଷ୍ଟ ହୋଇଯାଇଛି । ସେହିପରି ଓଡ଼ିଆ ବିଭକ୍ତି ପ୍ରତ୍ୟୟର ବୈକଳ୍ପିକ ପ୍ରୟୋଗଦ୍ୱାରା ସ୍ଥାନେସ୍ଥାନେ ଉଭୟ ପାଦରେ ଅକ୍ଷର ବୈଷମ୍ୟ ଦେଖାଯାଉଛି, ଯଥା ଜଗତରୁ = ଜଗତୁଂ, କଳ୍ପୁଂ = କଳ୍ପରୁ ଇତ୍ୟାଦି । ତାଳପତ୍ର ପୋଥିରେ ସର୍ବତ୍ର ଚନ୍ଦ୍ରବିନ୍ଦୁ ପରିବର୍ତ୍ତେ ଅନୁସ୍ୱାରର ପ୍ରୟୋଗ ଓ ସ୍ଥାନବ୍ୟତ୍ୟୟ (ଯଥା - ଦେବତାଙ୍କ = ଦେବତାକଂ) ଦେଖିବାକୁ ମିଳେ, କିନ୍ତୁ କାଗଜ ପ୍ରତିଲିପିଟିରେ ଯଥାସ୍ଥାନରେ ଚନ୍ଦ୍ରବିନ୍ଦୁ ପ୍ରଯୁକ୍ତ । ସଂପାଦନା ପାଠ ଶୁଦ୍ଧିବେଳେ ଏ ପ୍ରକାର ଲିଖନଶୈଳୀଗତ ପ୍ରମାଦକୁ ପାଦଟୀକାରେ ସୂଚିତ କରାଯାଇ ନାହିଁ । ଏହି ଗ୍ରନ୍ଥରେ ତାଳପତ୍ର ପାଣ୍ଡୁଲିପିକୁ 'କ' ଏବଂ କାଗଜ ପାଣ୍ଡୁଲିପିଟିକୁ 'ଖ' ଭାବେ ଗ୍ରହଣ କରାଯାଇଛି ।

## ପାଞ୍ଚ

ପୂର୍ବରୁ କୁହାଯାଇଛି, ସଂସ୍କୃତ ବିଷ୍ଣୁପୁରାଣ ସଂହିତା ରୂପେ ପରିଚିତ । ଏଥିରେ କେବଳ ଦାର୍ଶନିକତତ୍ତ୍ୱ ନୁହେଁ, ବଂଶାବଳୀ ମଧ୍ୟ ସୂତ୍ରାତ୍ମକ ଭାବେ ଗ୍ରଥିତ । ଏଥିପାଇଁ ଟୀକାକାରମାନେ ପୁରାଣର ବିସ୍ତୃତ ବ୍ୟାଖ୍ୟାନିମିତ୍ତ ପ୍ରୟାସ କରିଛନ୍ତି ; ମାତ୍ର ଏଗୁଡ଼ିକର ସଂଖ୍ୟା ଅଙ୍ଗୁଳିମେୟ । ଆଲୋଚ୍ୟ ଅନୁବାଦକ ପଣ୍ଡିତ କବିବଲ୍ଲଭ ନାରାୟଣ ମହାପାତ୍ର ପୁରାଣର ଭାଷାନ୍ତର ବେଳେ ମୂଳଗ୍ରନ୍ଥ ଅପେକ୍ଷା ଅଧିକ ଭାବେ ଟୀକାର ଆଶ୍ରୟ ନେଇଛନ୍ତି । ସୂତ୍ରଗୁଡ଼ିକର ଗ୍ରନ୍ଥିମୋଚନ ତାଙ୍କ ପ୍ରଜ୍ଞା ଓ ଅଧ୍ୟବସାୟରେ ସ୍ପଷ୍ଟ ବାରିହୋଇପଡୁଛି । ସେ ଅନୁଭବ କରିଛନ୍ତି, ବିଷ୍ଣୁପୁରାଣର ଶ୍ଳୋକାନୁବାଦ ସାଧାରଣ ପାଠକଙ୍କପାଇଁ ସୁବୋଧ ହୋଇପାରିବ ନାହିଁ । ତେଣୁ ଓଡ଼ିଆ ପାଠକ ଓ ଶ୍ରୋତାମାନଙ୍କୁ ଦୃଷ୍ଟିରେ ରଖି ଟୀକା ଅନୁସରଣରେ ଅନୁବାଦକୁ ସେ ଯଥାସମ୍ଭବ ସରଳ ଓ ସୁବୋଧ କରିବାପାଇଁ ଯତ୍ନ କରିଛନ୍ତି । ତଥାପି ସ୍ଥାନେ ସ୍ଥାନେ ତାଙ୍କୁ ଝୁଣ୍ଟିବାକୁ ପଡ଼ିଛି । ପାଣ୍ଡିତ୍ୟ ସୁଲଭ ବିନମ୍ରତାରୁ ସେ ନିଜର ଏହି ଦୁର୍ବଳତା ସୂଚିତ କରିବାନିମିତ୍ତ କୁଣ୍ଠାବୋଧ କରିନାହାନ୍ତି ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସଂକ୍ଷେପ, ପ୍ରକ୍ଷେପ, ବିସ୍ତାର, ବିଚ୍ୟୁତି ଓ ପରିବର୍ତ୍ତନଦ୍ୱାରା ସଂସ୍କୃତ ପୁରାଣକୁ ଓଡ଼ିଆ ରୂପଦେବାର ଯେଉଁ ଅଭିନବ ପରମ୍ପରା ସାରଳା ଦାସ ଆରମ୍ଭ କରିଛନ୍ତି, ତାହା ପୀତାମ୍ବର ଦାସଙ୍କ ନୃସିଂହ ପୁରାଣଠାରେ ପରିଣତ ରୂପ ପରିଗ୍ରହ କରିଛି । ଏପରିକି, ରାଜା କୃଷ୍ଣସିଂହ ଏବଂ ବରିଷ୍ଠ ପୁରାଣକର୍ତ୍ତା କୃଷ୍ଣଚରଣ ପଟ୍ଟନାୟକ ମଧ୍ୟ ଏହି ପରମ୍ପରାର ପ୍ରଭାବରୁ ମୁକ୍ତ ହୋଇପାରିନାହାନ୍ତି । କିନ୍ତୁ କିନ୍ତୁ ପରବର୍ତ୍ତୀ ସମୟରେ ଫକୀରମୋହନ ସେନାପତିଙ୍କ ପରି ବଲ୍ଲଭନାରାୟଣ ଅନୁବାଦ କାଳରେ ମୂଳଗ୍ରନ୍ଥର ବିଷୟବସ୍ତୁ/ଶ୍ଳୋକ-ନିର୍ଭର ହୋଇଛନ୍ତି । ଯାହା ବା କରିଛନ୍ତି, ତାହା ଅର୍ଥ ବିସ୍ତାର ଦୃଷ୍ଟିରୁ ମାତ୍ର । ମଧ୍ୟଯୁଗୀୟ କାବ୍ୟ ପରମ୍ପରାର ରୂପ, ବସ୍ତୁ, ପ୍ରକୃତି ବର୍ଣ୍ଣନାରେ ବୈଚିତ୍ର୍ୟ, ବିଦ୍‌ବତ୍ତା

ଏବଂ ବିସ୍ତୃତି ପୁରାଣକାରଙ୍କୁ ବିମୋହିତ କରି ନାହିଁ । ପ୍ରତକ୍ଷ୍ୟ ଉକ୍ତିର ବକ୍ତବ୍ୟ ଉପସ୍ଥାପନ ସଂସ୍କୃତ ପୁରାଣର ଏକ ସୁପ୍ରଚଳିତ ପରମ୍ପରା । ଅନ୍ୟ କେତେକ ଓଡ଼ିଆ ପୁରାଣକର୍ତ୍ତାଙ୍କ ପରି ବଲ୍ଲଭ ନାରାୟଣ ଏହି ପରମ୍ପରାଠାରୁ ଦୂରେଇଯାଇ, ଉକ୍ତି-ପ୍ରତ୍ୟୁକ୍ତି ଓ ପ୍ରଶ୍ନୋତ୍ତରଗୁଡ଼ିକୁ ପରୋକ୍ଷ ଉକ୍ତିରେ ପ୍ରକାଶ କରିଛନ୍ତି । ଏହା ବିଷୟ ଅବବୋଧକୁ ବ୍ୟାହତ କରିନାହିଁ ; ବରଂ ହୃଦ୍ୟ କରିଛି ।

ମୂଳ ବିଷ୍ଣୁପୁରାଣରେ ଗ୍ରନ୍ଥ-ଗ୍ରନ୍ଥିରୂପେ ଯେଉଁ ଦାର୍ଶନିକ ତତ୍ତ୍ୱ ସମ୍ବଳିତ ଶ୍ଳୋକଗୁଡ଼ିକ ରହିଛି, ତା'ର ଶ୍ଳୋକାନୁବାଦ ସହଜବୋଧ ନୁହେ । ସେଥିପାଇଁ ବଲ୍ଲଭ ନାରାୟଣ ଟୀକା ସାହାଯ୍ୟରେ ତା'ର ଅର୍ଥ ସ୍ପଷ୍ଟପାଇଁ କିପରି ଚେଷ୍ଟା କରିଛନ୍ତି, ଗୋଟିଏ ନିଦର୍ଶନ ଲକ୍ଷ୍ୟ କରନ୍ତୁ :

**ମୂଳପାଠ :**

ପାରଂପରଂ ବିଷ୍ଣୁ ରପାରପାରଃ
ପରଃ ପରେଭ୍ୟଃ ପରମାର୍ଥରୂପୀ
ସବ୍ରହ୍ମପାରଃ ପରପାରଭୂତଃ
ପରଃ ପରାଣାମପି ପାରପାରଃ ।। ୧ । ୧୫ । ୧୫
ଅନୁବାଦ - ପାରପର ବିଷ୍ଣୁ ସେ ଅପାର ପାରପର
ପରମାନଙ୍କର ପର ଆତ୍ମାରୂପୀ ପର
ସେହି ବ୍ରହ୍ମ ପାରପର ପାରଭୂତ ପର
ପରମାନଙ୍କ ପୁଣି ଅଟେ ପାରପାର ।।

ଏହି ସ୍ତବର ଅର୍ଥ କରିବାପାଇଁ ଟୀକାକାରମାନେ ନିଜନିଜ ଦୃଷ୍ଟିରୁ ଚେଷ୍ଟା କରିଛନ୍ତି । ବଲ୍ଲଭ ନାରାୟଣ ମଧ୍ୟ ସେମାନଙ୍କ ପ୍ରଭାବରେ ଅଧିକ ଦଶଟି ପଦରେ ଶ୍ଳୋକର ବ୍ୟାଖ୍ୟା କରିଛନ୍ତି, ଯଥା :

ପାର ବୋଲି କରିଣ ଯେ କହିଅଛି ଯାହା
ସଂସାର ମାର୍ଗ ଅବଧି ସେଟି ଲକ୍ଷ୍ମୀନାହା ।।
ପର ବୋଲି କରି ଯା ଆବୃତ୍ତି ଶୂନ୍ୟ ସେହି
ଯହିଁକି ଗଲେ ପୁନରାବୃତ୍ତି ପୁଣି ନାହିଁ ।
ସବୁଠାରେ ବ୍ୟାପିବାରୁଂ ବିଷ୍ଣୁ ନାମ ତା'ର
ସାଂସାରିକ ପରିବାରୁଂ ସେ ଅପାର ପାର ।
ଜଳସ୍ଥଳ ଅନଳ ଯେ ଅନିଳ ଆକାଶ
ଏମାନଙ୍କୁ ପର ବୋଲିଟି ହେ ନୃପଶିଷ୍ୟ ।
ସେମାନରୁଂ ପ୍ରଧାନ ହେବାରୁଂ ସେହୁ ପର
ପରମାତ୍ମା ସ୍ୱରୂପ ସେ ସାକ୍ଷାତ ଈଶ୍ୱର ।
ବ୍ରହ୍ମପାର ବୋଲି କରି ଯାହା ଅଛି କହି
ବେଦ ଜାଣିମାରେ ସେ ଯେ ସମ୍ବନ୍ଧ ଅଟଇ ।
ବ୍ରହ୍ମାୟୁଷ ସମାପ୍ତିରେ ଯେ ଅବଧିଭୂତ
ପରପାର ତାହାକୁ ବୋଲିଟି ରାଜାସୁତ ।

ପରମାନଙ୍କର ପର ବୋଲିଟି ହୋ ଯାହା
ଇନ୍ଦ୍ରିୟରୁ ଭିନ୍ନ ସେ ଯେ ଜଗତର ନାହା ।
ନିରୂପାଧିରେ କରି ଯେ ପରମେଶ୍ୱର,
ପାରପାର ବୋଲି ତାକୁ କହି ହେ କୁମର ।
ବ୍ରହ୍ମାଦିମାନଙ୍କୁ ପୁଣି ପାଳିବାରୁଂ କରି
ପାରପାର ଏମନ୍ତ ବୋଲନ୍ତି ଦେବହରି । (୧/୧୫/୧୫୭-୧୬୬)

ଅନୁରୂପଭାବେ ବଂଶାନୁଚରିତର ସୂତ୍ରାତ୍ମକ ରୂପ ବଲ୍ଲଭ ନାରାୟଣଙ୍କ ଅନୁବାଦରେ କିପରି ସରଳୀକୃତ କରାଯାଇଛି, ତା'ର ଗୋଟିଏ ଉଦାହରଣ :

**ମୂଳପାଠ :**

ଭୃଗୋଃ ଖ୍ୟାତ୍ୟାଂ ସମୁତ୍‌ପନ୍ନା ଲକ୍ଷ୍ମୀର୍ବିଷ୍ଣୁ ପରିଗ୍ରହଃ
ତଥା ଧାତୃ ବିଧାତାରୌ ଖ୍ୟାତ୍ୟାଂ ଜାତୌ ସୁତୌ ଭୃଗୋଃ ।
ଆୟତି ନିୟତିଶ୍ଚୈବ ମେରୋଃ କନ୍ୟେ ମହାତ୍ମନଃ
ଧାତୃ ବିଧାତ୍ରୋସ୍ତେ ଭାର୍ଯ୍ୟେ ତ୍ରୟୋର୍ଜାତୌ ସୁତାବୁଭୌ ।
ପ୍ରାଣଶ୍ଚୈବ ମୃକଣ୍ଡୁଶ୍ଚ ମାର୍କଣ୍ଡେୟୋ ମୃକଣ୍ଡୁତଃ
ତତୋ ବେଦଶିରା ଜଜ୍ଞେ ପ୍ରାଣସ୍ୟାପି ସୁତଃ ଶୃଣୁ ।
ପ୍ରାଣସ୍ୟ କୃତିମାନ ପୁତ୍ରୋ ରାଜବାଂଶ୍ଚ ତତୋଽଭବତ୍
ତତୋ ବଂଶୋ ମହାଭାଗ ବିସ୍ତାରଂ ଭାର୍ଗବୋ ଗତଃ । (୧/୧୦/୨-୫)

**ଅନୁବାଦ :**

ଭୃଗୁଙ୍କର ଘରଣୀ ଯେ ଖ୍ୟାତି ନାମେ ବାମା ।
ତାହାଠାରୁ ଜନମ ହୋଇଲେ ଦେବୀ ରମା ।।
ବିଷ୍ଣୁଙ୍କର ସେ ପୁଣି ଯେ ହୋଇଲେ ବନିତା ।
ଆବର କୁମର ବେନି ଧାତା ଯେ ବିଧାତା ।।
ତାହାଙ୍କ ପତ୍ନୀଙ୍କ ନାମ ଶୁଣ ହୋ ସୁମତି
ମେରୁଙ୍କର ନନ୍ଦିନୀ ଯେ ଆୟତୀ ନିୟତୀ ।।
ଧାତା ବିଧାତା ସେ ଦୁଇ କନ୍ୟା ବିଭା ହେଲେ ।
ସେ ଦୁହିଙ୍କଠାରୁଂ ବେନିପୁତ୍ର ଯେ ଜନ୍ମିଲେ ।।
ପ୍ରାଣ ନାମେ ମୃକୁଣ୍ଡ ନାମେ ବେନି ଯତି
ମାର୍କଣ୍ଡେୟ ମୃକୁଣ୍ଡର ହୋଇଲେ ସନ୍ତତି ।।
ମାର୍କଣ୍ଡେୟ ଠାରୁ ବେଦଶିରା ମୁନି ବାତ ।
ଏଥୁ ଅନନ୍ତରେ ଯେ ଶୁଣ ହୋ ତପୋବନ୍ତ ।।
ପ୍ରାଣଋଷି କୁମାର ଯେ ହେଲେ ଦ୍ୟୁତିମାନ ।
ତାଙ୍କଠାରୁଂ ଜନମ ହୋଇଲେ ରାଜବାନ ।।
ତାହାଠାରୁଂ ଭୃଗୁବଂଶ ଅତ୍ୟନ୍ତ ବିସ୍ତାରେ ।
ଖ୍ୟାତ ହୋଇ ରହିଲେ ଯେ ଏ ସର୍ବ ସଂସାରେ ।। (୧/୧୦/୧୧-୧୨)

ବଲ୍ଲଭ ନରାୟଣ ମହାପାତ୍ରଙ୍କ ଅନୂସୃତ ଅନୁସୃଷ୍ଟି କୌଶଳହିଁ ପୁରାଣର ଲୋକପ୍ରିୟତାର କାରଣ । କାଳ ଏହାକୁ କବଳିତ କରିପାରିବନାହିଁ । ପରବର୍ତ୍ତୀ ଅନ୍ୟ ଚାରୋଟି ଅଂଶରେ ତାଙ୍କ ପାଣ୍ଡିତ୍ୟ ଓ ପ୍ରତିଭାର ଅଧିକ ପରିଚୟ ମିଳିପାରିବ ।



# ଶ୍ରୀବିଷ୍ଣୁ ପୁରାଣ

## ଶ୍ରୀ ଶ୍ରୀଗଣେଶାୟ ନମଃ

## ପ୍ରଥମ ଅଧ୍ୟାୟ

ଜୟ ଜୟ ଶଙ୍କର ପଙ୍କଜସୁତ ବନ୍ଦ୍ୟ ।
ଜୟ ଜୟ ଶଙ୍କର ବ୍ରହ୍ମାଣ୍ଡ ଆଦିକନ୍ଦ ॥ ୧ ॥
ଜୟ ଜୟ ଶଙ୍କର ସକଳ ମୂଳାଧାର ।
ଜୟ ଜୟ ଶଙ୍କର ପରମ ନିରାକାର ॥ ୨ ॥
ଜୟ ଜୟ ଶଙ୍କର ଅଖିଳ ଚିନ୍ତାମଣି ।
ଜୟ ଜୟ ଶଙ୍କର ପିନାକଚାପପାଣି ॥ ୩ ॥
ଜୟ ଜୟ ଶଙ୍କର ପରମହଂସ ରୂପୀ ।
ଜୟ ଜୟ ଶଙ୍କର ଅନାଦି ଶୂନ୍ୟ ବ୍ୟାପି ॥ ୪ ॥
ଜୟ ଜୟ ଶଙ୍କର ଅନନ୍ତମୂର୍ତ୍ତି ଲିଙ୍ଗ ।
ଜୟ ଜୟ ଶଙ୍କର ଆଧାର ଶକ୍ତିସଙ୍ଗ ॥ ୫ ॥
ଜୟ ଜୟ ଶଙ୍କର କାରୁଣ୍ୟଜଳଶାୟୀ ।
ଜୟ ଜୟ ଶଙ୍କର ନିର୍ଗୁଣ ଗୁଣମୟୀ ॥ ୬ ॥
ଜୟ ଜୟ ଶଙ୍କର ଅବ୍ୟୟ ସନାତନ ।
ଜୟ ଜୟ ଶଙ୍କର ନିର୍ଲେପ ନିରଞ୍ଜନ ॥ ୭ ॥
ଜୟ ଜୟ ଶଙ୍କର ଧରଣୀପଦ୍ମପୀଠ ।
ଜୟ ଜୟ ଶଙ୍କର ଜାହ୍ନବୀଜଟାଜୂଟ ॥ ୮ ॥
ଜୟ ଜୟ ଶଙ୍କର ଚନ୍ଦ୍ରାର୍କ ବହ୍ନିନେତ୍ର ।
ଜୟ ଜୟ ଶଙ୍କର ଅନନ୍ତଯଜ୍ଞସୂତ୍ର ॥ ୯ ॥
ଜୟ ଜୟ ଶଙ୍କର ଜଳଦ ଦିବ୍ୟଘଟ ।
ଜୟ ଜୟ ଶଙ୍କର ହରିତ ଚାରୁପଟ ॥ ୧୦ ॥
ଜୟ ଜୟ ଶଙ୍କର ସପ୍ତସିନ୍ଧୁଗର୍ଭ ।
ଜୟ ଜୟ ଶଙ୍କର ମହିମା ଅସମ୍ଭବ ॥ ୧୧ ॥
ଜୟ ଜୟ ଶଙ୍କର ନକ୍ଷତ୍ର ଗ୍ରହ-ପୁଷ୍ପ ।
ଜୟ ଜୟ ଶଙ୍କର ଶାସ୍ତ୍ରାଦି ଅଙ୍ଗରୂପ ॥ ୧୨ ॥
ଜୟ ଜୟ ଶଙ୍କର ନିଗମାଗମ ମୁଖ ।
ଜୟ ଜୟ ଶଙ୍କର ପରମୈଶ୍ୱର୍ଯ୍ୟ ସୁଖ ॥ ୧୩ ॥
ଜୟ ଜୟ ଶଙ୍କର ଶ୍ରୀପଞ୍ଚଭୂତାତ୍ମକ ।
ଜୟ ଜୟ ଶଙ୍କର ସ୍ୱଇଚ୍ଛା ପ୍ରାକୃତିକ ॥ ୧୪ ॥
ଜୟ ଜୟ ଶଙ୍କର ଇନ୍ଦ୍ରିୟଗ୍ରାମପାଳ ।
ଜୟ ଜୟ ଶଙ୍କର ଶରୀର ପଞ୍ଚାନିଳ ॥ ୧୫ ॥

ଜୟ ଜୟ ଶଙ୍କର ତନ୍ମାତ୍ର ଆଦିକର୍ତ୍ତା ।
ଜୟ ଜୟ ଶଙ୍କର ସର୍ଜନା ସ୍ଥିତି ହର୍ତ୍ତା ॥ ୧୬ ॥
ଜୟ ଜୟ ଶଙ୍କର ତ୍ରିଗୁଣ ରୂପଧାରୀ ।
ମୋ ନିମିତ୍ତେ କରୁଣା କରିବା ତ୍ରିପୁରାରୀ ॥ ୧୭ ॥
ଶ୍ରୀ ବିଷ୍ଣୁ ପୁରାଣ ଏ ଯେ ପରାଶର ଭାଷା ।
ଏହା ଗୀତ କରିବି ମୋ ଏତେ ପ୍ରତିଆଶା ॥ ୧୮ ॥
ଚଳୁକରେ କି ରୂପେ ରହିବ ସିନ୍ଧୁ ସାତ ।
ଲୁତାସୁତା ଜାଲେ ଧରି ପାରି କି ମରୁତ ॥ ୧୯ ॥
ସୂଚି ଅଗ୍ରେ ଟାଳିଲେ ଟଳିବ କେହ୍ନୁ ମେରୁ ।
ପିପିଲ୍ଲିକା ସହିବକି ହିମାଚଳ ଗରୁ ॥ ୨୦ ॥
ନିଶ୍ରେଣୀରେ ଉଠି କେ ଦେଖିବ ଇନ୍ଦ୍ର ପଦ ।
ଜଡ଼ କେହି ପଢ଼ିବ ଉଚ୍ଚାରି ଚାରିବେଦ ॥ ୨୧ ॥
ଏଣୁକରି ହୃଦୟରେ ଭାଳି ମୁଁ ନିର୍ବେଦ ।
କି ରୂପରେ ସ୍ଫୁରିବ ନିର୍ମଳ ଦିବ୍ୟପଦ ॥ ୨୨ ॥
କେମନ୍ତ ପ୍ରକାରେ ଏ ପୁରାଣ ଅର୍ଥ ହେବ ।
ଭାଷାରେ ସଂସାର ସର୍ବ ହୃଦୟ ରଞ୍ଜିବ ॥ ୨୩ ॥
କାହାକୁ ସେବିଲେ ମନୋରଥ ହେବ ସିଦ୍ଧି ।
ୟେମନ୍ତ ବିଚାରୁ ପ୍ରସରିଲା ଏକ ବୁଦ୍ଧି ॥ ୨୪ ॥
ସର୍ବବେଦମୟ ବିଦ୍ୟା ଗୁରୁ ଦେବ ହର ।
ଯାହା ଗର୍ଭେ ବିଦ୍ୟା ଅଛି ସମୁଦ୍ର ଆକାର ॥ ୨୫ ॥
ସମୁଦ୍ରୁ କୁମ୍ଭେକ ଜଳ ନେବା ପ୍ରମାଣରେ ॥
ଯା ବିଦ୍ୟାରେ ବୃହସ୍ପତି ପଣ୍ଡିତ ସ୍ୱର୍ଗରେ ॥ ୨୬ ॥
ସେ କୁମ୍ଭ ଜଳ ଯଉଂ ଚତୁର୍ଥଟି ଭାଗ ।
ତାହା ଚତୁର୍ଥ ଭାଗର ଅର୍ଦ୍ଧେକ ଯେ ଯୋଗ ॥ ୨୭ ॥
ତାହାର ଶୟେ ଅଂଶରୁ ଏକ ଯଉଂ ଅଂଶ ।
ତେତିକି ପ୍ରମାଣେ ବିଦ୍ୟା ଇନ୍ଦ୍ରର ପ୍ରକାଶ ॥ ୨୮ ॥
କୁଶ ଅଗ୍ରେ ଜଳବିନ୍ଦୁ ରହଇ ଯେତିକି ।
ପାଣିନି ଯେ ବ୍ୟାକରଣ ଜାଣନ୍ତି ତେତିକି ॥ ୨୯ ॥
ସେ ପୁଣି ଏକ ସମୟେ କଇଳାସ ଗଲେ ।
ଶିବଙ୍କୁ ଦର୍ଶନ କରି ତାଣ୍ଡବ ଦେଖିଲେ ॥ ୩୦ ॥
ସେ ତାଣ୍ଡବ ସମୟେ ଡମ୍ବରୁ ନିସ୍ୱନରୁ ।
ଚଉଦଟି ସୂତ୍ର ଗଳି ପଡ଼ିଲାକ ଦୂରୁ ॥ ୩୧ ॥
ତାହା ଘେନି ମୁନି ବିଦ୍ୟା ରଞ୍ଜିଲେ ସଂସାରେ ।
ସେ ପୁଣି ରହିଲା ସର୍ବଜନ ଉପକାରେ ॥ ୩୨ ॥

ଏମନ୍ତ ଯେବଣ ପ୍ରଭୁ ଅନାଦି ଦେବତା ।
ଚିନ୍ତିବା ମାତ୍ରେ ଯେ ବିଦ୍ୟା ବୁଦ୍ଧି ଜ୍ଞାନଦାତା ।। ୩୩ ।।
ତାଙ୍କ ପାଦକମଳ କରିବି ଏକା ଚିନ୍ତା ।
କାମ ପୂର୍ଣ୍ଣ କରିବେ ସେ ତେବେ ବିଘ୍ନ ହନ୍ତା ।। ୩୪ ।।
ଏହା ବୋଲି ଶ୍ରୀଚରଣେ ଦେଇ ଭାରାଭର ।
ହେ ଦୀନବାନ୍ଧବ କୃପା କର ବା ନକର ।। ୩୫ ।।
ମୋହର ଆୟତ୍ତ ନାହିଁ ବୋଲୁ ଅଛି ଗୀତ ।
ଶ୍ରୀପଦ୍ମ ପାଦରୁ କେବେ ନଟଳୁ ମୋ ଚିତ୍ତ ।। ୩୬ ।।
ନମସ୍ତେ ପୁଣ୍ଡରୀକାକ୍ଷ ନମସ୍ତେ ଗୋବିନ୍ଦ ।
ନମସ୍ତେ ବିଶ୍ୱଭାବନ ଶ୍ରୀ ପରମାନନ୍ଦ ।। ୩୭ ।।
ନମସ୍ତେ ହୃଷୀକେଶ ହେ ମହାପୁରୁଷ ।
ସଚରାଚର ପୂର୍ବ ଜଗତ ନିବାସ ।। ୩୮ ।।
ଆହେ ଶୁକ୍ଳାମ୍ବରଧର ବିଷ୍ଣୁ ଶୁକ୍ଳ-ତନୁ ।
ସର୍ବ ଦେବ ନକ୍ଷତ୍ରମଣ୍ଡଳ ସୁଧାଭାନୁ ।। ୩୯ ।।
ଶଙ୍ଖଚକ୍ର ଗଦାପଦ୍ମେ ଶୋଭା ଚତୁର୍ଭୁଜ ।
ଚତୁର୍ଦ୍ଦଶଭୁବନ ବ୍ୟାପକ ବ୍ରହ୍ମତେଜ ।। ୪୦ ।।
ଅନାମୟ ଅଚ୍ୟୁତ ଅନନ୍ତ ଦୀନବନ୍ଧୁ ।
ତରୁଣ କରୁଣାରସାମୃତପୂର୍ଣ୍ଣ ସିନ୍ଧୁ ।। ୪୧ ।।
ଲକ୍ଷ୍ମୀ ବକ୍ଷସ୍ଥଳ ବିମଣ୍ଡନ ଚାରୁହାରା ।
କୋଟିକନ୍ଦର୍ପଲାବଣ୍ୟରୂପ ମନୋହରା ।। ୪୨ ।।
ପ୍ରସନ୍ନବଦନ ସର୍ବ ବିଘ୍ନ ବିଘ୍ନ କର୍ତ୍ତା ।
ସର୍ବ ବିଶ୍ୱ ବିଧାତା ବିଧାତା ଦୁଃଖହର୍ତ୍ତା ।। ୪୩ ।।
ସିଦ୍ଧାକ୍ଷର ବ୍ରହ୍ମମୟ ପରମ ଈଶ୍ୱର ।
ପୁରାଣପୁରୁଷ ପୁରୁଷୋତ୍ତମ ଅକ୍ଷର ।। ୪୪ ।।
ନିର୍ଗୁଣ ସଗୁଣ ସୃଷ୍ଟି ସ୍ଥିତି ନାଶେ ଏକ ।
ପ୍ରଧାନ ବୁଦ୍ଧିରେ ବିଶ୍ୱପ୍ରପଞ୍ଚ ଜନକ ।। ୪୫ ।।
ବିଶ୍ୱମ୍ଭର ବିଶ୍ୱେଶ୍ୱର ବିଶ୍ୱ ବାସ ହରି ।
ମଙ୍ଗଳାର୍ଥେ ପ୍ରଥମୁ ଯାହାକୁ ସ୍ତୁତି କରି ।। ୪୬ ।।
ସେହି ପ୍ରଭୁ ଆପଣ ହେ ମହାବିଷ୍ଣୁରୂପ ।
ତୁମ୍ଭଙ୍କୁ ମୋହର ନମସ୍କାର ଅସଂକ୍ଷେପ ।। ୪୭ ।।
ପ୍ରସନ୍ନ ହୋଇ ମସ୍ତକେ ଦେଇ ପଦ୍ମ ପାଦ ।
ନିମ୍ନ ହୁଅ ମତିଭୁକ୍ତି ଭୁକ୍ତିମୁକ୍ତି ପ୍ରଦ ।। ୪୮ ।।
ଆପଣଙ୍କ ଚରିତ କରିତ ମୋର ଇଚ୍ଛା ।
ଏହି ବିଷ୍ଣୁ ପୁରାଣେ ପୁରାଅ ମନବାଞ୍ଛା ।। ୪୯ ।।

ନିଃସନ୍ଦେହ ହୋଇଣ ଦିଶିବ ସର୍ବଅର୍ଥ ।
ଯାହା ବୋଲିବି ତାହା ହେବ ନିର୍ମଳ କବିତ୍ୱ ।। ୫୦ ।।
ତୁମ୍ଭ ମହିମାକୁ ଏ ନୁହଇ କିଛି ବଡ଼ ।
ଯାହା ପ୍ରସାଦେ ଧ୍ରୁବ ହେଲା ତହୁଁ ବଡ଼ ।। ୫୧ ।।
ଦେଖ ମୁନି କୁମାର କୁମ୍ଭରୁ ଜନ୍ମ ହୋଇ ।
ଚଳୁକରେ ସପତସମୁଦ୍ର ଦେଲା ପିଇ ।। ୫୨ ।।
ଯାହା ସେବା ବଳରୁ ଅନନ୍ତ ନାମେ ଅହି ।
ତିଳ ଚୋପା ପ୍ରମାଣେ ବ୍ରହ୍ମାଣ୍ଡ ଅଛି ବହି ।। ୫୩ ।।
ସେ ପ୍ରଭୁଙ୍କୁ ଶରଣ କରଇଂ ଯେବେ ହୃଦେ ।
କିଛି ଚିନ୍ତା ନାହିଁ ଯେତେ କପଟ ଥିଲେ ପଦେ ।। ୫୪ ।।
ଜଗନ୍ମାତା ଶାରଦା ଯା ପଦ୍ମପାଦ ଦାସୀ ।
ସେ କହନ୍ତି ସିନା ପ୍ରଭୁ ଆଜ୍ଞା ଘେନି ଆସି ।। ୫୫ ।।
ଏମନ୍ତ ବିଚାରି ତୁମ୍ଭ ପାଦେ ଦେଇ ମତି ।
ଅନୁଗ୍ରହ କର ସରସ୍ୱତୀ ଦେବୀ ପତି ।। ୫୬ ।।
ବନ୍ଦଇ କମଳବନ୍ଧୁ ଦିନନାଥ ରବି ।
ଉଦୟ ସମୟେ ଯା କୁଙ୍କୁମବର୍ଣ୍ଣ ଛବି ।। ୫୭ ।।
କରେ କନକକମଳ ରତ୍ନ ଆଭରଣ ।
ରକ୍ତବାସ ରକ୍ତଗନ୍ଧ ଅଙ୍ଗେ ଆଭରଣ ।। ୫୮ ।।
ମନ୍ଦାର କୁସୁମ ମାଳ ହୃଦରେ ବିରାଜେ ।
ନିଜ ଗଣ ସଙ୍ଗେ ଏକ ଚକ୍ର ରଥେ ବିଯେ ।। ୫୯ ।।
ସପତ ଅଶ୍ୱଚରଣେ ଯାହାର ଭ୍ରମଣ ।
ଷାଠିଏ ଦଣ୍ଡେ ଅବନି କର ପ୍ରଦକ୍ଷିଣ ।। ୬୦ ।।
ବାର ତିଥି ନକ୍ଷତ୍ର ଯେ ଚନ୍ଦ୍ର ଯୋଗ ଗଣ ।
କରଣ ନିଜ ଅଂଶ ଯେ ଏ ସପ୍ତ ପ୍ରମାଣ ।। ୬୧ ।।
ଯାହାର ଯୋଗୁଁ ଏହାଙ୍କ ଗତାଗତ ଜାଣି ।
ଲିତା ଦଣ୍ଡ ଘଡ଼ି ଯେ ପ୍ରହର ପରିମାଣି ।। ୬୨ ।।
ଦିନ ପକ୍ଷ ମାସ ଋତୁ ଅୟନ ବତ୍ସର ।
ଯାହାଗତି ମାତ୍ରକେ ଏହାଙ୍କ ବ୍ୟବହାର ।। ୬୩ ।।
ଶୁଭାଶୁଭ ଘେନିଣ ଯେ ହୁଅଇ ସଂସାରେ ।
ଏଣୁକରି ଜନ୍ତୁ ଫଳାଫଳ ଭୋଗ କରେ ।। ୬୪ ।।
ଏହେତୁରୁ ତୁମ୍ଭେ ଏକା ବ୍ରହ୍ମାଣ୍ଡେ ବିଧାତା ।
ସର୍ବପ୍ରାଣୀମାନଙ୍କର ଦୁଃଖ ସୁଖ ଦାତା ।। ୬୫ ।।
ଅପାପୀପୁରୁଷ ସୁପରମ ଜ୍ୟୋତିର୍ମୟ ।
ଯାହା ଯୋଗରୁ ସର୍ଜନା ପାଳନା ବିଳୟ ।। ୬୬ ।।

ନିରାକାର ପ୍ରଭୁ ପରମ ଜ୍ୟୋତି ତୁହି ।
ଧର୍ମ ବୋଲି କରିଣ ଯାହାକୁ ଅଛି କହି ॥ ୬୭ ॥
ସେହି ତୁମ୍ଭେ ନିଗମ ମତରେ ଏହା ଭଣି ।
ମତେ କୃପା କର ହେ ଅନାଦି ଦିନମଣି ॥ ୬୮ ॥
ତୁମ୍ଭେ କୃପାକଲେ ମୋ ପାତକ ତମ ଯାଉ ।
ଦିବ୍ୟ ଜ୍ଞାନ ହୃଦୟ କମଳେ ଦୃଶ ହେଉ ॥ ୬୯ ॥
ତେଣେ କରି ଉତ୍ତମ କଥାରେ ହୋଉ ମତି ।
ଭଗବତ ଚରିତେ ମାନସ ରହୁ ନିତି ॥ ୭୦ ॥
ଏଣୁକରି ଶ୍ରୀବିଷ୍ଣୁ ପୁରାଣ ଗ୍ରନ୍ଥସାର ।
ନିର୍ବିଘ୍ନରେ କହିବି ପ୍ରଭୁ ହେ କୃପା କର ॥ ୭୧ ॥
ନମସ୍ତେ ଅମ୍ବିକାମାଗୋ ନମସ୍ତେ ଅଭୟା ।
କାଳାନଳ ଭିତରୁ ସମ୍ଭୂତ ଯାର କାୟା ॥ ୭୨ ॥
ଶରୀର ବିକାଶିଲା ଯେ ସର୍ବଦେବ ତେଜ ।
ମହାମାୟା ରୂପରେ ଯେ ସହସ୍ରେକ ଭୁଜ ॥ ୭୩ ॥
ଅସୁର ଦଳନେ ଦେବୀ ପ୍ରଚଣ୍ଡ ମୂରତି ।
କେବଣ କରେ ଖପର କଉ କରେ କାତି ॥ ୭୪ ॥
କଉ କରେ କୋଦଣ୍ଡ ଯେ କଉ କରେ ଶର ।
କେବଣ କରେ କୁଠାର କାହିଁ ମୁଦ୍‌ଗର ॥ ୭୫ ॥
ତ୍ରିଶୂଳ କେବଣ କରେ କଉଂକରେ ପବି ।
କଉ କରେ ଶକତି କୋଟିଏ ସୂର୍ଯ୍ୟଛବି ॥ ୭୬ ॥
ଶଙ୍ଖ ଚକ୍ର ଗଦା ପଦ୍ମ ଖଟ୍ୱାଙ୍ଗଭୂଷଣ୍ଡି ।
ଏମନ୍ତେ ଅନେକ ଶସ୍ତ୍ର ଘେନି ମହାଚଣ୍ଡୀ ॥ ୭୭ ॥
ସିଂହବାହିନୀ ରୂପରେ ବ୍ରହ୍ମାଣ୍ଡେ ପ୍ରଚରି ।
ଅସୁର ବଳ ତୃଣକୁ କାଳାନଳ ପରି ॥ ୭୮ ॥
ମହିଁଷମର୍ଦ୍ଦିନୀ ରୂପେ ରଣରଙ୍ଗେ ବିଜେ ।
ଅନେକ ଗଣ ଜନ୍ମାଇ ଶ୍ରୀଅଙ୍ଗର ତେଜେ ॥ ୭୯ ॥
ଶ୍ରୀଚଣ୍ଡୀ ଚାମଣ୍ଡୀ ଭଇରବୀ ଉଗ୍ରତାରା ।
ଛାୟାମାୟା ଡ଼ାକିନୀ କୁଠାରୀ ଭୀମା କାୟା ॥ ୮୦ ॥
ବୈଷ୍ଣବୀ ବାରାହୀ ମାହେଶ୍ୱରୀ ଇନ୍ଦ୍ରାୟଣୀ ।
ନାରସିଂହୀ ଭଦ୍ରକାଳୀ କାଳିକା ତାରିଣୀ ॥ ୮୧ ॥
ଇତ୍ୟାଦି ରୂପ ଧରିଣ ମହାରଣେ ପଶି ।
ସୈନ୍ୟବଳ ସହିତେ ମହାସୁର ନାଶି ॥ ୮୨ ॥
ଚଣ୍ଡ ମୁଣ୍ଡ ଶୁମ୍ଭ ଯେ ନିଶୁମ୍ଭ ରକ୍ତବୀର୍ଯ୍ୟ ।
ଧୂମ୍ରଲୋଚନକୁ ଆଦି ଯେତେକ ଦନୁଜ ॥ ୮୩ ॥

ଏମାନଙ୍କୁ ସଂହାରି ଉଶ୍ୱାସ କରି ମହୀ ।
ନାଗନରସୁରଙ୍କୁ ଅଭୟ ବର ଦେଇ ॥ ୮୪ ॥
ଭକ୍ତମନ ତୋଷିଲୁ ଗୋ ଦେବୀ ମହାମାୟା ।
ମୋହଠାରେ ହୁଅ ଏବେ କରୁଣା ହୃଦୟା ॥ ୮୫ ॥
ତୋହ ପାଦେ ଆଶ୍ରେ କରି ରଞ୍ଜିବି କବିତ୍ୱ ।
ନିର୍ବିଘ୍ନ ହୋଇଣ ମାଗୋ ହୋଉ ସମାପତ ॥ ୮୬ ॥
ଜୟ ଜୟ ବିଘ୍ନରାଜ ଗଉରୀ ନନ୍ଦନ ।
କପୋଳରେ ଶୋଭାପାଏ ସୁଗନ୍ଧ ଚନ୍ଦନ ॥ ୮୭ ॥
ରୁଚିର ସିନ୍ଦୂର ବିନ୍ଦୁ ମଧ ଦେଶେ ଶୋହେ ।
ଦିବ୍ୟ ଗଜମସ୍ତକ ସକଳ ମନମୋହେ ॥ ୮୮ ॥
ବିପୁଳ ସୁଦୀର୍ଘତର ଚାରୁ ଶୁଣ୍ଡା ଦଣ୍ଡ ।
ଦକ୍ଷ କରକମଳେ ଅମୃତ ଲଡୁଖଣ୍ଡ ॥ ୮୯ ॥
ବାମକର ପଦ୍ମେ ବଜ୍ରାଙ୍କୁଶ ଶୋଭାବନ ।
ଅନ୍ୟ ବେନି ହସ୍ତରେ ଅଭୟ ବରଦାନ ॥ ୯୦ ॥
ଲଲାଟ ପଟରେ ନବରତନ କିରୀଟ ।
ନାଗହାର କଙ୍କଣ ପିଙ୍ଗଳ ଜଟାଜୁଟ ॥ ୯୧ ॥
ଏକଦନ୍ତ ତ୍ରିନୟନ ପୃଥୁଳ ଉଦର ।
ମହାକାୟ ମହାକାଳ ଅଗ୍ନିଜସୋଦର ॥ ୯୨ ॥
ଆଦିମାହେଶ୍ୱରୀ ମାତା ଈଶ୍ୱର ଯା' ପିତା ।
ଯେବଣ ପ୍ରଭୁ ବିଶ୍ୱର ଏକଇ କରତା ॥ ୯୩ ॥
ଯାହାର ମହିମା ଲେଶେ ହୃଦରେ ନ ଜାଣି ।
ଅପରାଧ ହେବାମାତ୍ରେ କାଳଦଣ୍ଡପାଣି ॥ ୯୪ ॥
ମୂଷିକ ରୂପକୁ ଧରି ହୁଅନ୍ତେ ବାହନ ।
ନରକରୁ ମୁକ୍ତି ହେଲେ ସର୍ବ ପାପୀଜନ ॥ ୯୫ ॥
ଏମନ୍ତ ପ୍ରଭାବ ତୁମ୍ଭ ସଂସାରେ ବିଦିତ ।
ମତେ କୃପା କରିବେ ପାର୍ବତୀ ଦେବୀ ସୁତ ॥ ୯୬ ॥
ବିଦ୍ୟାରମ୍ଭ ସମୟେ ତୁମ୍ଭଙ୍କୁ ଆଗ ସେବି ।
କେତେକେତେ ଲୋକମାନେ ହୋଇଛନ୍ତି କବି ॥ ୯୭ ॥
ତେଣୁକରି ତୁମ୍ଭ ପଦ୍ମଚରଣେ ମୋ ସେବା ।
ବିଷ୍ଣୁ ପୁରାଣ ରଚନେ ସାଧୁ ବୁଦ୍ଧିଦେବା ॥ ୯୮ ॥
ନିର୍ବିଘ୍ନ ହୋଇଣ ଗ୍ରନ୍ଥ ହୋଉ ସମାପତ ।
ସର୍ବବର୍ଣ୍ଣଙ୍କର କର୍ଣ୍ଣପ୍ରିୟ ହୋଉ ଗୀତ ॥ ୯୯ ॥
ମୋ ମାନସ ତୁମ୍ଭର ଚରିତ ରସେ ରସୁ ।
ଏଥିକି ପ୍ରସନ୍ନ ହୁଅ ପୂର୍ବ ଭାଗ୍ୟ ଦିଶୁ ॥ ୧୦୦ ॥

ନମସ୍ତେ କମଳାସନ ନମୋ ବେଦବର ।
ନମସ୍ତେ ଚତୁର ମୁଖ ନମୋ ଅଷ୍ଟକର ॥ ୧୦୧ ॥
ନମସ୍ତେ ସୃଷ୍ଟି କରତା ପରଂବ୍ରହ୍ମସୁତ ।
କରୁଣା କର ରଚ୍ଛିବି ବିଷ୍ଣୁଙ୍କ ଚରିତ ॥ ୧୦୨ ॥
ଜୟ ଜୟ ବଶିଷ୍ଠ ହେ ବିରଞ୍ଚି କୁମର ।
ତୁମ୍ଭଙ୍କୁ ମୋ ନମସ୍କାର ଅନୁଗ୍ରହ କର ॥ ୧୦୩ ॥
ନମସ୍ତେ ନମସ୍ତେ ଶକ୍ତି ବ୍ରହ୍ମାଙ୍କର ନାତି ।
ମତେ ପ୍ରସନ୍ନ ହୋଇବା ଆହେ ବ୍ରହ୍ମଯତି ॥ ୧୦୪ ॥
ତୁମ୍ଭ ପ୍ରସାଦେ କହିବି ଶ୍ରୀବିଷ୍ଣୁ ଚରିତ ।
ଆପଣଙ୍କ ସୁତ ମୁଖପଦ୍ମ ଯେ ସମ୍ଭୂତ ॥ ୧୦୫ ॥
ସେ ମହାମଧୁରରସ କର୍ଣ୍ଣେ କରି ପାନ ।
ପ୍ରମୋଦକୁ ଲଭନ୍ତୁ ସଂସାର ସର୍ବଜନ ॥ ୧୦୬ ॥
ଶ୍ରୀଗୁରୁ ଚରଣ ତଳେ ହୋଇ ପ୍ରଣିପାତ ।
ବେଦସମ୍ମିତ ପୁରାଣ କରିବଇ ଖ୍ୟାତ ॥ ୧୦୭ ॥
ଏଥୁ ଅନନ୍ତରେ ଯେ ମୈତ୍ରେୟ ତପଚାରୀ ।
ଏକ ଦିନେ ବିଷ୍ଣୁ ପୂଜା ନିତ୍ୟକର୍ମ ସାରି ॥ ୧୦୮ ॥
ଗୁରୁ ଦରଶନ କରିବା ନିମିତ୍ତରେ ।
ପ୍ରବେଶ ହୋଇଲେ ପରାଶର ଆଶ୍ରମରେ ॥ ୧୦୯ ॥
ଦେଖିଲେକ ମୃଗଛାଲ ପରେ ତପୋଚାରି ।
ବସିଛନ୍ତି ସକଳ ଆହ୍ନିକ କର୍ମ ସାରି ॥ ୧୧୦ ॥
ମୈତ୍ରେୟ ଆଗମ ଦେଖି ହୋଇ ହସ ହସ ।
ବୋଇଲେକ ତପସ୍ୱୀ ହେ ସମୀପକୁ ଆସ ॥ ୧୧୧ ॥
ଗୁରୁ ଆଜ୍ଞାପାଇଣ ନିକଟେ ମୁନି ଯାଇ ।
ଅଷ୍ଟୋତ୍ତରଶତ ଦଣ୍ଡ ପ୍ରଣିପତ୍ୟ ହୋଇ ॥ ୧୧୨ ॥
ଦେଖିଣ କଲ୍ୟାଣ କଲେ ପରାଶର ଋଷି ।
ଅନୁର୍ଘ୍ୟ ଘେନିଣ ଯେ କିଂକର ମତେ ବସି ॥ ୧୧୩ ॥
କୁଶଳ ବାରତାମାନ ସମ୍ଭାଷଣ ଅନ୍ତେ ।
ପଚାରିଲେ ବାବୁହେ ଅଇଲ କି ନିମନ୍ତେ ॥ ୧୧୪ ॥
ଗୁରୁ ଆଜ୍ଞା ପାଇଣ ଯେ କରପତ୍ର ଯୋଡ଼ି ।
ସାଷ୍ଟାଙ୍ଗ ହୋଇଣ ପୁଣି ପାଦ ତଳେ ପଡ଼ି ॥ ୧୧୫ ॥
ଉଠି ବିନୟବଚନେ ବୋଇଲେ ହେ ଗୁରୁ ।
କଥାଏ କହିବି ମୋର ମନୋରଥ ପୁରୁ ॥ ୧୧୬ ॥
ଇତିହାସ ପୁରାଣ ସକଳ ବେଦବେତ୍ତା ।
ବେଦବେଦାଙ୍ଗ ପାରଗ ଭକ୍ତିମୁକ୍ତିଦାତା ॥ ୧୧୭ ॥

ଆପଣ ସକଳ ଧର୍ମଶାସ୍ତ୍ର ତତ୍ତ୍ୱବେଦୀ ।
ବଶିଷ୍ଠ ପୁତ୍ରଙ୍କ ପୁତ୍ର ବିଚିତ୍ର ସମାଧି ।। ୧୧୮ ।।
ମୁନିବରମାନଙ୍କ ଉତ୍ତମ ମହାଋଷି ।
ପରାଶର ବୋଲି ଯାକୁ ସକଳେ ପ୍ରଶଂସି ।। ୧୧୯ ।।
ଏମନ୍ତ ପରମ ଜ୍ଞାନୀ ବାଞ୍ଛା କଳ୍ପତରୁ ।
ଭାଗ୍ୟବଶେ ହୋଇଛ ମୋହର ତୁମ୍ଭେ ଗୁରୁ ।। ୧୨୦ ।।
ସମସ୍ତ ବେଦବେଦାଙ୍ଗ ଯେତେ ଧର୍ମଶାସ୍ତ୍ର ।
ତୁମ୍ଭଠାରୁ ଶୁଣି ମୁଁ ଯେ ହୋଇଲି ପବିତ୍ର ।। ୧୨୧ ।।
ମୋହ ନିମିତ୍ତରେ ଯେ ଅତ୍ୟନ୍ତ ଶ୍ରମପାଇ ।
ପରିପାଟୀ କରି ସର୍ବ ଦେଲେ ହେ ପଢ଼ାଇ ।। ୧୨୨ ।।
ହେ ମୁନି ଶ୍ରେଷ୍ଠ ମୁ ପୁଣି ଅତି ଶ୍ରମେ ପଢ଼ି ।
ତୁମ୍ଭ ପ୍ରସାଦୁ ଜାଣିଲି କିଛିତେ ନ ହୁଡ଼ି ।। ୧୨୩ ।।
କଥାଏ ମାତ୍ରକ ପଚାରିବି ତୁମ୍ଭ ଆଗେ ।
ବିସ୍ତାର କରି କହିବ ଅତ୍ୟନ୍ତ ସରାଗେ ।। ୧୨୪ ।।
ପଣ୍ଡିତମାନେ ସକଳ ଶାସ୍ତ୍ରମାନଙ୍କରେ ।
ଯଉଂ ଚରିତ କହନ୍ତି ବହୁତ ପ୍ରକାରେ ।। ୧୨୫ ।।
ସେ ବ୍ରହ୍ମାଣ୍ଡ ସର୍ଜନା ଶୁଣିବି ତୁମ୍ଭଠାରୁ ।
ଏମନ୍ତ ଇଛା ମୋ ଅଛି ଆହେ ମହାଗୁରୁ ।। ୧୨୬ ।।
ଜଗତ କି ରୂପେ ହେଲା ପ୍ରଳୟ ଅନ୍ତରେ ।
ପୁଣି କଉଂ ରୂପେ ହେବ ସମସ୍ତ ପ୍ରକାରେ ।। ୧୨୭ ।।
କାହାଠାରୁ ଚରାଚର ହୁଅଇ ଜନମ ।
କଉଂ ଦେବତାମୟ ସେ କି ରୂପରେ କ୍ରମ ।। ୧୨୮ ।।
କଉଂଠାରେ ସେ ପୁଣି କି ରୂପେ ଲୀନ ହୋଇ ।
ପ୍ରାଣୀମାନଙ୍କ ପ୍ରମାଣ କେତେ ବା ଅଟଇ ।। ୧୨୯ ।।
ଦେବତାଙ୍କର କି ରୂପେ ହୁଅଇ ସମ୍ଭବ ।
ପର୍ବତ ନଦୀ ସମ୍ଭବମାନଙ୍କ କି ଭାବ ।। ୧୩୦ ।।
ତାହାଙ୍କର ସଂସ୍ଥାନ ଯେ କେମନ୍ତ ପ୍ରକାରେ ।
ଅବନୀର ସ୍ଥିତି ପୁଣି ହୁଏ କି ରୂପରେ ।। ୧୩୧ ।।
ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ଯେ ଗ୍ରହଗଣ ଯେତେ ।
ଏହାଙ୍କ କି ରୂପେ ସ୍ଥିତି ପ୍ରମାଣ କେମନ୍ତେ ।। ୧୩୨ ।।
ଦେବାସୁର ନାଗାନ୍ତର ଇତ୍ୟାଦିଙ୍କ ବଂଶ ।
ମନୁମନ୍ୱନ୍ତରମାନେ କି ରୂପେ ପ୍ରକାଶ ।। ୧୩୩ ।।
କଳ୍ପ ମହାକଳ୍ପ ଯେ ବିକଳ୍ପ ଚତୁର୍ଯୁଗ ।
ଏମାନଙ୍କ କଳ୍ପନା କି ରୂପେ ମହାଭାଗ ।। ୧୩୪ ।।

କଳ୍ପାନ୍ତଯୁଗାନ୍ତମାନଙ୍କର କି ସ୍ୱରୂପ ।
ଏହା ମତେ କହିବ କରିଣ ଅସଂକ୍ଷେପ ॥ ୧୩୫ ॥
ଦେବତାଙ୍କ ଋଷିଙ୍କର ନୃପତିମାନଙ୍କ ।
କି ରୂପରେ ଚରିତ କହ ସେ ସବୁଯାକ ॥ ୧୩୬ ॥
ବେଦ ବେଦଶାଖାମାନଙ୍କର ପ୍ରଣୟନ ।
କଉଂ ରୂପେ ବ୍ୟାସ ଏହା କଲେକ ବ୍ୟାଖ୍ୟାନ ॥ ୧୩୭ ॥
ବ୍ରାହ୍ମଣମାନଙ୍କ ଧର୍ମ ଆଶ୍ରମ କି ରୂପେ ।
ଏ ସମସ୍ତ ତୁମ୍ଭଠାରୁ ବିଧିମତ ରୂପେ ॥ ୧୩୮ ॥
ଶୁଣିବାକୁ ମୋହର ହୋଇଛି ଅଭିଳାଷ ।
ଆହେ ମହାତପି କୃପା ହୃଦୟେ ପ୍ରକାଶ ॥ ୧୩୯ ॥
ମୋହଠାରେ ପ୍ରସନ୍ନ ମାନସ ହୋଇ କରି ।
ଆଦ୍ୟପ୍ରାନ୍ତ ବିସ୍ତାରି କହିବା ତପଚାରି ॥ ୧୪୦ ॥
ଯଉଂ ରୂପେ ତବ ପ୍ରସାଦରୁ ଯିବ ଜଣା ।
ସେ ରୂପେ କରୁଣାନିଧି କରିବ କରୁଣା ॥ ୧୪୧ ॥
ଏହା ବୋଲି ମହାମୁନି ପାଦ ତଳେ ପଡ଼ି ।
ଉଠି ସମ୍ମୁଖେ ବସିଲେ କରପତ୍ର ଯୋଡ଼ି ॥ ୧୪୨ ॥
ଶିଷ୍ୟଙ୍କର ଭକ୍ତିଭାବ ଦେଖି ପରାଶର ।
ବୋଇଲେ ହେ ସାଧୁସାଧୁ ତପସ୍ୱୀ କୁମର ॥ ୧୪୩ ॥
ସାଧୁସାଧୁ ମଇତ୍ରେୟ ଧର୍ମଶାସ୍ତ୍ରବେତ୍ତା ।
ମତେ ଯେ ସ୍ମରଣ କରାଇଲ ପୂର୍ବ କଥା ॥ ୧୪୪ ॥
ଏକ ଦିନେ ଆମ୍ଭ ପିତାମହ ଯେ ବଶିଷ୍ଠ ।
କୋଳେ ଘେନି ପଢ଼ାଉଥିଲେ ସେ ଖଡ଼ିପାଠ ॥ ୧୪୫ ॥
ସେହି ସମୟରେ ସେ କହିଲେ କଥାନ୍ତରେ ।
ଛେଉଣ୍ଡ ହୋଇଲୁ ବାବୁ ପିତା ବିହୁନରେ ॥ ୧୪୬ ॥
ବିଶ୍ୱାମିତ୍ର ଆମ୍ଭର ସକଳ ନାଶକାରି ।
ରାକ୍ଷସେକ ପେଶିଲା ଯେ ଶତ୍ରୁତା ବିଚାରି ॥ ୧୪୭ ॥
ସେ ଆସି ତୋହ ପିତାକୁ ଦେଲା ବାବୁ ଖାଇ ।
ତା ସଙ୍ଗେ ସହିତ କରି ଅନେଶ୍ୱତ ଭାଇ ॥ ୧୪୮ ॥
ଏ ବହୁତ କାଳ କଥା ନୋହେ ନିକଟରେ ।
ସେ ସମୟେ ତୁହି ଥିଲୁ ଜନନୀ ଜଠରେ ॥ ୧୪୯ ॥
ପିତାମହ ଶ୍ରୀମୁଖୁ ଏମନ୍ତ ଶୁଣି ମୁହିଁ ।
ମନେ ତାହା ରଖିଥିଲି ପାଶୋରି ନ ଦେଇ ॥ ୧୫୦ ॥
କାଳେ ରାକ୍ଷସ ବିନାଶ ଅର୍ଥେ କଲି ସତ୍ର ।
ତେଣେ ଭସ୍ମ ହେଲେ ଶତଶତ ଦୈତ୍ୟ ଗୋତ୍ର ॥ ୧୫୧ ॥

ଦିନକୁ ଦିନ ଏ ରୂପେ ଗଲେ ଯହୁଂ ନାଶ ।
ଏହା ଦେଖି ବଶିଷ୍ଠ ବସାଇ ମତେ ପାଶ ।। ୧୫୨ ।।
ବୋଇଲେ କୁଳନନ୍ଦନ ଏମନ୍ତ ନ କର ।
ଋଷିଙ୍କ ଅତ୍ୟନ୍ତ କୋପ(କୁ) ନୁହଇ ବେଭାର ।। ୧୫୩ ।।
ତପର ହାନି ହୁଅଇ ଲାଗଇ ପାତକ ।
ମୋହର ବଚନ ବାବୁ ଘେନ ତୁ ଏତେକ ।। ୧୫୪ ।।
ଏ କ୍ରୋଧ ଦୂରରେ ତେଜ ଭଜ ଶାନ୍ତି ଭାବ ।
ଅହିଂସା ପୁଣଟି ବାବୁ ସର୍ବ ପରି ଲାଭ ।। ୧୫୫ ।।
ଶହେ ପୁତ୍ର ନାଶ ଦେଖି ସହିଲା ଏ ଦେହ ।
ପିତା ଗଲାମାତ୍ରକେ କି ତୁମ୍ଭ ଏତେ କୋହ ।। ୧୫୬ ।।
ତାହାଙ୍କୁ ଏ ରୂପେ ଥିଲା ପୂର୍ବାର୍ଜିତ ହୋଇଂ ।
ରାକ୍ଷସମାନଙ୍କ ଅପରାଧ କିଛି ନାହିଁ ।। ୧୫୭ ।।
ମୂର୍ଖମାନଙ୍କର ସିନା ଏ ରୂପରେ କୋପ ।
ଜ୍ଞାନୀଙ୍କର ଏମନ୍ତ ହୋଇବ କାହିଁ ବାପ !।। ୧୫୮ ।।
ହେ ତାତ କେହୁ କାହାକୁ ମାରଇ ଏ ମିଛ ।
ପୂର୍ବ କୃତଫଳ ଏକା ଫଳଇ ପ୍ରତ୍ୟକ୍ଷ ।। ୧୫୯ ।।
ନରମାନେ ଯଶ ଅବା କି ବା ମହାତପ ।
ଅତି କ୍ଳେଶ ପଡ଼ି ଯାହା ଅର୍ଜିଥାନ୍ତି ବାପ ।। ୧୬୦ ।।
ଏ ଦୁହିଁକ ନାଶକର୍ତ୍ତା ହୁଅଇଟି କ୍ରୋଧ ।
ସ୍ୱର୍ଗ ମୋକ୍ଷ ଏହୁ ଏକା କରଇ ବିରୋଧ ।। ୧୬୧ ।।
ମହାଋଷିମାନେ ଏହା ଶାସ୍ତ୍ରେ କହିଛନ୍ତି ।
ଏଣୁକରି ସିନା କ୍ରୋଧ ସେମାନେ ତେଜନ୍ତି ।। ୧୬୨ ।।
ତେଣୁ ଏ କ୍ରୋଧର ବଶବର୍ତ୍ତୀ ନୁହ ବାବୁ ।
ତେବେ ସେ ପରମାନନ୍ଦ ସୁଖକୁ ପାଇବୁ ।। ୧୬୩ ।।
ରାକ୍ଷସମାନେ ନୁହନ୍ତି କାହା ଅପକାରୀ ।
ବୃଥା ତେଜରେ ଏହାଙ୍କୁ ଦହନ ନ କରି ।। ୧୬୪ ।।
ଏବେ ତୁ ଯାଗରୁ ବାବୁ ରହ ତୁ ନିବର୍ତ୍ତି ।
ସାଧୁମାନେ ହୁଅନ୍ତିଟି କ୍ଷମାଶୀଳ ଅତି ।। ୧୬୫ ।।
ଏ ରୂପେ ଅନେକ ପ୍ରକାରେ ବୋଧକରି ।
ବଶିଷ୍ଠ ମୋହର କ୍ରୋଧମାନ ନେଲେ ହରି ।। ୧୬୬ ।।
ତାହାଙ୍କର ବାକ୍ୟ ଗଉରବ ସକାଶରୁ ।
ନିବର୍ତ୍ତି ରହିଲୁ ଆମ୍ଭେ ସେ ମହାଯାଗରୁ ।। ୧୬୭ ।।
ଏଥୁଅନ୍ତେ ପୁଣି ଆର ଦିନ ପ୍ରଭାତରେ ।
ବ୍ରହ୍ମାଙ୍କର ସୁତ ଯେ ପୌଲସ୍ତ୍ୟ ମୁନିବରେ ।। ୧୬୮ ।।

ପୁଲହଙ୍କ ଅଗ୍ରଜ ସେ ମହାତପଚାରୀ ।
ପ୍ରବେଶ ହୋଇଲେ ଆମ୍ଭ ଆଶ୍ରମରେକରି ।। ୧୬୯ ।।
ତାହାଙ୍କୁ ଦେଖି ବଶିଷ୍ଠ ଋଷି ଅର୍ଘ୍ୟ ଦେଲେ ।
ଯଥୋଚିତେ ପୂଜି ଆସନରେ ବସାଇଲେ ।। ୧୭୦ ।।
ସେ କାଳେ ସେ ତପଚାରୀ ଆମ୍ଭଙ୍କୁ ଅନାଇଂ ।
ଅତିପ୍ରିୟ କରିଣ ଏମନ୍ତ ବାକ୍ୟ କହି ।। ୧୭୧ ।।
ହେ ବାବୁ ତୋହୋର ଗାଢ଼ଶତ୍ରୁ ଥିବା ଠାରେ ।
କ୍ଷମାଶୀଳ ହେଲ ଯାହା ଗୁରୁଙ୍କ ବାକ୍ୟରେ ।। ୧୭୨ ।।
ସେ କାରଣୁ ଆପଣ ଜାଣିବ ସର୍ବଶାସ୍ତ୍ର ।
ତୁମ୍ଭ ହେତୁରୁ ଜଗତ ହୋଇବ ପବିତ୍ର ।। ୧୭୩ ।।
କ୍ରୋଧ ହୋଇ କରି ଯେଣୁ କଲ ଶାନ୍ତି କର୍ମ ।
ଜାଣିଲୁ ଆମ୍ଭ କୁଳରେ ପ୍ରକାଶିଲା ଧର୍ମ ।। ୧୭୪ ।।
ସନ୍ତତି ବିନାଶ ଆମ୍ଭ ହୋଇନାହିଁ କିଛି ।
ଯାହା କୁଳେ ତୁମ୍ଭପରା ପୁତ୍ର ହୋଇଅଛି ।। ୧୭୫ ।।
ତେଣୁ କରି ଆପଣଙ୍କୁ ଦେବା ଏବେ ବର ।
ପୁରାଣ ସଂହିତା କର୍ତ୍ତା ହୁଅ ହେ କୁମର ।। ୧୭୬ ।।
ବେଦ ପରମାର୍ଥ ଆଦି ଯଥା ରୂପେ ଜାଣ ।
ବେଦବାକ୍ୟ ପ୍ରାୟେ ଫଳୁ ଆମ୍ଭର କଲ୍ୟାଣ ।। ୧୭୭ ।।
ପ୍ରବୃତ୍ତି ନିବୃତ୍ତି ଦୁଇ କର୍ମରେ ତୋ ମତି ।
ବିବେକଶୂନ୍ୟ ନୋହିବ ଶୁଣ ମହାଯତି ।। ୧୭୮ ।।
ଆମ୍ଭ ପ୍ରସାଦୁ ଏ ସର୍ବ ଅଂଶ ଦେହ ହେବ ।
ଯେତେ ବୋଲି ନିବର୍ତ୍ତନ୍ତେ ତପସ୍ୱୀ ପୁଙ୍ଗବ ।। ୧୭୯ ।।
ସେ କାଳେ ବଶିଷ୍ଠ ଋଷି ଆମ୍ଭ ପିତାମହ ।
ମହାଭାଗବତ ଅଂଶେ ସମାଧି ସିଦ୍ଧ ଦେହ ।। ୧୮୦ ।।
ମୋତେ ଅନାଇଂ ବୋଇଲେ ଶୁଣିବା ହୋ ବାବୁ ।
ପୁଲସ୍ତ୍ୟ ଯାହା କହିଲେ ପ୍ରମାଣ ସେ ସବୁ ।। ୧୮୧ ।।
କୁଳଗୁରୁ ଦେବା ବର ସେ ସର୍ବ ହୋଇବ ।
ଅକ୍ରୋଧ ଗୁଣର ତାତ ଏମନ୍ତଟି ଭାବ ।। ୧୮୨ ।।
ସେ ବଚନ ଶୁଣି ଆମ୍ଭେ ଅତ୍ୟନ୍ତ ପ୍ରମୋଦ ।
ନମସ୍କାର କଲୁଂ ବେନି ପିତାମହ ପାଦ ।। ୧୮୩ ।।
ସନ୍ତୋଷେ କଲ୍ୟାଣ କରି ଗଲେକ ପୁଲସ୍ତ୍ୟ ।
ସେହିଦିନୁ ଆମ୍ଭର ହୋଇଲା ଜ୍ଞାନଜାତ ।। ୧୮୪ ।।
ପଣ୍ଡିତ ଅଟନ୍ତି ସେ ଯେ ପୁଲସ୍ତ୍ୟ ବଶିଷ୍ଠେ ।
ଏ ରୂପେ ଯା କହିଥିଲେ ପୂର୍ବେ ଅତିହୃଷ୍ଟେ ।। ୧୮୫ ।।

ସେ ସର୍ବ ତୁମ୍ଭ ହେତୁରେ ପଡ଼ିଲା ମୋ ମନେ ।
ଆହେ ମଇତ୍ରେୟ ଯାହା ପଚାରିଲ ପୁନ୍ୟେ ॥ ୧୮୬ ॥
ସେ ସର୍ବ କହିବା ଏବେ ଯଥାବିଧି କରି ।
ପୁରାଣ ସଂହିତା ଆଦି ଯେତେକ ପ୍ରଚରି ॥ ୧୮୭ ॥
ବ୍ରହ୍ମାଣ୍ଡ ସର୍ଜନା ଆଦି ହେଲା ଯଉଂ ରୂପେ ।
ଉତ୍ତମ କରି କହିବା ତାହା ଅସଂକ୍ଷେପେ ॥ ୧୮୮ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶ ଗୀତ ।
ସର୍ଜନା ପ୍ରଶ୍ନ ପ୍ରଥମ ଅଧ୍ୟା ସମାପତ ॥ ୧୮୯ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭନାରାୟଣ ମହାପାତ୍ର ॥ ୧୯୦ ॥

# ଦ୍ୱିତୀୟ ଅଧ୍ୟାୟ

ପରାଶର ବୋଲନ୍ତି ଶୁଣହେ ମହାଋଷି ।
ଯାହା ପଚାରିଲ ତାହା କହିବା ବିଶେଷି ॥ ୧ ॥
ଏତେ ବୋଲି ମୁହୂର୍ତ୍ତେ ନିଶ୍ଚଳମନ ହେଲେ ।
ଆତ୍ମାଶୁଦ୍ଧ କରିଣ ବିଷ୍ଣୁଙ୍କୁ ସ୍ତୁତି କଲେ ॥ ୨ ॥
ନମସ୍ତେ ପରମଆତ୍ମା ଅବିକାର ବିଷ୍ଣୁ ।
ଶୁଦ୍ଧନିତ୍ୟସଦା ଏକ ରୂପ ସର୍ବ ଜିଷ୍ଣୁ ॥ ୩ ॥
ନମସ୍ତେ ହିରଣ୍ୟଗର୍ଭ ଶ୍ରୀହରି ଶଙ୍କର ।
ବାସୁଦେବ ପରମପୁରୁଷ ପରାତ୍ପର ॥ ୪ ॥
ବ୍ରହ୍ମାଣ୍ଡର ସର୍ଜନା ପାଳନା ଅନ୍ତକାରୀ ।
ନମସ୍ତେ ଅଦ୍ୱିତୀୟ ଅନେକ ରୂପଧାରି ॥ ୫ ॥
ସ୍ଥୂଳ ସୂକ୍ଷ୍ମ ସ୍ୱରୂପୀ ଅବ୍ୟକ୍ତ ବ୍ୟକ୍ତ ରୂପୀ ।
ନମସ୍ତେ ମୁକ୍ତିକାରଣ ସର୍ବଭୂତ ବ୍ୟାପୀ ॥ ୬ ॥
ଜଗତର ସର୍ଗସ୍ଥିତି ବିନାଶମାନଙ୍କ ।
ଯେବଣ ସେ ଜଗନ୍ମୟ ମୂଳ ଭୂତାତ୍ମକ ॥ ୭ ॥
ବିଶ୍ୱର ଆଧାରଭୂତ ଈଶ୍ୱର ପୁରୁଷ ।
ପରମାଣୁ ଅଣୁ ତ୍ରସରେଣୁ ଲବ ଲେଶ ॥ ୮ ॥
ଅଚ୍ୟୁତ ପୁରୁଷୋତ୍ତମ ଦିବ୍ୟ ଜ୍ଞାନରୂପ ।
ପରମାର୍ଥିର ଅତ୍ୟନ୍ତ ନିର୍ମଳ ସ୍ୱରୂପ ॥ ୯ ॥
ଅର୍ଥସ୍ୱରୂପରେ ପୁଣି ଯେ ଅଟଇ ସ୍ଥିତ ।
ଭ୍ରମ ଦରଶନେ ଯାକୁ ବୋଲି ରୂପବନ୍ତ ॥ ୧୦ ॥
ସର୍ବଭୂତେସ୍ଥିତି ମହାବିଷ୍ଣୁ କାଳରୂପୀ ।
ଜଗତଈଶ ଭଗତବତ୍ସଳ ଅପାପୀ ॥ ୧୧ ॥
ଅକ୍ଷୟ ଅବ୍ୟୟ ବ୍ରହ୍ମ ଅଜାତ ପୁରୁଷ ।
ଅତ୍ୟନ୍ତ ଅପରିଚ୍ଛିନ୍ନ ଅଖିଳ ନିବାସ ॥ ୧୨ ॥
ତାହାଙ୍କୁ ପ୍ରମାଣ କରି ପୁରାଣ ପ୍ରବୀଣ ।
ବୋଲନ୍ତି ହେ ମଇତ୍ରେୟ ସାବଧାନେ ଶୁଣ ॥ ୧୩ ॥
ଯାହା ପଚାରିଲ ତାହା କହିବା ବିସ୍ତାରି ।
ବ୍ରହ୍ମାଣ୍ଡର ସ୍ଥିତି ଅନ୍ତ ଜାତ ଆଦି କରି ॥ ୧୪ ॥
ବିଷ୍ଣୁ ସକାଶରୁ ଜାତ ହୁଅଇ ଜଗତ ।
ବିଷ୍ଣୁ ସେ ଆଧାରଭୂତ ତହିଁରେ ସେ ସ୍ଥିତ ॥ ୧୫ ॥
ଜଗତସ୍ଥିତିସଂହାରକର୍ତ୍ତା ସେହୁ ହରି ।
ସେହି ଏକା ରହିଛି ଜଗତରୂପ ଧରି ॥ ୧୬ ॥

୨ଖ. ନିଶ୍ଚଳମନ, ଆତ୍ମାଶୁଦ୍ଧି, ୩ଗ. ଶୁଦ୍ଧନିତ୍ୟଦାୟେକ ରୂପ ସମ ଜିଷ୍ଣୁ

ଏହିକଥା ପୂର୍ବେ ଦକ୍ଷ ଆଦି ମୁନିମାନେ ।
ପଚାରନ୍ତେ ଲୋକପିତାମହ ସନ୍ନିଧାନେ ॥ ୧୭ ॥
ସେ ତାହାଙ୍କୁ ବୁଝାଇଲେ ପରିପାଟୀ କରି ।
ପଦ୍ମଯୋନି ତହୁଁ ଶୁଣି ସର୍ବ ତପଚାରୀ ॥ ୧୮ ॥
ଏକଦିନେ ନର୍ମଦା ତଟକୁ ସର୍ବେ ଯାଇ ।
ପୁରୁକୁଛ ରାଜାଙ୍କୁ ତା କହିଲେ ବୁଝାଇ ॥ ୧୯ ॥
ସେ ପୁରୁକୁଛ ନୃପତିଠାରୁଂ ଆମ୍ଭେ ପୁଣି ।
ଯତଂରୂପେ ଶୁଣିଅଛୁ ଜାଣ ନୃପମଣି ॥ ୨୦ ॥
ସେ ଯେ ପରଂବ୍ରହ୍ମ ପରମାତ୍ମାଙ୍କର ପର ।
ପରମାତ୍ମା ପୁରୁଷ ଆତ୍ମାରେ ସ୍ଥିତି ଯାର ॥ ୨୧ ॥
ବିଶେଷେଣ ଲକ୍ଷଣ ଅଇଲା ଅବା କାହିଁ ।
ରୂପ ବର୍ଣ୍ଣ ଆଦି ଯେ କିଛି ହିଂ ତାର ନାହିଁ ॥ ୨୨ ॥
କ୍ଷୟ ବୃଦ୍ଧି ଜନମ ମରଣ ଆଦି ଯେତେ ।
ତାହାଠାରେ ବିବର୍ଜିତ ଏମାନେ ସମସ୍ତେ ॥ ୨୩ ॥
ସେ ସବୁକାଳରେ ଅଛି ତାହାକୁ କେବଳ ।
କହିବାକୁ ସମର୍ଥ କେ ହେବ ତପଶୀଳ ॥ ୨୪ ॥
ସବୁଠାରେ ସବୁ ରୂପେ ସେ ଏକା ଅଛଇ ।
ବିଚାରିଲେ ଏହିଠାରେ ଦେଖ ତୁହି ମୁହିଁ ॥ ୨୫ ॥
ତେଣୁକରି ସକଳ ପରମଋଷିମାନେ ।
ବାସୁଦେବ ବୋଲନ୍ତି ତାହାଙ୍କୁ ତତ୍ତ୍ୱଜ୍ଞାନେ ॥ ୨୬ ॥
ସେହି ଏକା ବ୍ରହ୍ମଟି ପରମ ନିତ୍ୟ ଅଜ ।
ଅକ୍ଷୟ ଅବ୍ୟୟ ସନାତନ ଅଧୋକ୍ଷଜ ॥ ୨୭ ॥
ସର୍ବଦା ଏକ ସ୍ୱରୂପ ହୁଅଇ ଭାବରୁ ।
ରୁଚିର ନିର୍ମଳତର ସମସ୍ତଙ୍କଠାରୁ ॥ ୨୮ ॥
ସେହି ଏକା କେବଳ ସକଳ ସବୁଠାରେ ।
ଅବ୍ୟକ୍ତ ହୋଇଣ ବ୍ୟକ୍ତ ସ୍ୱରୂପେ ପ୍ରଚରେ ॥ ୨୯ ॥
ସେ ପୁରୁଷରୂପୀ ସେହି କାଳରୂପେ ସ୍ଥିତ ।
ପରଂବ୍ରହ୍ମରୂପ ସେ ପ୍ରକୃତି ପରନିତ୍ୟ ॥ ୩୦ ॥
ବ୍ୟକ୍ତ ଅବ୍ୟକ୍ତ ରୂପରେ ଅବା ଆନଠାରେ ।
କାଳପ୍ରାୟ ହୋଇଣ ସେ ସନ୍ତତ ପ୍ରଚରେ ॥ ୩୧ ॥
ପ୍ରଧାନ ପୁରୁଷ ବ୍ୟକ୍ତ କାଳମାନଙ୍କର ।
ପରମ ଅଟେ ସେହିଟି ଏ ତତ୍ତ୍ୱ ବିଚାର ॥ ୩୨ ॥
ଦେଖ ବ୍ରହ୍ମଜ୍ଞାନୀମାନେ ଯାହାକୁ ଦେଖନ୍ତି ।
ସେହି ସେ ବିଷ୍ଣୁପଦ ପରମଶୁଦ୍ଧ ଅତି ॥ ୩୩ ॥

୩୦ଖ. ପରଂବ୍ରହ୍ମରୂପେ ସେ ପ୍ରକୃତ

ପ୍ରଧାନପୁରୁଷ ବ୍ୟକ୍ତ କାଳ ଏହୁ ଯେତେ ।
ସେମାନଙ୍କ ବିଭାଗ କହିବା ବିଧିମତେ ।। ୩୪ ।।
ସୃଷ୍ଟିସ୍ଥିତି ପ୍ରକାଶ ପ୍ରଳୟମାନଙ୍କର ।
ସ୍ୱଭାବ କାରଣ ରୂପମାନେ ସେ ପ୍ରଚାର ।। ୩୫ ।।
ପ୍ରଧାନ ରୂପଟି ଅଟେ ସୃଷ୍ଟିହେତୁଭୂତ ।
ପୁରୁଷ ସର୍ବପାଳନା ଅର୍ଥରେ ସଂଭୂତ ।। ୩୬ ।।
ବ୍ୟକ୍ତ ରୂପ ମହଦାଦୀମାନଙ୍କ ପ୍ରକାଶ ।
ଏ ସମସ୍ତଙ୍କର ହେତୁ କାଳଟି ତାପସ ।। ୩୭ ।।
ଏ ରୂପେ ଚତୁର୍ଦ୍ଧାରୂପ ସୃଷ୍ଟିକାଳେ ଧରି ।
ସଚ୍ଚିଦାନନ୍ଦ ପରମ ଆନନ୍ଦେ ବିହରି ।। ୩୮ ।।
ଏ ହେତୁ ଜନାର୍ଦ୍ଦନଙ୍କୁ ଚତୁର୍ଭେଦ କରି ।
କହନ୍ତି ନୋହିଁଲେ ସେ ଅଦ୍ୱିତୀୟ ହରି ।। ୩୯ ।।
ବ୍ୟକ୍ତାବ୍ୟକ୍ତ ବୋଲି କରି ଯାହାଟି ବୋଲନ୍ତି ।
ତାହା ବିବରଣ ଏବେ ଶୁଣ ମହାଯତି ।। ୪୦ ।।
ବ୍ୟକ୍ତ ଯେ ସେ ଏକା ବିଷ୍ଣୁ ସଂସାରକାରକ ।
ଅବ୍ୟକ୍ତ ପୁରୁଷ କାଳସର୍ବସଂହାରକ ।। ୪୧ ।।
ଏ ରୂପେ କ୍ରୀଡ଼ାବାଳକ ପରି ଚେଷ୍ଟା ତାର ।
ବୁଝାଇ କହିବା ତାହା ଶୁଣ ମୁନିବର ।। ୪୨ ।।
ବାଳକମାନେ ଯେମନ୍ତ ଧୂଳି ଘର ତୋଳି ।
ହରଷରେ କରନ୍ତି ବିବିଧରଙ୍ଗେ କେଳି ।। ୪୩ ।।
ଯେତେବେଳେ ନିଜ ମନ୍ଦିରକୁ ହୋଯେ ଇଚ୍ଛା ।
ଚରଣରେ ଭାଙ୍ଗି ତା କରନ୍ତି ସର୍ବତୁଚ୍ଛା ।। ୪୪ ।।
ସେହି ରୂପେ ବ୍ରହ୍ମାଣ୍ଡ ତାହାର ଖେଳ଼ଘର ।
ତୋଳିବାକୁ ଟାଳିବାକୁ ଲିତାଯେ ଅନ୍ତର ।। ୪୫ ।।
ଅକ୍ଷୟପଦାର୍ଥ ସେ ଯେ ନାହିଁ ତା ଆଧାର ।
ଅପ୍ରମାଣ ମହିମା ଅଜର ଧ୍ରୁବାକାର ।। ୪୬ ।।
ଶବ୍ଦ ନାହିଁ ସ୍ପର୍ଶ ନାହିଁ ଗନ୍ଧ ରସହୀନ ।
ରୂପମାନଙ୍କରୁ ସେ ଅଟଇ ଅତିଭିନ୍ନ ।। ୪୭ ।।
ନିର୍ଗୁଣ ପଦାର୍ଥ ସେ ଯେ ସମାନ ତ୍ରିଗୁଣ ।
ସମସ୍ତ ସଂସାରମାନଙ୍କରେ ଯେ କାରଣ ।। ୪୮ ।।
ଅନାଦି ଦେବ ପ୍ରଭବ କାର୍ଯ୍ୟ ଲୟକାରୀ ।
ସୃଷ୍ଟିରୁ ପ୍ରଳୟ ଯାଏ ସର୍ବବ୍ୟାପୀ ହରି ।। ୪୯ ।।
ବେଦବାଦମାନଙ୍କେ ଯାହାଙ୍କ ଦିବ୍ୟଜ୍ଞାନ ।
ଏମନ୍ତ ଯେ ଶାସ୍ତ୍ରନିଷ୍ଠା ବେଦବାଦିଜନ ।। ୫୦ ।।

୪୬.ଖ. ପ୍ରମାଣ ମହିମା ଅଜର ଧ୍ରୁବାକର

ପ୍ରଧାନ ପ୍ରତିପାଦକ ଅର୍ଥ ତାଙ୍କୁ କରି ।
ନିତ୍ୟ କେବଳ ପଢ଼ନ୍ତି ଏହି ତ ବିଚାରି ॥ ୫୧ ॥
ଏଣୁ ବ୍ରହ୍ମଜ୍ଞାନିଙ୍କର ସେହୁ ନିରାକାର ।
ଭକ୍ତମାନେ ତାହାଙ୍କୁ ଯେ ବୋଲନ୍ତି ସାକାର ॥ ୫୨ ॥
ସାକାର କିରୂପେ ତାହା ଶୁଣହେ ମୈତ୍ରେୟ ।
ଯେତେବେଳେ ହୋଇ ଥାଇ ପ୍ରାକୃତପ୍ରଳୟ ॥ ୫୩ ॥
ସେ କାଳରେ ଦିବାନିଶି ଜ୍ୟୋତି ଅନ୍ଧକାର ।
କିଛିହିଁ ନଥାଇ ନଥିବାରୁ ଦିବାକର ॥ ୫୪ ॥
ଭୂମି ଗଗନାଦି ଯେଉଂ ସମୟରେ ନାହିଁ ।
ସେ କାଳେ ସୃଷ୍ଟି କରଣେ ପ୍ରଭୁ ଇଛା ହୋଇ ॥ ୫୫ ॥
ସେ ଇଚ୍ଛାରୁ ପ୍ରକୃତିପୁରୁଷ ବେନିଜାତ ।
ତାହାଙ୍କୁ ଧରିବା ଅର୍ଥେ କାଳ ଯେ ସମ୍ଭୂତ ॥ ୫୬ ॥
ସେ ପରମ ନିଜ ସ୍ୱରୂପରୁଂ ଜାତ ହୁଏ ।
କାଳ ଯେ ରୂପାଦିଙ୍କର ହେତୁ ଭୂତ ହୋଏ ॥ ୫୭ ॥
ପ୍ରକୃତି ପୁରୁଷ ବେନିଙ୍କର ମଧ୍ୟେ ରହି ।
ପ୍ରଳୟ କାଳେ ରଖଇ ଅନ୍ତର କରାଇ ॥ ୫୮ ॥
ଏଣୁ ପ୍ରକୃତି ପୁରୁଷ ଭିନ୍ନେ ଭିନ୍ନେ ଥାନ୍ତି ।
କାଳର ଆୟତ୍ତ ଯହୁଁ ସେ ବେନି ହୁଅନ୍ତି ॥ ୫୯ ॥
ସେ କାଳେ ମହାବିଷ୍ଣୁ ଯେ ସେ ଦୁହିଁଙ୍କଠାରେ ।
ସ୍ଥିତ ହୋନ୍ତି କ୍ଷୋଭ କରାଇବା ନିମିତ୍ତରେ ॥ ୬୦ ॥
କ୍ଷୋଭ ସେହି କ୍ଷୋଭ୍ୟ ସେହି ଏମନ୍ତ ଯେଣଇ ।
ତାଙ୍କ ପ୍ରଭାବୁଂ ଚଞ୍ଚଳ ପ୍ରକୃତି ପୁରୁଷ ॥ ୬୧ ॥
ସେ ସମୟେ ଦୁହିଙ୍କର ହୁଅନ୍ତେ ନିକଟ ।
ଅନ୍ୟୋନ୍ୟରେ ଦୃଷ୍ଟିପାତ ହୁଅଇ ପ୍ରକଟ ॥ ୬୨ ॥
ସେ କାଳେ ତ୍ରିଗୁଣ ଊଣା ଅଧିକ ହୁଅଇ ।
ପ୍ରଧାନରେ ପୁଣି ଯେ ସମାନ ଭାବେ ଥାଇ ॥ ୬୩ ॥
ସେ ତ୍ରିଗୁଣପୁଞ୍ଜ ସେ ସମୟେ ହୁଏ ଜାତ ।
ଅତ୍ୟନ୍ତ ପ୍ରଧାନ ତତ୍ତ୍ୱଠାରୁ ତପୋବନ୍ତ ॥ ୬୪ ॥
ସେ ତ୍ରିଗୁଣପୁଞ୍ଜକୁଟି ମହାତତ୍ତ୍ୱ କହି ।
ସର୍ଜନା କାଳେ ପ୍ରକୃତିଠାରୁ ଜାତ ହୋଇ ॥ ୬୫ ॥
ଯେତେବେଳେ ଜନମ ହୁଅଇ ମହାତତ୍ତ୍ୱ ।
ପ୍ରଧାନତତ୍ତ୍ୱରେ ସେ ଯେ ହୁଅଇ ଆବୃତ ॥ ୬୬ ॥
ଯେମନ୍ତ ଚୋପା ଭିତରେ ମଞ୍ଜି ଏକ ଥାଏ ।
ପ୍ରଧାନ ତତ୍ତ୍ୱରେ ସେ ତେମନ୍ତ ଶୋଭାପାଏ ॥ ୬୭ ॥

୫୧.ଖ. ଯେହି ଅବିଚାରି, ୫୭.ଖ. କାଳ ଯେ ରୂପ ଆଦିଙ୍କର ହେତୁ ହୁଏ

ଚୋପା ଥିଲେ ଯେମନ୍ତଟି ମଞ୍ଜିର ଅଙ୍କୁର ।
ପ୍ରଧାନରୁ ସେରୂପେ ସେ ଘେନଇଂ ବିକାର ॥ ୬୮ ॥
ମହାତତ୍ତ୍ୱ ବିକାର ଘେନଇଂ ଯେତେ ବେଳେ ।
ଅହଂକାର ତାଠାରୁ ଜନ୍ମଇ ତେତେବେଳେ ॥ ୬୯ ॥
ଜନ୍ମ ହେଲା ମାତ୍ରକରେ ସେହୁ ଅହଂକାର ।
ଆପଣା ଇଚ୍ଛାରେ ହୁଏ ତିନି ପରକାର ॥ ୭୦ ॥
ଭୂତାଦି ତୈଜସ ବୈକାରିକ ଏହୁ ତିନି ।
ତାଙ୍କ ବିବରଣ ଏବେ ଶୁଣ ମହାମୁନି ॥ ୭୧ ॥
ଭୂତାଦି ଅଟେ ତାମସ ତୈଜସ ରାଜସ ।
ବୈକାରିକ ଯାହାଟି ସେ ସାତ୍ତ୍ୱିକ ପ୍ରକାଶ ॥ ୭୨ ॥
ଏମନ୍ତରେ ତ୍ରିବିଧ ସେ ହୁଅଇଟି ଯହୁଂ ।
ମହାତତ୍ତ୍ୱ ଘୋଡ଼ାଇ ରଖଇ ତାକୁ ତହୁଂ ॥ ୭୩ ॥
ତେଣୁ କରି ସେ ତିନିହେଂ ପାଆନ୍ତେ ବିକାର ।
ସେ ତିନିରୁ ଜନ୍ମ ହୋନ୍ତି ତିନିପରକାର ॥ ୭୪ ॥
କାହାଠାରୁ କେ ହୁଅଇ ତା' କହଇ ଶୁଣ ।
ଭୂତାଦିରୁ ମହାଭୂତ ଜନ୍ମହୋନ୍ତି ପୁଣ ॥ ୭୫ ॥
ତୈଜସରୁ ଇନ୍ଦ୍ରିୟ ସମୂହେ ଜନମନ୍ତି ।
ଇନ୍ଦ୍ରିୟଙ୍କ ଅଧିଷ୍ଠାତା ଯହୁଂ ଦେବପତି ॥ ୭୬ ॥
ସେମାନେ ଜନ୍ମହୁଅନ୍ତି ବୈକାରିକ ଠାରୁ ।
ଏ ରୂପରେ ତିନି ଜନ୍ମ ତିନି ଅହଂକାରୁ ॥ ୭୭ ॥
ତାହାଶୁଣି ମଇତ୍ରେୟ ପୁଣି ହି ପଚାରି ।
ଭୋ ଗୁରୁ ଏହା କହିବା ମତେ ସୁବିସ୍ତାରି ॥ ୭୮ ॥
କଉଂ କଉଂ ଅହଂକାରୁ କେକେ ଜନମନ୍ତି ।
ଏହା ପରିପାଟୀ କରି କହ ମହାଯତି ॥ ୭୯ ॥
ମଇତ୍ରେୟ ବଚନେ କହନ୍ତି ପରାଶର ।
ଯାହା ପଚାରିଲ ଶୁଣ ତପସ୍ୱୀ କୁମର ॥ ୮୦ ॥
ଯେତେବେଳେ ମହାତତ୍ତ୍ୱ ରଖଇ ଘୋଡ଼ାଇ ।
ସେକାଳରେ ଭୂତାଦି ଯେ ବିକାରକୁ ପାଇ ॥ ୮୧ ॥
ତହୁ ପୁଣି ଜନମ ହୁଅନ୍ତି ତନ୍ମାତ୍ରକ ।
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଯେ ଏତେକ ॥ ୮୨ ॥
ଏମାନଙ୍କ ଜନ୍ମବିଧି କହିବା କ୍ରମରେ ।
ଶବ୍ଦତନ୍ମାତ୍ର ସମ୍ଭୂତ ହୁଅଇ ଆଦ୍ୟରେ ॥ ୮୩ ॥
ତାହାଠାରୁ ଜନ୍ମ ପୁଣି ହୁଏ ଯେ ଆକାଶ ।
ଶବ୍ଦ ଲକ୍ଷଣ ଘେନି ସେ ହୁଅଇ ପ୍ରକାଶ ॥ ୮୪ ॥

ସେ କାଳେ ଶବ୍ଦ ମାତ୍ରର ଆକାଶର ପୁଣି ।
ଭୂତାଦି ଅହଂକାର ଯେ ହୁଅଇ ଢ଼ାଙ୍କୁଣି ॥ ୮୫ ॥
ଯେତେବେଳେ ଭୂତାଦିରେ ଆଚ୍ଛାଦିତ ହୋଏ ।
ସେ କାଳରେ ଆକାଶ ଯେ ବିକାରକୁ ପାଏ ॥ ୮୬ ॥
ତହୁଂ ପୁଣି ଜନମ ହୁଅଇ ସ୍ପର୍ଶମାତ୍ର ।
ସ୍ପର୍ଶମାତ୍ରଠାରୁ ଯେ ପବନ ହୋଏ ଜାତ ॥ ୮୭ ॥
ସ୍ପର୍ଶ ଗୁଣ ତାହାରଟି ଅଟଇ ପ୍ରମାଣ ।
ଏ ଉତ୍ତାରେ କହିବି ହେ ମହାଋଷି ଶୁଣ ॥ ୮୮ ॥
ସେ ସ୍ପର୍ଶମାତ୍ରେ ପବନ ଜନ୍ମ ହେଲାକ୍ଷଣି ।
ଶବ୍ଦମାତ୍ର ଆକାଶ ତା ହୁଅଇ ଢ଼ାଙ୍କୁଣି ॥ ୮୯ ॥
ଯେତେବେଳେ ଆକାଶ ଯେହୁ ତାହାକୁ ଘୋଡ଼ାଇ ।
ସେ କାଳେ ପବନ ପୁଣି ବିକାରକୁ ପାଇ ॥ ୯୦ ॥
ତହୁଂ ଯେବେ ଜନମ ହୁଅଇ ରୂପମାତ୍ର ।
ତାହାଠାରୁ ଜ୍ୟୋତି ଯେ ହୁଅଇଟି ଜାତ ॥ ୯୧ ॥
ରୂପ ଗୁଣ ତାହାର ଯେ ଅଟଇ ପ୍ରଧାନ ।
ତାହାକୁ ସେ ସମୟରେ ଘୋଡ଼ାଇ ପବନ ॥ ୯୨ ॥
ସ୍ପର୍ଶମାତ୍ର ବାତରେ ସେ ହୁଅନ୍ତେ ଆବୃତ୍ତ ।
ସେହୁ ମାତ୍ର ରୂପ ଜ୍ୟୋତି ହୁଅଇ କ୍ଷୋଭିତ ॥ ୯୩ ॥
ତା'ଠାରୁ ସେ କାଳେ ଜାତ ହୁଏ ରସମାତ୍ର ।
ତହୁଂ ପୁଣି ଜଳମାନେ ହୁଅଇ ସମ୍ଭୂତ ॥ ୯୪ ॥
ରସମାନଙ୍କ ଆଧାର ସେମାନେ ଅଟନ୍ତି ।
ସେ ରସମାତ୍ର ଜଳକୁ ଘୋଡ଼ାଏ ଯେ ଜ୍ୟୋତି ॥ ୯୫ ॥
ଜ୍ୟୋତିରେ ଆବୃତ୍ତହୋଇ ସେହୁ ଜଳ ପୁଣି ।
ଗନ୍ଧମାତ୍ରକ ଜନମ ହୁଏ ସେହୁ କ୍ଷଣି ॥ ୯୬ ॥
ସେ ଗନ୍ଧମାତ୍ରୁଂ ଜନମ ହୁଅଇ ଯେ ମହୀ ।
ଗନ୍ଧଗୁଣ ଘେନିଣ ସେ ସର୍ବଦା ରହଇ ॥ ୯୭ ॥
ଏ ରୂପେ ଭୂତାଦି ପଞ୍ଚ ତନ୍ମାତ୍ରରେ କରି ।
ପଞ୍ଚମହାଭୂତକୁ ଜନ୍ମାଇଂ ତପଚାରି ॥ ୯୮ ॥
ଯାହାଠାରେ ତାହାର ଥିବାରୁଂ ନିତାଚିହ୍ନଂ ।
ତନ୍ମାଙ୍କାତ୍ର ଏମନ୍ତ ବୋଲି ଶବ୍ଦାଦି ଘେନ ॥ ୯୯ ॥
ସେ ପଞ୍ଚତନ୍ମାତ୍ର ପଞ୍ଚ ମହାଭୂତଠାରେ ।
ଉତ୍ତର ଉତ୍ତର ବୃଦ୍ଧି ହୋନ୍ତି ଯେ କ୍ରମରେ ॥ ୧୦୦ ॥
ଆକାଶରେ ଶବ୍ଦଗୁଣ ବାତେ ଶବ୍ଦ ସ୍ପର୍ଶ ।
ଜ୍ୟୋତିରେ ଶବ୍ଦାଦ୍ୟ ସ୍ପର୍ଶ ରୂପ ଯେ ପ୍ରକାଶ ॥ ୧୦୧ ॥

୮୮.କ. ଏଥୁ ଉତ୍ତାରେଣ ପୁଣି ମହରଷି ଶୁଣ, ୯୩.କ. କ୍ଷୁଭିତ

ଜଳରେ ଶବଦସ୍ପର୍ଶ ରୂପରସେ ଚାରି ।
ମହୀ ସହିତ ଗନ୍ଧାଦି ପାଞ୍ଚଗୁଣେ କରି ॥ ୧୦୨ ॥
ସୁଖି ଦୁଃଖି ମୂଢ଼ଭାବ ତନ୍ମାତ୍ରରେ ନାହିଁ ।
ପଞ୍ଚ ମହାଭୂତ ଏକା ଯେ ତିନିରେ ଗ୍ରାହୀ ॥ ୧୦୩ ॥
ଏ ରୂପେ ଭୂତାଦି ଠାରୁ ତନ୍ମାତ୍ରଟି ଜାତ ।
ତନ୍ମାତ୍ରରୁ ମହାଭୂତ ହୁଅଇ ସଂଭୂତ ॥ ୧୦୪ ॥
ସେହି ରୂପେ ତଇଜସ ଅହଂକାରୁ ପୁଣି ।
ଇନ୍ଦ୍ରିୟମାନେ ଜନ୍ମନ୍ତିଶୁଣ ମୁନିମଣି ॥ ୧୦୫ ॥
ଚର୍ମ ଚକ୍ଷୁ ନାସା ଜିହ୍ୱା କର୍ଣ୍ଣ ପଞ୍ଚ ଏହି ।
ବୁଦ୍ଧି ଏହାଙ୍କ ବିଷୟମାନଙ୍କର ଗ୍ରାହୀ ॥ ୧୦୬ ॥
ଏହେତୁ ବୁଦ୍ଧିଇନ୍ଦ୍ରିୟ ଯେ ପାଞ୍ଚେ ବୋଲାନ୍ତି ।
ପଞ୍ଚ କର୍ମେନ୍ଦ୍ରିୟ କଥା ଶୁଣହେ ସୁମତି ॥ ୧୦୭ ॥
ଗୁହ୍ୟ ଲିଙ୍ଗ କର ପାଦ ବଦନ ଏମାନେ ।
କର୍ମେନ୍ଦ୍ରିୟ ବୋଲାନ୍ତି ହୋ କହିବା ବିଧାନେ ॥ ୧୦୮ ॥
ଗୁହ୍ୟ ଇନ୍ଦ୍ରିୟ କରଇ ପୁରୀଷ ଉତ୍ସର୍ଗ ।
ଲିଙ୍ଗପୁଣି କରେ ମୂତ୍ର ରେତରେ ବିସର୍ଗ ॥ ୧୦୯ ॥
କର ବେନି ସର୍ବକର୍ମମାନ ଯେ କରଇ ।
ଚରଣ ଗମନ କରେ ବଦନ କହଇ ॥ ୧୧୦ ॥
ଏମନ୍ତେ କର୍ମଇନ୍ଦ୍ରିୟ ମାନଙ୍କେ ପ୍ରକାଶ ।
ବେନି ପ୍ରକାର ମିଶିଣ ଯେ ହୁଅନ୍ତି ଦଶ ॥ ୧୧୧ ॥
ଏକାଦଶେ ମନ ଏକ ସେ ଇନ୍ଦ୍ରିୟ ରାଜା ।
ତାହା ଅନୁଗତ ଏ ସର୍ବେ ହେ ବ୍ରହ୍ମତେଜା ॥ ୧୧୨ ॥
ଏ ଦଶ ଇନ୍ଦ୍ରିୟଙ୍କର ଅଧିଷ୍ଠିତା ଦେବେ ।
କେତେ ସେ କାହୁଁ ଜନ୍ମନ୍ତି ତା କହିବା ଏବେ ॥ ୧୧୩ ॥
ପବନ ଅର୍କ ଅଶ୍ୱିନୀକୁମାର ବରୁଣ ।
ଦଶଗୋଟିଦିଗ ମିତ୍ର ପ୍ରଜାପତି ଜାଣ ॥ ୧୧୪ ॥
ଇନ୍ଦ୍ର ଉପେନ୍ଦ୍ର ଅନଳ ଏମନ୍ତେ ଏ ଦଶ ।
ବୈକାରିକ ଅହଙ୍କାରୁ ଏ ସର୍ବପ୍ରକାଶ ॥ ୧୧୫ ॥
ଚର୍ମର ବାୟୁ ଦେବତା ନୟନର ଅର୍କ ।
ନାସିକା ଦ୍ୱାରର ଯେ ଅଶ୍ୱନୀକୁମାରକ ॥ ୧୧୬ ॥
ରସନାର ବରୁଣ କର୍ଣ୍ଣର ଦଶଦିଗ ।
ଗୁହ୍ୟର ମିତ୍ର ଲିଙ୍ଗର ପ୍ରଜାପତି ଯୋଗ ॥ ୧୧୭ ॥
କରର ଇନ୍ଦ୍ର ଚରଣ ବେନିର ଉପେନ୍ଦ୍ର ।
ବାକ୍ୟର ଅନଳ ଶୁଣ ମୁନି କୁଳଚନ୍ଦ୍ର ॥ ୧୧୮ ॥

ଏ ରୂପରେ ବୈକାରିକ ଦଶ ଯେ ଦେବତା ।
ଦଶେନ୍ଦ୍ରିୟେ ଗୁପ୍ତେ ଆନ୍ତି ହୋଇ ଅଧିଷ୍ଠାତା ॥ ୧୧୯ ॥
ଏଥୁ ଉତ୍ତାରେଣ ଶୁଣ ମଇତ୍ରେୟ ଋଷି ।
ବ୍ରହ୍ମାଣ୍ଡ ଉତ୍ପତ୍ତି ଏବେ କହିବା ବିଶେଷି ॥ ୧୨୦ ॥
ପ୍ରଧାନ ତତ୍ତ୍ୱଯେ ମହତ୍ତତ୍ତ୍ୱ ଅହଂକାର ।
ପଞ୍ଚତନ୍ମାତ୍ରାଦି ପଞ୍ଚଭୂତ ଏ ପ୍ରକାର ॥ ୧୨୧ ॥
ଏ ରୂପରେ ମହଦାଦି ବିଶେଷାନ୍ତମାନେ ।
ନାନା ମତେ ବୀର୍ଯ୍ୟବନ୍ତ ଅଟନ୍ତି ସେମାନେ ॥ ୧୨୨ ॥
ସଂହତି ବିନାରେ ଗୋଟି ଗୋଟି ହୋଇବାରେ ।
କାହାର ସଖ୍ୟ ନୁହଇ ସୃଷ୍ଟି କରିବାରେ ॥ ୧୨୩ ॥
ତହୁଁ ଯେତେବେଳେ ସର୍ବେ ପରସ୍ପରେ ହୋଇ ।
ଏକଠାରେ ମିଳନ୍ତି ଯେ ସଂଯୋଗକୁ ପାଇ ॥ ୧୨୪ ॥
ସେ କାଳରେ ପୁରୁଷର ସଂଚାର ସକାଶୁ ।
ପ୍ରକୃତିର ଅତିଶୟ ଅନୁଗ୍ରହଣଶୁଁ ॥ ୧୨୫ ॥
ମହାଅର୍ଣ୍ଣବ ଏକ ଯେ ଉତ୍ପତ୍ତି କରନ୍ତି ।
ଜଳବୁଦ୍‌ବୁଦ ପରି ତା କ୍ରମେ ବଢ଼ାନ୍ତି ॥ ୧୨୬ ॥
ମହାଜଳ ମଧ୍ୟେ ଥାଇ ସେ ଯେ ମହା ଅଣ୍ଡ ।
ଭୂତଙ୍କ ସକାଶୁ ତା'ର ବୃଦ୍ଧି ହୋୟେ ପିଣ୍ଡ ॥ ୧୨୭ ॥
ବ୍ରହ୍ମଋଷି ବିଷ୍ଣୁଙ୍କର ପ୍ରକୃତ ସେ ସ୍ଥାନ ।
ତହିଁରେ ଅବ୍ୟକ୍ତ ରୂପୀ ଦେବ ଜନାର୍ଦ୍ଦନ ॥ ୧୨୮ ॥
ବ୍ୟକ୍ତ ହୋଇ ଆପଣ ଯେ ବ୍ରହ୍ମ ରୂପଧରି ।
ସଂସାର କରିବା ନିମିତ୍ତରେ ବିଜେ କରି ॥ ୧୨୯ ॥
ସ୍ୱସ୍ଥାନ ଦେଖିଣେ ତହିଁ ହୋନ୍ତି ବ୍ୟବସ୍ଥିତ ।
ଜନନୀ ଉଦର ମଧ୍ୟେ ବାଳକ ଯେମନ୍ତ ॥ ୧୩୦ ॥
ଶିଶୁର ବେଷ୍ଟନ ହୁଏ ଯଉଂ ଚର୍ମମୁଣି ।
ମେରୁ ମହୀଧର ଯେ ହୁଅଇ ସେହୁ ପୁଣି ॥ ୧୩୧ ॥
ତାହାର ବାହାର ଆଚ୍ଛାଦନ ଯଉଂ ଚର୍ମ ।
ଯାହାକୁ ଜରାୟୁ ବୋଲି ହେ ମୁନି ଉତ୍ତମ ॥ ୧୩୨ ॥
ସେହୁ ଏକା ହୁଅନ୍ତି ସକଳ ମାହୀଧର ।
ମର୍ଯ୍ୟାଦାକୁ ଆଦି ଯେତେ ଅନେକ ପ୍ରକାର ॥ ୧୩୩ ॥
ସେ ଅଣ୍ଡର ଗର୍ଭରେ ଉଦକ ଯେତେ ଥାଇ ।
ସେ ପୁଣି ସାତ ପ୍ରକାର ସମୁଦ୍ର ବୋଲାଇ ॥ ୧୩୪ ॥
ଚତୁର୍ଦ୍ଦଶ ପୁରି ତହିଁ ହୁଅଇ ବିଖ୍ୟାତ ।
ପର୍ବତ ସମୁଦ୍ର ଦ୍ୱୀପ ଜ୍ୟୋତିରେ ସହିତ ॥ ୧୩୫ ॥

୧୨୫.ଖ. ଅନୁଗ୍ରହ ତ୍ରାସୁ, ୧୩୩.ଖ. ମୁନିଧର,

ସେ ଅଣ୍ଡ ଭିତରେ ପୁଣି ଦେବାସୁର ନର ।
ଏ ରୂପରେ ଅନେକ ରହନ୍ତି ଚରାଚର ।। ୧୩୬ ।।
ଏ ରୂପେ ଅଣ୍ଡ ଭିତରେ ଅନେକ ବ୍ୟବସ୍ଥା ।
ଏବେ କହିବା ବାହାର ଆବରଣ କଥା ।। ୧୩୭ ।।
ଯେବଣ ଅଣ୍ଡ କଟାରେ ଭୂମିର ପ୍ରମାଣ ।
ପଞ୍ଚାସକୋଟି ଯୋଜନ ବିସ୍ତାର ସେ ପୁଣ ।। ୧୩୮ ।।
ତାହାକୁ ଭୂତାଦି ଆଦି ରହନ୍ତି ଘୋଡ଼ାଇ ।
ଗୋଟି ଗୋଟି କରେ ଦଶ ଦଶ ଗୁଣ ହୋଇ ।। ୧୩୯ ।।
ପ୍ରଥମରେ ଜଳ ତାର ହୁଏ ଆଭରଣ ।
ବ୍ରହ୍ମାଣ୍ଡ ଭାଣ୍ଡକୁ ପ୍ରତି ବୃଦ୍ଧି ଦଶ ଗୁଣ ।। ୧୪୦ ।।
ତାହାକୁ ଦଶଗୁଣରେ ବେଢ଼ଇ ଅନଳ ।
ତାହାକୁ ଦଶଗୁଣରେ ଘୋଡ଼ାଇ ଅନିଳ ।। ୧୪୧ ।।
ତାହା ଦଶଗୁଣ ହୋଇ ଆକାଶ ରହଇ ।
ଭୂତାଦି ଅହଂକାର ତା ଦଶ ଗୁଣ ହୋଇ ।। ୧୪୨ ।।
ଭୂତାଦି ଅହଂକାରକୁ ମହତତ୍ତ୍ୱ ପୁଣି ।
ଦଶଗୁଣ ପ୍ରମାଣରେ ହୁଅଇ ତାଙ୍କୁଣୀ ।। ୧୪୩ ।।
ଅବ୍ୟକ୍ତ ତାହାକୁ ପୁଣି ରହଇ ଘୋଡ଼ାଇ ।
ଅପ୍ରମାଣ ସେହୁ ଏତେ ତେତେ ବୋଲି ନାହିଁ ।। ୧୪୪ ।।
ଏ ରୂପେ ଅଣ୍ଡକୁ ଆଦି ମହତତ୍ତ୍ୱ ଯାଏ ।
ସପତାବରଣ ଦଶଦଶ ଗୁଣ ହୁଏ ।। ୧୪୫ ।।
ଯେ ସପ୍ତ ପ୍ରାକୃତ ଆବରଣମାନଙ୍କରେ ।
ଅତିହିଂ ପୃଥୁଳ ସେ ଯେ ହୁଅଇ ନିର୍ଭରେ ।। ୧୪୬ ।।
ଯେହ୍ନେ ନାରିକେଳ ଫଳ ଅନ୍ତର୍ଗତେ ବୀଜ ।
ବାହାରେ ଚୋପା ଆବୃତ ହୋଇ ଦିଶେ ଭିଜ ।। ୧୪୭ ।।
ସେହି ଅନୁକ୍ରମରେ ଯେ ବ୍ରହ୍ମାଣ୍ଡର ସ୍ଥିତି ।
ଆହୁରି କଥାଏ ଏଥୁ ଶୁଣ ମହାଯତି ।। ୧୪୮ ।।
ଏମାନଙ୍କୁ ପ୍ରକୃତି ଯା ରହଇ ଘୋଡ଼ାଇ ।
ଅଷ୍ଟ ଆବରଣ ବୋଲି କେକେ ଛନ୍ତି କହି ।। ୧୪୯ ।।
କେକେ ପ୍ରକୃତିକି ଛାଡ଼ି ସପତ ବୋଲନ୍ତି ।
କେକେମାନେ ଅଣ୍ଡ ବିନା ସପତ କହନ୍ତି ।। ୧୫୦ ।।
ଏମନ୍ତ ପ୍ରକାରେ ପୁଣି ବ୍ରହ୍ମାଣ୍ଡ ଘଟନା ।
ଏଥୁ ଆନ କହିବା ହେ ହୁଅ ଏକମନା ।। ୧୫୧ ।।
ରଜଗୁଣ ଘେନିଣ ଯେ ବିଶ୍ୱେଶ୍ୱର ହରି ।
ଜଗତସର୍ଜନା ଅର୍ଥେ ବ୍ରହ୍ମାଣ୍ଡ ରୂପଧରି ।। ୧୫୨ ।।

୧୩୮.ଖ. ଅଣ୍ଡକ୍ରୋଟ, ୧୪୦.ଖ. ବଳ

ସେ ଅଣ୍ଡ ମଧ୍ୟେ ଆପଣ କରନ୍ତି ବିଜୟେ ।
ସୃଷ୍ଟିମାନ କରନ୍ତି ଯେ ପୁଣି ଯେତେ ହୋଏ ॥ ୧୫୩ ॥
ସତ୍ତ୍ୱ ଗୁଣ ଘେନି କରି କଳ୍ପ ବିକଳ୍ପରେ ।
ବିଷ୍ଣୁ ରୂପେ ପାଳନ୍ତି ଯେ ସେ ପ୍ରତି ଯୁଗରେ ॥ ୧୫୪ ॥
ତହୁଁ କଳ୍ପାନ୍ତରେ ପୁଣି ଦେବ ଜନାର୍ଦ୍ଦନ ।
ତମଗୁଣେ ବହି ମହାପରାକ୍ରମମାନ ॥ ୧୫୫ ॥
ଅତି ଭୟଙ୍କର ରୂପେ ମହାରୁଦ୍ର ହୋଇ ।
ତିନିଲୋକ ଜନଙ୍କୁ ଯେ ଗ୍ରାସ କରିଦେଇ ॥ ୧୫୬ ॥
ସର୍ବ ଭକ୍ଷି ଜଗତକୁ ଏକାର୍ଣ୍ଣବ କରି ।
ନାଗପଲଙ୍କ ଶୟନେ ଶୁଅନ୍ତି ଶ୍ରୀହରି ॥ ୧୫୭ ॥
ଉଠି କରି ପୁଣି ଯେ ସର୍ଜନ୍ତି ବ୍ରହ୍ମା ରୂପେ ।
ଏହି ଅନୁକ୍ରମରେ ସେ ପ୍ରଭୁ କଳ୍ପେ କଳ୍ପେ ॥ ୧୫୮ ॥
ସୃଷ୍ଟି ସ୍ଥିତି ପ୍ରଳୟରେ ବ୍ରହ୍ମା ବିଷ୍ଣୁ ହର ।
ଏ ତିନି ରୂପେ ସେ ଏକା ହୋନ୍ତି ଅବତାର ॥ ୧୫୯ ॥
ପୃଥିବୀକି ଆଦି ଯେତେ ପଞ୍ଚ ମହାଭୂତେ ।
ସମସ୍ତ ଇନ୍ଦ୍ରିୟ ଅନ୍ତଃକରଣ ସହିତେ ॥ ୧୬୦ ॥
ଏ ସର୍ବେ ଅଟନ୍ତି ସେହି ପୁରୁଷ କେବଳ ।
ପୁରୁଷର ଏମାନଙ୍କ ନୁହଇ ବେଗଳ ॥ ୧୬୧ ॥
ଏମନ୍ତ ଅଟନ୍ତି ଯେ ଅବ୍ୟୟ ଦେବ ହରି ।
ଯଉଂ ସ୍ୱକାଶରୁ ଅଛି ବିଶ୍ୱରୂପ ଧରି ॥ ୧୬୨ ॥
ତେଣୁ ନିଜ ଉପଚାରେ ସର୍ଜନାଦି କରେ ।
ସର୍ବଭୂତମାନଙ୍କରେ ଆପଣ ପ୍ରଚରେ ॥ ୧୬୩ ॥
ସେହି ଏକା ସୃଷ୍ଟି ସୃଷ୍ଟିକର୍ତ୍ତାହିଁ ଟି ସେହି ।
ସେହି ଏକା ପାଳନା ସେ ପାଳୁ ଅଛି ମହୀ ॥ ୧୬୪ ॥
ସେହି ଏକା ପ୍ରଳୟ ପ୍ରଳୟକାରୀ ପୁଣି ।
କାର୍ଯ୍ୟ ସେହି କାରଣ ଯେ ସେହି ଚକ୍ରପାଣି ॥ ୧୬୫ ॥
ବ୍ରହ୍ମା ବିଷ୍ଣୁ ଈଶ୍ୱର ଅବସ୍ଥାମାନଙ୍କରେ ।
ଅନେକ ମୁରତି ହେଉଥାନ୍ତି ବ୍ରହ୍ମାଣ୍ଡରେ ॥ ୧୬୬ ॥
ସେ ବରଦବରେଣ୍ୟ ବରିଷ୍ଠ ବିଷ୍ଣୁ ହରି ।
ତାଙ୍କ ବିନା କେହି ନାହିଁ ଶୁଣ ତପଚାରି ॥ ୧୬୭ ॥
ଏ ବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ଅଣ୍ଡ ଉତ୍ପତ୍ତି ଦ୍ୱିତୀୟ ଅଧା ସମାପତ ॥ ୧୬୮ ।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୬୯ ॥

# ତୃତୀୟ ଅଧ୍ୟାୟ

ଏହା ଶୁଣି ମଇତ୍ରେୟ କରି ନମସ୍କାର ।
ପୁଣି ପଚାରନ୍ତି ହେ ଶୁଣିମା ଯୋଗେଶ୍ୱର ।। ୧ ।।
ଯେବଣ ପ୍ରଭୁ ନିର୍ଗୁଣ ପୂର୍ଣ୍ଣ ବ୍ରହ୍ମମୟ ।
ମହାଶୁଦ୍ଧ ନିର୍ମଳାତ୍ମା ପରମ ଅବ୍ୟୟ ।। ୨ ।।
ସେ ପୁଣି ସର୍ଜନା କର୍ମମାନଙ୍କେ କେମନ୍ତେ ।
ପ୍ରବେଶ ହୁଅନ୍ତି ଗୁରୁ ତାହା କହ ମତେ ।। ୩ ।।
ଶିଷ୍ୟତହୁଂ ଏହା ଶୁଣି ପରାଶର ମୁନି ।
ବୋଲନ୍ତି ଯା ପଚାରିଲ ଶୁଣ ମହାମୁନି ।। ୪ ।।
ମଣି ମନ୍ତ୍ର ଅଉଷଧି ଆଦି ଯେତେ ଦ୍ରବ୍ୟ ।
ସେମାନଙ୍କେ ଅଛି ଯେହ୍ନେ ଅତ୍ୟନ୍ତ ପ୍ରଭାବ ।। ୫ ।।
ଅଗ୍ନିରେ ଦାହିକା ଶକ୍ତି ଅଛି ଯେଉଁ ପରି ।
ଶୀତଗୁଣ ଯେମନ୍ତ ବହଇ ପୁଣି ବାରି ।। ୬ ।।
ସେହି ରୂପେ ବହ୍ନି ଠାରେ ସୃଷ୍ଟି କରିବାର ।
ଶକ୍ତି ରହିଅଛି ପୁଣି ଆହେ ଯୋଗେଶ୍ୱର ।। ୭ ।।
ଯେଉଁ ରୂପେ ନାରାୟଣ ପ୍ରଭୁ ଲୋକପତି ।
ବ୍ରହ୍ମା ରୂପେ ସୃଷ୍ଟି କର୍ମେ ପ୍ରବେଶ ହୁଅନ୍ତି ।। ୮ ।।
ତାହା ଏବେ କହିବା ଯେ ଶୁଣ ଏକ ଚିତ୍ତ ।
ନିଜ ଉପଚାର ଘେନି ବ୍ରହ୍ମରୂପେ ଜାତ ।। ୯ ।।
ଉପଚାର କାହାକୁ ବୋଲନ୍ତି ତାହା ଶୁଣ ।
ଯେଉଁ ପରମାୟୁଷ ଏ ବରଷ ପ୍ରମାଣ ।। ୧୦ ।।
ଯାହା ଅଧଅଧକୁଟି ପରାର୍ଦ୍ଧ ଯେ କହି ।
ମହାବିଷ୍ଣୁଙ୍କର କାଳ ରୂପ ଯେ ଅଟଇ ।। ୧୧ ।।
ସେ ଯେଉଁ କାଳ ବ୍ରହ୍ମାର ଆୟୁଷ ପ୍ରମାଣ ।
ସେହି ଏକା ଉପଚାର ଏହା ଭଲେ ଜାଣ ।। ୧୨ ।।
ତାହାର ନିର୍ଣ୍ଣୟ ଏବେ କହିବା ହେ ଯତି ।
ଯେଉଁ ରୂପେ ଯାହା ସଂଖ୍ୟା ଯେତେ କହୁଛନ୍ତି ।। ୧୩ ।।
ଚକ୍ଷୁପଲକ ମାତ୍ରକୁ ନିମିଷ ଯେ କହି ।
ସେ ନିମିଷମାନ ଯେବେ ପଞ୍ଚ ଦଶ ହୋଇ ।। ୧୪ ।।
ତାହାକୁ କାଷ୍ଠାଏ ବୋଲି ପୁଣି ସଂଖ୍ୟା କରି ।
ତିରିସି କାଷ୍ଠାରେ ହୁଏ ଏକ କଳାସରି ।। ୧୫ ।।
ତିରିସି କଳାରେ ପୁଣି ହୁଅଇ ମୁହୂର୍ତ୍ତେ ।
ସେ ତିରିସି ମୁହୂର୍ତ୍ତରେ ଏକ ଅହୋରାତ୍ରେ ।। ୧୬ ।।

୧୬.ଖ. ଶିରିସି ମୁହୂର୍ତ୍ତେ ଏକ ଏକ ଓହୋରାତ୍ରେ

ପନ୍ଦର ଅହୋରାତ୍ରରେ ପକ୍ଷ ନାମ କହି ।
ସେହି ପୁଣି ଶୁକ୍ଳ କୃଷ୍ଣ ଦ୍ୱିବିଧ ଅଟଇ ॥ ୧୭ ॥
ସେ ବେନିପକ୍ଷରେ ପୁଣି ହୁଅଇ ମାସେକ ।
ବେନି ବେନି ମାସରେ ଯେ ଋତୁ ଏକ ଏକ ॥ ୧୮ ॥
ତିନିତିନି ଋତୁରେ ଏକ ଅୟନ ।
ଏ ରୂପେ ଷଡ଼ଋତୁରେ ବେନି ଯେ ଅୟନ ॥ ୧୯ ॥
ମନୁଷ୍ୟମାନଙ୍କ ସଂଖ୍ୟା ଏ ରୂପେ ହୁଅଇ ।
ଦେବମତ ମଈତ୍ରେୟ ଯେବେ ଦେବା କହି ॥ ୨୦ ॥
ମନୁଷ୍ୟ ଦକ୍ଷିଣାୟନ ଦେବତାଙ୍କ ରାତି ।
କକଡାରୁ ଧନୁ ପରିଯନ୍ତେ ଜାଣ ଯତି ॥ ୨୧ ॥
ଉତ୍ତରାୟଣ ଦିବସ ସେହି ରୂପେ ହୁଏ ।
ମକର ସଂକରାନ୍ତିରୁ ସେ ମିଥୁନ ଯାଏ ॥ ୨୨ ॥
ଏମନ୍ତେ ମନୁଷ୍ୟମାନଙ୍କର ବରଷେକ ।
ଅହୋରାତ୍ରେକ ଶୁଆଇ ଦେବତାମାନଙ୍କ ॥ ୨୩ ॥
ଏମନ୍ତେ ଦେବଙ୍କ ବାର ସହସ୍ର ବରଷେ ।
ମନୁଷ୍ୟଙ୍କ ଚାରିଯୁଗ ହୁଅଇ ବିଶେଷେ ॥ ୨୪ ॥
ସେ ଯୁଗ ବିଭାଗମାନ କହିବା ହୋ ଶୁଣ ।
ସତ୍ୟରେ ଚାରି ସହସ୍ର ବରଷ ଯେ ପୁଣ ॥ ୨୫ ॥
ପୂର୍ବସନ୍ଧ୍ୟା ତହିଁରେ ଯେ ଚାରିଶ ବରଷ ।
ପରସନ୍ଧ୍ୟା ଚାରିଶ ଯେ ଏଣେ ସତ୍ୟ ଶେଷ ॥ ୨୬ ॥
ତ୍ରେତାରେ ତିନି ସହସ୍ର ବରଷ ଯେ ପୁଣି ।
ପୂର୍ବ ସନ୍ଧ୍ୟା ତିନିଶ ବରଷ ପରିମାଣି ॥ ୨୭ ॥
ପରସନ୍ଧ୍ୟା ତିନିଶ ଯେ ବରଷ ହୁଅଇ ।
ଏମନ୍ତ ପ୍ରକାରେ ତ୍ରେତାଯୁଗ ଶେଷ ହୋଇ ॥ ୨୮ ॥
ଦ୍ୱାପରେ ଦୁଇ ସହସ୍ର ବରଷ ପ୍ରମାଣ ।
ପୂର୍ବସନ୍ଧ୍ୟା ଦୁଇଶ ବରଷ ଏହା ଜାଣ ॥ ୨୯ ॥
ପରସନ୍ଧ୍ୟା ଦୁଇଶ ଯେ ବରଷ ନିର୍ଣ୍ଣୟ ।
ଏମନ୍ତରେ ଦ୍ୱାପର ଯୁଗର ହୋଏ କ୍ଷୟ ॥ ୩୦ ॥
ତହୁଁ ପୁଣି କଳିରେ ଯେ ସହସ୍ରେ ବରଷ ।
ପୂର୍ବସନ୍ଧ୍ୟା ଶଏଶଏ ପର ସନ୍ଧ୍ୟା ଅଂଶ ॥ ୩୧ ॥
ଏ ରୂପେ ଦେବଙ୍କ ବାର ସହସ୍ର ବରଷେ ।
ମନୁଷ୍ୟଙ୍କ ଚାରିଯୁଗ ହୁଅଇ ବିଶେଷେ ॥ ୩୨ ॥
ସନ୍ଧ୍ୟାସନ୍ଧ୍ୟାଂଶ ଦୁହିଙ୍କ ମଧ୍ୟେ ଯେତଂ କାଳ ।
ତାହାର ନାମଟି ଯୁଗ ଶୁଣ ତପଶୀଳ ॥ ୩୩ ॥

କୃତାଦି ତ୍ରେତା ଦ୍ୱାପର କଳି ଏମାନଙ୍କ ।
ଦଶସହସ୍ର ବରଷ ନିର୍ଣ୍ଣୟ ଦେବଙ୍କ ॥ ୩୪ ॥
ସନ୍ଧ୍ୟା ସନ୍ଧ୍ୟାଂଶ ଦୁଇସହସ୍ରକୁ ମିଶି ।
ଏମନ୍ତେ ବାର ସହସ୍ର ବରଷ ତପସ୍ୱି ॥ ୩୫ ॥
ଏ ବାରସହସ୍ର ବରଷରେ ଚାରିଯୁଗ ।
ସିଦ୍ଧ ପୁଣି ହୋଇଅଛି ଶୁଣ ମହାଭାଗ ॥ ୩୬ ॥
ଏହା ଯେବେ ଏକସ୍ତୋରୀ ଥର ହୋଇଯାଇ ।
ତେଣେ କରି ମନ୍ୱନ୍ତର ଗୋଟିଏ ହୁଅଇ ॥ ୩୭ ॥
ଏ ପୁଣି ସଂଖ୍ୟା ହୁଅଇ ଦେବମାନଙ୍କର ।
ଆଠଲକ୍ଷ ବାବନ ସହସ୍ର ସମ୍ୱତ୍ସର ॥ ୩୮ ॥
ସେ ପୁଣି ତିରିଶି କୋଟି ସତଷଠି ଲକ୍ଷ ।
ବିଂଶ ସହସ୍ର ବରଷ ନରଙ୍କ ପ୍ରତ୍ୟକ୍ଷ ॥ ୩୯ ॥
ଏ ରୂପେ ମନ୍ୱନ୍ତରରେ ମନୁ ମନୁସୁତେ ।
ସପ୍ତଋଷି ଇନ୍ଦ୍ରଆଦି ଯେଉଁ ଦଇବତେ ॥ ୪୦ ॥
ଏକାବେଳେ ଜନ୍ମନ୍ତି ହୁଅନ୍ତି ଅଧିକାରୀ ।
ଅଧିକାରହୀନ ପୁଣ ହୋନ୍ତି ପୂର୍ବ ପରି ॥ ୪୧ ॥
ଏହି ଅନୁକ୍ରମରେ ଯେ ଚତୁର୍ଦ୍ଦଶ ମନୁ ।
ହୋଇ କରି ଯାଆନ୍ତି ଶୁଣହୋ ସିଦ୍ଧ ତନୁ ॥ ୪୨ ॥
ସେ ମନୁ ମାନଙ୍କେ ଗୋଟି ଗୋଟି କରେ କରି ।
ଭୋଗହୁଏ ସେହି ଦିବ୍ୟ ଯୁଗ ଏକସ୍ତୋରୀ ॥ ୪୩ ॥
ସନ୍ଧ୍ୟା ସନ୍ଧ୍ୟାଂଶ ମିଶିଣ ସହସ୍ରେକ ଯୁଗ ।
ଏତେକ ଚଉଦ ମନ୍ୱନ୍ତରେ ହୋଏ ଭୋଗ ॥ ୪୪ ॥
ଏ ଚଉଦ ମନୁ ଯେବେ ଅତିକ୍ରମି ଯାଇ ।
ବ୍ରହ୍ମାଙ୍କର ଦିବସ ଗୋଟିଏ ପୁଣି ହୋଇ ॥ ୪୫ ॥
ସେହି ଦିବସ ଗୋଟିକେ ପୁଣି ତିନିପୁର ।
ସର୍ଜନା କରୁଥାନ୍ତି ସେ ଦେବବେଦବର ॥ ୪୬ ॥
ସେ ଦିବସ ଶେଷେ ରାତ୍ରି ହୋଇଲେ ଉଦୟ ।
ବ୍ରହ୍ମାଙ୍କ ଶୟନ କାଳ ସେ ବନ୍ୟ ପ୍ରଳୟ ॥ ୪୭ ॥
ସେ ସମୟେ ବ୍ରହ୍ମ ନାରାୟଣ ରୂପ ହୋଇ ।
ଅନନ୍ତ ପଲଙ୍କେ ନିଦ୍ରା କରନ୍ତି ଯେ ଯାଇଂ ॥ ୪୮ ॥
ସେ କାଳେ ଅବନି ଭୁବ ସ୍ୱର୍ଗ ତିନିଲୋକ ।
ଏ ସର୍ବ ଦହନ କରେ ଉତ୍ପାତ ପାବକ ॥ ୪୯ ॥
ସେ ସମୟେ ମହଲୋକବାସୀ ଜନ ଯେତେ ।
ଜନଲୋକେ ଯାଇଣ ରହନ୍ତି ତାପଆର୍ତ୍ତେ ॥ ୫୦ ॥

ତହୁଁ ପୁଣି ଏକାର୍ଣ୍ଣବ ହୁଅଇ ତ୍ରିପୁର ।
ଏ ମଧ୍ୟ ପ୍ରାଣୀମାନଙ୍କ ହୋଏ ଅପହାର ॥ ୫୧ ॥
ସେ କାଳେ ଯେତେକ ଯୋଗିଜନ ଲୋକବାସୀ ।
ମହଲୋକବାସୀ ଦେବତାଙ୍କ ସଂଗେ ମିଶି ॥ ୫୨ ॥
ବ୍ରହ୍ମାଙ୍କୁ ହୃଦରେ ଚିନ୍ତା ସମସ୍ତେ କରନ୍ତି ।
ଏଥୁ ଅନନ୍ତରେ ପୁଣି ଦେବବେଦପତି ॥ ୫୩ ॥
ଯେତେବେଳେ ନିଦ୍ରା ପୁଣି ତାଙ୍କର ଭାଜଇ ।
ସେହିକାଳେ ବ୍ରହ୍ମଙ୍କର ଅହୋରାତ୍ର ହୋଇ ॥ ୫୪ ॥
ଏ ରୂପେ ତିରିଶି ଅହୋରାତ୍ରେ ହୁଏ ମାସେ ।
ଦ୍ୱାଦଶ ମାସ ସମ୍ପୂର୍ଣ୍ଣେ ହୁଅଇ ବରଷେ ॥ ୫୫ ॥
ଏହି ଅନୁକ୍ରମରେ ବରଷ ଶତେ ହେଲେ ।
ବ୍ରହ୍ମାର ଏ ପରମାୟୁ ଶୁଣ ମୁନି ଭଲେ ॥ ୫୬ ॥
ଏଥିରୁଂ ଆଦ୍ୟ ପଞ୍ଚାସ ବରଷ ବ୍ରହ୍ମାର ।
ପ୍ରଥମ ପରାର୍ଦ୍ଧ ବୋଲି ଶୁଣ ମୁନିବର ॥ ୫୭ ॥
ସେ ମହାକଳ୍ପଟି ପଦ୍ମକଳ୍ପ ନାମ ତାର ।
ଦ୍ୱିତୀୟ ପରାର୍ଦ୍ଧ ଯେ ବାରାହକଳ୍ପ ସାର ॥ ୫୮ ॥
ଅଦ୍ୟାପି ହୋଇଣ ଅଛି ଏହି କଳ୍ପସିନା ।
ପ୍ରଥମୁ ଏହା ସର୍ଜନା କରିବା କଳ୍ପନା ॥ ୫୯ ॥
ଶ୍ରୀ ବିଷ୍ଣୁପୁରାଣ ଯେ ପ୍ରଥମ ଅଂଶଗୀତ ।
କାଳ ନିର୍ଣ୍ଣୟ ତୃତୀୟ ଅଧ୍ୟା ସମାପତ ॥ ୬୦ ॥
ଚିନ୍ତିଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୬୧ ॥

# ଚତୁର୍ଥ ଅଧ୍ୟାୟ

ଏଥୁ ଅନନ୍ତରେ ଶୁଣିମା ହେ ସାଧୁଜନେ ।
ମୈତ୍ରେୟ କହନ୍ତି ପରାଶରଙ୍କ ବଚନେ ॥ ୧ ॥
ଭୋ ଗୁରୁ ନାରାୟଣାଖ୍ୟ ବ୍ରହ୍ମା ଯଉଂ ରୂପେ ।
ଭୂତମାନଙ୍କୁ ସର୍ଜନା କଲେକ ସେ ଆପେ ॥ ୨ ॥
ତାହା ମତେ ବୁଝାଇ କହିବା ହଉ ଏବେ ।
ଏହା ବୋଲି ଚରଣେ ନମିଲେ ଭକ୍ତିଭାବେ ॥ ୩ ॥
ମଇତ୍ରେୟ ବଚନେ କହନ୍ତି ପରାଶର ।
ଶୁଣବାବୁ ମୁନିଶ୍ରେଷ୍ଠ ବ୍ରହ୍ମଜ୍ଞାନୀ ବର ॥ ୪ ॥
ନାରାୟଣ ନାମରେ ଯେବଣ ସେହୁ ବ୍ରହ୍ମା ।
ପ୍ରଜାପତିମାନଙ୍କ ପତି ସେ ମହାତମା ॥ ୫ ॥
ସେ ଯଉଂ ରୂପେ ସର୍ଜନା କଲେ ଏ ସଂସାର ।
ତାହା ଏବେ କହଇ ତ ଲୟ ବାବୁ କର ॥ ୬ ॥
ଦୈନିକ ପ୍ରଳୟ ଯେତେବେଳେ ଶେଷ ହେଲା ।
ସେହିକାଳେ ବ୍ରହ୍ମାଙ୍କର ନିଦ୍ରା ଯେ ଭାଜିଲା ॥ ୭ ॥
ସତ୍ୱ ଗୁଣେ ଯୁକ୍ତ ହୋଇ ଦେବ ପରମେଷ୍ଠି ।
ଅନାଇଲେ ସର୍ବଶୂନ୍ୟ ନାହିଂ କିଛି ସୃଷ୍ଟି ॥ ୮ ॥
ସାକ୍ଷାତ ନାରାୟଣ ସେ ଅଚିନ୍ତ୍ୟ ପୁରୁଷ ।
ସମସ୍ତଙ୍କ ପ୍ରଭୁ ବ୍ରହ୍ମରଷି ଶ୍ରୀନିବାସ ॥ ୯ ॥
ଅନାଦି ଦେବତା ସର୍ବସମ୍ଭବ ଅଚ୍ୟୁତ ।
ନାରାୟଣ ସିଦ୍ଧି ତାଙ୍କ ଶୁଣ ତପୋବନ୍ତ ॥ ୧୦ ॥
ଜଳମାନେ ସର୍ବେ ନର ମାନଙ୍କର ସୁତ ।
ତେଣୁକରି ନାର ନାମ ହେଲା ତାଙ୍କ ଖ୍ୟାତ ॥ ୧୧ ॥
ସେ ନାର ତାଙ୍କର ପୂର୍ବେ ଅଟଇ ଅୟନ ।
ତେଣୁକରି ବ୍ରହ୍ମଙ୍କର ନାମ ନାରାୟଣ ॥ ୧୨ ॥
ଏମନ୍ତ ପ୍ରଭୁ ଦେଖିଲେ ଯହୁଂ କିଛି ନାହିଂ ।
ଜାଣିଲେ ତ୍ରିପୁରେ ଏକାର୍ଣ୍ଣବ ଅଛି ହୋଇ ॥ ୧୩ ॥
ତେଣୁ ପ୍ରଳୟ ଜଳରେ ବୁଡ଼ିଲା ଅବନି ।
ଏରୂପେ ଅନୁମାନରୁଂ ହୃଦୟରେ ଘେନି ॥ ୧୪ ॥
ସେ ମହୀ ଉଦ୍ଧରିବାକୁ ଇଚ୍ଛା ଯହୁଂ କଲେ ।
ସେ ତନୁ ଛାଡ଼ିଣ ଅନ୍ୟ ତନୁଏ ଧଇଲେ ॥ ୧୫ ॥
କଳ୍ପାଦିମାନଙ୍କେ ଯଉଂ ରୂପେ ପୂର୍ବକାଳେ ।
ମତ୍ସ୍ୟ କୂର୍ମାଦି ଶରୀର ଧରନ୍ତି ଅଖିଳେ ॥ ୧୬ ॥

ସେହିରୂପେ ପରମାତ୍ମା ଦେବ ପ୍ରଜାପତି ।
ଧରି ଦେବ ଯଜ୍ଞମୟ ବରାହ ମୁରତି ॥ ୧୭ ॥
ସର୍ବ ବିଶ୍ୱସ୍ଥିତି ବିଷୟରେ ସ୍ଥିର ରୂପେ ।
ସ୍ଥିତହେଲେ ସେ ଅନାଦି ଦେବ ବ୍ରହ୍ମ ଆପେ ॥ ୧୮ ॥
ସେ କାଳେ କେମନ୍ତ ଶୋଭା ପରଂବ୍ରହ୍ମ ରୂପ ।
ସାକ୍ଷାତ ଅୟନ ମୂଳ ଅକ୍ଷର ସ୍ୱରୂପ ॥ ୧୯ ॥
ଅଧୋଭାଗ ଶରୀର ଯେ ଅର୍ଦ୍ଧମାତ୍ର ଦନ୍ତ ।
ଊର୍ଦ୍ଧ୍ୱ ବିନ୍ଦୁ ଉତ୍ତମାଙ୍ଗେ ସୁନ୍ଦର ଅତ୍ୟନ୍ତ ॥ ୨୦ ॥
ଦେଖୁଦେଖୁ ଧଇଲେ ଯେ ବିଶ୍ୱରୂପ ଗୋଟି ।
ମହଲୋକ ପର୍ଯ୍ୟନ୍ତେ ଶରୀର ଗଲାଘୋଟି ॥ ୨୧ ॥
ଏମନ୍ତ ଅନାଇ ଜନଲୋକବାସୀ ଯେତେ ।
ସିଦ୍ଧ ସନକାଦି ସର୍ବଦେବତା ସହିତେ ॥ ୨୨ ॥
ମୂଳବୀଜରୂପ ଦେଖି କଲେ ମହାସ୍ତୁତି ।
ନମୋନମ ବ୍ରହ୍ମାକ୍ଷର ଅନନ୍ତମୁରତି ॥ ୨୩ ॥
ନମୋନମ ବ୍ରହ୍ମାକ୍ଷର ତ୍ରିଗୁଣ ଆଧାର ।
ନମୋନମ ବ୍ରହ୍ମାକ୍ଷର ତ୍ରିବିଧ ଅକ୍ଷର ॥ ୨୪ ॥
ନମୋନମ ବ୍ରହ୍ମାକ୍ଷର ତ୍ରିପୁର ସ୍ୱରୂପି ।
ନମୋନମ ବ୍ରହ୍ମାକ୍ଷର ବେଦ ତ୍ରୟୀରୂପି ॥ ୨୫ ॥
ନମୋନମ ବ୍ରହ୍ମାକ୍ଷର ସର୍ବମନ୍ତ୍ର ବୀଜ ।
ନମୋନମ ବ୍ରହ୍ମାକ୍ଷର ପରଂବ୍ରହ୍ମତେଜ ॥ ୨୬ ॥
ନମୋନମ ବ୍ରହ୍ମାକ୍ଷର ସର୍ବଲୋକ ବ୍ୟାପୀ ।
ନମୋନମ ବ୍ରହ୍ମାକ୍ଷର ଅବ୍ୟୟ ଅପାପି ॥ ୨୭ ॥
ନମୋନମ ବ୍ରହ୍ମାକ୍ଷର ତ୍ରିକାଳ ଆତ୍ମକ ।
ନମୋନମ ବ୍ରହ୍ମାକ୍ଷର ତ୍ରିକର୍ମ କାରକ ॥ ୨୮ ॥
ନମୋନମ ବିଶ୍ୱତନୁ ସନାତନ ହରି ।
ତୋହର ଶରୀରଭୂତ ଅଟେ ଏ ତ୍ରିପୁରୀ ॥ ୨୯ ॥
ଏହା ପୁନରପି ପ୍ରଭୁ କର ସଂସ୍ଥାପନା ।
ଆମ୍ଭେମାନେ ତୋହର ବିଭୂତି ଭୂତ ସିନା ॥ ୩୦ ॥
ଶ୍ରୀପଦ କମଳେ ନିତ୍ୟେ କରି ଥିବୁ ସେବା ।
ଏହି ଅନୁଗ୍ରହ ପ୍ରଭୁ ସର୍ବଦା କରିବା ॥ ୩୧ ॥
ଏହା ବୋଲି ଋଷିଦେବେ କରନ୍ତେଣ ସ୍ତୁତି ।
ଶୁଣି ପରମଆନନ୍ଦ ପ୍ରଭୁ କୋଳମୂର୍ତ୍ତି ॥ ୩୨ ॥
ବିକ୍ରମ ଗତିରେ ମହାଜଳ ମଧ୍ୟେ ପସି ।
ଆପଣା ଅତ୍ୟନ୍ତ ଉଗ୍ର ମହିମା ବିକାଶି ॥ ୩୩ ॥

ପାତାଳେ ପ୍ରବେଶ ହୋଇ ଧରି ପରାକ୍ରମ ।
ଦନ୍ତେ ଧରା ତୋଳିବାକୁ କରନ୍ତେ ଉଦ୍ୟମ ।। ୩୪ ।।
ସେକାଳେ ପ୍ରଭୁଙ୍କୁ ଦେଖି ଦେବୀ ବସୁନ୍ଧରା ।
ପ୍ରଣାମ କରିଣ ଭକ୍ତି ଭାବେ ହୋଇ ତୋରା ।। ୩୫ ।।
ଅନେକ ପ୍ରକାରେ ତହିଁ ଉଚ୍ଚାରିଲେ ସ୍ତୁତି ।
ନମସ୍ତେ ହେ ସର୍ବଭୂତ ବରାହ ମୂରତି ।। ୩୬ ।।
ନମସ୍ତେ ହେ ଶଙ୍ଖ ଚକ୍ର ଗଦା ପଦ୍ମ କର ।
ନମସ୍ତେ ପରମ ଆତ୍ମା ପୁରୁଷ ପ୍ରବର ।। ୩୭ ।।
ନମସ୍ତେ ପ୍ରଧାନ ବ୍ୟକ୍ତ ଭୂତକାଳ ଭୂତ ।
ସର୍ବଭୂତମାନଙ୍କର କର୍ତ୍ତା ମହାତତ୍ତ୍ୱ ।। ୩୮ ।।
ନମସ୍ତେ ସୃଷ୍ଟି ପାଳନ ବିଲୟ କାରକ ।
ନମୋ ବ୍ରହ୍ମା ବିଷ୍ଣୁ ରୁଦ୍ର ସ୍ୱରୂପ ଧାରକ ।। ୩୯ ।।
ପ୍ରଳୟେ ସକଳ ଚରାଚର ଗର୍ଭେ ଭରି ।
ସମସ୍ତ ଜଗତମାନ ଏକାର୍ଣ୍ଣବ କରି ।। ୪୦ ।।
ଶେଷଶଯ୍ୟାଶାୟୀ ପ୍ରଭୁ ନମସ୍ତେ ଗୋବିନ୍ଦ ।
ମୁନିଙ୍କ ଧ୍ୟାନ ଗୋଚର ଶ୍ରୀପରମାନନ୍ଦ ।। ୪୧ ।।
ତୁମ୍ଭଠାରୁଁ ଆନ ହୋଇ କରି ଯେଉଁ ରୂପ ।
ତାହା କେହି ନ ଜାଣନ୍ତି ହେ ବିଶ୍ୱସ୍ୱରୂପ ।। ୪୨ ।।
ଅବତାରମାନଙ୍କରେ ଯେଉଁ ତୁମ୍ଭ ମୂର୍ତ୍ତି ।
ତାହା ଏକା ଦେବତାଏ ସନ୍ତତେ ପୂଜନ୍ତି ।। ୪୩ ।।
ହେ ପରଂବ୍ରହ୍ମ ତୁମ୍ଭଙ୍କୁ ଆରାଧନା କରି ।
ମୁକ୍ତିମାନେ ଲଭନ୍ତି ମୁମୁକ୍ଷୁ ତପଚାରୀ ।। ୪୪ ।।
ହେ ବାସୁଦେବ ତୁମ୍ଭର ଆରାଧନା ବିନା ।
କେ ଅବା ମୋକ୍ଷ ଲଭିଛି ଆଜ୍ଞାହୋଉ କିନା ।। ୪୫ ।।
ଯଥା କିଞ୍ଚିତ କରିଣ ଘେନିବା ମନରେ ।
ଯେ ଅଗ୍ରାହୀ ଚକ୍ଷୁ ଆଦି ଇନ୍ଦ୍ରିୟ ମାନରେ ।। ୪୬ ।।
ବୁଦ୍ଧିରେ କରି ଯାହାକୁ ନିଃସନ୍ଦେହେ ଜାଣି ।
ସେ ସର୍ବରୂପ ତୁମ୍ଭର ଦେବ ଚକ୍ରପାଣି ।। ୪୭ ।।
ମୁଁ ତୁମ୍ଭ ଶରୀରମୟ ତୁମ୍ଭେ ମୋ ଆଧାର ।
ମୋହର ଉଦ୍ଧାର ଅର୍ଥେ ତୁମ୍ଭ ଅବତାର ।। ୪୮ ।।
ତୁ ମହତ୍ତ୍ୱ ତୋ ଆଶ୍ରିତେ ମୁହିଁ ମହୀଦେବୀ ।
ତୋ ଘେନି ସମସ୍ତେ ମତେ ବୋଲନ୍ତି ମାଧବୀ ।। ୪୯ ।।
ମତେ ଏବେ ଉଦ୍ଧର ଏ ମହାଜଳୁଁ ହରି ।
ପୂର୍ବେ ତୋହର ସଂଚିତ ସିନା ବସୁନ୍ଧରୀ ।। ୫୦ ।।

୪୭.କ. ବନ୍ୟ

ମୋ' ଆଦିକରି ପଞ୍ଚଭୂତମାନେ ଯେତେ ।
ସେହିରୂପେ ସର୍ବେ ଜନ୍ମିଛନ୍ତି ବିଧିମତେ ॥ ୫୧ ॥
ତେଣୁ ତତ୍ତ୍ୱ ଅଖିଳ ଜ୍ଞାନମୟ ହେ ଅବ୍ୟୟ ।
ହେ ଜଗତ ସ୍ଥୂଳରୂପୀ ଜୟଯୁକ୍ତ ହୁଅ ॥ ୫୨ ॥
ଜୟ ଜୟ ଅନନ୍ତ ଅବ୍ୟକ୍ତବ୍ୟକ୍ତମୟ ।
ହେ କାର୍ଯ୍ୟକାରଣ ରୂପ ପ୍ରଭୁ ଅନାମୟ ॥ ୫୩ ॥
ଜୟ ଜୟ ବିଶ୍ୱାତ୍ମା ହେ ଜୟ ଯଜ୍ଞପତି ।
ତୁମ୍ଭେ ଯଜ୍ଞ ତୁମ୍ଭେ ବଷଟ୍‌କାର ଦିବ୍ୟମୂର୍ତ୍ତି ॥ ୫୪ ॥
ତୁମ୍ଭେ ପ୍ରଣବ ଅକ୍ଷର ତୁମ୍ଭେ ଅଗ୍ନିତ୍ରୟ ।
ତୁମ୍ଭେ ବେଦବେଦାଙ୍ଗ ହେ ଦେବ ଜଗନ୍ମୟ ॥ ୫୫ ॥
ତୁମ୍ଭେ ଯଜ୍ଞ ପୁରୁଷ ସୂର୍ଯ୍ୟାଦି ନବଗ୍ରହ ।
ତୁମ୍ଭେ ସର୍ବ ତାରା ସର୍ବ ନକ୍ଷତ୍ର ବିଗ୍ରହ ॥ ୫୬ ॥
ତୁମ୍ଭେ ପରିମାଣଯୋ ଅପରିମାଣ ପୁଣି ।
ତୁମ୍ଭେ ଦୃଶ୍ୟ ତୁମ୍ଭେ ଅଦୃଶ୍ୟ ହେ ଚକ୍ରପାଣି ॥ ୫୭ ॥
ମୁଁ ଏଥେ ଯାହା ବୋଇଲି ନବୋଇଲି ଯାହା ।
ସେ ସର୍ବ ଆପଣ ଏକା ଆହେ ଚଉବାହା ॥ ୫୮ ॥
ନମସ୍ତେ ନମସ୍ତେ ଦେବ ପୁରୁଷଉତ୍ତମ ।
ନମସ୍ତେ ତୁମ୍ଭଙ୍କୁ ପୁନଃପୁନ ନମୋନମ ॥ ୫୯ ॥
ଏ ରୂପରେ ମହୀ ଦେବୀ କରନ୍ତେଣ ସ୍ତୁତି ।
ଶୁଣି ପରମସନ୍ତୋଷ ଅବନୀର ପତି ॥ ୬୦ ॥
ସାମ ଧ୍ୱନିରେ ଘର୍ଘର କରି ଗର୍ଜି ଉଠି ।
ଶବଦରେ ପୂର୍ଣ୍ଣହେଲା ଜଳାର୍ଣ୍ଣବଗୋଟି ॥ ୬୧ ॥
ପ୍ରକାଶ କମଳପରି ବିକାଶି ଲୋଚନ ।
ମହାବରାହ ମୂରତି ଭାବ ବିମୋଚନ ॥ ୬୨ ॥
ତହୁଁ ପୁଣି ଦନ୍ତ ଅଗ୍ରେ ଅବନୀକି ଧରି ।
ରସାତଳୁ ଉଦ୍ଧରି ଉତ୍ପଳ ଦଳ ପରି ॥ ୬୩ ॥
ମହାଜଳ ଭିତରୁଂ ଯେ ହୋଇଲେ ବାହାର ।
ଦୁତି ନୀଳାଚଳ ପ୍ରାଏ ମହା କଳେବର ॥ ୬୪ ॥
ଉଠିକରି ପ୍ରଭୁ ବିଶ୍ୱରୂପେ ଉଭା ହେଲେ ।
ପ୍ରଖରତର ନିଃଶ୍ୱାସ ଏକ ପକାଇଲେ ॥ ୬୫ ॥
ସେ ମହା ନିଃଶ୍ୱାସେ ଲାଗି ପ୍ରଳୟ ଉଦକ ।
ଆନ୍ଦୋଳିତ ହୋଇ ଉର୍ଦ୍ଧ୍ୱେ ଉଡ଼ିଲା ଅନେକ ॥ ୬୬ ॥
ଜନଲୋକ ପର୍ଯ୍ୟନ୍ତକୁ ବିନ୍ଦୁମାନ ଚଳି ।
ତହିଁଥିଲେ ଯେତେ ଯୋଗି ଋଷି ସଙ୍ଗେ ମିଳି ॥ ୬୭ ॥

୫୭.ଖ. ପରିମାଣବେତ୍ତା ପରିମାଣ

ସେ ସର୍ବେ ହତ କଲ୍ମଷ ହୋଇଥିଲେ ହେଲେ ।
ସ୍ନାନ କରାଇଲା ସେମାନଙ୍କୁ ଅବହେଳେ ।। ୬୮ ।।
ତେଣେ କରି ସର୍ବେ ହେଲେ ଅତ୍ୟନ୍ତ ନିର୍ମଳ ।
ସମସ୍ତଙ୍କୁ ପ୍ରକାଶିଲା ମହାଦ୍ୟୁତି ଜଳ ।। ୬୯ ।।
ଯେତେବେଳେ ଶ୍ରୀମହାବରାହଜଳୁଁ ଉଠି ।
ରୋମଦ୍ଗମ କରି ଆର୍ଦ୍ର କୁକ୍ଷିଗଳପିଠି ।। ୭୦ ।।
ବେଦମୟ ଶରୀରୁଁ ସଲିଳ ଦେଲେ ଝାଡ଼ି ।
ଜନଲୋକ ପର୍ଯ୍ୟନ୍ତେ ରୋମାଳି ଗଲା ବଢ଼ି ।। ୭୧ ।।
ସେ କାଳରେ ସନକାଦି ଯେତେ ମୁନିମାନେ ।
ରୋମାଞ୍ଚରେ ରହିଣ ଅତ୍ୟନ୍ତ ପ୍ରୀତମନେ ।। ୭୨ ।।
ନାନାରୂପେ ସେବାକଲେ ସ୍ତୁତି ଉପଚାରେ ।
ବିଶ୍ୱରୂପ ଯହୁଁ ଅନାଇଲେ ନୟନରେ ।। ୭୩ ।।
ମହଲୋକ ପର୍ଯ୍ୟନ୍ତେ ପୂରିଲା କଳେବର ।
ମହାଜଳ ଭିତରେ ଯେ ଅଛଇ ପୟର ।। ୭୪ ।।
ସେ କାଳେ ଖୁର ଘାତରେ ପାତାଳ ବିଦାରି ।
କେତେ ମହାଜଳ ଅଧୋଭାଗେ ନେଇଁ ଭରି ।। ୭୫ ।।
ନିଶ୍ୱାସ ବାତରେ ଯେ କେତେକେତେ ନାଶ ଗଲେ ।
ଏ ରୂପରେ ମହାଜଳ ଉଣାକୁ ଭଜିଲେ ।। ୭୬ ।।
ଏମନ୍ତ କରନ୍ତେ ସେ ବରାହ ମହାରୂଷୀ ।
ତାରାକ୍ଷର ନାଦରେ ସକଳ ଦିଗ ବ୍ୟାପି ।। ୭୭ ।।
ଉନ୍ନତ ନେତ୍ରେ ଚାହାନ୍ତେ ଏମନ୍ତ ଅନାଇଁ ।
ଯେତେ ସିଦ୍ଧଯୋଗୀମାନେ ଜନଲୋକେ ଥାଇ ।। ୭୮ ।।
ଅତିଶୟ ସ୍ତୁତି କଲେ ସନ୍ତୋଷ ଚିତ୍ତରେ ।
ଭକ୍ତିରେ ନମ୍ରକନ୍ଧର ହୋଇ କଷ୍ଟରେ ।। ୭୯ ।।
ଜୟ ଜୟ ଈଶ୍ୱରଙ୍କ ପରମ ଈଶ୍ୱର ।
ଗଦା ଶଙ୍ଖ ଅସି ଚକ୍ରପାଣି ଧରାଧର ।। ୮୦ ।।
ଜୟ ସୃଷ୍ଟି ପାଳନା ସଂହାର ହେତୁ ଭୂତ ।
ଜୟ ଜୟ କେଶବ ହେ ଅନନ୍ତ ଅଚ୍ୟୁତ ।। ୮୧ ।।
ଜୟ ଜୟ ଈଶ୍ୱରହେ ଶ୍ରୀପରମାନନ୍ଦ ।
ତୁମ୍ଭଠାରୁଁ ଅନ୍ୟ ନାହିଁ ଯେ ପରମପଦ ।। ୮୨ ।।
ନମୋନମୋ ଯଜ୍ଞ ରୂପୀ ପରମପୁରୁଷ ।
ଚାରିବେଦ ଯାହାର ପାଦରୂପରେ ପ୍ରକାଶ ।। ୮୩ ।।
ମହାଉଚ୍ଚଦଂଷ୍ଟ୍ର ବେନି ଯୂପ ଯୁଗ୍ମ ଯାର ।
ଅନ୍ୟ ଦନ୍ତ ଶ୍ରେଣୀ ସର୍ବ ଯଜ୍ଞ ଅବତାର ।। ୮୪ ।।

ବଦନ ଅନଳ ସ୍ଥାନ ହୁତାସନ ଜିହ୍ୱ ।
କଳେବର ରୋମାଳି ଯାହାର ଚାରୁ ଦର୍ଭ ।। ୮୫ ।।
ନୟନ ବେନି ଦିବସ ରଜନୀ ଯାହାର ।
ସମସ୍ତ ଆଶ୍ରୟ ପରଂବ୍ରହ୍ମ ଯାହାଶିର ।। ୮୬ ।।
ସ୍କନ୍ଧ ପ୍ରଦେଶ କେଶର ବୈଷ୍ଣବାଦିମାନେ ।
ସର୍ବହବି ଘ୍ରାଣ ରୂପ ତୁମ୍ଭର ବିଧାନେ ।। ୮୭ ।।
ସ୍ରୁଚତୁଣ୍ଡ ସାମସ୍ୱର ସୁଗମ୍ଭୀର ନାଦ ।
ଅଗ୍ନିଶାଳା ପୂର୍ବଭାଗ କଳେବର ମଧ ।। ୮୮ ।।
ଶରୀରା ସକଳ ସନ୍ଧି ସର୍ବଯାଗ ମାନ ।
ସ୍ମାର୍ତ୍ତ ଧର୍ମ ବଇଷ୍ଣବ ଧର୍ମ ବେନି କର୍ଣ୍ଣ ।। ୮୯ ।।
ଏମନ୍ତେ ଯଜ୍ଞବରାହ ରୂପ ବିଦ୍ୟମାନ ।
ହେ ନିତ୍ୟାତ୍ମା ଭଗବନ୍ତ ହୁଅସି ପ୍ରସନ୍ନ ।। ୯୦ ।।
ହେ ମହାବିକ୍ରମ ଗତି ସର୍ବବିଶ୍ୱମୂର୍ତ୍ତି ।
ବିଶ୍ୱର ପରମେଶ୍ୱର ଚରାଚରପତି ।। ୯୧ ।।
ସୃଷ୍ଟି ସ୍ଥିତି ସଂହାରକର୍ତ୍ତା ଏ ବୋଲିକରି ।
ଆପଣଙ୍କୁ ଜାଣୁ ଆମ୍ଭେ ହେ ନିତ୍ୟବିହାରି ।। ୯୨ ।।
ଏ ସମସ୍ତ ଭୂମଣ୍ଡଳ ତୁମ୍ଭ ଦଂଷ୍ଟ୍ର ମୁନେ ।
ଶୋଭାପାଇବାରୁ ଏହା ପ୍ରତେ ହୋଏ ମନେ ।। ୯୩ ।।
ପଦ୍ମବନେ ଖେଳିବା ଗଜର ଦନ୍ତ ଶିଖେ ।
ପଙ୍କଜ ସହିତରେ କି ପଙ୍କଜ ପତ୍ର ଲାଗେ ।। ୯୪ ।।
ଆହେ ଅତୁଳ ପ୍ରଭାବ ମହୀ ସୁର ଲୋକ ।
ଏ ଦୁହିଂଙ୍କ ମଧରେ ଯେ ଅନ୍ତର ଯେତେକ ।। ୯୫ ।।
ସେ ତୁମ୍ଭ ତନୁରେ କରି ହୋଇଛି ବ୍ୟାପିତ ।
ହେ ବିଶ୍ୱବ୍ୟାପ୍ତି ସମର୍ଥ ମହାଦୀପ୍ତିବନ୍ତ ।। ୯୬ ।।
ଏଣୁ ଯେ ସଂସାର ହିତ ନିମିତ୍ତରେ ହୁଅ ।
ହେ ମହାପ୍ରଭୁ ଆମ୍ଭରେ ଅନୁଗ୍ରହ ବହ ।। ୯୭ ।।
ଜଗତର ଆପଣ ଏକଇ ପରମାର୍ଥ ।
ତୁମ୍ଭବିନା ଅନ୍ୟ ହୋଇ ନାହିଂଟି ପଦାର୍ଥ ।। ୯୮ ।।
ଏମନ୍ତ ପ୍ରକାର ଅଟେ ମହିମା ତୁମ୍ଭର ।
ଯେଣେ କରି ବ୍ୟାପିତ ହୋଇଛି ଚରାଚର ।। ୯୯ ।।
ସଂସାରେ ଏ ଯେତେ ମୂର୍ତ୍ତି ଦୃଶ୍ୟ ହୋଉଛନ୍ତି ।
ଜ୍ଞାନାତ୍ମାମାନେ ତୁମ୍ଭର କରିଣ କହନ୍ତି ।। ୧୦୦ ।।
ଯୋଗୀ ନୁହନ୍ତି ଯେତେକ ସେହୁ ଭ୍ରମଜ୍ଞାନେ ।
ଜଗତକୁ ଭୂତମୟ ଦେଖନ୍ତି ନୟନେ ।। ୧୦୧ ।।

ଜ୍ଞାନରୂପ ଅଟଇ ଏ ସକଳ ସଂସାର ।
ଅର୍ଥରୂପେ ଏହାକୁ ଦେଖନ୍ତି ଯେତେ ନର ।। ୧୦୨ ।।
ସେହିମାନେ ଅପଣ୍ଡିତ କେବଳ ଅଟନ୍ତି ।
ସଂସାର ସାଗରେ ପଡ଼ି ଭ୍ରମି ମରୁଥାନ୍ତି ।। ୧୦୩ ।।
ଯେଉଁଲୋକେ ଜ୍ଞାନବନ୍ତ ଅତି ଶୁଦ୍ଧଚେତା ।
ସେହିମାନେ ଏକା ଏହା କରନ୍ତି ଅନ୍ୟଥା ।। ୧୦୪ ।।
ତୋହ ରୂପ ଅଟଇ ଯେ ଏ ସର୍ବ ସଂସାର ।
ଜ୍ଞାନାତ୍ମକ ଏହାକୁ ବୋଲନ୍ତି ସର୍ବେଶ୍ୱର ।। ୧୦୫ ।।
ଏଣୁ କରି ସର୍ବାତ୍ମା ଆପଣ ଏକା ହରି ।
ପ୍ରସନ୍ନ ହୁଅ ସଂସାର ହିତ ଅର୍ଥେ କରି ।। ୧୦୬ ।।
ଏ ମହୀକି ଉଦ୍ଧର ହେ କମଳଲୋଚନ ।
ଦିଅ ଆମ୍ଭମାନଙ୍କୁ ଅତୁଳ ସୁଖମାନ ।। ୧୦୭ ।।
କହୁଛନ୍ତି ପରାଶର ଶୁଣ ମହାଯତି ।
ସନକାଦି କରନ୍ତେ ଏମନ୍ତ ରୂପେ ସ୍ତୁତି ।। ୧୦୮ ।।
ଶୁଣି ସେ ପରମଆତ୍ମା ଦେବ ମହିଧର ।
ଅତ୍ୟନ୍ତ ପ୍ରସନ୍ନ ହୋଇ ଜଗତସୋଦର ।। ୧୦୯ ।।
ମହାଦାନ୍ତ ଅଗ୍ରେ ଧରି ଥିଲେ ଯେଉଁ ମହୀ ।
ପ୍ରଳୟ ଜଳେଣ ବେଗେ ଦେଲେକ ପକାଇ ।। ୧୧୦ ।।
ସେ ମହାଜଳ ଉପରେ ପଡ଼ି ବସୁନ୍ଧରା ।
ରହିଲା ଦମ୍ଭରେ ମହାନଉକାର ପରା ।। ୧୧୧ ।।
ଶରୀର ବିସ୍ତାରହେତୁ ନ ବୁଡ଼ିଲା ଜଳେ ।
ଏଥୁଁ ପୁଣି ଅନାଦି ପୁରୁଷ ସେହି କାଳେ ।। ୧୧୨ ।।
କ୍ଷିତିକି ସମାନ କରି ପୁଣି ତା ଉପରେ ।
ସମସ୍ତ ଗିରି ରଖିଲେ ଯଥା ବିଭାଗରେ ।। ୧୧୩ ।।
ପୂର୍ବରେ ସର୍ଜନା ହୋଇଥିଲା ଯେଉଁପରି ।
ଯେମନ୍ତ ଦ୍ୱୀପ ବିଭାଗ ଯହିଁ ଯେତେ ଗିରି ।। ୧୧୪ ।।
ସତ୍ୟ ପ୍ରଭାବରେ କରି ସେ ସତ୍ୟ ବ୍ୟଞ୍ଜିତ ।
ଅବନୀରେ ସମଜିନା କଲେକ ବହୁ ।। ୧୧୫ ।।
ଏ ରୂପେ ସପତ ଦ୍ୱୀପ ଭୂମି ଭାଗମାନ ।
ଯଥାକ୍ରମରେ କରିଣ ଦେବଜନାର୍ଦ୍ଦନ ।। ୧୧୬ ।।
ତହୁଁ ପୁଣି ଭୂର୍ବ ସ୍ୱର୍ଗ ଆବରପାତାଳ ।
ପୂର୍ବପରି ଏହାଙ୍କୁ କଳ୍ପିଲେ ଆଦିମୂଳ ।। ୧୧୭ ।।
ଭୂମି ଆଦି ଏରୂପେ ହୁଅନ୍ତେ ଚାରିଲୋକ ।
ତହିଁ ଉତ୍ତାରେଣ ପୁଣି ତ୍ରିପୁର ନାୟକ ।। ୧୧୮ ।।

ବରାହତନୁ ଉପେଖି ରଜଗୁଣେ କରି ।
ବ୍ରହ୍ମ ରୂପ ପୁଣି ଯେ ଧଇଲେ ପୂର୍ବପରି ॥ ୧୧୯ ॥
ତହୁଁ ଚତୁବର୍ଗଧର ହରି ଭଗବାନ ।
ଯଥା ଅନୁରୂପରେ ଯେ କଲେ ସୃଷ୍ଟିମାନ ॥ ୧୨୦ ॥
ଦ୍ରବ୍ୟମାନଙ୍କରେ ଯେ ସର୍ଜନା କର୍ମ ଯେତେ ।
ତାହାଙ୍କ ନିମିତ୍ତ ମାତ୍ର ହେଲେ ଏ ଜଗତେ ॥ ୧୨୧ ॥
ଯେଣୁ କରି ପ୍ରଧାନ କାରଣ ଭୂତ ହୋଇ ।
ଦ୍ରବ୍ୟଶକ୍ତିମାନେ ଛନ୍ତି ସବୁକାଳେ ରହି ॥ ୧୨୨ ॥
ନିମିତ୍ତମାତ୍ର କାହାକୁ ବୋଲି ତାହା ଶୁଣ ।
ସେହୁ ପୁଣି ଅଟଇ ମୁକ୍ତିର ଏକ ଗୁଣ ॥ ୧୨୩ ॥
ଯେଣୁ ଅନ୍ୟ କଥା କିଛି ଅପେକ୍ଷା ନ କରେ ।
ସୂକ୍ଷ୍ମକୁ ସ୍ଥୂଳ କରଇ ଆପଣା ଶକ୍ତିରେ ॥ ୧୨୪ ॥
ଏହିଟି ନିମିତ୍ତ ମାତ୍ର ଶୁଣ ମଇତ୍ରେୟ ।
ଏରୂପରେ ବିଷ୍ଣୁ କରି ତ୍ରିପୁର ଉଦୟ ॥ ୧୨୫ ॥
ବ୍ରହ୍ମ ସ୍ୱରୂପରେ ପୁଣି କଲେ ଚରାଚର ।
ପ୍ରତି ବନ୍ୟ ପ୍ରଳୟରେ ଏହି କ୍ରମ ତାର ॥ ୧୨୬ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶ ଗୀତ ।
ମହୀଉଦ୍ଧାର ଚତୁର୍ଥ ଅଧା ସମାପତ ॥ ୧୨୭ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୨୮ ॥

# ପଞ୍ଚମ ଅଧ୍ୟାୟ

ଏଥୁ ପୁଣି ମଇତ୍ରେୟ ପରାଶର ଆଗେ ।
ପଚାରନ୍ତି ଭୋ ଗୁରୁ କହିବା ଅନୁରାଗେ ॥ ୧ ॥
ତିନିପୁର ସଂସ୍ଥାପନା ଅନ୍ତେ ବେଦବର ।
କି ରୂପରେ ସର୍ଜନା କଲେ ଚରାଚର ॥ ୨ ॥
ଦେବଋଷି ପିତୃକୁଳ ଦାନବ ମାନବେ ।
ତିର୍ଯ୍ୟକ ପାଦପ ଗୁଳ୍ମ ଲତାଦି ଯେତେ ଜୀବେ ॥ ୩ ॥
ଖେଚର ଭୂଚର ଜଳଚରମାନେ ଯେତେ ।
ଏମାନଙ୍କୁ ସର୍ଜନା କଲେ କଉଂ ମତେ ॥ ୪ ॥
ଯାହାର ଯେମନ୍ତ ଗୁଣ ଯେମନ୍ତ ସ୍ୱଭାବ ।
ଯଉଂ ଯଉଂ ରୂପେ ଯେଯେ ହୋଇଲେ ସମ୍ଭବ ॥ ୫ ॥
ସେ ସମସ୍ତ ମତେ ଗୁରୁ କହିବା ବିସ୍ତାରି ।
ଏହାବୋଲି ଭକ୍ତିଭାବେ ପ୍ରଣାମ ଆଚରି ॥ ୬ ॥
ଶିଷ୍ୟଙ୍କର ବଚନେ କହନ୍ତି ପରାଶର ।
ଯାହା ପଚାରିଲ ବାବୁ ତପସ୍ୱୀ କୁମର ॥ ୭ ॥
ତା କହିବା ଶୁଣ ସମାହିତ ମନାହୋଇ ।
ଯେଉଂରୂପେ ସର୍ଜିଲେ ସାବିତ୍ରୀଦେବୀ ସାଇଁ ॥ ୮ ॥
ଦେବତାଙ୍କୁ ଆଦିକରି ସର୍ବ ଚରାଚର ।
ଯେମନ୍ତ ପ୍ରକାରେ ହେଲା ଶୁଣ ମୁନିବର ॥ ୯ ॥
କଳ୍ପାଦିମାନଙ୍କେ ପୂର୍ବକାଳେ ଯଉଂପରି ।
ସୃଷ୍ଟିମାନ କଲେକ ସେ ରୂପେ କୁଶଧାରୀ ॥ ୧୦ ॥
ସର୍ଜନା ବିଷୟେ ଚିନ୍ତା କରନ୍ତେ ହୃଦରେ ।
ଆନୁପୂର୍ବକ ହୋଇ କରନ୍ତି ପ୍ରଥମରେ ॥ ୧୧ ॥
ତମମୟ ସର୍ଗ ଏକ ହୋଇଲାକି ଜାତ ।
ସେ ପଞ୍ଚ ପର୍ବ ଅବିଦ୍ୟା ହୋଇ ହେଲା ଖ୍ୟାତ ॥ ୧୨ ॥
ତମ ମୋହ ମହାମୋହ ତାମିସ୍ର ଏଚାରି ।
ପଞ୍ଚମେ ଅନ୍ଧ ତାମିସ୍ର ସୁଣ ତପଚାରି ॥ ୧୩ ॥
ଅବିଦ୍ୟାର ପର୍ବମାନେ ଏ ପାଞ୍ଚ ପ୍ରକାର ।
ସହିତ କରିଣ ଜାତ କଲେ ବେଦବର ॥ ୧୪ ॥
ଜନ୍ମ ହୋଇ ରହିଲେ ଯେ ଅବିଦ୍ୟା ସଙ୍ଗରେ ।
କଉଂ କଉଂ ମାନେ ସେ ଯେ ଶୁଣସି ବିସ୍ତାରେ ॥ ୧୫ ॥
ଅନାତ୍ମ ଦେହେ ଯେ କରେ ଆତ୍ମା ଅଭିମାନ ।
ତାହାକୁଟି ତମ ବୋଲନ୍ତି ହୋ ତପୋଧନ ॥ ୧୬ ॥

୨ଖ. ଜନ୍ମ କଲେ ଏହାଙ୍କୁ ଶୁଣ ହେ ତପିବର, ୧୨.ଖ. ସର୍ଗ

ମୁଁ କେବଳ ପ୍ରଭୁ ବୋଲି ଯେଉଁ ଗର୍ବ କଥା ।
ସେହି ଏକା ମୋହ ଏହା ନୁହଇ ଅନ୍ୟଥା ॥ ୧୭ ॥
ଶ୍ରଦ୍ଧାକୁ ଆଦି କରିଣ ଭୋଗ ଇଛା ଯେତେ ।
ମହାମୋହ ବୋଲି ତାକୁ କହନ୍ତି ଜଗତେ ॥ ୧୮ ॥
ସେ ଭୋଗ ଇଚ୍ଛା ନୋହିଲେ ଦୁଃଖ ହୋଏ ଯାହା ।
ତାମିସ୍ର ନାମରେ ଖ୍ୟାତ ହୋଇଅଛି ତାହା ॥ ୧୯ ॥
ସେ ଶ୍ରଦ୍ଧା ବିଭୋଗ ନାଶଯିବା ଆଶଙ୍କାରେ ।
ନିତ୍ୟକ୍ଲେଶପାଏ ଯେ ତା ରଖିବା ଅର୍ଥରେ ॥ ୨୦ ॥
ତାହାକୁ ଅନ୍ଧ ତାମିସ୍ର ବୋଲିକରି କହେ ।
ଏହି ରୂପେ ପଞ୍ଚ ବୃତ୍ତି ପଞ୍ଚପର୍ବ ହୁଏ ॥ ୨୧ ॥
ଏ ପଞ୍ଚ ପର୍ବ ସଂଯୋଗୀ ଅବିଦ୍ୟାକୁ ପୁଣି ।
ଜାତକଲା ଅନ୍ତେ ବିଚାରିଲେ କୁଶପାଣି ॥ ୨୨ ॥
ବୋଇଲେ ଏ ନୋହିଲା ସାଧକ ସର୍ଗକିଛି ।
ଅବିଦ୍ୟାରେ ରାଗଦ୍ୱେଷ କ୍ଲେଶ ପୁରିଅଛି ॥ ୨୩ ॥
ମୋହାଦି ପାଞ୍ଚ ପ୍ରକାରେ ଅଛି କ୍ଲେଶ ଭାବ ।
ଏଣୁ ଏମାନଙ୍କେ କେଉଁ କାର୍ଯ୍ୟ ଅବା ହେବ ॥ ୨୪ ॥
ଏମନ୍ତ ପ୍ରକାରେ ନିଜ ହୃଦୟରେ ପାଞ୍ଚି ।
ତହୁଁ ପୁନରପି ଧ୍ୟାନ କଲେକ ବିରଞ୍ଚି ॥ ୨୫ ॥
ସେକାଳେ ଅତ୍ୟନ୍ତ ତମମୟ ହୋଇକରି ।
ନଗାତ୍ମକ ଯେ ସ୍ଥାବର ସର୍ଗ ଅବତରି ॥ ୨୬ ॥
ପାଞ୍ଚପ୍ରକାରେ ହୋଇଣ ଜନ୍ମିଲା ସେ ସର୍ଗ ।
ବୃକ୍ଷଗୁଳ୍ମ ଲତା ବିରୁଧାଦି ତୃଣବର୍ଗ ॥ ୨୭ ॥
ଦେବତାଙ୍କ ଆଦ୍ୟେ ଯେହ୍ନୁ ନଗେ ହେଲେ ଜାତ ।
ତେଣୁ ସକଳଙ୍କ ମୁଖ୍ୟ ହେଲେ ସେ ସମସ୍ତ ॥ ୨୮ ॥
ସେ ହେତୁରୁ ମୁଖ୍ୟ ସର୍ଗ ହୋଇଲାକ ସେହି ।
ତହିଂ କେଉଁଣସି କାର୍ଯ୍ୟ ନ ଦେଖିଲେ ବିହି ॥ ୨୯ ॥
ପୂର୍ବେ ପର୍ବତଙ୍କ ପକ୍ଷଛେଦନ ଉତ୍ତାରୁ ।
ଜାତହୋଇ ସ୍ଥାବର ହୋଇଲେ ସର୍ବ ତରୁ ॥ ୩୦ ॥
ତେଣୁକରି ତହିଂ ନରହିଲା ଅନ୍ତର୍ଭାବ ।
ସୁଖାଦି ବିଷୟ ଯା ନକଲେ ଅନୁଭବ ॥ ୩୧ ॥
ବହିର୍ଭାବ ଯାହା ବୋଲି ଶବ୍ଦାଦି ବିଷୟ ।
ତେଣେକରି ଅପ୍ରକାଶ ହେଲେ ଅତିଶୟ ॥ ୩୨ ॥
ପୁଣିହିଂ ଅପ୍ରତିବୋଧବନ୍ତ ସର୍ବେ ହେଲେ ।
ମୁହିଂକେ ଏ ଯେଉଁ ବିବେକ ତା ନ ଜାଣିଲେ ॥ ୩୩ ॥

ଏହା ଦେଖି ବିଧାତା ଯେ ଜ୍ଞାନରେ ବିଚାରି ।
କିଛି ସାଧ ନୁହଇ ଏମାନଙ୍କରେ କରି ।। ୩୪ ।।
ଏମନ୍ତ ବୋଲି ପୁଣି ହିଁ ବସି ଧ୍ୟାନ କଲେ ।
ସେକାଳେ ତିର୍ଯ୍ୟକ ସ୍ରୋତ ଏକ ଜନ୍ମାଇଲେ ।। ୩୫ ।।
ଯହିଁରୁ ତିର୍ଯ୍ୟକ ଜନ୍ତୁମାନେ ହୋନ୍ତି ଜାତ ।
ତେଣୁ ସେ ହେଲା ତିର୍ଯ୍ୟକ ସ୍ରୋତ ନାମେ ଖ୍ୟାତ ।। ୩୬ ।।
ସେ ପୁଣି ନାନା ପ୍ରକାରେ ପଶୁମାନେ ଯେତେ ।
ତମଗୁଣରେ ଅଧିକ ଅଜ୍ଞାନୀ ସମସ୍ତେ ।। ୩୭ ।।
ମିଥ୍ୟା କଥାମାନଙ୍କୁ ମଣନ୍ତି ସତ ପ୍ରାୟେ ।
ପ୍ରବର୍ତ୍ତନ୍ତି ସବୁକାଳେ ଅମାର୍ଗ ବିଷୟେ ।। ୩୮ ।।
ସର୍ବେ ଅହଂକାର ଯୁକ୍ତ ମହାଅଭିମାନୀ ।
ଏମନ୍ତେ ଅଷ୍ଟବିଂଶତି ହେଲେ ପଶୁଯୋନି ।। ୩୯ ।।
ସୁଖି ବିଷୟେ ପ୍ରକାଶ ସମସ୍ତଙ୍କ ଜ୍ଞାନ ।
ଇଛା ଭ୍ରମଣ ଆହାର ନିଦ୍ରା ମଇଥୁନ ।। ୪୦ ।।
ପରସ୍ପରେ ସମସ୍ତେ ଯେ ଅଟନ୍ତି ଆବୃତ ।
ଜାତି ସଂଗମାନଙ୍କୁ ନଛାଡ଼ି କଦାଚିତ ।। ୪୧ ।।
ଏ ରୂପେ ତିର୍ଯ୍ୟକ ସ୍ରୋତ ଯହୁଁ ହେଲା ଜାତ ।
ତାକୁ ପୁଣି ଅସାଧ୍ୟକ ମଣି ଲୋକତାତ ।। ୪୨ ।।
ପୁନରପି ଅନ୍ତର୍ଗତେ କରନ୍ତେଣ ଧ୍ୟାନ ।
ସେକାଳରେ ଉର୍ଦ୍ଧ୍ୱସ୍ରୋତ ହୋଇଲା ଉତ୍ପନ୍ନ ।। ୪୩ ।।
ତହୁଁ ପୁଣି ଦେବସର୍ବେ ସତ୍ତ୍ୱ ଗୁଣେ ଜାତ ।
ଜାତ ହୋଇଣ ଉର୍ଦ୍ଧ୍ୱରେ ହୋଇଲା ସେ ସ୍ଥିତ ।। ୪୪ ।।
ସେ ଦେବ ସର୍ଗୁଁ ଦେବତାମାନେ ସର୍ବେ ହେଲେ ।
ମହାସୁଖି ପ୍ରୀତିବନ୍ତ ସମସ୍ତେ ହୋଇଲେ ।। ୪୫ ।।
ବାହାର ଅନ୍ତର୍ଗତରେ ସୁପ୍ରକାଶ ଜ୍ଞାନ ।
ସନ୍ତୁଷ୍ଟ ଆତ୍ମା ସକଳେ ଶୁଣ ତପୋଧନ ।। ୪୬ ।।
ଏମନ୍ତ ପ୍ରକାରେ ଯଉଂ ଦେବସର୍ଗ ହେଲା ।
ବ୍ରହ୍ମାଙ୍କ ପ୍ରୀତି ତହିଁରେ ସେକାଳେ ହୋଇଲା ।। ୪୭ ।।
ବିଚାରିଲେ ମନରେ ସାଧକ ସର୍ଗ ଏହି ।
ପୁଣି ଅନ୍ତର୍ଗତେ ଚିନ୍ତା କଲେକ ଯେ ବିହି ।। ୪୮ ।।
ଉତ୍ତମ ସାଧକ ସର୍ଗ କରନ୍ତେଣଧ୍ୟାନ ।
ହୃଦୟଗତେ ସ୍ମରଣ କରି ଭଗବାନ ।। ୪୯ ।।
ସେ କାଳରେ ଅବ୍ୟକ୍ତରୁ ହୋଇଲା ସମ୍ଭୂତ ।
ସାଧକ ଅଟଇ ଯେ ଅର୍ବାକ ନାମେ ସ୍ରୋତ ।। ୫୦ ।।

୩୮ .ଖ. ଅମାର୍ଗ ରିପୁଏ

ତହିଁରୁ ମନୁଷ୍ୟମାନେ ହୁଅନ୍ତି ସମ୍ଭବ ।
ସେହିଟି ଅର୍ବାକ ସ୍ରୋତ ସର୍ଗଙ୍କ ଦୁର୍ଲ୍ଲଭ ।। ୫୧ ।।
ତହୁଁ ଯେତେ ଜନ୍ମିଲେ ସେ ଅତ୍ୟନ୍ତ ପ୍ରକାଶ ।
ତମଗୁଣରେ ସମ୍ପୂର୍ଣ୍ଣ ରଜଗୁଣେ ବଶ୍ୟ ।। ୫୨ ।।
ତେଣୁକରି ଯେଣୁ ଦୁଃଖ ବହୁତ ତାଙ୍କର ।
ପୁନଃ ପୁନଃ କର୍ମଶୀଳ ସେମାନେଟି ନର ।। ୫୩ ।।
ଶବ୍ଦାଦି ବିଷୟେ ସୁଖାଦିରେ ଯେଉଁ ଜ୍ଞାନ ।
ତେଣେକରି ପ୍ରକାଶ ହୁଅନ୍ତି ପ୍ରତିଦିନ ।। ୫୪ ।।
ସେ ସମସ୍ତେ ସାଧକ ଅଟନ୍ତି ସର୍ବୋପରି ।
ଏମନ୍ତ ପ୍ରକାରେ ପଞ୍ଚସର୍ଗ ଅବତରି ।। ୫୫ ।।
ପୂର୍ବର ପ୍ରଧାନ ତତ୍ତ୍ୱ ମହତତ୍ତ୍ୱ ଘେନି ।
ସୃଷ୍ଟି ଅର୍ଥ ଜନମ ହୋଇଲେ ଯେଉଁ ବେନି ।। ୫୬ ।।
ତାହା ମିଶି କରିଣ ହୋଇଲେ ସର୍ବେ ସାତ ।
ଏଥିରେ ସପ୍ତମ ସର୍ଗେ ମାନବେ ସମ୍ଭୂତ ।। ୫୭ ।।
ତହିଁ ଉତ୍ତାରେଣ ଚିନ୍ତା କରନ୍ତେ ଲୋକେଶ ।
ଅନୁଗ୍ରହ ସର୍ଗ ସତ୍ୱ ଗୁଣରେ ପ୍ରକାଶ ।। ୫୮ ।।
ତମଗୁଣ ପୁଣି ତା'ର ଅଟଇ ପ୍ରଧାନ ।
ଅଷ୍ଟମ ସର୍ଗ ବୋଲିଣ ଏହା ମନେ ଘେନ ।। ୫୯ ।।
ଏଥିରୁ ବୈକୃତ ସର୍ଗ ପାଞ୍ଚ ଯେ ଅଟଇ ।
ଆଉ ତିନିସର୍ଗକୁ ପ୍ରାକୃତ ବୋଲି କହି ।। ୬୦ ।।
ଏମନ୍ତରେ ପୁଣି ଧ୍ୟାନ କରନ୍ତେଣ ବିହି ।
ନବମେ କୁମାର ସର୍ଗ ତହୁଁ ଜାତ ହୋଇ ।। ୬୧ ।।
ସନତ କୁମାର ତହୁଁ ହୋଇଲେ ଜନମ ।
ତେଣୁକରି କୁମାର ହୋଇଲେ ସର୍ଗ ନାମ ।। ୬୨ ।।
ପ୍ରାକୃତ ସର୍ଗହି ସେହି ବିକୃତହି ସେହି ।
ତହୁଁ ସ୍ୱଇଚ୍ଛାରେ ରୁଦ୍ର ସର୍ଗ ଜାତ ହୋଇ ।। ୬୩ ।।
ଜାତ ମାତ୍ରେ କୌମାର ସର୍ଗରେ ଅନ୍ତର୍ଭୂତ ।
ଏମନ୍ତରେ ନବସର୍ଗ ଶୁଣ ତପୋବନ୍ତ ।। ୬୪ ।।
ପ୍ରଜାପତି ସର୍ଗମାନେ ଜାତ ଏ ରୂପରେ ।
ପ୍ରାକୃତ ବୈକୃତ ଏଯେ ବେନି ପରକାରେ ।। ୬୫ ।।
ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ଯେବଣ ସଂସାର ।
ତାହା ମୂଳହେତୁଟି ଏମାନେ ମୁନିବର ।। ୬୬ ।।
ଏ ରୂପେ କହିଲୁ ସର୍ଗମାନଙ୍କ ବ୍ୟବସ୍ଥା ।
ଏଥୁ ଯାହା ପଚାରିବ କହିବା ସେ କଥା ।। ୬୭ ।।

୬୧.କ. କରନ୍ତେଣ ମହୀ

ପରାଶର ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
ପୁଣି ମଇତ୍ରେୟ ସବିନୟ ଭାବେ ଭଣି ॥ ୬୮ ॥
ଭୋଗୁରୁ ଦେବତା ଆଦି ଯେତେ ସର୍ଗମାନ ।
ସଂକ୍ଷେପରେ ଏ ସମସ୍ତ କଲ ଅବଧାନ ॥ ୬୯ ॥
ଏବେ ବିସ୍ତାର କରିଣ ଆପଣଙ୍କଠାରୁଂ ।
ଶୁଣିବାକୁ ଇଚ୍ଛା ମୋ କହିବା ହୋଉ ଗୁରୁ ॥ ୭୦ ॥
ମଇତ୍ରେୟ ବଚନେ କହନ୍ତି ପରାଶର ।
ଯାହା ପଚାରିଲ ମୁନି ତହିଂ ଚିତ୍ତ କର ॥ ୭୧ ॥
ଦେବତାଦି ସ୍ଥାବର ପର୍ଯ୍ୟନ୍ତେ ଏ ସଂସାରେ ।
ଏମାନେ ଚାରିପ୍ରକାର ଅଟନ୍ତି ବେଭାରେ ॥ ୭୨ ॥
ଶୁଭାଶୁଭ ପୂର୍ବ କର୍ମମାନଙ୍କରେ କରି ।
ଏ ସମସ୍ତେ ହୁଅନ୍ତିଟି ଶୁଣ ତପୋଚାରି ॥ ୭୩ ॥
ବ୍ରହ୍ମାଙ୍କର ମନରୁ ସର୍ବେ ହୁଅନ୍ତିଟି ଜାତ ।
କର୍ମାନୁଗତ ବୁଦ୍ଧିରେ ହୁଅନ୍ତେ ସଂଗତ ॥ ୭୪ ॥
ସେ ପ୍ରଜାମାନେ କେବେ ହେ ମୁକ୍ତିକି ନ ପାନ୍ତି ।
ପ୍ରଳୟ ସମୟେ ପୁଣି ସର୍ବେ ନାଶଯାନ୍ତି ॥ ୭୫ ॥
ଏରୂପେ ମାନସ ସୃଷ୍ଟି ଚାରିପରକାର ।
ଏହା କରିବାରେ ଇଚ୍ଛା କରି ବେଦବର ॥ ୭୬ ॥
ଦେବାସୁର ପିତୃନର କୁଳ ସର୍ଜିବାରେ ।
ପ୍ରତିଥର ତନୁ ତ୍ୟକ୍ତ କରିଣ ଜଳରେ ॥ ୭୭ ॥
ତନୁ ଗୋଟି ଗୋଟିକରେ ଏକ ଏକ କୁଳ ।
କି ରୂପେ ସର୍ଜିଲେ ତା ଶୁଣ ହେ ତପଶୀଳ ॥ ୭୮ ॥
ତମଗୁଣ ତନୁଧରି ଯହୁଂ ଇଚ୍ଛା କଲେ ।
ତେଣୁ ଆଦ୍ୟେ ଜଘନୁ ଅସୁରେ ଜନମିଲେ ॥ ୭୯ ॥
ଅସୁରଙ୍କୁ ଦେଖିଣ ସେ ତମମୟ ଦେହ ।
ଜଳମଧେ ତ୍ୟକ୍ତ କଲେ ଲୋକପିତାମହ ॥ ୮୦ ॥
ତ୍ୟକ୍ତମାତ୍ରକେ ସେ ତନୁ ହୋଇଲା ରଜନୀ ।
ତହୁଂ ପୁଣି ବ୍ରହ୍ମା ସତ୍ୱମୟ ତନୁ ଘେନି ॥ ୮୧ ॥
ମନରେ ସୃଷ୍ଟିକି ଇଚ୍ଛା କରିବା ସମୟେ ।
ମୁଖରୁଂ ଜନମ ହେଲେ ସର୍ବ ଦେବତାଏ ॥ ୮୨ ॥
ସେମାନେ ଅଟନ୍ତି ସତ୍ୱଗୁଣରେ ନିଯୁକ୍ତ ।
ଦେଖି ପରମେଷ୍ଠି ହେଲେ ମହାପ୍ରୀତିବନ୍ତ ॥ ୮୩ ॥
ତହୁଂ ଜଳେ ସେ ତନୁକୁ କରନ୍ତେଣ ଭିନ୍ନ ।
ସେ ପୁଣି ସତ୍ୱଗୁଣରେ ହୋଇଲାକ ଦିନ ॥ ୮୪ ॥

ଏଣୁକରି ଦେବତା ଦିବସେ ବଳବନ୍ତ ।
ରାତ୍ରେ ବଳିଷ୍ଠ ହୁଅନ୍ତି ଅସୁର ଯାବତ ॥ ୮୫ ॥
ତହୁଁ ଉତ୍ତାରେଣେ ପୁଣି ଆନ କଳେବର ।
ସତ୍ୱ ଲେଶେ ଯୁକ୍ତ କରି ଧରି ବେଦବର ॥ ୮୬ ॥
ଜଗତକୁ ପିତୃପ୍ରାୟେ ମଣି ଚିନ୍ତାକଲେ ।
ସେ କାଳରେ ପୁଣି ପିତୃଗଣେ ଜନମିଲେ ॥ ୮୭ ॥
ପିତୃଜାତ ଅନ୍ତେ ଜଳେ ଛାଡ଼ନ୍ତେ ଶରୀର ।
ସନ୍ଧ୍ୟାହୋଇ ସେ ପୁଣି ହୋଇଲା ଅବତାର ॥ ୮୮ ॥
ଜାତହୋଇ ଦିନ ରାତି ମଧରେ ରହିଲା ।
ଏଥୁଁ ଶୁଣିମା ପ୍ରଭାତ କି ରୂପରେ ହେଲା ॥ ୮୯ ॥
ତହୁଁ ପୁଣି ରଜଗୁଣ ତନୁ ଧରି ବିହି ।
ବିଚାରନ୍ତେ ରାଜସୁଁ ମନୁଷ୍ୟେ ଜାତ ହୋଇ ॥ ୯୦ ॥
ଆପେ ଉଭା ହୁଅନ୍ତେ ସନ୍ତୋଷେ ବେଦବର ।
ସେକାଳେ ଜଳେ ସେ ତନୁ କଲେକ ଅନ୍ତର ॥ ୯୧ ॥
ତ୍ୟକ୍ତ ମାତ୍ରକେ ସେହିଟି ହୋଇଲା ପ୍ରଭାତ ।
ରଜନୀ ଦିବସ ଦୁହିଁଙ୍କର ମଧେ ସ୍ଥିତ ॥ ୯୨ ॥
ଏଣୁକରି ସାୟଂକାଳେ ପିତୃଙ୍କର ବଳ ।
ପ୍ରଭାତେ ବଳବତର ମନୁଷ୍ୟ ସକଳ ॥ ୯୩ ॥
ଏମନ୍ତେ ଦିନ ରଜନୀ ସନ୍ଧ୍ୟା ପ୍ରାତଃ ଚାରି ।
ବ୍ରହ୍ମାଙ୍କର ଶରୀର ତ୍ରିଗୁଣୁ ଅବତରି ॥ ୯୪ ॥
ତହୁଁ ପୁଣି ପିତାମହ ରଜଗୁଣ କରି ।
ଅଦ୍ୟ ତନୁଏ ଧରନ୍ତେ ସୃଷ୍ଟିକି ବିଚାରି ॥ ୯୫ ॥
ଧ୍ୟାନମାତ୍ରକରେ କ୍ଷୁଧା ହୋଇଲାକ ଜାତ ।
ତେଣେକରି କୋପ ପୁଣି ହୋଇଲା ସମ୍ଭୂତ ॥ ୯୬ ॥
ତହୁଁ ପୁଣି ବିଧାତା ଯେ ବିରୂପାଦି ଯେତେ ।
ଅନ୍ଧକାରେ ଜନମ କଲେକ ବହୁମତେ ॥ ୯୭ ॥
ନିଶଦାଢ଼ିମାନଙ୍କରେ ଭୟଙ୍କର ସର୍ବେ ।
କ୍ଷୁଧାତୁରେ ବ୍ରହ୍ମା ଉପରକୁ ମତ୍ତ ଗର୍ବେ ॥ ୯୮ ॥
ସେକାଳରେ ଧାଇଁଲେ ଯେ ଭକ୍ଷିବା ଲୋଭରେ ।
ସେ ସମୟେ ଯେଯେମାନେ ତାହାଙ୍କ ଭିତରେ ॥ ୯୯ ॥
ବୋଇଲେ ଏହାଙ୍କୁ ରଖ ଏମନ୍ତ ନକର ।
ତେଣୁ ସେମାନେ ଧଇଲେ ରାକ୍ଷସ ଶରୀର ॥ ୧୦୦ ॥
ଆନମାନେ ଯେହୁ ପୁଣି ଖାଇବା ବୋଇଲେ ।
ସେକାଳେ ସେହେତୁଁ ସେ ଯେ ଯକ୍ଷ ବୋଲାଇଲେ ॥ ୧୦୧ ॥

ଏରୂପେ ତାହାଙ୍କୁ ଅନାଇଣ ବେଦପତି ।
ଅପ୍ରିୟ କରିଣ ଦେଖି ନ ଘେନିଲେ ପ୍ରୀତି ॥ ୧୦୨ ॥
କ୍ରୋଧେ ନିଜ ଶିରୁ କେଶମାନ ଛିଣ୍ଡାଇଲେ ।
ଶିରୁଂହୀନ ହେବାରୁ ସେ ଅଭିମାନ ହେଲେ ॥ ୧୦୩ ॥
ପୁନରପି ଶିରରେ ଯେ ସର୍ପ ବୋଲି ବାରେ ।
ସର୍ପ ନାମ ବହିଣ ସେ ଭ୍ରମିଲେ ସଂସାରେ ॥ ୧୦୪ ॥
ତାହା ଦେଖି ବିଧାତା ଯେ ମହାକ୍ରୋଧ ହେଲେ ।
ସେ କ୍ରୋଧରୁଂ କ୍ରୋଧ ଆତ୍ମାମାନେ ଜନମିଲେ ॥ ୧୦୫ ॥
ବର୍ଣ୍ଣରେ ଅତି ପିଙ୍ଗଳ ମହା ଉଗ୍ର ଭାବ ।
ଜାତିରେ ପିଶାଚମାନେ ଭୂତ ସେ ସ୍ୱଭାବ ॥ ୧୦୬ ॥
ତହିଂ ଉଚ୍ଚାରେଣ ବଚନକୁ ବେଦପତି ।
ଯେତେବେଳେ ପାନ କଲେ ସେ ସମୟେ ଯତି ॥ ୧୦୭ ॥
ଜନ୍ମ ହେଲେ ଯଉଂମାନେ ସେ ସର୍ବେ ଗନ୍ଧର୍ବ ।
ଏରୂପେ ସର୍ଜନା କରି ଅନାଦି ସମ୍ଭବ ॥ ୧୦୮ ॥
ମହାମାୟା ଶକ୍ତିରେ ଯେ ଯୁକ୍ତ ହୋଇକରି ।
ନିଜ ବୟସରୁ ପକ୍ଷିମାନ ଜାତ କରି ॥ ୧୦୯ ॥
ପୁଣି ବକ୍ଷସ୍ଥଳୁଂ ଜାତ କଲେ ମେଷମାନ ।
ଛାଗମାନେ ବଦନରୁଂ ହୋଇଲେ ଉତ୍ପନ୍ନ ॥ ୧୧୦ ॥
ବେନି ପାରୁଶରୁ ନିଜ ଉଦରରୁ ପୁଣି ।
ଗୋରୁମାନଙ୍କୁ ଜନମ କଲେ କୁଶପାଣି ॥ ୧୧୧ ॥
ବେନି ଚରଣରୁ ଗଜ ବାଜି ଓଟ ଖର ।
ଗୟଳ ମୃଗ ବିଶେଷ କଲେକ ସତ୍ୱର ॥ ୧୧୨ ॥
ଇତ୍ୟାଦି ପଶୁ ଜାତିକି କଲେକ ଜନମ ।
ଫଳମୂଳାଦି ଔଷଧି ଜାତ କଲେ ରୋମ ॥ ୧୧୩ ॥
କଳ୍ପାଦିରେ ତ୍ରେତା ମୁଖେ ହୋଏ ଯେତେ ଯାଗ ।
ତହିଂକି ଯେତେକ ଦ୍ରବ୍ୟ ହୁଏ ପୁଣ ଯୋଗ୍ୟ ॥ ୧୧୪ ॥
ସେ ସମସ୍ତ ସୃଷ୍ଟିକାଳେ ବ୍ରହ୍ମା କଲେ ଜାତ ।
ପଶୁ ଔଷଧିକି ଆଦି ଯେ ଦ୍ରବ୍ୟ ଯାବତ ॥ ୧୧୫ ॥
ଏମନ୍ତ ପ୍ରକାରେ ଗ୍ରାମ୍ୟ ବନ୍ୟ ଜୀବ ଯେତେ ।
ସକଳ ସର୍ଜନାମାନ କଲେ ବିଧିମତେ ॥ ୧୧୬ ॥
ଗୋରୁ ଛାଗ ମେଷ ଅଶ୍ୱ ଖର ଅଶ୍ୱତର ।
ପୁରୁଷକୁ ଆଦି ଗ୍ରାମ୍ୟ ଏ ଯେତେପ୍ରକାର ॥ ୧୧୭ ॥
ଶ୍ୱାପଦରେ ବ୍ୟାଘ୍ର ଆଦି ଦ୍ୱିଖୁରେ ମୃଗାଦି ।
କୁଞ୍ଜର ବାନର ପକ୍ଷୀ ଆଦି ଯେ ପ୍ରସିଦ୍ଧି ॥ ୧୧୮ ॥

ଏମାନଙ୍କୁ ଆରଣ୍ୟକ ପଶୁ ବୋଲି କହି ।
ଏହିରୂପେ ତପସ୍ୱି ଅନେକଛନ୍ତି ରହି ॥ ୧୧୯ ॥
ଏ ବାହାରେ ଜଳଚର ବିଳଚର ଯେତେ ।
ନକ୍ରାଦି ସରିସୃପାଦି ଜନ୍ମିଲେ ସମସ୍ତେ ॥ ୧୨୦ ॥
ଗାୟତ୍ରୀ ଛନ୍ଦ ଋଗ୍‌ବେଦରୁ କ୍ରିୟା ବ୍ରତ ଜ୍ଞାନ ।
ଯଜ୍ଞ ସାମରଥାନ୍ତର ଏଣେ ବିଦ୍ୟମାନ ॥ ୧୨୧ ॥
ଯାଗମାନଙ୍କର ଅଗ୍ନିଷ୍ଟୋମ ଆଦିକର୍ମ ।
ବ୍ରହ୍ମାଙ୍କ ପ୍ରଥମ ମୁଖୁ ହୋଇଲେ ଜନମ ॥ ୧୨୨ ॥
ଯଜୁର୍ବେଦମାନେ ତ୍ରୟିଷ୍ଟୁଭ ଛନ୍ଦ ଯେତେ ।
ପଞ୍ଚଦଶାବୃତ ସାମବୃହସ୍ସାମ ଯେତେ ॥ ୧୨୩ ॥
ସୋମସଂସ୍ଥା ସମେତେ ଦକ୍ଷିଣ ମୁଖୁ ଜାତ ।
ପୁଣ ପଶ୍ଚିମ ମୁଖରୁଂ ଯେ ହେଲେ ସମ୍ଭୂତ ॥ ୧୨୪ ॥
ସାମବେଦମାନେ ଯେ ଜଗତି ଛନ୍ଦସ୍ତୋମ ।
ସପ୍ତଦଶ ଆବୃତ୍ତରେ ଯେହୁ ଅନୁପମ ॥ ୧୨୫ ॥
ବୈରୂପ ଅତିରାତ୍ର ଯେ ସୋମ ସଂସ୍ଥା ଏତେ ।
ପଶ୍ଚିମ ମୁଖରୁ ଜନ୍ମ ହେଲେ ଏ ସମସ୍ତେ ॥ ୧୨୬ ॥
ଏକବିଂଶାବୃତ ସାମ ଅଥର୍ବ ଯେ ବେଦ ।
ସୋମ ସଂସ୍ଥା ବିଶେଷ ଯେ ଅନୁଷ୍ଟୁପଛନ୍ଦ ॥ ୧୨୭ ॥
ବୈରାଜ ସାମ ଆଦି ଯେ ଉତ୍ତରମୁଖରୁ ।
ଜାତ କରିଥିଲେ ଯେ ଜଗତଜନ ଗୁରୁ ॥ ୧୨୮ ॥
ଏ ବାହାରେ ଅନେକ ଭୂତାଦିଗଣମାନେ ।
ଗାତ୍ରମାନଙ୍କରୁଂ ଜାତ କଲେ ପଦ୍ମାସନ ॥ ୧୨୯ ॥
ଏ ରୂପେ ଦେବ ଅସୁର ପିତୃ ଯେ ମନୁଷ୍ୟ ।
ଯକ୍ଷ ପିଶାଚ ଗନ୍ଧର୍ବ ଅପ୍ସରା ବିଶେଷ ॥ ୧୩୦ ॥
ଅଶ୍ୱ ଜଘନ ନରାଦି କିନ୍ନର ଯେ ରକ୍ଷ ।
ପକ୍ଷୀ ପଶୁ ମୃଗ ସର୍ପ ଲତା ତୃଣ ବୃକ୍ଷ ॥ ୧୩୧ ॥
ଚଳାଚଳ ଆଦି କରି ଯେ ସ୍ଥାଣୁ ଜଙ୍ଗମ ।
ଏ ସର୍ବ ସର୍ଜନା କରି ପୁରୁଷଉତ୍ତମ ॥ ୧୩୨ ॥
ସେମାନଙ୍କ କର୍ମମାନେ ଯାହାରି ଯେ ପୁଣି ।
ପୂର୍ବ ସରଜନାରୁଂ ବିହିଲେ ପରିମାଣି ॥ ୧୩୩ ॥
ହିଂସା ଅହିଂସା ଦୁହିଂରେ ମୃଦୁରେ କ୍ରୂରରେ ।
ଋତ ଅନୃତରେ ଧର୍ମ ଅଧର୍ମ ପ୍ରଚରେ ॥ ୧୩୪ ॥
ଏ ଷଡ଼୍‌କର୍ମମାନଙ୍କୁ ଜାତ କଲେ ବିହି ।
ଯେ ଯହିଂକି ଯୋଗ୍ୟ ତାହାଠାରେ ତାକୁ ଦେଇ ॥ ୧୩୫ ॥

ହିଂସାକର୍ମଟି ମାରଣ ଅହିଂସା ରକ୍ଷଣ ।
କାୟିକ କର୍ମ ବୋଲିଣ ଏହା ଭଲେ ଜାଣ ॥ ୧୩୬ ॥
ମୃଦୁଭାବ ସଦୟ ଯେ କ୍ରୂରଟି ନିର୍ଦ୍ଦୟ ।
ଯେ ମାନସକର୍ମ ବୋଲି ଘେନ ହେ ତନୟ ॥ ୧୩୭ ॥
ଋତଗୁଣ ସତ୍ୟଟି ଅନୃତଗୁଣ ମିଛ ।
ବାଚିକ କର୍ମ ଏହାକୁ ବୋଲିଟି ପ୍ରତ୍ୟକ୍ଷ ॥ ୧୩୮ ॥
ଏମାନଙ୍କେ ଧର୍ମାଧର୍ମ ଯେମନ୍ତେ ବର୍ତ୍ତନ୍ତି ।
ତାହା ପରିପାଟୀ କରି କହିବା ହେ ଯତି ॥ ୧୩୯ ॥
କଉଂଠାରେ ହିଂସା ଯେ ପରମ ଧର୍ମ ହୋଇ ।
ଦେଖ ଯାଗାଦିରେ ପଶୁ ବଧ ସମ୍ଭବଇ ॥ ୧୪୦ ॥
କଉଂଠାରେ ଅହିଂସା ଯେ ଅଟଇ ଅଧର୍ମ ।
ପର ଯୁବତୀଙ୍କର ସଙ୍ଗମ ଯଉଂକର୍ମ ॥ ୧୪୧ ॥
କଉଂଠାରେ ମୃଦୁଭାବ ଅଧର୍ମ ଅଟଇ ।
ନୃପତି ଯାହା ଚୌରାଦିମାନଙ୍କୁ ରଖଇ ॥ ୧୪୨ ॥
କଉଂଠାରେ କ୍ରୂରଗୁଣ ଅଟଇଟି ଧର୍ମ ।
ପ୍ରତିଜ୍ଞାପ୍ରତାପିତ ହୋଇଲେ ନୃପତି ସତ୍ତମ ॥ ୧୪୩ ॥
କଉଂଠାରେ ସତ୍ୟ ପୁଣି ଅଧର୍ମକୁ ଯାଇ ।
ବିପ୍ର ବଧ ବିଷୟେ ଯା ପ୍ରତିଜ୍ଞା ହୁଅଇ ॥ ୧୪୪ ॥
ବ୍ରାହ୍ମଣାଦିମାନଙ୍କର ରକ୍ଷଣ ବିଷୟେ ।
ମିଥ୍ୟା ହେଲେହେଂ ସେ ପୁଣି ମହାଧର୍ମ ହୁଏ ॥ ୧୪୫ ॥
ଏ ରୂପରେ ଧର୍ମାଧର୍ମ ହିଂସାଦିରୁଂ ଜାତ ।
ସେ ଦୁହିଂଙ୍କ ଗ୍ରହଣ ଯେ ଭିନ୍ନ ଭିନ୍ନ ମତ ॥ ୧୪୬ ॥
ସେ ହିଂସାଦି କର୍ମମାନେ ଭଜିଲେ ପ୍ରାଣିଙ୍କି ।
ଯଉଂ ଯଉଂମାନେ ଯୋଗ୍ୟ ହୋଇଲେ ଯହିଂକି ॥ ୧୪୭ ॥
ସେହେତୁଂ ଅଦ୍ୟାପି ଦେଖ ଯଉଂ ବାସନାରେ ।
ଯଉଂମାନେ ହୁଅନ୍ତି ସେ ରୁଚେ ତାଙ୍କଠାରେ ॥ ୧୪୮ ॥
ଯେରୂପେ ବାସନା ଅନୁସାରେ ପୁଣି ବିହି ।
ପ୍ରାଣୀରେ ଫଳ ତୃଣାଦି ନାନା ଭୋଗ ଦେଇ ॥ ୧୪୯ ॥
ଦେବତାଙ୍କୁ ଆଦି କରି ଯେତେ ପ୍ରାଣିମାନେ ।
ସେମାନଙ୍କ ରୂପନାମ କଲେ ଭିନ୍ନେ ଭିନ୍ନେ ॥ ୧୫୦ ॥
କାର୍ଯ୍ୟମାନ ପ୍ରବର୍ତ୍ତାଇଲେ କ ନାନା ମତେ ।
ସୃଷ୍ଟି ଆଦ୍ୟେ ବେଦରୁ ପ୍ରକାଶ କଲେ ଏତେ ॥ ୧୫୧ ॥
ଋଷିମାନଙ୍କର ଯଉଂରୂପେ ନାମମାନ ।
ନିଗମଶାସ୍ତ୍ର ମତରେ ଯେମନ୍ତ ବିଧାନ ॥ ୧୫୨ ॥

ଯୋଗ୍ୟାଯୋଗ୍ୟ ଅନୁରୂପେ ବିହିଲେ ସକଳ ।
ପୂର୍ବରେ ଯେଉଁପ୍ରକାରେ ସେ ରୂପେ କେବଳ ।। ୧୫୩ ।।
ଦେଖି ଯେଉଁ ଋତୁରେ ଯେବଣ ଫଳ ଫୁଲ ।
ଫୁଟୁଥାନ୍ତି ଫଳୁଥାନ୍ତି ଥିବାଯାଏ କାଳ ।। ୧୫୪ ।।
ସେ ଋତୁମାନଙ୍କ ଶେଷେ ସେହୁ ସର୍ବେ ଯାଆନ୍ତି ।
ପୁନରପି ଋତୁ ହେଲେ ସେହି ପ୍ରକାଶନ୍ତି ।। ୧୫୫ ।।
ସେହି ଅନୁରୂପେ ଯୁଗାଦିମାନଙ୍କରେ ।
ଦେବ ଋଷି ଆଦି ସର୍ବେ ପୂର୍ବ ପରକାରେ ।। ୧୫୬ ।।
ଏମନ୍ତ ବିଧାନେ ସୃଷ୍ଟି କଳ୍ପାଦିମାନଙ୍କେ ।
ସୃଷ୍ଟି ଇଚ୍ଛାଶକ୍ତି ଯୁକ୍ତ ହୋଇଣ ନିଃଶଙ୍କେ ।। ୧୫୭ ।।
ପୁନଃ ପୁନଃ କରିଣ କରନ୍ତି ଯେଉଁଧାତା ।
ଏରୂପେ ସର୍ଜନା ବିଧି ଶୁଣ ଉର୍ଦ୍ଧ୍ୱରେତା ।। ୧୫୮ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶ ଗୀତ ।
ଦେବାଦି ସର୍ଜନା ପଞ୍ଚ ଅଧ୍ୟା ସମାପତ ।। ୧୫୯ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୬୦ ।।

# ଷଷ୍ଠ ଅଧ୍ୟାୟ

ଏଥୁଁ ଅନନ୍ତରେ ମହରଷି ମଇତ୍ରେୟ ।
ପରାଶରଙ୍କୁ ପୁଛନ୍ତି ହୋଇଣ ବିନୟ ॥ ୧ ॥
ଭୋ ଗୁରୁ ଦେବତା ଆଦି ଯେତେ ସର୍ଗମାନ ।
ଯେମନ୍ତ ଜନ୍ମିଲେ ତା କହିଲ ଭିନ୍ନ ଭିନ୍ନ ॥ ୨ ॥
ଅର୍ବାକସ୍ରୋତ କହିଲ ଯେଉଂମାନେ ନର ।
ଏବେ ତାଙ୍କ ଗୁଣ କର୍ମ ଆଦି ସମାଚାର ॥ ୩ ॥
ଏମାନ ବିସ୍ତାରି କହ ଯେଉଂ ରୂପେ ବିଧି ।
ଦ୍ୱିଜାଦି ବର୍ଣ୍ଣମାନଙ୍କ ଧର୍ମ କଲେ ସିଦ୍ଧି ॥ ୪ ॥
ଶିଷ୍ୟ ତହୁଂ ଏହାଶୁଣି ପରାଶର ଋଷି ।
ବୋଲନ୍ତି ଶୁଣ ହେ ପୁତ୍ର କହିବା ବିଶେଷି ॥ ୫ ॥
ଯେବଣ ବ୍ରହ୍ମା ଅଟନ୍ତି ମହାସତ୍ୟଶୀଳ ।
ସୃଷ୍ଟିକର୍ତ୍ତା ସର୍ବ ଜଗତର ଯେହୁ ମୂଳ ॥ ୬ ॥
ସେ ଯହୁଂ ସର୍ଜନା ନିମିତ୍ତରେ ଇଚ୍ଛା କଲେ ।
ସତ୍ତ୍ୱଗୁଣେ ମୁଖୁ ପ୍ରଜାମାନେ ଜନ୍ମହେଲେ ॥ ୭ ॥
ସେ ସମସ୍ତେ ହୋଇଲେ ଯେ ସତ୍ୱଗୁଣବନ୍ତ ।
ତାହାଙ୍କୁ ବ୍ରାହ୍ମଣଜାତି ବୋଲନ୍ତି ସମସ୍ତ ॥ ୮ ॥
ପୁଣି ବକ୍ଷସ୍ଥଳରୁ କ୍ଷତ୍ରିଙ୍କି ଜାତ କଲେ ।
ରଜଗୁଣବନ୍ତ ହୋଇ ସେ ସମସ୍ତେ ହେଲେ ॥ ୯ ॥
ଉରୁ ଭାଗୁଁ ପୁଣି ଯେ ବୈଶ୍ୟଙ୍କୁ କଲେ ଜାତ ।
ରଜତମ ଦୁଇଗୁଣେ ସେମାନେ ସହିତ ॥ ୧୦ ॥
ଚରଣ ଯୁଗଳୁଂ ଜାତ କଲେ ପ୍ରଜା ଯେତେ ।
ତମଗୁଣେ ଯୁକ୍ତ ଶୂଦ୍ରମାନେ ସେ ସମସ୍ତେ ॥ ୧୧ ॥
ଏ ରୂପେ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରି ।
ମୁଖବକ୍ଷ ଉରୁ ଚରଣରୁଂ ଅବତରି ॥ ୧୨ ॥
ଯାଗ ପ୍ରକାଶ ନିମିତ୍ତେ ଏହା କଲେ ବିଧି ।
ଏ ଚାରିବର୍ଣ୍ଣରେ କରି ଯାଗ ହୁଏ ସିଦ୍ଧି ॥ ୧୩ ॥
ଯାଗମାନଙ୍କରେ କରି ଦେବତାଙ୍କୁ ତୃପ୍ତି ।
ଦେବଙ୍କର ଦୃଷ୍ଟିରେ ଯେ ପ୍ରାଣିଏ ଜୀଅନ୍ତି ॥ ୧୪ ॥
ତେଣୁକରି ଯାଗମାନେ ସୁମଙ୍ଗଳକାରୀ ।
ଯାହା କଲେ ବିକାଶି ଅମରପୁର ଶିରୀ ॥ ୧୫ ॥
ଯେଉଂ ନରମାନେ ସଦା କୁଳଧର୍ମେ ରତ ।
ବିରୁଦ୍ଧାଚରଣମାନ କରିଥିବେ ତ୍ୟକ୍ତ ॥ ୧୬ ॥

ବିଶୁଦ୍ଧ କଥାମାନଙ୍କେ ସନ୍ତତ ପ୍ରବର୍ତ୍ତି ।
ଉତ୍ତମ ମାର୍ଗେ ଗମନ କରୁଥିବେ ନିତି ॥ ୧୭ ॥
ସେହି ସଜ୍ଜନମାନେଚି ଆରମ୍ଭନ୍ତି ଯାଗ ।
ନର ହେତୁଂ ନରେ ପାନ୍ତି ସ୍ୱର୍ଗ ଅପବର୍ଗ ॥ ୧୮ ॥
ଯଉଂ ସ୍ଥାନ ଅଭିଳାଷ କରି ଯାଗ କରେ ।
ସେହି ସ୍ଥାନେ ସେ ପୁରୁଷ ବସେ ଦେହାନ୍ତରେ ॥ ୧୯ ॥
ଏମନ୍ତ ଯେବଣ ସେହି ଚାରିବର୍ଣ୍ଣ ଜନ ।
ସୁଖଶ୍ରଦ୍ଧା ସମାଚାର ସ୍ୱଭାବେ ନିପୁଣ ॥ ୨୦ ॥
ମନଇଚ୍ଛା ମନ୍ଦିରମାନଙ୍କେ ତାଙ୍କ ବାସ ।
ସମସ୍ତ ବାଧବର୍ଜିତ ବିଶୁଦ୍ଧ ମାନସ ॥ ୨୧ ॥
ସର୍ବଦା ଶୁଦ୍ଧଚରିତ ଶୁଦ୍ଧ ଭାବେମନ ।
ସର୍ବବିଧାନମାନଙ୍କେ ସୁନିର୍ମଳ ଜ୍ଞାନ ॥ ୨୨ ॥
ହରିଙ୍କର ବିଷୟରେ ଶୁଦ୍ଧମନେ ସ୍ଥିତ ।
ଏମନ୍ତ ଚାରି ବର୍ଣ୍ଣଙ୍କୁ ବ୍ରହ୍ମା କଲେ ଜାତ ॥ ୨୩ ॥
ସେମାନେ ଶୁଦ୍ଧଜ୍ଞାନକୁ ସନ୍ତତେ ଦେଖନ୍ତି ।
ଯେବଣ ଜ୍ଞାନରେ କରି ବିଷ୍ଣୁପଦ ପାନ୍ତି ॥ ୨୪ ॥
ଏମନ୍ତ ପ୍ରକାରେ ଯଉଂ ପ୍ରଜାଜାତ ହେଲେ ।
ତାହା ଦେଖି ବ୍ରହ୍ମା ମହାଆନନ୍ଦ ଭଜିଲେ ॥ ୨୫ ॥
ସେକାଳରେ ହରିଙ୍କର କାଳ ରୂପୀ ଅଂଶ ।
ଆଦ୍ୟେ ତୁମ୍ଭଠାରେ କରିଥିଲୁ ଯା ପ୍ରକାଶ ॥ ୨୬ ॥
ସେ ପୁଣି ତ୍ରେତାଯୁଗର କିଛି ଭୋଗ ଅନ୍ତେ ।
ପ୍ରବେଶ ହୋଇ ଉପାୟ କରି ନାନାମତେ ॥ ୨୭ ॥
ମହା ଘୋର ପାତକକୁ ପ୍ରାଣୀ ଠାରେ ନେଇଂ ।
ପ୍ରଥମୁଁ କେବଳ ଦେଲା ପ୍ରବେଶ କରାଇ ॥ ୨୮ ॥
ସେ କାଳରେ ଅସାଧ ରାଗାଦି ଯେତେ ଦୋଷ ।
ତମ ଲୋଭ ଦୁଇଠାରୁଂ ତାଙ୍କର ପ୍ରକାଶ ॥ ୨୯ ॥
ଅଧର୍ମ ଅଙ୍କୁରମାନଙ୍କର ବୀଜ ଦୋଷ ।
ଏମାନେ ସେ ପ୍ରଜାଠାରେ ହେଲେ ଉପସ୍ଥିତ ॥ ୩୦ ॥
ତେଣୁକରି ପ୍ରଜାଙ୍କ ସହଜ ଯଉଂ ସିଦ୍ଧି ।
ରସୋଲ୍ଲାସ ନାମେ ଅଷ୍ଟପ୍ରକାରେ ଯେ ବିଧି ॥ ୩୧ ॥
ସେମାନ କିଛି ନୋହିଁଲା ତପସ୍ୱୀ ମୁକୁଟ ।
ଅଷ୍ଟସିଦ୍ଧି ଗୁଣଗୁଣ କରିବା ପ୍ରକଟ ॥ ୩୨ ॥
ଯେଣେକରି ନରମାନେ ଜିଣନ୍ତି କ୍ଷୁଧାକୁ ।
ରସୋଲ୍ଲାସ ସିଦ୍ଧିରେ ପ୍ରଥମ ବୋଲି ତାକୁ ॥ ୩୩ ॥

ଯୁବତୀକି ଆଦିକରି ଯେତେ ସୁଖଭୋଗ ।
ତହିଁ ଅପେକ୍ଷା ନ କରି ସଦାତୃପ୍ତି ଯୋଗ ॥ ୩୪ ॥
ସର୍ବ ପ୍ରଜାମାନେ ଯେବେ ଏ ରୂପେ ହୁଅନ୍ତି ।
ଦ୍ୱିତୀୟା ସିଦ୍ଧି ବୋଲିଣ ତାହାକୁ କହନ୍ତି ॥ ୩୫ ॥
ତାହାକୁ ତୃପ୍ତି ବୋଲନ୍ତି ସର୍ବମୁନିମାନେ ।
ତାଘେନି ପ୍ରବେଶ ହୋନ୍ତି ତପସ୍ୟା ବିଧାନେ ॥ ୩୬ ॥
ଭଲମନ୍ଦଭାବନା ଯହିଁରେ କିଛି ନାହିଁ ।
ତୃତୀୟା ସିଦ୍ଧି ବୋଲିଣ ତାହାକୁଟି କହି ॥ ୩୭ ॥
ସୁଖ ଦୁଃଖ ଦୁହିଁଙ୍କର ପରମାୟୁଭୂତ ।
ଯେମନ୍ତ ଯେ ତୁଲ୍ୟ ଭାବ ଯହିଁରେ ବିଦିତ ॥ ୩୮ ॥
ଚତୁର୍ଥ ସିଦ୍ଧି ବୋଲିଣ ସେହି ତାକୁ ଜାଣ ।
ପଞ୍ଚମ ସିଦ୍ଧି ମହିମା କରିବା ଶ୍ରବଣ ॥ ୩୯ ॥
ଏକାନ୍ତ ବଳବାହୁଲ୍ୟ ଯାହା ସକାଶରୁଁ ।
ସେ ପଞ୍ଚମ ସିଦ୍ଧି ଯେ ବିଶୋକା ନାମେ ଚାରୁ ॥ ୪୦ ॥
ପରମାତ୍ମା ପରକରି ତପଧ୍ୟାନ ଆଦି ।
ଯାହା ସକାଶରୁଁ ହୋଏ ସେଟି ଷଷ୍ଠ ସିଦ୍ଧି ॥ ୪୧ ॥
ଯେଣୁକରି ଲୋକଙ୍କରେ ସ୍ୱଇଚ୍ଛା ସଂଚାର ।
ସପ୍ତମୀ ସିଦ୍ଧି ତାହାକୁ ବୋଲି ମୁନିବର ॥ ୪୨ ॥
ତୁଳିଲେ କି ଧୂଳିରେ ଅବା ଯହିଁ ତହିଁ ।
ନିଦ୍ରା କଲେ ତାହାକୁ ଅଷ୍ଟମସିଦ୍ଧି କହି ॥ ୪୩ ॥
ଏ ରୂପେ ଯେବଣ ରସୋଲ୍ଲାସ ଅଷ୍ଟସିଦ୍ଧି ।
ପ୍ରଜାମାନଙ୍କର ତାହା ନୋହିଲା ଅବଧି ॥ ୪୪ ॥
କ୍ରମରେ ଏମାନେ ଯହୁଁ ହୋଇଲେକ ଖୀନ୍ନ ।
ପାତକ ସକଳ ପୁଣି ହେଲେ ବର୍ଦ୍ଧମାନ ॥ ୪୫ ॥
ପାପ ବୁଦ୍ଧିରୁଁ ଜନ୍ମିଲା ପରସ୍ପରେ କଳି ।
ଏଣୁ ପ୍ରଜା ସମସ୍ତେ ହୋଇଲେ ଦୁଃଖଶାଳୀ ॥ ୪୬ ॥
ଦ୍ୱନ୍ଦ୍ୱଗୋଳ ହୁଅନ୍ତେ ଉପାୟମାନ କଲେ ।
ନାନା ରୂପେ ଦୁର୍ଗ ନାନା ସ୍ଥାନେ ଭିଆଇଲେ ॥ ୪୭ ॥
କାହିଁ ବୃକ୍ଷ ଦୁର୍ଗ କାହିଁ ଗିରିଦୁର୍ଗ କଲେ ।
କଉଂ କଉଂ ଠାରେ ଜଳ ଦୁର୍ଗ ଭିଆଇଲେ ॥ ୪୮ ॥
ଏ ରୂପେ କୃତ୍ରିମ ଦୁର୍ଗ ଅନେକପ୍ରକାରେ ।
ଗିରି ନଦୀ ମଧ୍ୟେ କଲେ ଖର୍ବଟ ନାମରେ ॥ ୪୯ ॥
ତହୁଁ କେତେ କେତେ ଏକଠାବେ ରୁଣ୍ଡ ହୋଇ ।
ପୁର ଗ୍ରାମ ପାଟଣା ଯେ ଏମାନେ ନିର୍ମାଇ ॥ ୫୦ ॥

ଶୀତ ଖରା ବାଧା ଶ୍ରମ ହରିବା ନିମନ୍ତେ ।
ଦିବ୍ୟପୁରମାନେ ଯେ କଲେକ ଯେଝା ମତେ ॥ ୫୧ ॥
ଶୀତ ଖରା ଚୌରାଦିଙ୍କ ଯେତେ ପ୍ରତିକାର ।
ଏ ରୂପରେ ପରସ୍ପରେ ନିର୍ଭାଇଲେ ପୁରେ ॥ ୫୨ ॥
ପୁରମାନଙ୍କ ଲକ୍ଷଣ ଶୁଣ ଏବେ ଋଷି ।
ଭୃଗୁ ଯାହା ଶାସ୍ତ୍ରେ କହି ଅଛନ୍ତି ବିଶେଷି ॥ ୫୩ ॥
ନୃପତିଙ୍କି ଆବାସକୁ ପୁରୀ ବୋଲି କହି ।
ବୈଶ୍ୟମାନଙ୍କ ପୁରକୁ ପୁରୀହିଁ ବୋଲାଇ ॥ ୫୪ ॥
ଏକଠା ହୋଇ ସମସ୍ତେ ବସନ୍ତି ଯହିଁରେ ।
ଅଧିକେ ନଗର ହୋଏ ଗ୍ରାମ ଯେ ଊଣାରେ ॥ ୫୫ ॥
ନଦୀ ଗିରି ଆଶ୍ରିତେ ମିଶ୍ରିତ ଯଉଂ ଗ୍ରାମ ।
ଖର୍ବଟ ବୋଲିଣ ଉକ୍ତ ହୁଏ ତାହା ନାମ ॥ ୫୬ ॥
ବିପ୍ରମାନେ ବିପ୍ରଙ୍କର ଭୃତ୍ୟମାନେ ଯହିଁ ।
ବାସ କରି ରହନ୍ତି ସେ ପୁଣି ଗ୍ରାମ ହୋଇ ॥ ୫୭ ॥
ଶୂଦ୍ରଙ୍କ ବାସମାନ ହିଁ ଗ୍ରାମ ସଙ୍ଗେ ଲେଖି ।
ଦେଖି କୁଳ କର୍ମାଦିରେ ନିପୁଣ ଯେତେକ ॥ ୫୮ ॥
ଏମନ୍ତ ଚାରିଜାତି ସେ ରହିବେ ଯହିଁ ।
ଅନ୍ୟଜାତିମାନଙ୍କରେ ପୁଣି ଯୁକ୍ତ ହୋଇ ॥ ୫୯ ॥
ତହୁଁ ବିନ୍ଧାଣିମାନଙ୍କେ ହେବ ନାନା ପୁର ।
ତହିଁରେ ଥିବ ସମ୍ବନ୍ଧ ସର୍ବଦେବଙ୍କର ॥ ୬୦ ॥
ଏମନ୍ତ ସ୍ଥାନକୁ ନଗରହିଁ ବୋଲି କହି ।
ଶୁଣିମା ହୋ ତାପସ ତପସ୍ୱୀଗୁଣଗ୍ରାହୀ ॥ ୬୧ ॥
ସେ ସମସ୍ତ ଦୁର୍ଗରେ ପୁରେ ନଗରେ ଗ୍ରାମରେ ।
ଗୃହକଲେ ପ୍ରଜାମାନେ ନାନା ବିଧାନରେ ॥ ୬୨ ॥
ଗୃହମାନେ କେତେ କେତେ ପ୍ରକାରେ ହୁଅନ୍ତି ।
ବାସ୍ତୁଶାସ୍ତ୍ରେ ବିଶ୍ୱକର୍ମା ଏହା କହିଛନ୍ତି ॥ ୬୩ ॥
ଧ୍ରୁବଗୃହ ଜନ୍ୟଗୃହ ଜୟନାମେଗୃହ ।
କାନ୍ତ ବିଜୟ ସୁପଦ୍ମ ସୁମୁଖ ନିଳୟ ॥ ୬୪ ॥
ନନ୍ଦା ଧନଦ ସୁମନୋରମ ଆଦି ଯେତେ ।
ଏ ରୂପରେ ଗୃହମାନେ ଛନ୍ତି ବହୁ ରୂପେ ॥ ୬୫ ॥
ଇତ୍ୟାଦି ଗୃହମାନଙ୍କୁ ରଚ୍ଚି ସର୍ବଜନେ ।
ରହିଲେ ପରମାନନ୍ଦସୁଖୀ ଘେନି ମନେ ॥ ୬୬ ॥
ତହୁଁ ପୁଣି କଲେ ସର୍ବେ ଜୀବିକା ଉପାୟ ।
ହସ୍ତସିଦ୍ଧି କର୍ମସିଦ୍ଧି ଯେତେକ ମୈତ୍ରେୟ ॥ ୬୭ ॥

୫୬.କ. କର୍ବଟ

ହସ୍ତସିଦ୍ଧି କେ ଅବା କହିବା ଶୁଣ ତାହା ।
କୃଷି ଇତ୍ୟାଦି ଯେତେ କର୍ମରେ ଥାଇ ଯାହା ।। ୬୮ ।।
ଏମନ୍ତେ କୃଷିମାନଙ୍କୁ ସମସ୍ତେ ଯେ କଲେ ।
ନାନା ପରକାରେ ଶସ୍ୟମାନେ ଜନ୍ମାଇଲେ ।। ୬୯ ।।
ବିରି ମୁଗ ଧାନ୍ୟ ଯେ ଗହମ ଚଣା ତିଳ ।
କ୍ଷୁଦ୍ରଶାଳୀଧାନ୍ୟ କଙ୍ଗୁ ଦେବଧାନ୍ୟ କୁଳ ।। ୭୦ ।।
କୋହ୍ରୁ ଅଚୀନାକ ସିମ୍ବ କୁଳଞ୍ଚ ମସୂର ।
ଆପକ୍ୱ ସଣ ଏମନ୍ତ ପ୍ରକାରେ ସତର ।। ୭୧ ।।
ଏ ସମସ୍ତେ ଗ୍ରାମ୍ୟ ଯେ କୃଷିରେ ସାଧ ହୋନ୍ତି ।
ଗ୍ରାମ୍ୟାରଣ୍ୟ ଯଜ୍ଞଯୋଗ୍ୟ ଚଉଦ ହୁଅନ୍ତି ।। ୭୨ ।।
ବ୍ରୀହି ଯବ ସୁଅାଂ ଯେ ଗୋଧୂମ ଅଣୁ ତିଳ ।
ପ୍ରିୟଙ୍ଗୁ କୁଳଥ ମିଶି ଅଷ୍ଟ ତପଶୀଳ ।। ୭୩ ।।
ଏମାନେ ଗ୍ରାମ୍ୟ ହୁଅନ୍ତି ବର୍ଣ୍ୟ ହିଁ ହୁଅନ୍ତି ।
ଶାମାକ ବାଲୁଙ୍ଗା ସ୍ୱୟଂଜାତ ତିଳ ଯତି ।। ୭୪ ।।
ଗବେଧୁକା ବାଂଶ ଧାନ୍ୟ ମର୍କଟକା ଆଦି ।
ଏ ଷଡ଼ ପଦାର୍ଥ ବର୍ଣ୍ୟ ଅଟଇ ପ୍ରସିଦ୍ଧି ।। ୭୫ ।।
ଏ ପୁଣି ହୁଅନ୍ତି ଯାଗ କାର୍ଯ୍ୟ ଉପଯୋଗୀ ।
ଏ ସମସ୍ତ ମିଶି ଏକତିରିଶି ହେ ଯୋଗି ।। ୭୬ ।।
ସେ ଚଉଦ ଦ୍ରବ୍ୟ ଯଜ୍ଞେ ସହିତ ଯେ ହୋଇ ।
ପ୍ରଜାମାନଙ୍କ କାରଣ ହୋଇଲେକ ତହିଁ ।। ୭୭ ।।
ସେମାନଙ୍କୁ ଘେନିଣ ଯେ ପଣ୍ଡିତ ସକଳେ ।
ସମସ୍ତ ଯଜ୍ଞମାନଙ୍କୁ ସର୍ବଶୁଭେ କଲେ ।। ୭୮ ।।
ଏଣେ କରି ପ୍ରତିଦିନ ଯାଗମାନଙ୍କର ।
ବିଧିମାନେ ହୋଇଲେ ଯେ ଅନେକପ୍ରକାର ।। ୭୯ ।।
ସେ ପୁଣି ପୁରୁଷଙ୍କର ଉପକାରୀ ହେଲେ ।
ଅର୍ଜିତ ଅନେକ ପାପମାନ ବିନାଶିଲେ ।। ୮୦ ।।
ଯଉଂମାନେ ହୋଇଲେ କାଳର ଆୟତ୍ତ ।
ଯାହାଙ୍କ ହୃଦରେ ପାପ ବିନ୍ଦୁର ସଙ୍ଗତ ।। ୮୧ ।।
ସେ ଯହୁଁ ବଢ଼ିଲା କ୍ରମେ କ୍ରମେ ହୋଇ କରି ।।
ତେଣୁ ସେମାନଙ୍କ ଚିତ୍ତ ଯାଗେ ନ ପ୍ରଚରି ।। ୮୨ ।।
ଦେବଙ୍କୁ ବେଦବାଦିଙ୍କେ ଏଣୁ ନିନ୍ଦା କଲେ ।
ଯାଗାଦି କର୍ମମାନଙ୍କୁ କିଛି ହି ନ କଲେ ।। ୮୩ ।।
ସେ କାରଣୁ ସେମାନେ ହୋଇଲେ ଯାଗହନ୍ତା ।
ପ୍ରବୃତ୍ତି ମାର୍ଗମାନଙ୍କ ବିନାଶ କରତା ।। ୮୪ ।।

୭୩.ଖ ଯବମାପ

ଯାଗମାନ ନିନ୍ଦିଲେ ଦୁରାତ୍ମା ଅତି ହେଲେ ।
କୁଟିଳ ହୃଦରେ ସବୁଆଡ଼େ ପ୍ରଚରିଲେ ।। ୮୫ ।।
କହୁଛନ୍ତି ପରାଶର ମଇତ୍ରେୟ ଶୁଣ ।
ଏଥୁ ଅନନ୍ତରେ ଯାହା ହୋଇଲାକ ପୁଣ ।। ୮୬ ।।
ପ୍ରଜାମାନଙ୍କୁ ଯେ ପ୍ରଜା ଜୀବିକାମାନଙ୍କୁ ।
ସର୍ଜିଲା ପ୍ରଜାପତି ପୁଣି ବିଚାରି ମନକୁ ।। ୮୭ ।।
ଯତଂ ରୂପେ ମର୍ଯ୍ୟାଦା ଯେମନ୍ତ ସ୍ଥାନଗୁଣ ।
ସାତ୍ୱିକେ ପ୍ରଜା ନିମିତ୍ତେ କଲେ ତା ନିର୍ମାଣ ।। ୮୮ ।।
ବର୍ଣ୍ଣମାନଙ୍କର ଧର୍ମ ଆଶ୍ରମଙ୍କ ଧର୍ମ ।
ଧର୍ମବନ୍ତ ଲୋକଙ୍କର ଯତଂ ଶୁଭକର୍ମ ।। ୮୯ ।।
ସେ ସମସ୍ତ ପୁଣି ଯଥାକ୍ରମେ ଧାତା କଲେ ।
ତହୁଂ ସର୍ବ ବର୍ଣ୍ଣଙ୍କର ଲୋକ ସମ୍ପାଦିଲେ ।। ୯୦ ।।
ଉତ୍ତମ ଧର୍ମପାଳନା କରନ୍ତି ଯେତେକ ।
ତାହାଙ୍କର ସ୍ଥାନମାନ ଶୁଣ ସୁବିବେକ ।। ୯୧ ।।
ବ୍ରାହ୍ମଣ ଜାତିମାନଙ୍କ ପ୍ରଜାପତି ସ୍ଥାନ ।
ସେ ଯେବେ କ୍ରିୟାବନ୍ତ ହୋଇବେ ସଦାଦିନ ।। ୯୨ ।।
ସଂଗ୍ରାମରେ ପ୍ରବର୍ତ୍ତନ୍ତି ଯେବଣ କ୍ଷତ୍ରିୟ ।
ଇନ୍ଦ୍ରସ୍ଥାନ ତାହାଙ୍କ ନିମିତ୍ତେ ମଇତ୍ରେୟ ।। ୯୩ ।।
ସ୍ୱଧର୍ମପାଳକ ବୈଶ୍ୟମାନଙ୍କର ସ୍ଥାନ ।
ମରୁତ ଭୁବନ ଏକା ହୋଇଲା ପ୍ରଧାନ ।। ୯୪ ।।
ସ୍ୱାମି ଭକ୍ତ ଯେତେକ ସନ୍ତତ ଶୂଦ୍ରଜାତି ।
ଗନ୍ଧର୍ବପୁର ହୋଇଲା ତାହାଙ୍କର ସ୍ଥିତି ।। ୯୫ ।।
ବାଳଖିଲ୍ୟା ଆଦି ଉର୍ଦ୍ଧ୍ୱରେତା ଯେତେ ଯତି ।
ଅଠାସି ସହସ୍ର ଯତଂସ୍ଥାନରେ ବସନ୍ତି ।। ୯୬ ।।
ସେ ସ୍ଥାନ କେବଳ ବ୍ରହ୍ମଚାରୀମାନଙ୍କର ।
ଯତଂମାନେ ଗୁରୁ ସେବା ବିଷୟେ ତତ୍ପର ।। ୯୭ ।।
ସପ୍ତରଷିମାନଙ୍କର ଯତଂସ୍ଥାନେ ବାସ ।
ବାନପ୍ରସ୍ଥ ସନ୍ନ୍ୟାସୀଙ୍କ ସେ ସ୍ଥାନ ବିଶେଷ ।। ୯୮ ।।
ଗୃହୀମାନଙ୍କର ପୁଣି ପ୍ରଜାପତି ସ୍ଥାନ ।
ସନ୍ନ୍ୟାସୀମାନଙ୍କ ସତ୍ୟଲୋକ ବିଦ୍ୟମାନ ।। ୯୯ ।।
ଯୋଗୀମାନଙ୍କର ଯେ ଅନ୍ତତ ସ୍ଥାନ କହି ।
ବିଷ୍ଣୁଙ୍କ ପରମପଦ ହୋଇଅଛି ଯେହି ।। ୧୦୦ ।।
ସବୁକାଳେ ବ୍ରହ୍ମାଙ୍କୁ ଏକାନ୍ତେ ଧ୍ୟାନ କରି ।
ଯହୁଂ ଯୋଗିମାନେ ଥାନ୍ତି ସ୍ୱଧର୍ମ ଆଚରି ।। ୧୦୧ ।।

ତାହାଙ୍କର ଅଟଇ ପରମବ୍ରହ୍ମ ସ୍ଥାନ ।
ଜୀବନ୍ମୁକ୍ତ ଯାହାକୁ ଦେଖନ୍ତି କରି ଧ୍ୟାନ ।। ୧୦୨ ।।
ଚନ୍ଦ୍ରସୂର୍ଯ୍ୟଆଦି କରି ନବଗ୍ରହ ଯେତେ ।
ଯହୁଁ ସ୍ଥାନକୁ ଯିବାକୁ ବିଚାରିଣ ଚିତ୍ତେ ।। ୧୦୩ ।।
କଠୋର ତପସ୍ୟାମାନ ସନ୍ତତେ କରନ୍ତି ।
ଯାଉଂ ଯାଉଂ କେତେ କାଳେ ପଥେ ନିବର୍ତ୍ତନ୍ତି ।। ୧୦୪ ।।
ଦ୍ୱାଦଶାକ୍ଷର ଯେବଣ ବାସୁଦେବ ମନ୍ତ୍ର ।
ତାହା ସନ୍ତତ ଚିନ୍ତନ୍ତି ଯେତେ ଜନ ମାତ୍ର ।। ୧୦୫ ।।
ସେମାନେ ସର୍ବଦା ଜାଉଂଥାନ୍ତି ଯଉଂ ସ୍ଥାନେ ।
ଅଦ୍ୟାପି ହି ନିବର୍ତ୍ତି ନାହାନ୍ତି ଦିବ୍ୟ ଜ୍ଞାନେ ।। ୧୦୬ ।।
ଏ ରୂପରେ ପରମମୁକତି ସ୍ଥାନ ଯେତେ ।
ବ୍ରହ୍ମା କଳ୍ପିଲେ ସୁକୃତି ଜନଙ୍କ ନିମିତ୍ତେ ।। ୧୦୭ ।।
ଦୁଷ୍କୃତିମାନଙ୍କ ଅର୍ଥେ ଯଉଂ ଯଉଂ ସ୍ଥାନ ।
ତାହା ଏବେ କହିବା ଶୁଣ ହେ ତପୋଧନ ।। ୧୦୮ ।।
ତାମିସ୍ର ଅନ୍ଧତାମିସ୍ର ମହାରଉରବ ।
ରଉରବ କୁମ୍ଭୀପାକ ଅତି ଅସମ୍ଭବ ।। ୧୦୯ ।।
ଘୋର ଅସିପତ୍ର ବନ ଆଦିକାଳ ସୂତ୍ର ।
ଏମନ୍ତେ ଯେତେ ନରକ ଅଛି ମୁନିପୁତ୍ର ।। ୧୧୦ ।।
ସେମାନେ ସ୍ଥାନ ହୋଇଲା ଏତେ ଲୋକଙ୍କର ।
ବେଦଗୁରୁ ଦେବତା ନିନ୍ଦୁକ ଯେତେ ନର ।। ୧୧୧ ।।
ଯଜ୍ଞାଦି କର୍ମମାନଙ୍କୁ ନାଶ ଯେ କରନ୍ତି ।
କୁଳଧର୍ମ ଛାଡ଼ି ଅନ୍ୟମାର୍ଗେ ପ୍ରଚରନ୍ତି ।। ୧୧୨ ।।
ଏହିମାନଙ୍କ ନିମିତ୍ତେ ନରକ ନିବାସ ।
ଲୋକଈଶ ସଂସ୍ଥାପନ କଲେ ହୋ ତାପସ ।। ୧୧୩ ।।
ଯାହା ପଚାରିଲ ତାହା କହିଲୁଂ ବିସ୍ତାରି ।
ପୁଣି କିଅବା ପୁଛିବ କହ ତପୋଚାରି ।। ୧୧୪ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ବର୍ଣ୍ଣସ୍ଥାନ ଉକ୍ତ ଷଷ୍ଠ ଅଧ୍ୟା ସମାପତ ।। ୧୧୫ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୧୬ ।।

# ସପ୍ତମ ଅଧ୍ୟାୟ

ଗୁରୁ ତହୁଁ ଏହାଶୁଣି ମୈତ୍ରେୟ ପଚାରି ।
ପ୍ରଜାସୃଷ୍ଟିମାନ ପ୍ରଭୁ କହିବା ବିସ୍ତାରି ॥ ୧ ॥
ଶିଷ୍ୟତହୁଁ ଏହାଶୁଣି ପୁଣି ପରାଶର ।
ମୈତ୍ରେୟଙ୍କୁ ବୋଲନ୍ତି ଶୁଣ ହେ ମୁନିବର ॥ ୨ ॥
ଯେତେବେଳେ ବ୍ରହ୍ମା ଧ୍ୟାନ କରି ପ୍ରଜାମାନ ।
ଆପଣାଙ୍କ ମାନସରୁ କଲେକ ଉତ୍ପନ୍ନ ॥ ୩ ॥
ସେ କାଳରେ ଶରୀର ଇନ୍ଦ୍ରିୟ ଗଣ ତୁଲେ ।
ସହିତ ହୋଇଣ ଯେ କ୍ଷେତ୍ରଜ୍ଞ ଜାତହେଲେ ॥ ୪ ॥
ସେ ସର୍ବେ କ୍ଷେତ୍ରଜ୍ଞ ବ୍ରହ୍ମା ଶରୀରୁଁ ସମ୍ଭୂତ ।
ଦେବତାମାନଙ୍କୁ ଆଦି ସ୍ଥାବର ପର୍ଯ୍ୟନ୍ତ ॥ ୫ ॥
ପୂର୍ବେ ଯାହା କହିଥିଲୁଁ ସବିସ୍ତାର କରି ।
ସେହିମାନେ ଏକାଟି ଏ ସର୍ବେ ତପଚାରୀ ॥ ୬ ॥
ଜାତ ହୋଇ ତ୍ରିଗୁଣ ବିଷୟେ ସ୍ଥିତ ହେଲେ ।
ଏରୂପେ ବିଧାତା ଚରାଚର ସୃଷ୍ଟି କଲେ ॥ ୭ ॥
ଯେଉଁ କାଳେ ବ୍ରହ୍ମ ତହୁଁ ଜନ୍ମିଲେକ ପ୍ରଜା ।
ସଂସାରରେ ବ୍ୟାପିଲେ ହୋଇଣ ମହାତେଜା ॥ ୮ ॥
ମାତ୍ରକ ପୁତ୍ର ପୌତ୍ରାଦି ବିନାଟି ତାଙ୍କର ।
ଏଣୁକରି ବୁଦ୍ଧି ଆଉ ନୋହିଁଲା କାହାର ॥ ୯ ॥
ଏହା ଦେଖି ବିଶ୍ୱକର୍ତ୍ତା ମନରେ ବିଚାରି ।
ସେହିରୂପେ ମନରୁଁ ପୁତ୍ରଙ୍କୁ ଜାତ କରି ॥ ୧୦ ॥
ଆପଣା ସଦୃଶ କରି ଯହୁଁ ଜାତ କଲେ ।
ନବଋଷିମାନେ ତହୁଁ ଜନମ ହୋଇଲେ ॥ ୧୧ ॥
ଭୃଗୁ ପୁଲସ୍ତ୍ୟ ପୁଲହ କ୍ରତୁ ଯେ ବଶିଷ୍ଠ ।
ଅଙ୍ଗିରା ମରୀଚି ଅତ୍ରି ଦକ୍ଷ ଋଷି ଶ୍ରେଷ୍ଠ ॥ ୧୨ ॥
ଏ ନବବ୍ରହ୍ମା ସେକାଳେ ହୋଇଲେ ଜନମ ।
ପୁରାଣରେ ନିଶ୍ଚୟ ଯେ ଏହାଙ୍କର ନାମ ॥ ୧୩ ॥
ସନନ୍ଦନ ଆଦି ଯେଉଁମାନଙ୍କୁ ପୂର୍ବରେ ।
ବ୍ରହ୍ମା ସର୍ଜନା କରିଥିଲେ ଯେଉଁ ବେଭାରେ ॥ ୧୪ ॥
ସେ ସର୍ବେ ସୃଷ୍ଟି ବିଷୟେ ଅସମର୍ଥ ହେଲେ ।
ପ୍ରଜାମାନଙ୍କ ବିଷୟେ ଅପେକ୍ଷା ନ କଲେ ॥ ୧୫ ॥
ଉତ୍ପତ୍ତି ହୋଇବାଠାରୁ ଯାହାଙ୍କର ଜ୍ଞାନ ।
ରାଗ ମତ୍ସର ବର୍ଜିତ ବାଳକ ବିଧାନ ॥ ୧୬ ॥
ସର୍ଜନାରେ ଅପେକ୍ଷା ନଦେଖି ତାଙ୍କଠାରେ ।
ବ୍ରହ୍ମାଙ୍କର ମହାକ୍ରୋଧ ବସିଲା ହୃଦରେ ॥ ୧୭ ॥

ତ୍ରୈଲୋକ୍ୟ ଦହିଲା ପରି ବିକାଶିଲା ତେଜ ।
ସେ କ୍ରୋଧରୁ ବିକାଶିଲା ମହାଜ୍ୱାଳାପୁଞ୍ଜ ॥ ୧୮ ॥
ଭ୍ରୂକୁଟି କୁଟିଳ କ୍ରୋଧଦୀପ୍ତ ଲଲାଟରୁ ।
ସେ କାଳେ ଜନ୍ମିଲେ ରୁଦ୍ର ସର୍ବ ଦେବଗୁରୁ ॥ ୧୯ ॥
ମଧ୍ୟାହ୍ନ ଆଦିତ୍ୟ ପ୍ରାୟେ ମହା ଉଗ୍ରତେଜ ।
ଅତ୍ୟନ୍ତ ଶରୀରବନ୍ତ ଦେବ ବୃଷଧ୍ୱଜ ॥ ୨୦ ॥
ସ୍ୱଭାବରୁ ପ୍ରଚଣ୍ଡ ଯେ ଅର୍ଦ୍ଧନାରୀମୂର୍ତ୍ତି ।
ଏମନ୍ତ କରି ତାହାଙ୍କୁ ଦେଖି ପ୍ରଜାପତି ॥ ୨୧ ॥
ବୋଇଲେ ତୁମ୍ଭେ ଶରୀର ଭିନ୍ନେ ଭିନ୍ନେ ରହ ।
ଏହାବୋଲି ଅନ୍ତର୍ଧାନ ହେଲେ ପିତାମହ ॥ ୨୨ ॥
ବ୍ରହ୍ମାଙ୍କର ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ଭିନ୍ନ ଭିନ୍ନ ଶରୀର ହୋଇଲେ ସେହି କ୍ଷଣି ॥ ୨୩ ॥
ଏକ ହେଲେ ଯୁବତୀ ପୁରୁଷ ଏକ ହେଲେ ।
ସେ ଏକ ପୁରୁଷ ଦଶପ୍ରକାରେ ହୋଇଲେ ॥ ୨୪ ॥
ସୌମ୍ୟା ସୌମ୍ୟ ଶାନ୍ତାଶାନ୍ତ ସିତାସିତେ କରି ।
ଏକାଦଶ ରୂପ ହେଲେ ସ୍ତିରୀ ଆଦିକରି ॥ ୨୫ ॥
ତହୁଁ ପୁଣି ବ୍ରହ୍ମା ଯେ ଅତୁଳ ସିଦ୍ଧତନୁ ।
ଦେହୁ ଜନ୍ମାଇଂ ଥିଲେ ଯା ସ୍ୱାୟଂଭୁବ ମନୁ ॥ ୨୬ ॥
ସେ ମନୁକୁ ପୁନରପି ଧାତା ସେହିକାଳେ ।
ପ୍ରଜା ପାଳିବା ନିମିତ୍ତେ ଅଧିକାରୀ କଲେ ॥ ୨୭ ॥
ଶତରୂପା ନାମରେ ଯେବଣ ଦିବ୍ୟ ନାରୀ ।
ନିଷ୍ପାପ ଶରୀରା ସେ ଅନେକ ତପ କରି ॥ ୨୮ ॥
ସେ କନ୍ୟାକୁ ପତ୍ନୀ ଅର୍ଥେ ମନୁକୁ ଯେ ଦେଲେ ।
ସ୍ୱାୟଂଭୁବମନୁ ଯେ ତାହାଙ୍କୁ ଭୋଗ କଲେ ॥ ୨୯ ॥
ତେଣୁକରି ଗର୍ଭବତୀ ଶତରୂପା ଦେବୀ ।
ତାହାଙ୍କର ତହୁଁ ବେନି କୁମର ସମ୍ଭବି ॥ ୩୦ ॥
ପ୍ରିୟବ୍ରତ ଉତ୍ତାନପାଦ ଯେ ତାଙ୍କ ନାମ ।
ସର୍ବଗୁଣ ସମର୍ଥ ସେ ପୁରୁଷଉତ୍ତମ ॥ ୩୧ ॥
ତଦୁତ୍ତାରେ ପୁଣି ଜନ୍ମ ହେଲେ ବେନି କନ୍ୟା ।
ଜଗତ ମୋହିନୀ ସେ ଯୁବତୀଗଣେ ଧନ୍ୟା ॥ ୩୨ ॥
ଦିବ୍ୟ ରୂପ ଲାବଣ୍ୟ ଗୁଣରେ ବିଚକ୍ଷଣ ।
ସଦା ଶୁଦ୍ଧଚରିତା ସର୍ବାଙ୍ଗ ସୁଲକ୍ଷଣ ॥ ୩୩ ॥
ଏକା ନାମ ପ୍ରସୂତି ଯେ ଆରକ ଆକୂତି ।
କନ୍ୟା ବେନି ଦେଖି ସ୍ୱାୟଂଭୁବ ତୋଷ ମତି ॥ ୩୪ ॥

ବିବାହରେ ପ୍ରସୂତିଙ୍କୁ ଦକ୍ଷଙ୍କୁ ସେ ଦେଲେ ।
ରୁଚି କରେ ଆକୂତି କନ୍ୟାକୁ ସମର୍ପିଲେ ।। ୩୫ ।।
ରୁଚି ପ୍ରଜାପତି ଯେ ଆକୂତି କନ୍ୟା ଘେନି ।
ସଂଭୋଗରେ ସେ ରସିଲେ ସେ ପ୍ରତିରଜନୀ ।। ୩୬ ।।
ତହୁଁ କେତେ କାଳେ କନ୍ୟା ହେଲେ ଗର୍ଭବତୀ ।
ତାଙ୍କଠାରୁଂ ଯାଗ ଯେ ଦକ୍ଷିଣା ଉତପତି ।। ୩୭ ।।
ସେ ଦୁହେଂ ଦମ୍ପତି ଭାବେ ନାନା କ୍ରୀଡ଼ା କଲେ ।
ତହୁଂ ଦ୍ୱାଦଶ କୁମରମାନ ଜନମିଲେ ।। ୩୮ ।।
ଯାମ ବୋଲି କରିଣ ହୋଇଲେ ସର୍ବେ ଖ୍ୟାତ ।
ସ୍ୱାୟଂଭୁବ ମନ୍ୱନ୍ତରେ ସେମାନେ ଦୈବତ ।। ୩୯ ।।
ସେ କାଳେ ପୁଣି ପ୍ରସୂତି ଦକ୍ଷପ୍ରଜାପତି ।
ସଂଭୋଗରୁଂ କନ୍ୟାଏ ହୋଇଲେ ଉତପତି ।। ୪୦ ।।
ଚଉବିଂଶ କୁମାରୀ ସେ ରୂପଗୁଣବତୀ ।
ତାହାଙ୍କର ନାମମାନ ଶୁଣ ମହାଯତି ।। ୪୧ ।।
ଶ୍ରଦ୍ଧା ଲକ୍ଷ୍ମୀ ଧୃତି ତୃଷ୍ଟି ପୁଷ୍ଟି ମେଧା କ୍ରିୟା ।
ବୃଦ୍ଧି ଲଜ୍ଜା ବପୁ ଶାନ୍ତି ସିଦ୍ଧି କୀର୍ତ୍ତି ଏହା ।। ୪୨ ।।
ଏ ତେର କନ୍ୟା ଧର୍ମଙ୍କ ହୋଇଲେ ଗୃହିଣୀ ।
କନିଷ୍ଠ ଏଗାର ଯହୁଂ ରହିଲେକ ପୁଣି ।। ୪୩ ।।
କ୍ଷାନ୍ତି ସତୀ ସମ୍ଭୂତୀ ଯେ ସ୍ମୃତି ପ୍ରୀତି କ୍ଷମା ।
ସନ୍ନତୀ ଅନସୂୟା ଯେ ଊର୍ଜା ସ୍ୱାହା ଜେମା ।। ୪୪ ।।
ସ୍ୱଧାକୁ ମିଶି କରିଣ ଏମନ୍ତେ ଏଗାର ।
ଏହାଙ୍କ ନିମିତ୍ତେ କଲେ ଯଥୋଚିତେ ବର ।। ୪୫ ।।
କ୍ଷାନ୍ତି କନ୍ୟା ଭୃଗୁଙ୍କୁ ଭବଙ୍କୁ ସତୀ ଦେଲେ ।
ମରୀଚିଙ୍କ କରେ ସମ୍ଭୂତିଙ୍କି ସମର୍ପିଲେ ।। ୪୬ ।।
ଅଙ୍ଗୀରାଙ୍କୁ ସ୍ମୃତି ପୁଲସ୍ତ୍ୟଙ୍କୁ ଦେଲେ ପ୍ରୀତି ।
ପୁଲହଙ୍କୁ କ୍ଷମା କନ୍ୟା କ୍ରତୁଙ୍କୁ ସନ୍ନତି ।। ୪୭ ।।
ଅତ୍ରିଙ୍କି ଅନସୂୟା ଯେ ବଶିଷ୍ଠଙ୍କୁ ଊର୍ଜା ।
ଅଗ୍ନିଙ୍କି ସ୍ୱାହା ପିତୃଙ୍କୁ ଯେ ସ୍ୱଧା ଆତ୍ମଜା ।। ୪୮ ।।
ଏ ରୂପେ ଏଗାରକନ୍ୟା ଏଗାର ଯତିଙ୍କି ।
ଦେଇ ଦକ୍ଷ ପ୍ରଜାପତି ଲଭିଲେ ପ୍ରୀତିକି ।। ୪୯ ।।
ଏଥୁ ପୁଣି ଧର୍ମଙ୍କର ଯଉଂ ତେର ନାରୀ ।
ପ୍ରିୟତମ ସଙ୍ଗମୁ ସନ୍ତତି ଜାତ କରି ।। ୫୦ ।।
ଶ୍ରଦ୍ଧାରୁଂ କାମ ଲକ୍ଷ୍ମୀରୁଂ ଦର୍ପ ହେଲା ଜାତ ।
ଧୃତିଠାରୁଂ ହୋଇଲା ଯେ ନିୟମ ସମ୍ଭୂତ ।। ୫୧ ।।

ତୁଷ୍ଟିଠାରୁଂ ସନ୍ତୋଷ ଯେ ପୁଷ୍ଟିଠାରୁଂ ଲାଭ ।
ମେଧାରୁଂ ଶ୍ରୁତି କ୍ରିୟାରୁଂ ଦଣ୍ଡର ଉଦ୍ଭବ ॥ ୫୨ ॥
ନିୟତିରୁଂ ନ୍ୟାୟ ଯେ ବୁଦ୍ଧିରୁଂ ବୋଧଜାତ ।
ଲଜ୍ଜା କନ୍ୟାରୁଂ ବିନୟ ହୋଇଲାକ ସୁତ ॥ ୫୩ ॥
ବପୁଠାରୁଂ ବ୍ୟବସାୟ ଶାନ୍ତିଠାରୁଂ କ୍ଷେମ ।
ଋଦ୍ଧିଠାରୁ ସୁଖ କୀର୍ତ୍ତି ଯେତେ ଯଶ ନାମ ॥ ୫୪ ॥
ଏମନ୍ତେ ତେର କନ୍ୟାରୁଂ ତେର ଗୋଟି ସୁତ ।
ଧର୍ମ ଦେବ ସୁମଙ୍ଗଳ ହେଲେ କଲେ ଜାତ ॥ ୫୫ ॥
ତେରଗୋଟି ହୋଇଲେ ଯେ ଧର୍ମର ତନୟ ।
ଏଥୁଉତ୍ତାରେଣ ଶୁଣିମା ହେ ମଇତ୍ରେୟ ॥ ୫୬ ॥
ଧର୍ମଙ୍କ ଆଦ୍ୟଭାର୍ଯ୍ୟାର ପୁତ୍ର ଯତଂ କାମ ।
ତାହାଙ୍କର ନନ୍ଦିପ୍ରିୟା ରତି ଯାହା ନାମ ॥ ୫୭ ॥
ତାହାଗର୍ଭୁଂ ଜନ୍ମିଲା ହରଷ ନାମେ ସୁତ ।
ଧର୍ମ ଦେବଙ୍କର ସେହୁ ଅଟଇ ପଉତ୍ର ॥ ୫୮ ॥
ଅଧର୍ମର ପୁଣି ଯହୁଂ ହିଂସା ଭାର୍ଯ୍ୟା ହେଲା ।
ସେ ଦୁହିଂଙ୍କ ଦେହୁ ଯେ ଅନୃତ ଜନମିଲା ॥ ୫୯ ॥
ନିକୃତି ନାମରେ ପୁଣି କନ୍ୟା ଏକ ଜାତ ।
ସେ ଦୁହିଂଙ୍କ ଠାରୁଂ ଭୟ ନରକ ସମ୍ଭୂତ ॥ ୬୦ ॥
ପୁଣି ମାୟା ବେଦନା କୁମାରୀ ବେନି ହେଲେ ।
ସେ ଦୁହିଂଙ୍କ କ୍ରମେ ଭୟ ନରକ ରମିଲେ ॥ ୬୧ ॥
ମାୟାଠାରୁଂ ଭୟ ଯେ ଜନମ କଲା ମୃତ୍ୟୁ ।
ଯେ ସମସ୍ତ ପ୍ରାଣୀମାନଙ୍କର ନାଶ ହେତୁ ॥ ୬୨ ॥
ରୌରବଠାରୁଂ ଯେ ବେଦନାର ଗର୍ଭୁଂ ଜାତ ॥
ସର୍ବସୁଖ ଅପହାରୀ ଦୁଃଖ ନାମେ ସୁତ ॥ ୬୩ ॥
ମୃତ୍ୟୁଠାରୁଂ ବ୍ୟାଧି ଜରାଶୋକତୃଷ୍ଣା କ୍ରୋଧ ।
ଏ ରୂପରେ ପାଞ୍ଚ ଜନ୍ମ ହେଲେ ମହାସିଦ୍ଧ ॥ ୬୪ ॥
ଏମାନେ ଦୁଃଖର ମହାଫଳଟି ଅଟନ୍ତି ।
ଅଧର୍ମଲକ୍ଷଣମାନଙ୍କରେ ପୂର୍ଣ୍ଣ ଅତି ॥ ୬୫ ॥
ଏମାନଙ୍କ କଳତ୍ର ପୁତ୍ରାଦି କିଛି ନାହିଂ ।
ସଂସାରରେ ପ୍ରଚରିଲେ ଉର୍ଦ୍ଧରେତା ହୋଇ ॥ ୬୬ ॥
ବିଷ୍ଣୁଙ୍କର ରୌଦ୍ରରୂପ ଏମାନେଟି ଜାଣ ।
ନିତ୍ୟ ଜରା ପ୍ରଳୟ ଏମାନଙ୍କ କାରଣ ॥ ୬୭ ॥
ଦକ୍ଷ ମରୀଚି ଅତ୍ରିକି ଆଦି ନବଋଷି ।
ଏ ସର୍ବେ ପ୍ରଜାମାନଙ୍କ ଈଶ୍ୱର ବିଶେଷି ॥ ୬୮ ॥

ଏ ସଂସାରେ ଏମାନେ ଅଟନ୍ତି ମହାଭାଗ ।
ଏହାଙ୍କର ହେତୁରୁଂ ହୁଅଇ ନିତ୍ୟସର୍ଗ ।। ୬୯ ।।
ଚତୁର୍ଦ୍ଦଶ ମନୁମାନେ ମନୁ ପୁତ୍ର ଯେତେ ।
ପରାକ୍ରମ ହିଂ ସେ ଧନ ଯାହାଙ୍କର ନିତ୍ୟେ ।। ୭୦ ।।
ସକଳେ ଉତ୍ତମ ମାର୍ଗ ମାର୍ଗୀ ମହାସୁର ।
କ୍ଷତ୍ରିୟ ଗୁଣେ କୁଶଳ ରାଜରାଜେଶ୍ୱର ।। ୭୧ ।।
ସେମାନେ ସନ୍ତତ ବିଶ୍ୱସ୍ଥିତିର କରତା ।
ଏମନ୍ତ ବୋଲି ଜାଣିମା ହେ ଉର୍ଦ୍ଧ୍ୱରେତା ।। ୭୨ ।।
ଏହାଶୁଣି ମଇତ୍ରେୟ ପୁଣି ଯେ ପଚାରି ।
କଥାଏ ପୁଛଇ ଆଜ୍ଞା ହୋଉ ତପଚାରି ।। ୭୩ ।।
ଏ ଯେବଣ ନିତ୍ୟସ୍ଥିତି ନିତ୍ୟ ସର୍ଗ ପୁଣି ।
ଆପଣ ତ କହିଲ ହେ ଋଷି କୁଳମଣି ।। ୭୪ ।।
ଏବେ ଏମାନଙ୍କ ନିତ୍ୟ ପ୍ରଳୟ ଯେମନ୍ତ ।
ସ୍ୱରୂପ କରିଣ ମତେ କହ ତପୋବନ୍ତ ।। ୭୫ ।।
ଶିଷ୍ୟଙ୍କର ବଚନେ କହନ୍ତି ପରାଶର ।
ଯାହା ପଚାରିଲ ବାବୁ ଶୁଣ ଯୋଗେଶ୍ୱର ।। ୭୬ ।।
ଯେବଣ ମଧୁସୂଦନ ଦେବ ଭଗବାନ ।
ଅଚିନ୍ତ୍ୟ ଆତ୍ମା ସେ ପ୍ରଭୁ କମଳଲୋଚନ ।। ୭୭ ।।
ଦକ୍ଷ ଆଦି ମନୁ ଆଦି ବ୍ୟାଧି ଆଦି ଯେତେ ।
ରୂପମାନେ ହୋଇଲେ କହିଲୁ ଜାଣ ତତେ ।। ୭୮ ।।
ସେହି ସେହି ରୂପମାନଙ୍କରେ କରି ହରି ।
ସର୍ଗସ୍ଥିତି ବିନାଶ ଉତ୍ତମ ଭାବେ କରି ।। ୭୯ ।।
ପ୍ରଳୟର ବିଧାନ ଯେ ପଚାରିଲ ଯାହା ।
ଚାରିପ୍ରକାରେ ଖ୍ୟାତ ହୋଇଅଛି ତାହା ।। ୮୦ ।।
ନୈମିତ୍ତିକ ପ୍ରାକୃତିକ ଆତ୍ୟନ୍ତିକ ତିନି ।
ନିତ୍ୟପ୍ରଳୟକୁ ମିଶି ଚତୁର୍ବିଧ ମୁନି ।। ୮୧ ।।
ଏ ଚାରିପ୍ରକାରେ ସର୍ବଭୂତଙ୍କ ପ୍ରଳୟ ।
ବିସ୍ତାରି ତାହା କହିବା ଶୁଣ ହେ ମୈତ୍ରେୟ ।। ୮୨ ।।
ଯେଉଂ ସମୟରେ ବ୍ରହ୍ମା କରନ୍ତି ଶୟନ ।
ନୈମିତ୍ତିକ ପ୍ରଳୟ ସେହିଟି ମନେ ଘେନ ।। ୮୩ ।।
ବ୍ରହ୍ମାଣ୍ଡ ଯେବେ ପ୍ରକୃତି ଠାରେ ଲୀନ ହୁଏ ।
ପ୍ରାକୃତିକ ପ୍ରଳୟ ବୋଲିଣ ତାକୁ କହେ ।। ୮୪ ।।
ଜ୍ଞାନ ସକାଶରୁଂ ଯେ ପରମ ଆତ୍ମାଠାରେ ।
ଯୋଗୀଙ୍କର ଲୟ ହୋଏ ଯେଉଂ ସମୟରେ ।। ୮୫ ।।
ଆତ୍ୟନ୍ତିକ ପ୍ରଳୟ ବୋଲିଣ ତାକୁ କହି ।
ଏବେ ନିତ୍ୟପ୍ରଳୟ ଶୁଣିମା ତପ ଦେହି ।। ୮୬ ।।

ପ୍ରାଣୀମାନଙ୍କର ନିତ୍ୟ ହୋଇଲେ ମରଣ ।
ତାହାକୁ ନିତ୍ୟ ପ୍ରଳୟ ବୋଲି କରି ଜାଣ ॥ ୮୭ ॥
ସୃଷ୍ଟି ତିନିପ୍ରକାର କହିବା ଏବେ ଶୁଣ ।
ପ୍ରଳୟର ଅନ୍ତରେ ପ୍ରକୃତିଠାରୁଁ ପୁଣ ॥ ୮୮ ॥
ପ୍ରାକୃତିକ ସୃଷ୍ଟି ବୋଲି ତାହାକୁ କହନ୍ତି ।
ଯଉଂ ମହାବାଦି ମାନେ ସଂଭବ ହୁଅନ୍ତି ॥ ୮୯ ॥
ପ୍ରଳୟର ଅନ୍ତରେ ଯେବଣ ସୃଷ୍ଟି ହୋଏ ।
ବ୍ରହ୍ମାଙ୍କ ନିଦ୍ରା ଉତ୍ତାରେ ଯାହାଟି ଉଦୟେ ॥ ୯୦ ॥
ତାହାକୁ ଦୈନିକ ସୃଷ୍ଟି ବୋଲିଣଟି କହି ।
ନିତ୍ୟ ସର୍ଗ ଲକ୍ଷଣ କହିବା ତପ ଦେହି ॥ ୯୧ ॥
ଯଉଂ ସମୟରେ ପ୍ରାଣୀମାନେ ପ୍ରତିଦିନେ ।
ଜନମ ହଉଥାଆନ୍ତି ଅନେକ ବିଧାନେ ॥ ୯୨ ॥
ସେହି ତାହାକୁଟି ନିତ୍ୟସର୍ଗ ବୋଲି କରି ।
ପୁରାଣଜ୍ଞମାନେ କହିଛନ୍ତି ତପୋଚାରି ॥ ୯୩ ॥
ଏ ରୂପେ ଭୂତଭାବନ ଦେବ ଭଗବାନ ।
ସର୍ବଶରୀରମାନଙ୍କେ କରିଛନ୍ତି ସ୍ଥାନ ॥ ୯୪ ॥
ଉତ୍ପତ୍ତିସ୍ଥିତି ପ୍ରଳୟ ସେହି ସେ କରନ୍ତି ।
ଆଉରି କଥାଏ ଶୁଣିମା ହୋ ମହାଯତି ॥ ୯୫ ॥
ତଥାପି ତ୍ରିଗୁଣାତ୍ମିକା ବିଷ୍ଣୁ ଶକ୍ତିମାନେ ।
ସୃଷ୍ଟି ସ୍ଥିତି ପ୍ରଳୟରେ କର୍ତ୍ତା ସେ ବିଧାନେ ॥ ୯୬ ॥
ସଂସାରରେ ଅଛନ୍ତି ଯେତେକ ଦେହବନ୍ତ ।
ତାଙ୍କଠାରେ ଭ୍ରମଣ ଯେ କରନ୍ତି ସନ୍ତତ ॥ ୯୭ ॥
ଏଣୁ କରି ବ୍ରହ୍ମାଙ୍କର ଏହୁ ଶକ୍ତି ତିନି ।
ସୃଷ୍ଟିର ଆଦି ରୂପଟି ଶୁଣ ମହାମୁନି ॥ ୯୮ ॥
ଯେବଣ ଅନାଦି ଦେବ ସମସ୍ତ କାରଣ ।
ତାଙ୍କର ଏହିଟି ବଡ଼କାର୍ଯ୍ୟ ଏହା ଜାଣ ॥ ୯୯ ॥
ଏହାଙ୍କୁ ଅତିକ୍ରମିଣ ଯଉଂ ଲୋକଯାଇ ।
ସେ ନିଶ୍ଚେ ପରମବ୍ରହ୍ମ ପଦକୁ ଦେଖଇ ॥ ୧୦୦ ॥
ପୁନରପି ଜନ୍ମ ଆଉ ନୁହଇ ତାହାର ।
ଏକଥା ସତ୍ୟ ବୋଲିଣ ହୃଦୟରେ ଧର ॥ ୧୦୧ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ନବବ୍ରହ୍ମା ସୃଷ୍ଟି ସପ୍ତଅଧ୍ୟା ସମାପତ ॥ ୧୦୨ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୦୩ ॥

# ଅଷ୍ଟମ ଅଧ୍ୟାୟ

ଏଥୁ ଅନନ୍ତରେ ପୁଣି ପରାଶର ଭାଷି ।
ତାମସ ସର୍ଗ ଏ ଯାହା କହିଲୁ ହେ ଋଷି ॥ ୧ ॥
ରୁଦ୍ର ସର୍ଗ କହିବଇଂ ଏବେ ତାହା ଶୁଣ ।
ତହୁଂ ପୁଣି କଳ୍ପାଦିରେ ବିଧାତା ଆପଣ ॥ ୨ ॥
ଆପଣା ସଦୃଶ କରି ପୁତ୍ରେକ ବିଚାରି ।
ହୃଦରେ ଧ୍ୟାନ କରିବା ମାତ୍ରେ ତପଚାରି ॥ ୩ ॥
ସେ କାଳେ ଉତ୍ସଙ୍ଗେ ଜାତ ଏକଇ କୁମାର ।
ପ୍ରକାଶମାତ୍ରେ ଧଇଲେ ଲୋହିତ ଶରୀର ॥ ୪ ॥
ତହିଂ ଉତ୍ତାରେ ତା ପୁଣି ନୀଳବର୍ଣ୍ଣ ହେଲେ ।
ତେଣୁ ନୀଳ ଲୋହିତ ନାମ ଯେ ବୋଲାଇଲେ ॥ ୫ ॥
ତହୁଂ ପୁଣି ସୁସ୍ୱରେ ଯେ କରନ୍ତେ ରୋଦନ ।
ତାହା ଦେଖି ସେ କାଳରେ ଚତୁର ଆନନ ॥ ୬ ॥
କାହିଂକି ରୋଦନ କରୁ ବୋଲନ୍ତେ ଏମନ୍ତ ।
ସେ କାଳରେ ବ୍ରହ୍ମାଙ୍କ ବଦନ ଚାହିଂ ସୁତ ॥ ୭ ॥
ବୋଇଲେକ ମୋତେ ଏକ ନାମ ଏବେ ଦିଅ ।
ତାହା ଶୁଣି ପ୍ରଜାପତି ସାନନ୍ଦ ହୃଦୟ ॥ ୮ ॥
ବୋଇଲେ ହେ ଦେବ ଶୁଣ ନାମ ରୁଦ୍ର ହୋଉ ।
ଧଇର୍ଯ୍ୟ ବହି ରୋଦନ ନ କରିବା ଆଉ ॥ ୯ ॥
ଏହାଶୁଣି ପୁନରପି ସାତବାର କରି ।
ରୋଦନ କଲେ କୁମାର ଉଚ୍ଚସ୍ୱର ଧରି ॥ ୧୦ ॥
ତାହା ଶୁଣି ବିଧାତା ଦେଲେକ ସାତ ନାମ ।
ପ୍ରତି ପ୍ରତି କରି କହିବା ଶୁଣ ଦ୍ୱିଜୋତ୍ତମ ॥ ୧୧ ॥
ଭବ ସର୍ବ ଈଶାନ ଯେ ପଶୁପତି ଭୀମ ।
ଉଗ୍ର ମହାଦେବ ଏ ରୂପରେ ସାତ ନାମ ॥ ୧୨ ॥
ଦେଇପୁଣି ଏମାନଙ୍କୁ ସ୍ଥାନମାନ କଲେ ।
ଶୁଣ କଉଂ ନାମ କଉଂ ତନୁକୁ ଧଇଲେ ॥ ୧୩ ॥
ରୁଦ୍ରଙ୍କ ସୂର୍ଯ୍ୟତନୁ ଭବଙ୍କର ଜଳ ।
ସର୍ବଙ୍କର ମହୀ ଈଶାନଙ୍କର ଅନିଳ ॥ ୧୪ ॥
ପଶୁପତିଙ୍କ ଅନଳ ଭୀମଙ୍କ ଆକାଶ ।
ଉଗ୍ରଙ୍କର ଦୀକ୍ଷିତ ବ୍ରହ୍ମଣ ହେ ତାପସ ॥ ୧୫ ॥
ମହାଦେବଙ୍କର ସୋମ ଏମନ୍ତପ୍ରକାରେ ।
ଅଷ୍ଟତନୁ ଧରିଶିବ ପ୍ରଖ୍ୟାତ ସଂସାରେ ॥ ୧୬ ॥

ସେମାନଙ୍କ ପତ୍ନୀ ହେଲେ ଯଉଂ ଯଉଂମାନେ ।
ତାହା କ୍ରମେ କହିବା ଶୁଣିମା ସାବଧାନେ ॥ ୧୭ ॥
ରୁଦ୍ରଙ୍କର (ସୁବିମଳା) ସୁବର୍ଚ୍ଚକା ଭବଙ୍କର ଉମା ।
ସର୍ବଙ୍କ ବିକେଶୀ ଈଶାନଙ୍କ ଶିବା ବାମା ॥ ୧୮ ॥
ପଶୁପତିଙ୍କର ସ୍ୱାହା ଭୀମଙ୍କର ଦିଗ ।
ଉଗ୍ରଙ୍କର ଦିକ୍ଷା ଗୃହିଣୀ ହେ ମହାଭାଗ ॥ ୧୯ ॥
ମହାଦେବଙ୍କ ରୋହିଣୀ ଏ ଯେ ଅଷ୍ଟନାରୀ ।
ଅଷ୍ଟମୂର୍ତ୍ତିଙ୍କର ଯେ ହୋଇଲେ ମନୋହାରୀ ॥ ୨୦ ॥
ତାହାଙ୍କ କୁମର ହେଲେ ଯଉଂ ଯଉଂମାନେ ।
ତାହା ଏବେ କହିବା ଶୁଣ ତୁ ଦିବ୍ୟଜ୍ଞାନେ ॥ ୨୧ ॥
ଯାହାଙ୍କ ପୁତ୍ରପୌତ୍ରମାନଙ୍କରେ କରି ।
ଏ ସମସ୍ତ ଜଗତ ଯେ ରହିଅଛି ପୁରି ॥ ୨୨ ॥
ସେ ସନ୍ତତିନାମମାନ ଯଥାକ୍ରମେ ଶୁଣ ।
ସୂର୍ଯ୍ୟଙ୍କର ଶନି ଜଳଙ୍କର ଶୁକ୍ର ପୁଣ ॥ ୨୩ ॥
ମହୀର ମଙ୍ଗଳ ପବନର ମନୋଜବ ।
ଅନଳର ସ୍କନ୍ଦ ଆକାଶର ପୁତ୍ର ଦିବ ॥ ୨୪ ॥
ଦୀକ୍ଷିତର ସନ୍ତାନ ସୋମର ବୁଧସୁତ ।
ଏ ରୂପେ ଅଷ୍ଟ କୁମାର ହୋଇଲେ ସମ୍ଭୂତ ॥ ୨୫ ॥
ଏମନ୍ତ ପ୍ରକାରେ ଅଟନ୍ତିଟି ରୁଦ୍ର ଯେହି ।
ସତୀ ନାମେ ଭାର୍ଯ୍ୟାକୁ ଲଭିଲେ ପୁଣି ସେହି ॥ ୨୬ ॥
ସେ ସତୀଙ୍କ କ୍ରୋଧ ପୁଣି ଦକ୍ଷ ହେତୁଂ ହେଲା ।
ତେଣୁଂ ନିଜ ତନୁ ଅନଳରେ ନାଶ କଲା ॥ ୨୭ ॥
ତହୁଂ ପୁଣି ହିମବନ୍ତ ଗୃହେ ମେନା ଗର୍ଭେ ।
ସେ ସତୀ ଜନମ ହେଲେ ଅତି ସର୍ବ ଶୁଭେ ॥ ୨୮ ॥
ପୁଣି ସେହି ଉମାକୁ ସେ ଭଗବାନ ଭବ ।
କାଳେ ବିବାହ ଲଭିଲେ ହେ ମୁନି ପୁଙ୍ଗବ ॥ ୨୯ ॥
ଯେଣୁ କରି ପିତାଙ୍କର କ୍ରୋଧରୁଂ ସେ ସତୀ ।
ଯାଗାନଳେ କଳେବର କଲେକ ଆହୂତି ॥ ୩୦ ॥
ତେଣୁ କରି ଅନ୍ୟ ଜନ୍ମେ ସନ୍ତତି ତାଙ୍କର ।
ନୋହିଲା କି ସେ ରୂପେ ରହିଲେ ମୁନିବର ॥ ୩୧ ॥
ରୁଦ୍ର ସର୍ଗରେ ହୋଇଲା ଯେମନ୍ତ ବ୍ୟବସ୍ଥା ।
ଶୁଣ ଏବେ କହିବଇଂ ବିଷ୍ଣୁ ସର୍ଗ କଥା ॥ ୩୨ ॥
ଭୃଗୁଋଷିଙ୍କର ଖ୍ୟାତି ନାମେ ଯଉଂ ନାରୀ ।
ତହୁଂ ଧାତା ବିଧାତା ଏ ଦୁହେଂ ଅବତରି ॥ ୩୩ ॥

ନାରାୟଣଙ୍କର ପତ୍ନୀ ଯେଉଁ ଲକ୍ଷ୍ମୀ ଦେବୀ ।
ସେହି ପୁଣି ତାହାଙ୍କର ଗର୍ଭରୁ ସମ୍ଭବି ।। ୩୪ ।।
ଏହା ଶୁଣି ମଇତ୍ରେୟ ଘେନିଣ ସନ୍ଦେହ ।
ପଚାରିଲେ ଭୋ ଗୁରୁ କଥାଏ ମତେ କହ ।। ୩୫ ।।
ପୂର୍ବକାଳେ ଅମୃତମନ୍ଥନ ସମୟରେ ।
କ୍ଷୀର ସାଗରୁଂ ତ ଲକ୍ଷ୍ମୀ ଜନ୍ମିଲେ ଶୁଭରେ ।। ୩୬ ।।
ଏ ପ୍ରସଙ୍ଗ ଶାସ୍ତ୍ରାନ୍ତରେ ଶୁଣିଅଛୁ ଆମ୍ଭେ ।
ଭୃଗୁକୁଳେ ଜନ୍ମିବାର କହିଲ ତ ତୁମ୍ଭେ ।। ୩୭ ।।
କେମନ୍ତ ଏ ପ୍ରସ୍ତାବ ଏ ସଂଶୟ ଫେଡ଼ି କହ ।
ଶୁଣି ପରାଶରଙ୍କର ପୁଲକିତ ଦେହ ।। ୩୮ ।।
ଆନନ୍ଦେ ବୋଲନ୍ତି ବାବୁ କହିବା ଶୁଣ ।
ସେ ପରମଲକ୍ଷ୍ମୀଙ୍କ ମହିମା ଅପ୍ରମାଣ ।। ୩୯ ।।
ନିତ୍ୟପରମବିଷ୍ଣୁଙ୍କ ନିତ୍ୟ ଅଟେ ସେହି ।
ଜଗନ୍ମାତା ଅଛି ଅବିନାଶିତ ତନୁ ବହି ।। ୪୦ ।।
ଯେଉଁରୂପେ ସର୍ବଦେହେ ବିଷ୍ଣୁଙ୍କର ବାସ ।
ସେହିରୂପେ ସବୁଠାରେ ଲକ୍ଷ୍ମୀଙ୍କ ନିବାସ ।। ୪୧ ।।
ଯେଉଁଠାରେ ବିଷ୍ଣୁ ଅବନ୍ତଶ ସେଠାରେ ଏ ବାଣୀ ।
ଯହିଁ ହରି ନ୍ୟାୟ ତହିଁ ତିନି କମଳିନୀ ।। ୪୨ ।।
ବୋଧରୂପ ମାଧବ ଯେ ବୁଦ୍ଧିରୂପା ରମା ।
ଧର୍ମରୂପ କେଶବ ସକ୍ରିୟା ବିଷ୍ଣୁବାମା ।। ୪୩ ।।
ସ୍ରଷ୍ଟାରୂପ ହରି ସୃଷ୍ଟି ରୂପା ପଦ୍ମାଳୟା ।
ଭୂଧରରୂପ ଶ୍ରୀପତି ଭୂମି ହରିପ୍ରିୟା ।। ୪୪ ।।
ଭଗବାନ ସନ୍ତୋଷ ଯେ ତୁଷ୍ଟି ଲୋକମାତା ।
କାମରୂପି ବିଷ୍ଣୁ ଇଚ୍ଛାରୂପା ସିନ୍ଧୁସୁତା ।। ୪୫ ।।
ପ୍ରଭୁ ଯଜ୍ଞରୂପୀ ଯେ ଦକ୍ଷିଣା ଲକ୍ଷ୍ମୀଦେବୀ ।
ବିଷ୍ଣୁ ଯାଗଭାଗ ରମା ଯେ ଆହୁତି ହବି ।। ୪୬ ।।
ଯାଗଗୃହ ହରି ତହିଁ ଗୃହିଣୀ କମଳା ।
ଭଗବାନ ଯୂପଚିତି ଅଟନ୍ତି କମଳା ।। ୪୭ ।।
ଶ୍ରୀମଧୁସୂଦନ କୁଶ ସମିଧ ଭାର୍ଗବୀ ।
ସାମରୂପୀ ଅଚ୍ୟୁତ ଉଦ୍ଗୀତିଲକ୍ଷ୍ମୀ ଦେବୀ ।। ୪୮ ।।
ଜଗନ୍ନାଥହୁତାଶନ ପଦ୍ମାଳୟା ସ୍ୱାହା ।
ଶ୍ରୀବାସୁଦେବ ଶଙ୍କର ଗଉରୀସୁଦେହା ।। ୪୯ ।।
ପଦ୍ମନେତ୍ର ଦିନକର ପ୍ରଭା ଜଗଦ୍ଧାତ୍ରୀ ।
ବିଷ୍ଣୁ ପିତୃଗଣ ସ୍ୱଧା ସିନ୍ଧୁ ରାଜପୁତ୍ରୀ ।। ୫୦ ।।
ବିଷ୍ଣୁ ଅବକାଶ ଦିବି ସକଳ ଜନନୀ ।
ଶ୍ରୀଧର ରଜନୀକର କାନ୍ତି ପଦ୍ମାସନୀ ।। ୫୧ ।।

ଲକ୍ଷ୍ମୀକାନ୍ତ ପବନ ଯେ ଚେଷ୍ଟା ସିନ୍ଧୁସୁତା ।
ଜଳଧି ଗୋବିନ୍ଦ ସିନ୍ଧୁ ବେଳା ଆଦିମାତା ॥ ୫୨ ॥
ଉପେନ୍ଦ୍ର ସାକ୍ଷାତ ଇନ୍ଦ୍ର ପଦ୍ମା ଇନ୍ଦ୍ରାୟଣୀ ।
ଧୂର୍ମୋର୍ଣ୍ଣା କମଳା ଯମରୂପୀ ଚକ୍ରପାଣି ॥ ୫୩ ॥
ପରମଲକ୍ଷ୍ମୀ ସମ୍ପତ୍ତି ଧନେଶ୍ୱର ହରି ।
ବରୁଣ ବିଷ୍ଣୁ ବରୁଣଆତ୍ମଜା ଗଉରୀ ॥ ୫୪ ॥
କାର୍ତ୍ତିକେୟ ଗୋବିନ୍ଦ ଯେ ରମା ଦେବସେନା ।
ପଦ୍ମନାଭ ପୁରୁଷ ଯେ କମଳା ଅଙ୍ଗନା ॥ ୫୫ ॥
ଶ୍ରୀପତି ପୁରୁଷକାର ଲକ୍ଷ୍ମୀ ଦେବୀ ଶକ୍ତି ।
ଗଦାପାଣି ନିମିଷ ଯେ କାଷ୍ଠା ଜନୟିତ୍ରୀ ॥ ୫୬ ॥
ମୁହୂର୍ତ୍ତ ମାଧବ କଳା କମଳବାସିନୀ ।
ପ୍ରଦୀପ ଗୋବିନ୍ଦ ଜ୍ୟୋତ୍ସ୍ନା ପଙ୍କଜବାସିନୀ ॥ ୫୭ ॥
ବିଷ୍ଣୁ ପାଦପ ପରମବଇଷ୍ଣବୀ ଲତା ।
ପ୍ରଭୁ ଦିବସ ରଜନୀ ଶ୍ରୀପତିବନିତା ॥ ୫୮ ॥
ବୈକୁଣ୍ଠପତି ନାୟକ କମଳା ନାୟିକା ।
ଭଗତସୋଦର କୃଷ୍ଣ ଇନ୍ଦିରା ରାଧିକା ॥ ୫୯ ॥
ନାରାୟଣ ପ୍ରିୟ ଯେ ପରମଲକ୍ଷ୍ମୀ ପ୍ରିୟା ।
ନଦ ରୂପୀ ହରି ନଦୀ ରୂପା ପଦ୍ମାଳୟା ॥ ୬୦ ॥
ଧ୍ୱଜ ପୁଣ୍ଡରୀକନେତ୍ର ପତାକା ହରିଣୀ ।
ତୃଷ୍ଣା ଲକ୍ଷ୍ମୀ ଲୋଭ ସରସିଜ ଶଙ୍ଖପାଣି ॥ ୬୧ ॥
ପ୍ରୀତି ମହାଲକ୍ଷ୍ମୀ ନାରାୟଣ ଅନୁରାଗ ।
ଏମନ୍ତ ରୂପେ ପୁରୁଷ ପ୍ରକୃତି ସଂଯୋଗ ॥ ୬୨ ॥
ଅଧିକ କେତେ କହିବା ସଂକ୍ଷେପରେ ଶୁଣ ।
ସଂସାରମୟ ସେ ବେନି ଲକ୍ଷ୍ମୀ ନାରାୟଣ ॥ ୬୩ ॥
ସୁରାସୁର ନର ନାଗ ସ୍ଥାବରାଦି ଯେତେ ।
ଏଥିରେ ମାତ୍ର ବିଷ୍ଣୁଙ୍କ ଶକ୍ତି ବିଧି ମତେ ॥ ୬୪ ॥
ସ୍ତିରୀମାତ୍ର ଅଟନ୍ତି ପରମ ବଇଷ୍ଣବୀ ।
ଏ ଦୁହିଙ୍କୁ ଅନ୍ୟ କେହି ନାହିଁଟି ସମ୍ଭବି ॥ ୬୫ ॥
ଏଣୁକରି ଏହୁ ବେନି ଏକା ଚରାଚର ।
ଯୋଗମାର୍ଗେ ମଇତ୍ରେୟ କଳନା ତୁ କର ॥ ୬୬ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ରୁଦ୍ର ସର୍ଗ ଅଷ୍ଟମ ଅଧ୍ୟା ସମାପତ ॥ ୬୭ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୬୮ ॥

# ନବମ ଅଧ୍ୟାୟ

ଏଥୁ ଅନନ୍ତରେ ଯେ ପୁଣି ହିଁ ପରାଶର ।
କହୁଛନ୍ତି ଶୁଣ ହେ ମୈତ୍ରେୟ ମୁନିବର ।। ୧ ।।
ଲକ୍ଷ୍ମୀଙ୍କର ଜନମଟି ପଚାରିଲ ଯାହା ।
ସର୍ବବ୍ୟାପୀ ଅଟନ୍ତି ସେ ଲକ୍ଷ୍ମୀ ଲକ୍ଷ୍ମୀନାହା ।। ୨ ।।
ତଥାପି କହିବା ତାଙ୍କ ସିନ୍ଧୁ ଜନ୍ମ ରୀତି ।
ଆମ୍ଭେ ପୁଣି ଯଉଂରୂପେ ଶୁଣି ଅଛୁ ଯତି ।। ୩ ।।
ପୂର୍ବେ ମରୀଚି ଆମ୍ଭଙ୍କୁ ଯାହାଛନ୍ତି କହି ।
ସେ କଥା ଶୁଣ ହେ ଭକ୍ତିପୂର୍ବେ ମନ ଦେଇ ।। ୪ ।।
ଏକ ଦିନ ସମୟେ ଦୁର୍ବାସା ମହରଷି ।
ଶଙ୍କରଙ୍କ ଅଂଶ ସେ ଯେ ଅତ୍ୟନ୍ତ ତେଜସ୍ୱୀ ।। ୫ ।।
ସମସ୍ତ ମହିମଣ୍ଡଳ ଭ୍ରମିଣ ଇଚ୍ଛାରେ ।
ପ୍ରବେଶ ହୋଇଲେ ଯେ ଅଳକା ନାମେ ପୁରେ ।। ୬ ।।
ଏ ସ୍ଥାନରେ ଦେଖିଲେ ଏକଇ ବିଦ୍ୟାଧରୀ ।
ଜଗତମୋହିନୀ ବେଶ ହୋଇ ସୁକୁମାରୀ ।। ୭ ।।
କର ପଦ୍ମେ ଧରିଛି ମନ୍ଦାରପୁଷ୍ପ ମାଳା ।
ଉପବନେ ଉଭା ଯେ ହୋଇଛି ନବବାଳା ।। ୮ ।।
ସେ କୁସୁମ ମାଳାର ସୁଗନ୍ଧ ଗନ୍ଧବାହେ ।
ସର୍ବଜନ ମନୋହର ସୁବାସ ଉଦୟେ ।। ୯ ।।
ତେଣୁ କରି ସେ ବନକୁ ବନଚାରିମାନେ ।
ସେବା କରି ଅଛନ୍ତି ଯେ ଆନନ୍ଦ ବିଧାନେ ।। ୧୦ ।।
ଏମନ୍ତ ପାରିଜାତକ ମାଳାର ମହିମା ।
ତାହା କରାମ୍ବୁଜେ ଧରିଅଛି ଦିବ୍ୟ ବାମା ।। ୧୧ ।।
ତାହା ନେତ୍ର ପଥରେ ଯେ ଦେଖିଲେ ଦୁର୍ବାସା ।
ମାଗିବା ନିମିତ୍ତେ ବଳାଇଲେ ପ୍ରତିଆଶା ।। ୧୨ ।।
ଏକେ ତ ଉନ୍ମତ୍ତ ବ୍ରତଧର ମହାଯୋଗୀ ।
ତେଣୁ କରି ତାହାଙ୍କ ସ୍ୱଭାବ ମହାରାଗୀ ।। ୧୩ ।।
ଯଉଂ ବାତୁଳ ଶିଶୁର ପ୍ରାୟେ ବ୍ୟବହାର ।
ଭଲ ମନ୍ଦ ପ୍ରସଙ୍ଗରେ ନ ଥାଇ ବିଚାର ।। ୧୪ ।।
ଏଣୁ କରି କିନ୍ନରୀକି ବୋଇଲେ ତପସ୍ୱୀ ।
କୁସୁମ ମାଳା ଆମ୍ଭଙ୍କୁ ଦେବୁକି ସୁକେଶି ।। ୧୫ ।।
ଶଣି ବିଦ୍ୟାଧରବାମା ସନମତ କଲା ।
ଭକ୍ତିପୂର୍ବ ହୋଇ ମୁନି ପାଦେ ଓଳଗିଲା ।। ୧୬ ।।

୬.ଖ. ତାଳକା, ୧୧.ଖ. ମାଳାର, ୧୮.ଖ. ଋଷି

ଆଦର ସହିତ ହୋଇ ଦିବ୍ୟମାଳା ନେଇ ।
ଋଷିକରେ ସମର୍ପିଲା ସୁଦର୍ପଣମୁହାଁ ॥ ୧୭ ॥
ସେ ମାଳା ଘେନି ତପସ୍ୱୀ ବାତୁଳ ଚେଷ୍ଟାରେ ।
ବେଷ୍ଟନ କଲେ ଆପଣା ମସ୍ତକ ଜଟାରେ ॥ ୧୮ ॥
ସେ କାଳରେ କୁସୁମ ଦିଶିଲା କେଡ଼େ ତୋରା ।
ବଲ୍ମୀକଶିରେ କୁଟଜ ପୁଷ୍ପ ଶ୍ରେଣୀ ପରା ॥ ୧୯ ॥
ପୁଷ୍ପମାଳା ଦିଗମ୍ବର ମସ୍ତକେ ଲମ୍ବାଇ ।
ଭ୍ରମିଲେ ମହୀମଣ୍ଡଳ ବାଇ ପ୍ରାୟେ ହୋଇ ॥ ୨୦ ॥
ବୁଲି ବୁଲି ଅମର ପୁରକୁ ଚଳିଗଲେ ।
ସ୍ୱର୍ଗଙ୍ଗା ତୀର ସମୀପେ ଇନ୍ଦ୍ରଙ୍କୁ ଦେଖିଲେ ॥ ୨୧ ॥
ମତ୍ତ ଐରାବତ ପୃଷ୍ଠେ ଶକ୍ର ଛନ୍ତି ବସି ।
ତ୍ରୈଲୋକ୍ୟାଧିପ ପରା ତେଜମାନଙ୍କେ ବିକାଶି ॥ ୨୨ ॥
ଚାରିପାରୁସରେ ବେଢ଼ିଛନ୍ତି ଦେବଗଣ ।
ଗନ୍ଧର୍ବ ଅପ୍ସରା ଗୀତ ନୃତ୍ୟେ ସାବଧାନ ॥ ୨୩ ॥
ଏମନ୍ତ ସମୟେ ଦେବରାଜଙ୍କରେ ଚାହିଁ ।
ଶିରରୁଂ କୁସୁମମାଳା ସେହି ଲାଗେ ଫେଇ ॥ ୨୪ ॥
ବାଇ ପ୍ରାୟେ ହୋଇଣ ବାସବକରେ ଦେଲେ ।
ଅସାବଧାନ ହୋଇଣ ଇନ୍ଦ୍ର ତା ଘେନିଲେ ॥ ୨୫ ॥
ଅପ୍ସରାଙ୍କର ନୃତ୍ୟରେ ଅଛି ନେତ୍ର ମନ ।
ତେଣୁ ଋଷି ପ୍ରସାଦେ ନ କଲେ ଚଇତନ ॥ ୨୬ ॥
କରେ ପୁଷ୍ପମାଳା ଘେନି ଗଜମସ୍ତକରେ ।
ରଖି ପୁଣି ସାବଧାନ ହୋଇଲେ ନୃତ୍ୟରେ ॥ ୨୭ ॥
ସେ କୁସୁମ ଗନ୍ଧେ ଗଣ୍ଡ ପ୍ରଦେଶ ଭ୍ରମରେ ।
ମଦପାନ ଛାଡ଼ି କ୍ରୀଡ଼ା କଲେକ ତହିଁରେ ॥ ୨୮ ॥
ସେବାସରୁ ଗଣ୍ଡୀ ଶୁଣ୍ଡା ଦଣ୍ଡକୁ ବଢ଼ାଇ ।
ନିଜ ମସ୍ତକୁ ମନ୍ଦାର ପୁଷ୍ପମାଳା ନେଇ ॥ ୨୯ ॥
ପୁଷ୍କରେ ପାରିଜାତକ ମାଳିକାକୁ ସୁଙ୍ଘି ।
ତତକ୍ଷଣେ ଧରଣୀ ତଳକୁ ଦେଲା ଫିଙ୍ଗି ॥ ୩୦ ॥
ତାହା ଦେଖି ସକ୍ରୋଧ ଦୁର୍ବାସା ମହରଷି ।
କାଳାନଳ ଶିଖାପ୍ରାୟେ ନୟନ ବିକାଶି ॥ ୩୧ ॥
କୋପଭରେ ବାସବକୁ ବୋଇଲେ ଏମନ୍ତ ।
ଅଇଶ୍ୱର୍ଯ୍ୟ ମଦରେ କି ବିହ୍ୱଳିତ ଚିତ୍ତ ॥ ୩୨ ॥
ଆରେ ଦୁଷ୍ଟ ଆତ୍ମା ତୁ ଅମର ଲକ୍ଷ୍ମୀ ଘେନି ।
ଅତି ଗର୍ବେଶ୍ୱର ହୋଇ ନପାରିଲୁ ଚିହ୍ନି ॥ ୩୩ ॥

ଆମ୍ଭେ ଦେଲା ମାଳାକୁ ଯେ କଲୁ ଅମାନନା ।
ଏଣୁ କରି ତୋହର ଏ ଅମଙ୍ଗଳ ସିନା ।। ୩୪ ।।
ଦେଖିବା ମାତ୍ରେ ଗଜକନ୍ଧରୁ ନ ଉତୁରି ।
କରପତ୍ର ଯୋଡ଼ି ନ ରହିଲୁ ପୁରଃସରି ।। ୩୫ ।।
ପ୍ରସାଦ ଏହା ବୋଲିଣ ପ୍ରଣିପାତ ନୋହି ।
ଆନନ୍ଦରେ ପ୍ରଫୁଲ୍ଲ ନ କରି ଗଣ୍ଡ ଦୁଇ ।। ୩୬ ।।
ବଡ଼ ଦ୍ରବ୍ୟ ଏମନ୍ତ ନମଣି ଭକ୍ତି ଭାବେ ।
ମୁହିଂ ଦେଲା ମାଳା ଶିରେ ନଧଇଲୁ ଯେବେ ।। ୩୭ ।।
ସେ କାରଣୁ ତ୍ରୈଲୋକ୍ୟ ଲକ୍ଷ୍ମୀ ତୋ ନାଶ ଯାଉ ।
ଆନଦ୍ୱିଜସଙ୍ଗତେ ଗଣିଲୁ ମତେ ଯହୁଂ ।। ୩୮ ।।
ସକଳ ଋଷିମାନେ ଯେ ପରମ ଦୟାଳୁ ।
ମୁଁ ପୁଣି କି ଏମନ୍ତ ହୃଦରେ ଏହା ଭାଳୁ ।। ୩୯ ।।
ମନକଲେ ବ୍ରହ୍ମାଣ୍ଡ ଦହିବି କୋପାନଳେ ।
ତୋହମାତ୍ର ପାଇଁ ନାଶ ଯିବେ କି ସକଳେ ।। ୪୦ ।।
ଏଣୁ କରି ତ୍ରିପୁର ଲକ୍ଷ୍ମୀ ତୋ ଯିବ ଆଜ ।
ମତେ ଅମାନନା କଲା ଫଳ ଏବେ ଭୁଞ୍ଜ ।। ୪୧ ।।
ଏହି କାରଣରୁ ସିନା ଗର୍ବେଶ୍ୱର ହୋଇ ।
ମୁଁ ଦେଲା ପ୍ରସାଦ ତଳେ ଦେଲୁ ଫୋପାଡ଼ାଇ ।। ୪୨ ।।
ସେ ହେତୁ ତ୍ରିପୁର ତୋର ହତଲକ୍ଷ୍ମୀ ହେବ ।
ଦେଖ ଦୁର୍ବାସା ଋଷିର ବଚନ ପ୍ରଭାବ ।। ୪୩ ।।
ଯାହାର କ୍ରୋଧ ମାତ୍ରକେ ଚରାଚରେ ଡରି ।
ତୁହି ଅମାନନା କଲୁ ଅତି ଗର୍ବେ କରି ।। ୪୪ ।।
ସେ କାରଣୁ ଯେ ହେବ ପାଇବୁ ସେହି ଫଳ ।
କହନ୍ତି ପରାଶର ଶୁଣ ହେ ତପଶୀଳ ।। ୪୫ ।।
ଦୁର୍ବାସାର ବଚନ ଏମନ୍ତ ଶୁଣି ଶକ୍ର ।
ଭୟେ ଚିତ୍ତଭ୍ରମିଲାକି ଜାଣି ବାତଚକ୍ର ।। ୪୬ ।।
ଗଜକନ୍ଧୁଁ ତୁରିତେ ଓହ୍ଲାଇ ଉଭା ତଳେ ।
ସର୍ବାଙ୍ଗ ତିନ୍ତିଛି ଋଷି ଶାପତ୍ରାସ ଝାଳେ ।। ୪୭ ।।
ଘନ ଘନ କମ୍ପଇ କଦଳୀ ପତ୍ର ଜିଣି ।
ନିଜ ଶିର ଉପରେ ନିବେଶି ବେନିପାଣି ।। ୪୮ ।।
ସ୍ତୁତି କରିବାକୁ ଯେ ଅକ୍ଷରମାନ ହୁଡ଼େ ।
ଚାଲିଯାନ୍ତେ ଚରଣଯେ ଏଣେ ତେଣେ ପଡ଼େ ।। ୪୯ ।।
ଯଥା କଥା ହୋଇ କରି ଉଭା କେତେ ଯାଇ ।
ତପସ୍ୱୀ ଚରଣ ତଳେ ସାଷ୍ଟାଙ୍ଗରେ ଶୋଇ ।। ୫୦ ।।

ଉଠି ଉଭା ହୋଇଣ ବିନୟେ ପୁରଃସରି ।
ବୋଇଲା ପ୍ରସନ୍ନ ହୁଅ ଦେବ ତ୍ରିପୁରାରି ॥ ୫୧ ॥
ଅନୁଗ୍ରହ କର ବିଶ୍ୱସଂହାର ପୁରୁଷ ।
ମୁଁ ତୁମ୍ଭର କିଂକର ଦାସର ଦାସ ଦାସ ॥ ୫୨ ॥
ନ ଜାଣି ଶ୍ରୀଚରଣେ ଅର୍ଜିଲି ଅପରାଧ ।
ଏଥେ ପ୍ରତିକାର ଏବେ କହ ମହାସିଦ୍ଧ ॥ ୫୩ ॥
ଏ ରୂପେ ଅନେକ ସ୍ତୁତି କରନ୍ତେଣ ଇନ୍ଦ୍ର ।
ଶୁଣି ପ୍ରସନ୍ନ ଦୁର୍ବାସା ସେ ଦ୍ୱିତୀୟ ରୁଦ୍ର ॥ ୫୪ ॥
ନିଷ୍ପାପୀପୁରୁଷ ଦେଲେ ବାସବକୁ ଚାହିଁ ।
କରପତ୍ର ଯୋଡ଼ି ଆଗେ ଛନ୍ତି ଉଭା ହୋଇ ॥ ୫୫ ॥
ଏମନ୍ତ କରି ସହସ୍ରାକ୍ଷକୁ ଦେଖି ମୁନି ।
ବୋଲନ୍ତି ଶୁଣ ହୋ ଶକ୍ର ମୁ ତ ଅଭିମାନୀ ॥ ୫୬ ॥
କୃପାଳୁ ହୃଦୟ ମୋର ନୁହଇ କେବେହେଂ ।
କ୍ଷମାବୋଲି କି ସ୍ୱରୂପ ତା ନାହିଁ ଏ ଦେହେ ॥ ୫୭ ॥
ଆନ ଯେତେ ମୁନିଛନ୍ତି ସର୍ବେ କୃପାବନ୍ତ ।
ଦୁର୍ବାସା ବୋଲୁ ଯାହାକୁ ସେ ନୋହେ ଏମନ୍ତ ॥ ୫୮ ॥
ଗୌତମକୁ ଆଦି କରି ଆନ ଯେତେ ଋଷି ।
ତାଙ୍କଠାରେ ଗର୍ବ ତୋର ସମ୍ଭବେ ବିଶେଷି ॥ ୫୯ ॥
ଦେଖି ଅହଲ୍ୟା ହରଣେ ପାଇଥିଲୁ ଶାପ ।
ସହସ୍ର ଯୋନି ହୋଇଲା ତୋହର ସ୍ୱରୂପ ॥ ୬୦ ॥
ଭକ୍ତି ଦେଖି ତୋର ଯହୁଁ କଲେ ଦୟାପାତ୍ର ।
ଗାତ୍ର ସର୍ବ ଭଗ ଚିହ୍ନ ହୋଇଲାକ ନେତ୍ର ॥ ୬୧ ॥
ସେ ରୂପେ କରୁଣା ଲେଶ ନାହିଁ ଆମ୍ଭଠାରେ ।
ହିଂସାସାର ସବୁ ଧନ ଦୁର୍ବାସା ତହିଂରେ ॥ ୬୨ ॥
ଏମନ୍ତ କରିଣ ମତେ ଜାଣ ଦେବରାଜ ।
ସର୍ବଦ୍ୱିଜରେ ଗଣନା ନୁହଇ ଏ ଦ୍ୱିଜ ॥ ୬୩ ॥
ବଶିଷ୍ଠଙ୍କୁ ଆଦି ଦୟାସାର ମୁନି ଯେତେ ।
ତୋତେ ସ୍ତୁତିମାନ କରୁଥାନ୍ତି ନାନାମତେ ॥ ୬୪ ॥
ସେ କାଳେ ତୁ ଗର୍ବେ ଉଚ୍ଚାସନେ ବସିଥାଉ ।
ତହିଁକି ସେମାନଙ୍କ ବିଚାର ନାହିଁ ଆଉ ॥ ୬୫ ॥
ସେହି ଗର୍ବେ ମୋଠାରେ କି କଲୁ ଅମାନନା ।
ମୁଁ କଉଂ ସ୍ୱରୂପ ସର୍ବ ନେତ୍ରେ ଚାହୁଁ କି ନା ॥ ୬୬ ॥
ଯାହା କ୍ରୋଧ ସମୟେ ଚଳଇ ଜଟାଭାର ।
କୁଣ୍ଡଳୀ ମୁଣ୍ଡେ ବ୍ରହ୍ମାଣ୍ଡ ଚଳିଲା ପ୍ରକାର ॥ ୬୭ ॥

ଭ୍ରୂକୁଟି କୁଟିଳ ମୁଖ ଅତି ଭୟଙ୍କର ।
ମଧ୍ୟାହ୍ନ ରବି ମଣ୍ଡଳ ପରାୟେ ପ୍ରଖର ।। ୬୮ ।।
ଖରନିଶ୍ୱାସେ ସେ ତରଳ ମୁଖ ଲୋମ ଶ୍ରେଣୀ ।
ସହସ୍ର ଫଣାଟେକି କି ଗର୍ଜେ ଶେଷଫଣୀ ।। ୬୯ ।।
ଅରୁଣ ବର୍ଣ୍ଣେ ଭ୍ରମଣ କରେ ବେନି ଡୋଳ ।
ଅଗ୍ନି କୁଣ୍ଡେ ତମ୍ବା ଚକ୍ର ଯେମନ୍ତେ ତରଳ ।। ୭୦ ।।
ଏମନ୍ତ ରୂପ ମୋହର ଚାହିଁ ତା ନୟନେ ।
ଯେ ଭୟ ଛାଡ଼ିବ ସେ କାହିଁ ଏ ତ୍ରିଭୁବନେ ।। ୭୧ ।।
ଏଣୁକରି ମୋହଠାରେ ନାହିଁ କ୍ଷମା ଭାବ ।
ଅଧିକ କହିଲେ ଅବା କି କାର୍ଯ୍ୟ ହୋଇବ ।। ୭୨ ।।
ପୁନଃପୁନଃ ମୋତେ ଯା କରାଉ ଅଛୁ ଶାନ୍ତ ।
ଉପହାସ ପ୍ରାୟେ ମୁଁ ମଣଇ ଶଚୀକାନ୍ତ ।। ୭୩ ।।
ଏବେ ଏ ବିନୟ ଛାଡ଼ ପୁରକୁ ତୋ ଯାଯା ।
କାଲି ଦେଖ କି ରୂପେ ହୋଇବୁ ସ୍ୱର୍ଗେ ରାଜା ।। ୭୪ ।।
ପୁରନ୍ଦରକୁ ଏମନ୍ତ କହିଣ ଦୁର୍ବାସା ।
ଚଳିଗଲେ କରିବାକୁ ଗଙ୍ଗାରେ ତପସ୍ୟା ।। ୭୫ ।।
ପରାଶର କହନ୍ତି ଶୁଣ ହେ ମଇତ୍ରେୟ ।
ଏଥୁ ଅନନ୍ତରେ ପୁଣି କଶ୍ୟପ ତନୟ ।। ୭୬ ।।
ଗଜ କନ୍ଧେ ଆରୋହି ଅମର ଗଣ ତୁଲେ ।
ମନେ ତାପ ଘେନିଣ ଅମରାବତୀ ଗଲେ ।। ୭୭ ।।
ସେହିଠାରୁଁ ଆରମ୍ଭିଣ ପଡ଼ିଲା ଦୁର୍ଦ୍ଦଶା ।
ଭାଗ୍ୟଗିରି ବଜ୍ର ହେଲା ଦୁର୍ବାସାର ଭାଷା ।। ୭୮ ।।
ଦେଖୁ ଦେଖୁ ହତଶ୍ରୀ ହୋଇଲା ପୁରନ୍ଦର ।
କାହିଁଗଲା ସେହି କ୍ଷଣି ସମ୍ପତ୍ତି ସ୍ୱର୍ଗର ।। ୭୯ ।।
ଐରାବତ ବାରଣ ଉଚ୍ଚୈଶ୍ରବା ହୟ ।
ପଞ୍ଚ ଦେବତରୁ ସୁଦ୍ଧା ଦିବ୍ୟ ରତ୍ନଚୟ ।। ୮୦ ।।
ଅଷ୍ଟ ଅପସରା ଯେ ବୈକୁଣ୍ଠ ଠାକୁରାଣୀ ।
କାହିଁ ଗଲେ କି ରୂପେ କେ ନ ପାରିଲେ ଜାଣି ।। ୮୧ ।।
ଅମର ବୃନ୍ଦେ ବାସବ ଆଜ୍ଞା ନ ପାଳିଲେ ।
ଚାରି ମେଘ ଅବନୀରେ ବରଷା ନ କଲେ ।। ୮୨ ।।
ଜଳଧାରା ବିନାରେ ନୋହିଲା ଶସ୍ୟ କିଛି ।
ନରଲୋକ ପ୍ରାଣୀଙ୍କି ଅକାଳେକାଳ ଗଛି ।। ୮୩ ।।
ପ୍ରଖରରେ କିରଣ ଦେବ କରମାଳୀ ।
ଥିବା ଅଉଷଧି ଲତା ସର୍ବେ ଗଲେ ଜଳି ।। ୮୪ ।।

ତେଣୁକରି ପ୍ରବର୍ତ୍ତିଲା ନାହିଁ ଯାଗମାନ ।
ବନେ ତପସ୍ୟା ନ କଲେ ସର୍ବତପୋଧନ ॥ ୮୫ ॥
ଦାନ ବ୍ରତ ଉପାସନା ଆଦି ଧର୍ମ ଯେତେ ।
ତହିଁ ମନ ନ କଲେ ସୁକୃତ ଜନ ଯେତେ ॥ ୮୬ ॥
ଏ ରୂପେ ସକଳ ଲୋକେ ହୋଇଲେ ଦୁର୍ବଳ ।
ଦ୍ରବ୍ୟ ଲୋଭେ ବ୍ୟାକୁଳ ଯେ ସର୍ବେନ୍ଦ୍ରିୟକୁଳ ॥ ୮୭ ॥
ଅଳ୍ପଦ୍ରବ୍ୟଠାରେ ହେଲେ କଲେ ଅଭିଳାଷ ।
ଏ ରୂପେ ସଚରାଚରଶିରି ହେଲା ନାଶ ॥ ୮୮ ॥
ଯଙ୍ଗଠାରେ ବଳ ସେହିଠାରେ ଲକ୍ଷ୍ମୀ ରହେ ।
ଯହିଁ ଲକ୍ଷ୍ମୀ ତହିଁରେ ବଳର ଊଣା ନୁହେଁ ॥ ୮୯ ॥
ଏ ରୂପେ ସମ୍ପତ୍ତି ବଳ ବିମ୍ବ ପ୍ରତିବିମ୍ବ ।
ମୂର୍ତ୍ତିହୀନେ ଛାୟାର କି ରହଇ ଆରମ୍ଭ ॥ ୯୦ ॥
ଏଣୁ ହତଲକ୍ଷ୍ମୀଙ୍କର କାହୁଁ ଅବା ବଳ ।
ବଳବିନା କଙ୍ଗଠାରେ ଗୁଣଙ୍କ ପ୍ରବଳ ॥ ୯୧ ॥
ବଳ ସମ୍ପତ୍ତି ଗୁଣରୁ ଯେ ହେବ ବର୍ଜିତ ।
ସେ ସମସ୍ତ ନିୟମ ଲଙ୍ଘଇ ଏହା ସତ୍ୟ ॥ ୯୨ ॥
ଏଣୁକରି ନଷ୍ଟ ମତ ହୋଏ ସେ ପୁରୁଷ ।
ଏକଥା ନିଶ୍ଚୟ ବୋଲି ଶୁଣହେ ତାପସ ॥ ୯୩ ॥
ଏ ରୂପେ ଇନ୍ଦ୍ର ସଙ୍ଗତେ ତିନିପୁରଶିରି ।
ନାଶ ଯାନ୍ତେ ସତ୍ୱହୀନ ହେଲା ସବୁଙ୍କରି ॥ ୯୪ ॥
ହବିର୍ଭାଗ ନ ପାଇ ଦେବତା ହୀନବଳ ।
ଦାନବମାନେ ଗୋଳରେ ହୋଇଲେ ପ୍ରବଳ ॥ ୯୫ ॥
ଲକ୍ଷ୍ମୀହୀନ ହୁଅନ୍ତେ ଲୋଭରେ ଗ୍ରସ୍ତ ହୋଇ ।
ଦୁର୍ବଳ ଦେବତା ସଙ୍ଗେ ରଣ କଲେ ଯାଇଁ ॥ ୯୬ ॥
ଦାନବବଳଙ୍କଠାରୁଁ ପାଇ ପରାଭବ ।
ଇନ୍ଦ୍ରାଦି ଦେବଗଣେ ହୋଇ ଏକ ଠାବ ॥ ୯୭ ॥
ହୁତାଶନକୁ ଆଗରେ କରି ଚଳିଗଲେ ।
ବ୍ରହ୍ମଲୋକେ ଯାଇଣ ଯେ ପ୍ରବେଶ ହୋଇଲେ ॥ ୯୮ ॥
ପିତାମହ ଶ୍ରୀଚରଣେ ପଶିଣ ଶରଣ ।
ଉଠିବୋଇଲେ ଭୋ ପ୍ରଭୁ ସାବିତ୍ରୀ ରମଣ ॥ ୯୯ ॥
ରାଜା ଯାହା ଅର୍ଜଇ ଭୁଞ୍ଜନ୍ତି ତାହା ପ୍ରଜା ।
ଦୁର୍ବାସାରେ ଅପରାଧୀ ହେଲା ଏ ବିଡୋଜା ॥ ୧୦୦ ॥
ତେଣୁକରି ହତ ହେଲା ତ୍ରିପୁର ସମ୍ପତ୍ତି ।
ଋଷିମାନେ ଅନଳରେ ନଦେଲେ ଆହୁତି ॥ ୧୦୧ ।

ଏ ଯେ ହୁତାଶନ ଦେବଗଣଙ୍କର ମୁଖ ।
ଏ କିଛି ନ ପାଇବାରେ ଆମ୍ଭ ବଡ଼ ଦୁଃଖ ॥ ୧୦୨ ॥
ଆହାର ବିନାରେ ସର୍ବେ ହୋଇଲୁ ନିସ୍ତେଜ ।
ବଳେ ପୁର ଜୁର କଲେ ସକଳ ଦନୁଜ ॥ ୧୦୩ ॥
ସମ୍ପତ୍ତି କିଛି ନଥିଲା ତେବେ ନ ଛାଡ଼ିଲେ ।
ପ୍ରାଣ ସରି କି କରିବା କଥା ଆରମ୍ଭିଲେ ॥ ୧୦୪ ॥
ଏଣୁ ଆସି ତୁମ୍ଭପାଦେ ପଡ଼ିଲୁ ଗୁହାରି ।
ଏବାର ଆମ୍ଭଙ୍କୁ ରଖ ସଙ୍କଟୁ ଉଦ୍ଧରି ॥ ୧୦୫ ॥
ତୋହର ସୃଷ୍ଟି କେବଳ ଯାଉଅଛି ନାଶ ।
ହେ ସୃଷ୍ଟିକରତା ପ୍ରଭୁ ପୁରାଣପୁରୁଷ ॥ ୧୦୬ ॥
କି କରିବୁ ଏଥକୁ ଉପାୟ ଏବେ କହ ।
ଏହା ବୋଲି ପାଦେ ପକାଇଲେ ଧନଞ୍ଜୟ ॥ ୧୦୭ ॥
ଦେବତାଙ୍କ ଏ ବଚନ ଶୁଣି ବେଦବର ।
ବୋଇଲେ ଆମ୍ଭର ତହୁଁ ଶୁଣ ସର୍ବସୁର ॥ ୧୦୮ ॥
ଦୁର୍ବାସା ଋଷି ଅଟନ୍ତି ସାକ୍ଷାତ ଧୂର୍ଜଟି ।
ସେ ଯାହା ବୋଇଲେ ତାହା କେ ପାରିବ ମେଣ୍ଟି ॥ ୧୦୯ ॥
ବ୍ରହ୍ମାଣ୍ଡ ପ୍ରଳୟକର୍ତ୍ତା ଯାହା କ୍ରୋଧ ମାତ୍ର ।
ହତଲକ୍ଷ୍ମୀ ହେବା କଥା ଏ କେଡ଼େ ବିଚିତ୍ର ॥ ୧୧୦ ॥
ଏହା ଆନ କରିବାକୁ ସକ୍ଷ ନାହିଁ ମୋର ।
କଥାଏ ମାତ୍ର ଏଥିକି ଅଛି ପ୍ରତିକାର ॥ ୧୧୧ ॥
ଚରାଚର ଯେତେ ବ୍ରହ୍ମାଦିରୁ କୀଟ ଯାଏ ।
ସେମାନଙ୍କ ଈଶ୍ୱର ଦେବାଧିଦେବ ରାୟେ ॥ ୧୧୨ ॥
ଉତ୍ପତ୍ତିସ୍ଥିତି ପ୍ରଳୟମାନଙ୍କ କାରଣ ।
ଏମନ୍ତ ପରମେଶ୍ୱର ଯେଉଁ ନାରାୟଣ ॥ ୧୧୩ ॥
ମୋତେ ଆଦି କରିଣ ଯେତେକ ପ୍ରଜାପତି ।
ସେମାନଙ୍କ ପତି ଯେ ପତିତଜନଗତି ॥ ୧୧୪ ॥
ଅନନ୍ତ ଅପରାଜିତ ଶ୍ରୀମଧୁସୂଦନ ।
ବିଷ୍ଣୁ ଜିଷ୍ଣୁ ଭୟବିଭଞ୍ଜନ ଜନାର୍ଦ୍ଦନ ॥ ୧୧୫ ॥
କାର୍ଯ୍ୟ ଭୂତି ଅଟନ୍ତି ଯେ ପ୍ରକୃତି ପୁରୁଷ ।
ସେ ଦୁହିଙ୍କ କାରଣ ଯେବଣ ଶ୍ରୀନିବାସ ॥ ୧୧୬ ॥
ପ୍ରଣତଜନ ବିପତ୍ତିହର ଅନ୍ତର୍ଯ୍ୟାମୀ ।
ଦୀନଭକ୍ତବତ୍ସଳ ସକଳ ଲୋକସ୍ୱାମୀ ॥ ୧୧୭ ॥
ତାଙ୍କ ଚରଣେ ଶରଣ ଯାଅ ସର୍ବଦେବେ ।
ସେ ତୁମ୍ଭର ଶ୍ରେୟମାନ ଅବଶ୍ୟ କରିବେ ॥ ୧୧୮ ॥

ଏମନ୍ତ ବୋଲିଣ ଲୋକପିତାମହ ବିହି ।
ସର୍ବଦେବତାମାନଙ୍କୁ ଉପଦେଶ କହି ॥ ୧୧୯ ॥
ସେମାନଙ୍କୁ ପୁଣି ନିଜ ସଙ୍ଗତରେ ଧରି ।
କ୍ଷୀରସିନ୍ଧୁ ଉତ୍ତର ତୀରରେ ବିଜେ କରି ॥ ୧୨୦ ॥
ତ୍ରିଦଶଗଣ ତୁଲରେ ଦେବପିତାମହ ।
ଭକ୍ତିପୂର୍ବେ ବଢ଼ାଇଣ ପରମ ଉତ୍ସାହ ॥ ୧୨୧ ॥
ଶ୍ରୁତିସ୍ମୃତି ଇଷ୍ଟ ବାକ୍ୟ ମାନଙ୍କରେ କରି ।
ପରାତ୍ପର ହରିଙ୍କି ଅନେକ ସ୍ତୁତି କରି ॥ ୧୨୨ ॥
ନମସ୍ତେ ସକଳଭୂତ ଈଶ୍ୱର ପୁରୁଷ ।
ନମସ୍ତେ ଅଜୟ ଅଜ ଅଖିଳନିବାସ ॥ ୧୨୩ ॥
ନମସ୍ତେ ଅବ୍ୟୟ ଲୋକଧାମ ଧରାଧର ।
ନମସ୍ତେ ଅକ୍ଷର ଅପ୍ରକାଶ୍ୟ କଳେବର ॥ ୧୨୪ ॥
ନମସ୍ତେ ଅଭେଦରୂପ ଦେବ ନାରାୟଣ ।
ନମସ୍ତେ ସର୍ବ ଅଣୁଙ୍କ ଅଣୁ ଅପ୍ରମାଣ ॥ ୧୨୫ ॥
ନମସ୍ତେ ସମସ୍ତ ମହାଭୂତଙ୍କ ଗରିଷ୍ଠ ।
ଯାହାଠାରେ ସର୍ବ ଅଛି ହୋଇ ସୁପ୍ରତିଷ୍ଠ ॥ ୧୨୬ ॥
ମୋତେ ଆଦି କରିଣ ଯେତେକ ଚରାଚର ।
ଯାହାଠାରୁ ଉତ୍ପନ୍ନ ହୁଅଇ ବାରମ୍ବାର ॥ ୧୨୭ ॥
ସର୍ବଭୂତସ୍ୱରୂପୀ ସାକ୍ଷାତ ଯେଉଁ ଦେବ ।
ପରମାନଙ୍କର ପର ପରମ ସମ୍ଭବ ॥ ୧୨୮ ॥
ପରମପୁରୁଷଠାରୁଁ ପରାତ୍ପର ଆତ୍ମା ।
ପରମାତ୍ମାରୂପ ଧର ସର୍ବ ସର୍ବ ଆତ୍ମା ॥ ୧୨୯ ॥
ଯୋଗିମାନେ ଯୋଗ ମାର୍ଗେ ଯାହାକୁ ଦେଖନ୍ତି ।
ମୁମୁକ୍ଷୁମାନଙ୍କ ମୁକ୍ତି ହେତୁ ଯେ ହୁଅନ୍ତି ॥ ୧୩୦ ॥
ସତ୍ୱକୁ ଆଦି ପ୍ରାକୃତ ଗୁଣମାନ ଯେତେ ।
ଯେଉଁ ପ୍ରଭୁଠାରେ ନାହିଁ ସେମାନ କିଛିତେ ॥ ୧୩୧ ॥
ଯେ ସମସ୍ତ ଶୁଦ୍ଧମାନଙ୍କରୁ ମହାଶୁଦ୍ଧ ।
ଅନାଦିନିଧନ ଆଦିପୁରୁଷ ପ୍ରସିଦ୍ଧ ॥ ୧୩୨ ॥
ସେ ପ୍ରଭୁ ପ୍ରସନ୍ନ ହୋଇ ଦରଶନ ଦେଉ ।
ସଂସାରର ଦୁରିତ ସକଳ କ୍ଷୟ ଯାଉ ॥ ୧୩୩ ॥
କଳାକାଷ୍ଠାନିମେଷାଦି କାଳସୂତ୍ର ଯେତେ ।
ଏ ସର୍ବ ଜଗତ ଚେଷ୍ଟା ବିଧି ଅନୁମତେ ॥ ୧୩୪ ॥
ଏହାର ବିଷୟମାନଙ୍କରେ କେତେବେଳେ ।
ଯେଉଁ ଶୁଦ୍ଧ ପଦାର୍ଥର ଶକ୍ତି ନମ୍ର ଚଳେ ॥ ୧୩୫ ॥

ସେ ପ୍ରଭୁ ପ୍ରସନ୍ନ ହୋଇ ଦରଶନ ଦେଉ ।
ସଂସାରର ଦୁରିତ ସକଳକ୍ଷୟ ଯାଉ ॥ ୧୩୬ ॥
ଯାହାକୁ ପରମ ଈଶ ବୋଲିଣ କହନ୍ତି ।
ଉପଚାର ସକାଶରୁ ଯେହୁ ଶୁଦ୍ଧ ଅତି ॥ ୧୩୭ ॥
ସର୍ବଦେହୀମାନଙ୍କର ଯେହୁ ଆତ୍ମାଭୂତ ।
ଇନ୍ଦ୍ରିୟ ବିକାରମାନଙ୍କର ମୂଳତତ୍ୱ ॥ ୧୩୮ ॥
ସେ ପ୍ରଭୁ ପ୍ରସନ୍ନ ହୋଇ ଦରଶନ ଦେଉ ।
ସଂସାରର ଦୁରିତ ସକଳ କ୍ଷୟ ଯାଉ ॥ ୧୩୯ ॥
ଯଉଂ ପ୍ରଭୁ କାରଣ କାର୍ଯ୍ୟ ହି ଯେହୁଂ ହୋଇ ।
କାରଣର କାରଣଟି ଯେ ଅବା ଅଟଇ ॥ ୧୪୦ ॥
କାର୍ଯ୍ୟମାନଙ୍କର ପୁଣି ଅଟଇ ଯେ କାର୍ଯ୍ୟ ।
ଦେବଙ୍କର ଦେବ ଯେ ଦେବାଧିଦେବରାଜ ॥ ୧୪୧ ॥
ଦରଶନ ଦିଅ ଆହେ କରୁଣାସାଗର ।
ସଂସାରର ଦୁଃଖମାନଙ୍କୁ ଯେ କ୍ଷୟକର ॥ ୧୪୨ ॥
କାର୍ଯ୍ୟର କାର୍ଯ୍ୟ ଯେ ତାର ଯଉଂ କଥା କାର୍ଯ୍ୟ ।
ତାହା କାର୍ଯ୍ୟଭୂତ ଯଉଂ ପ୍ରଭୁ ମହାବୀର୍ଯ୍ୟ ॥ ୧୪୩ ॥
ତାହା କାର୍ଯ୍ୟର କାର୍ଯ୍ୟ ସେ ଯେବଣ ଅଚ୍ୟୁତ ।
ସେ ମହାପ୍ରଭୁଙ୍କୁ ଆମ୍ଭ କୋଟି ପ୍ରଣିପାତ ॥ ୧୪୪ ॥
କାରଣର ଯେ କାରଣ ଯେ ତା'ର କାରଣ ।
ତା କାରଣ କାରଣ ଯେ ମାନଙ୍କ କାରଣ ॥ ୧୪୫ ॥
ପ୍ରକୃତି ମହାକାର୍ଯ୍ୟର ଅଟଇ ଯେ କାର୍ଯ୍ୟ ।
ଯେ ପୁଣି କାରଣ ରୂପୀ ଅତିଶୟ ତେଜ ॥ ୧୪୬ ॥
ତାହାର କାର୍ଯ୍ୟ ଭୂତ ଯେ ଯଉଂ ସୂକ୍ଷ୍ମବର୍ଗ ।
ସେମାନଙ୍କ ଯଉଂ କାର୍ଯ୍ୟ ମହାଭୂତବର୍ଗ ॥ ୧୪୭ ॥
ତାହା କାର୍ଯ୍ୟ ହୋଇ ଯଉଂ ବ୍ରହ୍ମାଣ୍ଡ ଅଟଇ ।
ସେ ବ୍ରହ୍ମାଣ୍ଡ କାର୍ଯ୍ୟଭୂତ ଚତୁର୍ମୁଖ ହୋଇ ॥ ୧୪୮ ॥
ତଦ୍ଧନ୍ତ ଅଟଇ ଯଉଂ ଚରାଚର ରୂପ ।
ତାହାକୁ ଆମ୍ଭର ନମସ୍କାର ଅସଂକ୍ଷେପ ॥ ୧୪୯ ॥
ଏମନ୍ତେ ଉତ୍ତୋରୋତ୍ତର ଯେତେ ଚରାଚର ।
ସେ ସମସ୍ତେ କାର୍ଯ୍ୟଭୂତ ଅଟନ୍ତି ନିକର ॥ ୧୫୦ ॥
ତାହା ପୂର୍ବେ ପୂର୍ବେ ଯେତେ ସମସ୍ତେ କାରଣ ।
ସେ ଚରାଚରମାନଙ୍କ କାରଣ ଦ୍ରୁହିଣ ॥ ୧୫୧ ॥
ତାହାର କାରଣ ଭୂତ ବ୍ରହ୍ମାଣ୍ଡ ଅଟଇ ।
ତାହାର କାରଣ ମହାଭୂତମାନେ ହୋଇ ॥ ୧୫୨ ॥

ତାହାଙ୍କର କାରଣ ଯେ ଭୂତ ସୂକ୍ଷ୍ମମାନେ ।
ପଞ୍ଚତନ୍ମାତ୍ର ଯାହାକୁ ବୋଲନ୍ତି ବିଧାନେ ॥ ୧୫୩ ॥
ତାହାଙ୍କର କାରଣ ଯେ ଅଟେ ଅହଂକାର ।
ମହତ୍ତ୍ୱ କାରଣଟି ଅଟଇ ତାହାର ॥ ୧୫୪ ॥
ସେ ମହତତତ୍ତ୍ୱର ହେତୁ ଭୂତ ଯେ ପ୍ରଧାନ ।
ତାହାଙ୍କୁ ଆମ୍ଭର ନମସ୍କାର ପ୍ରତିଦିନ ॥ ୧୫୫ ॥
ଯେବଣ ପରମେଶ୍ୱର ଭୋକ୍ତା ଭୋଜ୍ୟ ରୂପୀ ।
ଅଚେତନ ଜଡ଼ ଯାକୁ ବୋଲନ୍ତି ଅଦ୍ୟାପି ॥ ୧୫୬ ॥
ସ୍ରଷ୍ଟାର ଯେ ସୃଷ୍ଟିଭୂତ ସୃଷ୍ଟିର ଯେ ସ୍ରଷ୍ଟା ।
କାର୍ଯ୍ୟର ଯେ କର୍ତ୍ତୃ ରୂପ ଜଗତ ଜା ଚେଷ୍ଟା ॥ ୧୫୭ ॥
ଅପରିମିତ ମହିମା ଅଟଇ ଯାହାର ।
ସେ ପରମପଦକୁ ଆମ୍ଭର ନମସ୍କାର ॥ ୧୫୮ ॥
ଯେବଣ ପରମପଦ ବିଶୁଦ୍ଧ ବୋଧନ ।
ନିତ୍ୟ ଅଜ ଅବ୍ୟୟ ଅକ୍ଷୟ ସନାତନ ॥ ୧୫୯ ॥
ଅବ୍ୟକ୍ତ ବିକାରଶୂନ୍ୟ ଅନାଦି ଅଚ୍ୟୁତ ।
ସ୍ଥୂଳସୂକ୍ଷ୍ମ ଦୁଇ କଥା ଯହିଁ ବିବର୍ଜିତ ॥ ୧୬୦ ॥
ବିଶେଷଣ ଗୋଚରେ ଯେ ନାହିଁ କେତେବେଳେ ।
ଅତି ନିର୍ମଳ ପଦାର୍ଥ ଯେହୁ ସଦା କାଳେ ॥ ୧୬୧ ॥
ସେହି ବିଷ୍ଣୁଙ୍କ କେବଳ ସୁପରମ ସ୍ଥାନ ।
ତାହାକୁ ଆମ୍ଭର ନମସ୍କାର ପ୍ରତିଦିନ ॥ ୧୬୨ ॥
ଯେବଣ ପରମବ୍ରହ୍ମ ନିତ୍ୟ ସ୍ୱରୂପର ।
ସହସ୍ରେ କୋଟି ଅଂଶର ଅଂଶ ଯେ ପ୍ରଚାର ॥ ୧୬୩ ॥
ସେହି ଅଂଶକରେ ଏ ବ୍ରହ୍ମାଣ୍ଡ ଶକ୍ତିସ୍ଥିତ ।
ସେ ଅବ୍ୟୟ ପଦାର୍ଥକୁ ନମସ୍କାର ନିତ୍ୟ ॥ ୧୬୪ ॥
ବିଷ୍ଣୁଙ୍କ ଯଉଂ ପରମପଦକୁ ଅମରେ ।
ମୁନି ଆଦି ନ ଜାଣନ୍ତି ନିଗମ ମତରେ ॥ ୧୬୫ ॥
ମୋତେ ଆଦି କରି ଶଙ୍କରଙ୍କୁ ହିଁ ଅଦୃଶ୍ୟ ।
ଯାହାକୁ ସର୍ବଦା ସର୍ବ ଯୋଗିଏ ଅବଶ୍ୟ ॥ ୧୬୬ ॥
ପାପପୁଣ୍ୟ କ୍ଷୟକାଳେ ପ୍ରଣବ ଅକ୍ଷରେ ।
ସନ୍ତତେ ଦେଖନ୍ତି ଦିବ୍ୟ ସଦ୍‌ଜ୍ଞାନ ଚକ୍ଷୁରେ ॥ ୧୬୭ ॥
ବ୍ରହ୍ମଶକ୍ତି ବିଷ୍ଣୁଶକ୍ତି ଶିବଶକ୍ତି ଏତେ ।
ଯଉଂ ଏକ ପଦାର୍ଥର ଅଟନ୍ତି ଯୁଗତେ ॥ ୧୬୮ ॥
ସେ ଅନାଦି ବିଷ୍ଣୁର ପରମ ପଦ ଯେହି ।
ତାହାକୁ ପ୍ରଣମ୍ୟ କୋଟି କୋଟି ବାର ହୋଇ ॥ ୧୬୯ ॥

ଆହେ ସର୍ବେଶ୍ୱର ସର୍ବଭୂତାତ୍ମା ପୁରୁଷ ।
ଆହେ ସର୍ବ ସର୍ବାଶ୍ରୟ ଅଚ୍ୟୁତ ଶ୍ରୀବାସ ।। ୧୭୦ ।।
ଆହେ ବିଷ୍ଣୁ ତୋହର ଅଟୁ ଯେ ଆମ୍ଭେମାନେ ।
ଆମ୍ଭ ଦୃଷ୍ଟିଗୋଚର ହୋଇବା ପରସନ୍ନେ ।। ୧୭୧ ।।
ଏମନ୍ତ ବୋଲିଣ ବ୍ରହ୍ମା ଯହୁଁ କଲେ ସ୍ତୁତି ।
ତାହାଶୁଣି ତହୁଁ ସର୍ବ ଦେବତା ସଂହତି ।। ୧୭୨ ।।
ପ୍ରଣମ୍ୟ କରି ଏମନ୍ତ ବୋଇଲେ ହେ ଦେବ ।
ଆମ୍ଭଙ୍କୁ ଦୃଶ୍ୟ ଦେଇଣ ପ୍ରସନ୍ନ ହୋଇବ ।। ୧୭୩ ।।
ଏ ଯେ ଭଗବାନ ବ୍ରହ୍ମା ଯା ପରମପଦ ।
କେତେବେଳେ ନ ଜାଣନ୍ତି ଜାଣି ଚାରିବେଦ ।। ୧୭୪ ।।
ଏମନ୍ତ ତୁମ୍ଭ ସ୍ଥାନକୁ ଆମ୍ଭ ନମସ୍କାର ।
ଆହେ ସର୍ବବ୍ୟାପି ବିଷ୍ଣୁ ଅଚ୍ୟୁତ ଅକ୍ଷର ।। ୧୭୫ ।।
ଏ ରୂପେ ଦେବତାଙ୍କର ବ୍ରହ୍ମାଙ୍କର ସ୍ତୁତି ।
ହେବାର ଉତ୍ତାରେ ପୁଣି ସର୍ବ ମହାଯତି ।। ୧୭୬ ।।
ଦେବଋଷି ବ୍ରହ୍ମଋଷି ଆଦି ଯେତେ ଥିଲେ ।
ବୃହସ୍ପତି ସମେତରେ ସ୍ତୁତି ମାନ କଲେ ।। ୧୭୭ ।।
ଯେ ଆଦି ଯଜ୍ଞପୁରୁଷ ପ୍ରଭୁ ଅଧୋକ୍ଷଜ ।
ପୂର୍ବମାନଙ୍କର ଯେହୁ ଅଟଇ ପୂର୍ବଜ ।। ୧୭୮ ।।
ଜଗତ ଧାତାର ଧାତା ସେହୁ ଅଟ ତୁମ୍ଭେ ।
ହେ ସ୍ୱାମୀ ତୁମ୍ଭଙ୍କୁ ନତ ହେଉଅଛୁ ଆମ୍ଭେ ।। ୧୭୯ ।।
ଆହେ ଭଗବନ୍ତ ଭୂତ ଭବ୍ୟ ଦେବଈଶ ।
ଆପଣାପାଦେ ପ୍ରଣତ ସକଳ ତାପସ ।। ୧୮୦ ।।
ଏଣୁକରି ଆମ୍ଭଙ୍କୁ ପ୍ରସନ୍ନେ ଦିଅ ବର ।
ହେ ବିଶେଷଣ ବର୍ଜିତ ଅନାଦିଠାକୁର ।। ୧୮୧ ।।
ହେ ଯଜ୍ଞମୂରତିଧର ଅବ୍ୟୟପୁରୁଷ ।
ଦେଖ ଦେବତାଙ୍କ ସଙ୍ଗେ ବ୍ରହ୍ମାଛନ୍ତି ଆପ ।। ୧୮୨ ।।
ରୁଦ୍ରଗଣ ସଙ୍ଗତେ ଅଛନ୍ତି ତ୍ରିଲୋଚନ ।
ଦ୍ୱାଦଶ ଆଦିତ୍ୟ ସଙ୍ଗେ ସେ ରୂପେ ତପନ ।। ୧୮୩ ।।
ଅଗ୍ନିମାନଙ୍କରେ କରି ସଙ୍ଗ ହୋଇ ବହ୍ନି ।
ଆସିଅଛନ୍ତି ଜଗତର ଉପକାର ଘେନି ।। ୧୮୪ ।।
ବେନି ଅଶ୍ୱିନୀକୁମାର ଅଷ୍ଟବସୁମାନେ ।
ଦଶବିଶ୍ୱେଦେବା ଅଣଞ୍ଚାସ ପବନମାନେ ।। ୧୮୫ ।।
ସ୍ୱାଧ୍ୟମାନେ ଆବର ଯେ ସ୍ୱର୍ଗର ଈଶ୍ୱର ।
ଦେବଇନ୍ଦ୍ର ବୋଲିଣ ଅଟଇ ନାମ ଯାର ।। ୧୮୬ ।।

ଏ ରୂପେ ସମସ୍ତ ଦୈତ୍ୟମାନଙ୍କରେ କରି
ପରାଭବ ହୋଇ ଆସି କରନ୍ତି ଗୁହାରି ॥ ୧୮୭ ॥
ତୁମ୍ଭର ଶ୍ରୀଚରଣେ ଶରଣ କଲେ ଆଶା ।
ଆପଣଙ୍କ ପ୍ରସାଦରେ ଲଭିବେ ସୁଦଶା ॥ ୧୮୮ ॥
ଏମନ୍ତ ସମସ୍ତ ଋଷି କରନ୍ତେଣ ସ୍ତୁତି ।
ଶଙ୍ଖଚକ୍ର ଗଦା ଅସି ଧର ଲକ୍ଷ୍ମୀପତି ॥ ୧୮୯ ॥
ଶୁଣି ଆବିର୍ଭୂତ ହୋଇ ଦରଶନ ଦେଲେ ।
ସେକାଳେ ସର୍ବ ଅମରେ ପ୍ରଭୁଙ୍କୁ ଦେଖିଲେ ॥ ୧୯୦ ॥
ଅପୂର୍ବରୂପରେ ସର୍ବ ସମ୍ମୁଖରେ ବିଜେ ।
ଶଙ୍ଖଚକ୍ର ଗଦାପଦ୍ମ ଶୋହେ ଚତୁର୍ଭୁଜେ ॥ ୧୯୧ ॥
ଅତିଶୟ ତେଜ ରାଶି ସମସ୍ତ ଭାବିତ ।
ଏହା ଚାହିଁ ବ୍ରହ୍ମା ଆଦି ସକଳ ଦୈବତ ॥ ୧୯୨ ॥
ପୂର୍ବଙ୍କୁ ପ୍ରଣମ୍ୟ କରି ନତ ହୋଇଥିଲେ ।
ନୟନ ନିଶ୍ଚଳ କରି ଯହୁଁ ଅନାଇଲେ ॥ ୧୯୩ ॥
ସେକାଳେ ଭକ୍ତିରେ ପୁଣି ଆରମ୍ଭିଲେ ସ୍ତୁତି ।
ନମସ୍ତେ ନମସ୍ତେ ଅବିଶେଷ ବିଶ୍ୱମୂର୍ତ୍ତି ॥ ୧୯୪ ॥
ବ୍ରହ୍ମାତୁହି ବିଷ୍ଣୁ ତୁହି ମହେଶ୍ୱର ତୁହି ।
ନମସ୍ତେ ଇନ୍ଦ୍ର ଅନଳ ପବମାନ ଦେହି ॥ ୧୯୫ ॥
ନମସ୍ତେ ବରୁଣ ଚନ୍ଦ୍ର ସୂର୍ଯ୍ୟ ଯମ ରୂପି ।
ନମୋନମ ଜଳ ସ୍ଥଳ ମହାଶୂନ୍ୟ ବ୍ୟାପୀ ॥ ୧୯୬ ॥
ନମୋନମ ଅଷ୍ଟବସୁ ସୁମରୁତଗଣ ।
ସାଧଗଣ ବିଶ୍ୱେଦେବାଗଣ ଯେ ଆପଣ ॥ ୧୯୭ ॥
ଏ ଯେତେ ଦେବଗଣମାନେ ଆସିଛନ୍ତି ।
ଆପଣଙ୍କ ଶ୍ରୀଛାମୁରେ ଉଭା ହୋଇଛନ୍ତି ॥ ୧୯୮ ॥
ସେ ସମସ୍ତ ହିଁ ଆପଣ ଅଟ ଭଗବାନ ।
ଜଗତ ବିଧାତା ସର୍ବଗତ ଭଗବାନ ॥ ୧୯୯ ॥
ଯଜ୍ଞ ହିଁ ଆପଣ ଯେ ଆପଣ ବଷଟ୍‌କାର
ହେ ଦେବ ତୁମ୍ଭେ କେବଳ ଓଁକାର ଅକ୍ଷର ॥ ୨୦୦ ॥
ତୁମ୍ଭେ ପ୍ରଜାପତି ତୁମ୍ଭେ ଚରାଚର ସର୍ବ ।
ଏ ସବୁ ଜଗତ ତୁମ୍ଭ ମୟଟି ହେ ଦେବ ॥ ୨୦୧ ॥
ତେଣୁକରି ଗୋଚରା-ଗୋଚର ଅଛି ହୋଇ ।
ଏଣୁ ସର୍ବ ଆତ୍ମାରୂପି ତୁମ୍ଭେ ଭାବଗ୍ରାହୀ ॥ ୨୦୨ ॥
ହେ ଦୀନବାନ୍ଧବ ଶୁଣ ଆମ୍ଭର ଗୁହାରି ।
ଦୈତ୍ୟ ଭୟେ ସମସ୍ତେ ଆରତ ହୋଇ କରି ॥ ୨୦୩ ॥

ତୁମ୍ଭର ଶ୍ରୀଚରଣରେ ପଶିଲୁ ଶରଣ ।
ଆମ୍ଭଙ୍କୁ ପ୍ରସନ୍ନ ହୁଅ ଦେବ ନାରାୟଣ ।। ୨୦୪ ।।
ତେଜରେ କରି ଦେବଙ୍କୁ କର ଆପ୍ୟାୟିତ ।
ଶରଣ ପଞ୍ଜର ବାନା ହଉ ଏବେ ଖ୍ୟାତ ।। ୨୦୫ ।।
ଯେତେ କାଳ ପର୍ଯ୍ୟନ୍ତରେ ତୁମ୍ଭ ଶ୍ରୀଚରଣ ।
ଆର୍ତ୍ତମାନଙ୍କର ହୋଇ ନାହିଁଟି ଶରଣ ।। ୨୦୬ ।।
ତେତିକି କାଳ ଭିତରେ ସର୍ବପୀଡ଼ା ହୋଏ ।
ସର୍ବ ଅଭିଳାଷମାନ ପ୍ରଚରେ ହୃଦୟେ ।। ୨୦୭ ।।
ଦୁଃଖ ମୋହ ଇତ୍ୟାଦି ଯେ ଅନେକ ହୁଅଇ ।
ଯେତେବେଳେ ତୁମ୍ଭଙ୍କୁ ଶରଣ କରିପାଇ ।। ୨୦୮ ।।
ହେ ପ୍ରଭୁ ଅଘନାଶନ ତୁମ୍ଭ ଦରଶନେ ।
ସେ ସର୍ବବିନାଶି ମୁକ୍ତି ପାନ୍ତି ସର୍ବଜନେ ।। ୨୦୯ ।।
ତେଣୁକରି ହେ ପ୍ରସନ୍ନ ଆତ୍ମା ଭଗବାନ ।
ଶରଣାର୍ଥୀ ଆମ୍ଭେମାନେ ହୋଇବା ପ୍ରସନ୍ନ ।। ୨୧୦ ।।
ସମସ୍ତ ତେଜମାନଙ୍କ ସ୍ୱଶକ୍ତିରେ କରି ।
ଆପ୍ୟାୟିତ କର ନାଥ ଜଗତବିହାରି ।। ୨୧୧ ।।
ଏ ରୂପେ ନମ୍ର ହୋଇଣ ସର୍ବଦେବଗଣ ।
ଅନେକ ପ୍ରକାରେ କଲେ ସ୍ତୁତି ଉଚ୍ଚାରଣ ।। ୨୧୨ ।।
ତାହାଶୁଣି ପ୍ରସନ୍ନ ହୋଇଣ ଦୟାନିଧି ।
ବୋଲନ୍ତି ଶୁଣ ହେ ସର୍ବ ଦେବେ ଯଥାବିଧି ।। ୨୧୩ ।।
ତୁମ୍ଭମାନଙ୍କର ତେଜ ଯାହାର ଯେମନ୍ତେ ।
ପୂର୍ବପ୍ରାୟେ କରିଣ ବିହିବା ସେହି ମତେ ।। ୨୧୪ ।।
ମାତ୍ରକ ଆମ୍ଭେ ତୁମ୍ଭଙ୍କୁ କହିବୁଟି ଯାହା ।
ସେ କଥା ସର୍ବେ କରିବ ହୋଇ ସଉତ୍ସାହ ।। ୨୧୫ ।।
ଦୈତ୍ୟମାନଙ୍କ ସଙ୍ଗତେ ସହିତ ଯେ ହୋଇ ।
ସମସ୍ତେ ମନ୍ଦରାଚଳ ବହି ଆଣ ଯାଇ ।। ୨୧୬ ।।
କ୍ଷୀରସମୁଦ୍ରେ ପକାଅ ଖୁଆଦଣ୍ଡ କରି ।
ବାସୁକି କି ଛନ୍ଦିବ ମନ୍ଥନ ରଜ୍ଜୁ ପରି ।। ୨୧୭ ।।
ସର୍ବ ଅଉଷଧି ଆଣି ସିନ୍ଧୁରେ ପକାଇ ।
ଅମୃତ ମନ୍ଥନ କର ମୋତେ ସାହାପାଇ ।। ୨୧୮ ।।
ଅସୁରମାନଙ୍କୁ ଯେବେ ଘେନିବ ସଙ୍ଗତେ ।
ପ୍ରୀତି ପୂର୍ବ କରିଥିବ ଲଉକିକ ମତେ ।। ୨୧୯ ।।
ସମାନ ଫଳ ଭୁଞ୍ଜିବ ଏମନ୍ତ କହିବ ।
ଅସୁରମାନଙ୍କୁ ଏହି ଲୋଭ ଦେଖାଇବ ।। ୨୨୦ ।।

ସମୁଦ୍ର ମନ୍ଥନେ ଯେବେ ଜନ୍ମିବ ଅମୃତ ।
ତାହା ଖାଇଲେ ସମସ୍ତେ ହେବେ ବଳବନ୍ତ ।। ୨୨୧ ।।
ସେକାଳେ ଅମରସଂଜ୍ଞା ହୋଇବ ତୁମ୍ଭର ।
ତେବେ ତୁମ୍ଭଙ୍କୁ ହାରିବେ ସକଳ ଅସୁର ।। ୨୨୨ ।।
ଦୈତ୍ୟମାନେ ଯେମନ୍ତେ ଅମୃତ ନପାଇବେ ।
ସମୁଦ୍ରମନ୍ଥନେ ମାତ୍ର କ୍ଳେଶଭାଗୀ ହେବେ ।। ୨୨୩ ।।
ସେହିରୂପେ ମୁହିଁ ତାହା କରିବି ଅବଶ୍ୟ ।
ଏଥିରେ ସନ୍ଦେହ କିଛି ନ ପାଅ ତ୍ରିଦଶ ।। ୨୨୪ ।।
ଦେବତାଙ୍କ ଦେବ ଯେ ଅଟନ୍ତି ନାରାୟଣ ।
ସେ ଏମନ୍ତ ରୂପେ ଯହୁଁ କହିଲେ ଆପଣ ।। ୨୨୫ ।।
ତାହା ଶୁଣି ସର୍ବଦେବେ କରି ଅଙ୍ଗୀକାର ।
ଅମୃତ ଲାଭ ଇଚ୍ଛାରେ ହୋଇ ତତପର ।। ୨୨୬ ।।
ଅସୁରମାନଙ୍କ ସଙ୍ଗେ ବଢ଼ାଇଲେ ପ୍ରୀତି ।
ଏଥୁଁ ଅନନ୍ତରେ ଶୁଣିମା ହେ ମହାଯତି ।। ୨୨୭ ।।
ଦେବଦୈତ୍ୟ ଦାନବ ସମସ୍ତେ ହୋଇ ରୁଣ୍ଡ ।
ନାନା ଔଷଧି ଆଣିଲେ ବୁଲିଣ ବ୍ରହ୍ମାଣ୍ଡ ।। ୨୨୮ ।।
ତାହା ସବୁ ଛେଚିଣ ବାହାର କରି ରସ ।
କ୍ଷୀର ସମୁଦ୍ରେ ଗୋଳିଲେ ସକଳ ତ୍ରିଦଶ ।। ୨୨୯ ।।
ଶରଦକାଳର ମେଘ ଯେମନ୍ତ ପାଣ୍ଡର ।
ସେହିରୂପେ ନିର୍ମଳ ସେ ଯହୁଁ ସିନ୍ଧୁ ନୀର ।। ୨୩୦ ।।
ତହିଁରେ ପଡ଼ିବା ମାତ୍ରେ ଅଉଷଧି ରସ ।
ଅମ୍ଳଗୁଣେ ଦଧିପ୍ରାୟେ ହେଲା ଘନରସ ।। ୨୩୧ ।।
ତହିଁ ଖୁଆଦଣ୍ଡ କରି ମନ୍ଦର ପକାଇ ।
ଦାମରୂପେ ବାସୁକି କି ବାନ୍ଧିଲେକ ନେଇଂ ।। ୨୩୨ ।।
ତହୁଁ ମନ୍ଥନ ଆରମ୍ଭ କଲେ ଯେତେବେଳେ ।
ସେହି ସମୟରେ କୃଷ୍ଣ ଉପାୟ ଯେ କଲେ ।। ୨୩୩ ।।
ଦେବତାମାନଙ୍କୁ ପୁଚ୍ଛ ପ୍ରଦେଶେ ଧରାଇ ।
ବାସୁକି ମୁଖ ପ୍ରଦେଶେ ଅସୁରଙ୍କୁ ନେଇଂ ।। ୨୩୪ ।।
ତାହାଙ୍କର ହସ୍ତରେ ମସ୍ତକ ଧରାଇଲେ ।
ଏମନ୍ତ ପ୍ରକାରେ କ୍ଷୀରସାଗର ମନ୍ଥିଲେ ।। ୨୩୫ ।।
ଯେତେବେଳେ ମନ୍ଥନ କଲେକ ମହାଜଳ ।
ସର୍ପଶ୍ୱାସ ପବନରେ ବାହାର ଗରଳ ।। ୨୩୬ ।।
ସେ ଅଗ୍ନିତେଜେ ଅସୁର ହେଲେ ହତବଳ ।
ତ୍ରାସ ଲାଗିଣ ଅମରେ ହୁଅନ୍ତେ ବିକଳ ।। ୨୩୭ ।।

ଜାଣି ଭଗବାନ କଲେ ବିଷ୍ଣୁ ମାୟା ଗୋଟି ।
ପୁଚ୍ଛ ଦେଶେ ସକଳ ମେଘହୋଇ ଗୋଟି ।। ୨୩୮ ।।
ତହୁଁ ବରଷିଲେ ଯେ ଅନେକ ଜଳଧାର ।
ତେଣେକରି ଆପ୍ୟାୟିତ ହେଲେ ସର୍ବସୁର ।। ୨୩୯ ।।
ମନ୍ଥିବା ସମୟେ ସେ ଯେ ମନ୍ଦର ପର୍ବତ ।
ମହାଅଗାଧଜଳରେ ହୋନ୍ତେ ଅଧୋଗତ ।। ୨୪୦ ।।
ତଳେ କୂର୍ମ ସ୍ୱରୂପ ହୋଇଣ ଦେବହରି ।
ପୃଷ୍ଠଦେଶରେ ମହତଗିରିବର ଧରି ।। ୨୪୧ ।।
ଆନରୂପ କରିଣ ଦେବଙ୍କ ସଙ୍ଗେ ମିଶି ।
ନାଗରାଜ ରଜ୍ଜୁ ଭୁଜ ବଳରେ ଆକୃଷି ।। ୨୪୨ ।।
ପୁଣି ଅନ୍ୟରୂପ ଏକ ଧରି ଦୈତ୍ୟ ମେଳେ ।
ବିଜେକଲେ ସମୁଦ୍ର ମନ୍ଥନ କୁତୂହଳେ ।। ୨୪୩ ।।
ମହାରୂପ ଏକ ଧରି ମନ୍ଥାଚଳଶିରେ ।
ମାଡ଼ିବସି ରହିଲେ ଅତ୍ୟନ୍ତ ନିଶ୍ଚଳରେ ।। ୨୪୪ ।।
ଏତେ ରୂପେ ମହାଜଳ ହୋଇଲା ଅକମ୍ପ ।
ଦେବାସୁରେ ନ ଜାଣିଲେ ବିଷ୍ଣୁଙ୍କ ଏ ରୂପ ।। ୨୪୫ ।।
ଦେବତାଏ ବୋଇଲେ ଆମ୍ଭର ଏକା ହରି ।
ଦାନବେ ବୋଇଲେ ଆମ୍ଭ ଆଡ଼େ ଚକ୍ରଧାରୀ ।। ୨୪୬ ।।
ଗିରି ବିଚାରିଲା ହରି ମୋର ଶିରେ ସ୍ଥିତ ।
ସିନ୍ଧୁ ବୋଇଲା ମୋ ଗର୍ଭେ ରହିଲେ ଅଚ୍ୟୁତ ।। ୨୪୭ ।।
ଏମନ୍ତ ସମସ୍ତଠାରେ ଯଥୋଚିତ ହେଲେ ।
ବିଷ୍ଣୁତେଜ ସକଳ ଦିଗରେ ପ୍ରକାଶିଲେ ।। ୨୪୮ ।।
ସେ ତେଜରେ ଆପ୍ୟାୟିତ ହେଲା ଫଣିରାଜ ।
ଅନ୍ୟ କାନ୍ତିରେ ଦେବଙ୍କ ବିକାଶିଲା ତେଜ ।। ୨୪୯ ।।
ତହୁଁ ପୁଣି ଯେତେବେଳେ ଦେବତା ଦାନବେ ।
କ୍ଷୀର ସମୁଦ୍ର ମନ୍ଥନ କଲେ ସୁଧା ଲୋଭେ ।। ୨୫୦ ।।
ସେକାଳରେ ଦେବପୂଜ୍ୟା ହବି ସ୍ଥାନଭୂତା ।
ଜନମ ହୋଇଲା ଆଦ୍ୟେ ସୁରଭୀ ଗୋମାତା ।। ୨୫୧ ।।
ତା ଦେଖି ସକଳ ଦେବଦାନବେ ଆନନ୍ଦ ।
ଚକିତ ଲୋଚନେ ଚାହିଁ ହୃଦୟ ପ୍ରମୋଦ ।। ୨୫୨ ।।
ସେକାଳରେ ସିଦ୍ଧମାନେ ଆକାଶରେ ଥାଇ ।
ଏକିସ ବୋଲିଣ ଚିନ୍ତା କରନ୍ତେଣ ତହିଁ ।। ୨୫୩ ।।
ସେ ସମୟେ ପୁଣି ଯେ ବାରୁଣୀ ନାମେ ଦେବୀ ।
ମଦିରା ପାନେ ଘୂର୍ଣ୍ଣିତ ନେତ୍ରେ ରକ୍ତ ଛବି ।। ୨୫୪ ।।

ଏମନ୍ତ ସ୍ୱରୂପ ଘେନି ହୋଇଲେ ବାହାର ।
ସେ କାଳରେ ଜଳ ଭ୍ରମ ହୁଅନ୍ତେ ସାଗର ।। ୨୫୫ ।।
ତେଣେ କରି ସୁବାସିତ ହୁଅନ୍ତେ ଜଗତ ।
ସେ ଗନ୍ଧରେ ଜନମ ହୋଇଲା ପାରିଜାତ ।। ୨୫୬ ।।
ମନ୍ଦାରକୁ ଆଦିକରି ଆବର ଚନ୍ଦନ ।
କଳ୍ପଦ୍ରୁମ ସମେତରେ ଶ୍ରୀହରିଚନ୍ଦନ ।। ୨୫୭ ।।
ଦେବସ୍ତିରୀ ଆଦିକରି ଅପସରାଗଣ ।
ସର୍ବେ ସୁରୂପା ଉଦାର ଗୁଣରେ ନିପୁଣ ।। ୨୫୮ ।।
ଏମାନେ କ୍ଷୀର ସିନ୍ଧୁରୁଂ ହୋଇଲେ ସମ୍ଭୂତ ।
ଅତିରମଣୀୟ ବେଶେ ପରମ ଅଦ୍ଭୂତ ।। ୨୫୯ ।।
ତହୁଂ ପୁଣି ଶୀତାଂଶୁ ଯେ ହୋଇଲେକ ଜାତ ।
ତାହା ଶିରେ ପ୍ରମୋଦେ ବହିଲେ ବିଶ୍ୱନାଥ ।। ୨୬୦ ।।
ଅପରମୂରତି ଏକ ଜଗତ ହିତରେ ।
ଲୋକ ଆହ୍ଲାଦକ ହୋଇ ରହିଲେ ସଂସାରେ ।। ୨୬୧ ।।
ତଦୁତ୍ତାରେ ଜନମ ହୋଇଲା କାଳକୂଟ ।
ତାହାପାନ କରିଦେଲେ ଚନ୍ଦ୍ରାର୍ଦ୍ଧମୁକୁଟ ।। ୨୬୨ ।।
ଅବଶେଷ ଯେ ଥିଲା ବହିଲେ ତାହା ନାଗେ ।
ତହୁଂ ଧନ୍ୱନ୍ତରି ଦେବ ଅତ୍ୟନ୍ତ ସରାଗେ ।। ୨୬୩ ।।
ଶ୍ୱେତାମ୍ବର ପିନ୍ଧି ଶ୍ୱେତ ଆଭରଣ ହୋଇ ।
ସୁଧାପୂର୍ଣ୍ଣ କୁମ୍ଭକର ପଦ୍ମେ ବିରାଜଇ ।। ୨୬୪ ।।
ଏମନ୍ତ ରୂପେ ସମୁଦ୍ରୁଂ ହୋଇଲେ ବାହାର ।
ତାଙ୍କୁ ଦେଖି ସକଳ ଅମର ନିଶାଚର ।। ୨୬୫ ।।
ଅତ୍ୟନ୍ତରେ ସ୍ୱଚ୍ଛମନା ହୋଇଲେ ସେକାଳେ ।
ପରମ ଆନନ୍ଦମୟ ଋଷିଗଣେ ହେଲେ ।। ୨୬୬ ।।
ତହିଂ ଉତ୍ତାରେଣ ପୁଣି ଦେବୀ କମଳିନୀ ।
କ୍ଷୀରସିନ୍ଧୁ ମଧ୍ୟରୁଂ ବାହାର ଠାକୁରାଣୀ ।। ୨୬୭ ।।
ଦାହଜାମ୍ବୂନଦ ପରି ଶରୀର ବିରାଜେ ।
ବିକାଶ କମଳ ନେତ୍ର ପଦ୍ମାସନେ ବିଜେ ।। ୨୬୮ ।।
ଶ୍ରୀକର କମଳେ ଧରି ବେନି ଯେ କମଳ ।
ଆବିର୍ଭୂତ ହୋଇ କଲେ ଦେବଙ୍କ ମଙ୍ଗଳ ।। ୨୬୯ ।।
ତାହାଙ୍କୁ ନେତ୍ରେ ଅନାଇ ମହରଷିକୁଳେ ।
ଆନନ୍ଦରେ ଶ୍ରୀସୂକ୍ତରେ ସ୍ତୁତିମାନ କଲେ ।। ୨୭୦ ।।
ବିଶ୍ୱାବସୁ ଆଦି ଯେ ଗନ୍ଧର୍ବଗଣ ଯେତେ ।
ଶ୍ରୀଛାମୁରେ ଗୀତବାଦ୍ୟ କଲେକ ସମସ୍ତେ ।। ୨୭୧ ।।

ଘୃତାଚୀ ମେନକା ରମ୍ଭା ତିଳୋତ୍ତମା ତାରା ।
ଉର୍ବଶୀ ସୁକେଶୀ ଆଦି ଯେତେ ଅପସରା ॥ ୨୭୨ ॥
ଅଙ୍ଗଭଙ୍ଗେ ବିବିଧପ୍ରକାର କଲେ ନାଟ ।
ସେକାଳରେ ଫିଟିଗଲା ବଇକୁଣ୍ଠବାଟ ॥ ୨୭୩ ॥
ଗଙ୍ଗାକୁ ଆଦି କରିଣ ପୁଣ୍ୟ ନଦୀ ଯେତେ ।
ସମୀପେସ୍ଥିତ ହୋଇଲେ କ୍ଷୀରସ୍ନାନ ଅର୍ଥେ ॥ ୨୭୪ ॥
ଐରାବତ ପୁଣ୍ଡରୀକ ବାମନ କୁମୁଦ ।
ଅଞ୍ଜନ ପୁଷ୍ପଦନ୍ତ ଯେ ନାମା ମହାମଦ ॥ ୨୭୫ ॥
ସାର୍ବଭୌମ ସୁପ୍ରତୀକ ଏ ଅଷ୍ଟଦିଗ୍‌ଗଜ ରାଜେ ।
ଆନନ୍ଦିତ ହୋଇଣ ପରମଲକ୍ଷ୍ମୀ ତେଜେ ॥ ୨୭୬ ॥
ସୁବର୍ଣ୍ଣକୁମ୍ଭରେ ତୀର୍ଥ ଜଳମାନ ଭରି ।
ଶୁଣ୍ଢା ଦଣ୍ଡମାନଙ୍କେ ଉର୍ଦ୍ଧ୍ୱକୁ ଟେକି କରି ॥ ୨୭୭ ॥
ସର୍ବଲୋକ ମହେଶ୍ୱରୀ ଶିରପରେ ନେଇଂ ।
ଅଭିଷେକ କରାଇଲେ ମହାତୋଷ ହୋଇ ॥ ୨୭୮ ॥
କ୍ଷୀରସିନ୍ଧୁ ମୂର୍ତ୍ତିବନ୍ତେ ଉପସ୍ଥିତ ହୋଇ ।
ଅମ୍ଳାନ ପଙ୍କଜମାଳା କଣ୍ଠେ ଦେଲେ ନେଇଂ ॥ ୨୭୯ ॥
ବିଶ୍ୱକର୍ମା ଅଙ୍ଗେ ଦେଲେ ରତ୍ନଅଳଙ୍କାର ।
ଅନଳ ଦେଲେ ଅମ୍ଳାନ ଦେବାଙ୍ଗ ଅମ୍ବର ॥ ୨୮୦ ॥
ଏ ରୂପେ ମାଳା ଅମ୍ବରଭୂଷଣେ ଭୂଷିତ ।
ତିର୍ଥୋଦକେ ପବିତ୍ର ହୋଇଣ ଜଗନ୍ମାତ ॥ ୨୮୧ ॥
ମନୋହର ସୁବେଶ ହୋଇଣ ବିଜେକଲେ ।
ସର୍ବେ ଦେଖୁଁ ଦେଖୁଁ ହରି ବକ୍ଷରେ ରହିଲେ ॥ ୨୮୨ ॥
ନାରାୟଣ ବକ୍ଷସ୍ଥଳେ ରହି ଜଗନ୍ମାତ ।
ଯେତେବେଳେ ଦେବତାଙ୍କୁ କଲେ ଦୃଷ୍ଟିପାତ ॥ ୨୮୩ ॥
ସେ କାଳେ ସେ ସମସ୍ତଙ୍କ ଦୁଃଖମାନ ଗଲା ।
ପରମ ସୁଖ ସମ୍ପତ୍ତି ଉଦୟ ହୋଇଲା ॥ ୨୮୪ ॥
ଅସୁରମାନଙ୍କଠାରେ ହତାଦର କରି ।
ଜନ୍ହୁଁ ନ ଚାହିଁଲେ ଅବ୍ଜ ନେତ୍ରେ ସର୍ବେଶ୍ୱରୀ ॥ ୨୮୫ ॥
ସେ କାଳେ ବିପ୍ରଚିତ୍ତ କି ଆଦି ଦୈତ୍ୟକୁଳେ ।
ବିଷ୍ଣୁ ମାୟାବଳରେ ଯେ ଉଦ୍‌ବେଗ ପାଇଲେ ॥ ୨୮୬ ॥
ତହୁଁ କିଛି ନମିଳିଲା କାହାରି ହସ୍ତରେ ।
କଳି ଆରମ୍ଭ ବିଚାର କରି ପରସ୍ପରେ ॥ ୨୮୭ ॥
ଧନ୍ୱନ୍ତରି ହସ୍ତେ ଥିଲା ଯେଉଁ ସୁଧାକୁମ୍ଭ ।
ତାହାକୁ ଛଡ଼ାଇ କଳିକଲେକ ଆରମ୍ଭ ॥ ୨୮୮ ॥

ତା ଜାଣି ବିଷ୍ଣୁ ମୋହିନୀ ସ୍ତିରୀରୂପ ଧରି ।
ସ୍ୱମାୟାରେ ମୋହିଲେ ବିଚିତ୍ର ଗତି କରି ॥ ୨୮୯ ॥
ଅସୁରଙ୍କୁ ବୋଇଲେ ଯେ ନ କର ଏମନ୍ତ ।
ସମସ୍ତଙ୍କୁ ଦେବି ସୁଧା କର ଗର୍ଭଗତ ॥ ୨୯୦ ॥
ଦାନବ ଦେବତା ଦୁଇ ପଂକ୍ତି ହୋଇବସ ।
ଏହା ବୋଲି ତାଙ୍କଠାରୁଂ ଆଣି ସୁଧାରସ ॥ ୨୯୧ ॥
ମୋହିନୀ ରୂପରେ ପ୍ରଭୁ ତା ଆଣି ପରଷି ।
ଦେବତା ଦାନବ ବେନି ପଂକ୍ତି ହୋଇବସି ॥ ୨୯୨ ॥
ସୁଧା ପାନ କରିବାକୁ କଲେ ଅଭିଳାଷ ।
ଆଗେ ଦେବତାଙ୍କୁ ପରସିଲେ ପୀତବାସ ॥ ୨୯୩ ॥
ଦେଉ ଦେଉ ଦେବତା ପଂକ୍ତିରେ ଦେଲେ ସାରି ।
ଅସୁର ବେଳକୁ ନ ରଖିଲେ ଲେଶେ କରି ॥ ୨୯୪ ॥
ତା ଦେଖି ଅସୁର ସର୍ବେ ଏକଠାବେ ମିଳି ।
ଦେବତାଙ୍କ ସଙ୍ଗତେ ଯେ ଭିଆଇଲେ କଳି ॥ ୨୯୫ ॥
ଅମୃତ ପାନେ ଯେ ସର୍ବ ଦେବେ ବଳିୟାର ।
ଶସ୍ତ୍ର ଘେନି ଦୈତ୍ୟ ସଙ୍ଗେ କଲେକ ସମର ॥ ୨୯୬ ॥
ଲକ୍ଷ କୋଟି ସଂଖ୍ୟାରେ ମାଇଲେ ମହାରଣେ ।
ଦେବତାରେ ପରାଭୂତ ହୋଇ ଦୈତ୍ୟଗଣେ ॥ ୨୯୭ ॥
ଯୁଦ୍ଧ ଛାଡ଼ି ସର୍ବ ଦିଗନ୍ତରେ ପଳାଇଲେ ।
ବଳି ଆଦି କେତେକେତେ ପାତାଳେ ପଶିଲେ ॥ ୨୯୮ ॥
ତହୁଁ ପୁଣି ସର୍ବ ଦେବେ ପରମ ଆନନ୍ଦେ ।
ନମି ଶଂଖଚକ୍ରପାଣି ପାଦ ଅରବିନ୍ଦେ ॥ ୨୯୯ ॥
ଅମର ପୁରରେ ଯାଇଂ ପ୍ରବେଶ ହୋଇଲେ ।
ଇନ୍ଦ୍ରାଦି ସର୍ବେ ଯେ ଯାହା ଅଧିକାର ନେଲେ ॥ ୩୦୦ ॥
ଦେବତାଙ୍କୁ ଅଧିକାର ଦେଇ ଭଗବାନ ।
ଲକ୍ଷ୍ମୀ ସଙ୍ଗତରେ ଯେ ହୋଇଲେ ଅନ୍ତର୍ଦ୍ଧାନ ॥ ୩୦୧ ॥
ସେ କାଳେ ପ୍ରସନ୍ନେ ଧରି ଆପଣାଙ୍କ ତେଜ ।
ନିଜ ମାର୍ଗେ ଗମନ କଲେକ ଗ୍ରହରାଜ ॥ ୩୦୨ ॥
ଜ୍ୟୋତିମାନେ ଯଥା ମାର୍ଗେ ସଂଚାରକୁ କଲେ ।
ମହାତେଜବନ୍ତେ ବିଭାବସୁ ପ୍ରକାଶିଲେ ॥ ୩୦୩ ॥
ଲକ୍ଷ୍ମୀରେ ସମ୍ପନ୍ନ ଯହୁଁ ହେଲା ତିନିପୁର ।
ଧର୍ମରେ ବୁଦ୍ଧି ହୋଇଲା ସର୍ବ ପ୍ରାଣୀଙ୍କର ॥ ୩୦୪ ॥
ଦେବତାଙ୍କ ଅଧିପତି ଯେବଣ ବାସବ ।
ପୁନରପି ସମ୍ପତ୍ତି କଲାକ ଅନୁଭବ ॥ ୩୦୫ ॥

ସ୍ୱର୍ଗ ପାଇ ସୁଧର୍ମା ସଭାରେ ବିଜେ କଲା ।
ଦିବ୍ୟସିଂହାସନ ପରେ ବସି ଇନ୍ଦ୍ର ହେଲା ॥ ୩୦୬ ॥
ଦେବରାଜ୍ୟେ ରହି ପଦ୍ମହସ୍ତା କମଳାଙ୍କୁ ।
ସ୍ତୁତି କଲା ଉଚ୍ଚାରି ଶ୍ରୀସୂକ୍ତ ବଚନକୁ ॥ ୩୦୭ ॥
ନମସ୍ତେ ପରମଲକ୍ଷ୍ମୀ ପଦ୍ମିନୀବାସିନୀ ।
ସର୍ବଭୂତମାନଙ୍କର ତୁହି ସେ ଜନନୀ ॥ ୩୦୮ ॥
କମଳଜା କମଳା କମଳ ସୁଶୋଭିତା ।
ଆଦି ଅନ୍ନପୂର୍ଣ୍ଣା ବିଷ୍ଣୁ ବକ୍ଷସ୍ଥଳସ୍ଥିତା ॥ ୩୦୯ ॥
ତୁହି ସିଦ୍ଧି ତୁହି ସ୍ୱଧା ତୁହି ଏକା ସ୍ୱାହା ।
ତୁହି ଏକା ସ୍ୱଧା ଲୋକପାବିନୀ ସୁଦେହା ॥ ୩୧୦ ॥
ସନ୍ଧ୍ୟା ତୁହି ରାତ୍ରି ତୁହି ପ୍ରଭାସର୍ବ ତୁହି ।
ତୁହି ଭୂତି ମେଧା ଶ୍ରଦ୍ଧା ସରସ୍ୱତୀ ଯେହି ॥ ୩୧୧ ॥
ତୁହି ଯଜ୍ଞବିଦ୍ୟା ମହାବିଦ୍ୟା ଗୁହ ବିଦ୍ୟା ।
ତୁହି ଦେବୀ ଆତ୍ମବିଦ୍ୟା ମୁକ୍ତି ଫଳପ୍ରଦା ॥ ୩୧୨ ॥
ଯଉଂ ତର୍କ ବିଦ୍ୟାକୁ ବୋଲନ୍ତି ଆନ୍ୱିକ୍ଷିକୀ ।
ସେହି ଏକା ଆପଣ ଅଟୁ ଗୋ ଚନ୍ଦ୍ରମୁଖି ॥ ୩୧୩ ॥
ବେଦତ୍ରୟି ଶିଳ୍ପିଶାସ୍ତ୍ର ରାଜନୀତି ତୁହି ।
ସୌମ୍ୟା ସୌମ୍ୟ ରୂପମାନଙ୍କରେ ଯୁକ୍ତ ହୋଇ ॥ ୩୧୪ ॥
ଏ ଯଉଂ ଜଗତ ପୁରିରହିଛି ତୋ ଠାରେ ।
ତୋର ବିନା ଆନ ଦେବୀ ନାହିଁ ଗୋ ସଂସାରେ ॥ ୩୧୫ ॥
ଗଦାପାଣିଙ୍କର ଯଜ୍ଞମୟ ଯଉଂ ତନୁ ।
ଯୋଗିମାନଙ୍କର ଚିନ୍ତ୍ୟ ଅଟେ ସେ ସୁତନୁ ॥ ୩୧୬ ॥
ସର୍ବପୁରେ ତୋହ ବିନା କେ କରିବ ବାସ ।
ଏଣୁ ପ୍ରଭୁଙ୍କ ଶରୀର ତୁହି ଗୋ ଅବଶ୍ୟ ॥ ୩୧୭ ॥
ତୁହି ଯେବେ ଯାହାକୁ ଅନ୍ତର କରୁ ପୁଣି ।
ତାହାର ମଙ୍ଗଳମାନ ନୋହେ କମଳିନୀ ॥ ୩୧୮ ॥
ତ୍ରିଭୁବନ ହେଲେ ହେଂ ଅବଶ୍ୟ ନାଶ ଯାଇ ।
ତୁମ୍ଭର କରୁଣା ଯେତେବେଳରେ ନୁହଇ ॥ ୩୧୯ ॥
ତୋହଠାରେ ଯେତେବେଳେ ଅପେକ୍ଷା ହୋଇଲା ।
ତେଣୁ କରି ତୋହର କରୁଣା ପୁଣି ହେଲା ॥ ୩୨୦ ॥
ତାହାର ଫଳଟି ଏବେ ଫଳିଲା ପ୍ରତ୍ୟକ୍ଷ ।
ସାକ୍ଷାତରେ ଦେଖିଲୁ ବୋଲିବା କେହି ମିଛ ॥ ୩୨୧ ॥
ଦାରାପୁତ୍ର ଗୃହମିତ୍ର ଧନଧାନ୍ୟ ଯେତେ ।
ମନୁଷ୍ୟଙ୍କ ହୁଅଇ ତୋ ଦୃଷ୍ଟି ଅନୁମତେ ॥ ୩୨୨ ॥

ଅଦ୍ୟାପି ତୋହ ଘେନି ସିନା ବଢୁଅଛି ।
ଏଣୁ ପରମ କଲ୍ୟାଣି ତୁହି କମଳାକ୍ଷି ॥ ୩୨୩ ॥
ଶରୀର ଆରୋଗ୍ୟ ଅଇଶ୍ୱର୍ଯ୍ୟ ଶତ୍ରୁକ୍ଷୟ ।
ଇତ୍ୟାଦି ଯେତେକ ସୁଖସୁଭାଗ୍ୟ ଉଦୟ ॥ ୩୨୪ ॥
ଏମାନେ ପୁରୁଷଙ୍କର ଦୁର୍ମିଳ ନୁହଇ ।
ମାତ୍ର ତୋ କରୁଣା ଦୃଷ୍ଟି ଯେବେ ପଡ଼ିଥାଇ ॥ ୩୨୫ ॥
ଏଣୁ ସମସ୍ତ ପ୍ରାଣୀଙ୍କ ତୁହି ଏକା ମାତା ।
ଦେବଦେବ ହରି ଯେ ଅଟନ୍ତି ସର୍ବ ପିତା ॥ ୩୨୬ ॥
ତୋହରେ କରି ବିଷ୍ଣୁରେ କରି ଆଗୋ ମାତ ।
ଏ ସଚରାଚର ବିଶ୍ୱ ହୋଇଛି ବ୍ୟାପିତ ॥ ୩୨୭ ॥
ହେ ଦେବି ପ୍ରାର୍ଥନା କରୁଅଛି ଏତେ ମାତ୍ର ।
ଆମ୍ଭର ଅଛନ୍ତି ଯେତେ ପୁତ୍ରାଦି କଳତ୍ର ॥ ୩୨୮ ॥
ଭଣ୍ଡାରଗୃହ ନଗର ଶରୀର ସୁହୃଦ ।
ପଶୁପକ୍ଷୀ ଭୂଷଣାଦି ଯେତେକ ସମ୍ପଦ ॥ ୩୨୯ ॥
ଏମାନଙ୍କୁ ନ ଛାଡ଼ ଗୋ ଆଦି ଜଗନ୍ମାତା ।
ଦେବଦେବ ବିଷ୍ଣୁଙ୍କ ହୃଦୟସ୍ଥଳସ୍ଥିତା ॥ ୩୩୦ ॥
ତୁ ଯେବେ ଯଉଂମାନଙ୍କୁ ତତକାଳ ଦେଖୁ ।
ହୃଦୟରେ କିଞ୍ଚିତ କରୁଣା ମାତ୍ର ରଖୁ ॥ ୩୩୧ ॥
ସେମାନେ ଯେଡ଼େ ନିର୍ଗୁଣ ହୋଇଲେ ହେଁ ପୁଣି ।
ଗୁଣବନ୍ତମାନଙ୍କର ଅଗ୍ରେ ତାଙ୍କୁ ଗଣି ॥ ୩୩୨ ॥
ସେହିମାନେ ଏକା ଶୁଦ୍ଧ ଚରିତ୍ର ଅଟନ୍ତି ।
କୁଳଅଇଶ୍ୱର୍ଯ୍ୟ ମାନଙ୍କରେ ଯୁକ୍ତ ହୋନ୍ତି ॥ ୩୩୩ ॥
ସେହିମାନେ ଏକା ସ୍ତୁତିଯୋଗ୍ୟ ମହାଗୁଣୀ ।
ସେହି କୁଳୀନ ସୁବୁଦ୍ଧି ଧନ୍ୟ ବୋଲି ପୁଣି ॥ ୩୩୪ ॥
ସେହିମାନେ ଏକା ଶୂର ଅତ୍ୟନ୍ତ ବିକ୍ରାନ୍ତ ।
ମାତ୍ରକ ତୋହର ଥିଲେ ଅଳ୍ପ ଦୃଷ୍ଟିପାତ ॥ ୩୩୫ ॥
ଯେବେ ତୁହି ବିମୁଖି ହୋଉ ଗୋ ଯାହାଠାରେ ।
ସେ ପଣ୍ଡିତ ହେଲେ ମୂର୍ଖ ଅଟଇ ସଂସାରେ ॥ ୩୩୬ ॥
ଶୁଦ୍ଧଚରିତକୁ ଆଦି ଗୁଣମାନେ ଯେତେ ।
ସେହିଲାଗେ ଦ୍ୱିଗୁଣ ହୁଅନ୍ତି ବିଷ୍ଣୁକାନ୍ତେ ॥ ୩୩୭ ॥
ଏହି ରୂପେ ଜଗଦ୍ଧାତ୍ରି ତୋହର ମହିମା ।
ତୋହ ଗୁଣମାନଙ୍କୁ ଜିହ୍ୱାରେ ଦେବବ୍ରହ୍ମା ॥ ୩୩୮ ॥
ବର୍ଣ୍ଣନା କରିବା ଅର୍ଥେ ନୋହିବ ସମର୍ଥ ।
ତାହା ଲେଶ କହିବାକୁ ମୁହିଁ କି ପଦାର୍ଥ ॥ ୩୩୯ ॥

ତେଣୁ କରି ପ୍ରସନ୍ନ ହୁଅ ଗୋ କମଳାକ୍ଷି ।
ଏଣିକି ନିର୍ଦ୍ଦୟା ତୁ ନ କର ଆଉକିଛି ।। ୩୪୦ ।।
ଆମ୍ଭମାନଙ୍କୁ କଦାପି ନ କର ଏତେକ ।
ଏହା ଏକା ତୁମ୍ଭଙ୍କୁ ମାଗୁଛୁଁ ଜଗନ୍ମାତ ।। ୩୪୧ ।।
ଏମନ୍ତ ପ୍ରକାରେ ସ୍ତୁତି କରନ୍ତେ ବିଡୋଜା ।
ସେକାଳେ ଆବିର୍ଭୂତ ହୋଇଲେ କମଳଜା ।। ୩୪୨ ।।
ପ୍ରସନ୍ନ ହୋଇଣ ଦେବଗଣଙ୍କ ମଧରେ ।
ବାସବକୁ ଆଜ୍ଞା ଦେଲେ ଅତ୍ୟନ୍ତ ମଧୁରେ ।। ୩୪୩ ।।
ଆହେ ସୁରେଶ୍ୱର ତୋର ସ୍ତୁତିବାକ୍ୟ ଶୁଣି ।
ପରମ ସନ୍ତୋଷ ମୁଁ ଯେ ହୋଇଲଇଂ ପୁଣି ।। ୩୪୪ ।।
ଯାହା ଇଚ୍ଛା ବର ମାଗ ଦେବି ମୁଁ ନିଶ୍ଚୟ ।
ଏଥିରେ ସକଳ ଦେବେ ନ ପାଅ ସଂଶୟ ।। ୩୪୫ ।।
ଲକ୍ଷ୍ମୀଙ୍କର ଶ୍ରୀମୁଖୁ ଏମନ୍ତ ଆଜ୍ଞା ଶୁଣି ।
କରପତ୍ର ଯୋଡ଼ିଣ କହଇ ବଜ୍ରପାଣି ।। ୩୪୬ ।।
ଆଗୋ ମାତ ବରଯୋଗ୍ୟ ମୁ ଯେବେ ଅଟଇ ।
ଅବଶ୍ୟ ବାଞ୍ଛିତ ବର ଯେବେ ଦେବୁ ତୁହି ।। ୩୪୭ ।।
ତେବେ ତୋହର ତ୍ୟକତ ନୋଂହୁ ତିନିପୁର ।
ଏମନ୍ତ ପ୍ରକାରେ କରି ଦେବୁ ଏକ ବର ।। ୩୪୮ ।।
ଏ ସ୍ତୋତ୍ରରେ କରି ତୋତେ ଯେ କରିବ ସ୍ତୁତି ।
ତାହାକୁ ତୁ କେବେ ନଛାଡ଼ିବୁ ଆଦିଶକ୍ତି ।। ୩୪୯ ।।
ଦ୍ୱିତୀୟବର ଏମନ୍ତ ପ୍ରକାରରେ ଦିଅ ।
ଏହି ମୋର ପ୍ରାର୍ଥନାକୁ ସାବଧାନ ହୁଅ ।। ୩୫୦ ।।
ଶୁଣି ସନ୍ତୋଷ କମଳା ବୋଇଲେ ହେ ହରି ।
ସେହି ରୂପେ କେବେ ନଛାଡ଼ିବି ତିନିପୁରୀ ।। ୩୫୧ ।।
ଏ ତୋର ସ୍ତୋତ୍ରରେ ମୋତେ ଯେ କରିବ ତୁଷ୍ଟ ।
ତାର ସକଳ ମଙ୍ଗଳ କରିବି ମୁଁ ପୁଷ୍ଟ ।। ୩୫୨ ।।
ପ୍ରଭାତରେ ସାୟଂକାଳେ ଯେ ପଢ଼ିବ ଏହା ।
ତାହାଠାରେ ସନ୍ତୋଷେ ହୋଇବି ମୁ ସାହା ।। ୩୫୩ ।।
କହୁଛନ୍ତି ପରାଶର ଶୁଣ ମହାମୁନି ।
ସ୍ତୋତ୍ରରେ ସନ୍ତୋଷ ହୋଇ ଜଗତଜନନୀ ।। ୩୫୪ ।।
ପୂର୍ବକାଳେ ଇନ୍ଦ୍ରଙ୍କୁ ଏମନ୍ତ ବର ଦେଲେ ।
ପରମ ସନ୍ତୋଷ ହୋଇ ଅନ୍ତଧାନ ହେଲେ ।। ୩୫୫ ।।
ଏମନ୍ତ ପ୍ରକାରେ ପୂର୍ବକାଳେ ଦେବାସୁର ।
ଅମୃତମନ୍ଥନୁ ଲକ୍ଷ୍ମୀ ହେଲେ ଅବତାର ।। ୩୫୬ ।।

ଭୃଗୁପତ୍ନୀ କ୍ଷାତି ଗର୍ଭେ ଯଉଂ ଦେବୀ ଜାତ ।
ସେହି ଏକା ପୂର୍ବେ ସିନ୍ଧୁ ମନ୍ଥନୁ ସମ୍ଭୂତ ॥ ୩୫୭ ॥
ଏମନ୍ତେ ଜଗତସ୍ରଷ୍ଟା ଦେବଜନାର୍ଦ୍ଦନ ।
ଯଉଂରୂପେ ହୁଅନ୍ତିଟି ଅବତାରମାନ ॥ ୩୫୮ ॥
ସେହି ରୂପେ ଶ୍ରୀଦେବୀ ତାଙ୍କ ସହାୟିନୀ ହୋଇ ।
ଜଗତରେ ବିହାର କରନ୍ତି ତପୋଦେହି ॥ ୩୫୯ ॥
ଯଉଂକାଳେ ନାରାୟଣ ହୁଅନ୍ତି ଆଦିତ୍ୟ ।
ଲକ୍ଷ୍ମୀ ପୁଣି ହୁଅନ୍ତି ଯେ ପଦ୍ମରୁ ସମ୍ଭୂତ ॥ ୩୬୦ ॥
ହରି ଯେବେ ହୁଅନ୍ତି ପରଶୁରାମ ରୂପ ।
ସେ କାଳେ ଲକ୍ଷ୍ମୀ ହୁଅନ୍ତି ଧରଣୀ ସ୍ୱରୂପ ॥ ୩୬୧ ॥
ରଘୁନାଥ ଅବତାରେ ହୁଅନ୍ତି ସେ ସୀତା ।
କୃଷ୍ଣଅବତାରରେ ରୁକ୍ମିଣୀ ଜଗନ୍ମାତା ॥ ୩୬୨ ॥
ଆନ ଅବତାରମାନଙ୍କରେ ବିଷ୍ଣୁଙ୍କର ।
ସହାୟିନୀ ହୋଇଣ ଯେ କରନ୍ତି ସଂଚାର ॥ ୩୬୩ ॥
ଦେବତ୍ୱରେ ଦେବୀ ହରି ମାନୁଷେ ମାନୁଷୀ ।
ବିଷ୍ଣୁ ଦେହେ ଅନୁରୂପେ ତନୁରେ ପ୍ରକାଶି ॥ ୩୬୪ ॥
ସବୁଠାରେ ବିହାର କରନ୍ତି ଆଦିମାତା ।
ଲକ୍ଷ୍ମୀଙ୍କର ଏ ମହିମା ଶୁଣ ଉର୍ଦ୍ଧ୍ୱରେତା ॥ ୩୬୫ ॥
ପରମଲକ୍ଷ୍ମୀଙ୍କ ଜନ୍ମ ପ୍ରସଙ୍ଗ ଏମନ୍ତ ।
ଏହା ଯେ ପଢ଼େ ଶ୍ରବଣ କରେବା ସନ୍ତତ ॥ ୩୬୬ ॥
ତାହାର ସମ୍ପତ୍ତିମାନ ନୁହଇ ବିନାଶ ।
ତିନିପୁରୁଷ ପର୍ଯ୍ୟନ୍ତେ ଗୃହେ କରେ ବାସ ॥ ୩୬୭ ॥
ଏ ଲକ୍ଷ୍ମୀସ୍ତବ ଯେବଣ ଗୃହମାନଙ୍କରେ ।
ନିତ୍ୟପଠନ ହୁଅଇ ଅତି ନିର୍ମଳରେ ॥ ୩୬୮ ॥
ସେ ଗୃହମାନଙ୍କେ ନୋହେ ଅଲକ୍ଷ୍ମୀ କଳହ ।
ପରମମଙ୍ଗଳ ହୁଏ ନାହିଁଟି ସନ୍ଦେହ ॥ ୩୬୯ ॥
ଏ ରୂପେ ଲକ୍ଷ୍ମୀମହିମା ଅତ୍ୟନ୍ତ କୁଶଳ ।
ଯାହା ପଚାରିଲ କହିଲୁ ହୋ ତପଶୀଳ ॥ ୩୭୦ ॥
କ୍ଷୀରସମୁଦ୍ରେ ଯେମନ୍ତେ ଜନମ ହୋଇଲେ ।
ସେହି ରୂପେ ଭୃଗୁସୁତା ହୋଇ ସମ୍ଭବିଲେ ॥ ୩୭୧ ॥
ଏ ମହାଲକ୍ଷ୍ମୀଙ୍କ ସ୍ତୋତ୍ର ପରମକଲ୍ୟାଣ ।
ସକଳ ବିଭୂତି ପ୍ରାପ୍ତି ହେତୁ ଭୂତ ଜାଣ ॥ ୩୭୨ ॥
ଇନ୍ଦ୍ରଙ୍କର ମୁଖରୁ ଯେ ହୋଇଛି ସମ୍ଭୂତ ।
ଯଉଂ ନରେ ପଠନ କରିବେ ଏହା ନିତ୍ୟ ॥ ୩୭୩ ॥

ସେମାନଙ୍କ ଗୃହରେ ଯେ ଅଲକ୍ଷ୍ମୀ ନଥାଇ ।
ଅଚଳ ସମ୍ପତ୍ତିମାନ ବିହାର କରଇ ॥ ୩୭୪ ॥
ଶ୍ରୀବିଷ୍ଣୁପୁରାଣ ଯେ ପ୍ରଥମ ଅଂଶଗୀତ ।
ମହାଲକ୍ଷ୍ମୀ ଜନ୍ମ ନବମ ଅଧ୍ୟା ସମାପତ ॥ ୩୭୫ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୩୭୬ ॥

# ଦଶମ ଅଧ୍ୟାୟ

ଏଥୁ ଅନନ୍ତରେ ଯେ ମୈତ୍ରେୟ ମହାମୁନି ।
ପରାଶରଙ୍କୁ ବୋଲନ୍ତି ଶୁଣ ମହାଜ୍ଞାନୀ ॥ ୧ ॥
ଯାହା ପଚାରିଲି ଯେ କହିଲ ସେ ସମସ୍ତ ।
ଏବେ କଥାଏ ପୁଛିବି କହ ତପୋବନ୍ତ ॥ ୨ ॥
ଭୃଗୁସର୍ଗରୁ ଆରମ୍ଭି କରି ଯଜଂ ସର୍ଗ ।
ତାହା ମତେ ପୁଣିହିଁ କହିବା ମହାଭାଗ ॥ ୩ ॥
ଏହାଶୁଣି ଶକ୍ତିସୁତ ବୋଲନ୍ତି ହେ ବାବୁ ।
ଯାହା ଏବେ ପଚାରିଲ କହିବା ସେ ସବୁ ॥ ୪ ॥
ଭୃଗୁଙ୍କର ଘରଣୀ ଯେ ଖ୍ୟାତି ନାମେ ବାମା ।
ତାହାଠାରୁ ଜନମ ହୋଇଲେ ଦେବୀ ରମା ॥ ୫ ॥
ବିଷ୍ଣୁଙ୍କର ସେ ପୁଣି ଯେ ହୋଇଲେ ବନିତା ।
ଆବର କୁମର ବେନି ଧାତା ଯେ ବିଧାତା ॥ ୬ ॥
ତାହାଙ୍କ ପତ୍ନୀଙ୍କ ନାମ ଶୁଣ ହୋ ସୁମତି ।
ମେରୁଙ୍କର ନନ୍ଦିନୀ ଯେ ଆୟତୀ ନିୟତୀ ॥ ୭ ॥
ଧାତା ବିଧାତା ସେ ଦୁଇ କନ୍ୟା ବିଭା ହେଲେ ।
ସେ ଦୁହିଙ୍କଠାରୁଂ ବେନିପୁତ୍ର ଯେ ଜନ୍ମିଲେ ॥ ୮ ॥
ପ୍ରାଣ ନାମେ ମୃକୁଣ୍ଡୁ ନାମେ ବେନି ଯତି ।
ମାର୍କଣ୍ଡେୟ ମୃକୁଣ୍ଡୁର ହୋଇଲେ ସନ୍ତତି ॥ ୯ ॥
ମାର୍କଣ୍ଡେୟଠାରୁ ବେଦଶିରା ମୁନି ଜାତ ।
ଏଥୁ ଅନନ୍ତରେ ଯେ ଶୁଣ ହୋ ତପୋବନ୍ତ ॥ ୧୦ ॥
ପ୍ରାଣଋଷି କୁମାର ଯେ ହୋଲେ କୃତିମାନ ।
ତାଙ୍କଠାରୁଂ ଜନମ ହୋଇଲେ ରାଜବାନ ॥ ୧୧ ॥
ତାହାଠାରୁଂ ଭୃଗୁବଂଶ ଅତ୍ୟନ୍ତ ବିସ୍ତାରେ ।
ଖ୍ୟାତ ହୋଇ ରହିଲେ ଯେ ଏ ସର୍ବ ସଂସାରେ ॥ ୧୨ ॥
ମରୀଚି ଋଷିଙ୍କ ପତ୍ନୀ ନାମ ତା ସମ୍ଭୂତି ।
ପୌର୍ଣ୍ଣମାସୀ ନାମେ ଜାତ କଲେ ସେ ସନ୍ତତି ॥ ୧୩ ॥
ତାଙ୍କଠାରୁଂ ବେନି ପୁତ୍ର ହେଲେ ମହାଭାଗ ।
ଏକନାମ ବିରଜା ଯେ ଦ୍ୱିତୀୟ ସର୍ବଗ ॥ ୧୪ ॥
ବଂଶଜାତ କରିବା ବିଷୟେ ପୁତ୍ରମାନ ।
କହୁଅଛି ସିନା ଏହା ହୃଦୟରେ ଘେନ ॥ ୧୫ ॥
ଅଙ୍ଗିରାଙ୍କ ବନିତା ଯେ ନାମ ତାଙ୍କ ସ୍ମୃତି ।
ତାଙ୍କଠାରୁ ବହୁତ କୁମର ଉତପତି ॥ ୧୬ ॥

କନ୍ୟାଏ ପୁଣି ଜନ୍ମିଲେ ନାମ ତାଙ୍କ ଶୁଣ ।
ସିନୀବାଲୀ କୁହୁ ରାକା ଅନୁମତି ପୁଣ ॥ ୧୭ ॥
ଅତ୍ରି ଅନସୂୟାଠାରୁଂ ପୁଣି କଲେ ଜାତ ।
ଅତ୍ୟନ୍ତ ନିଷ୍ପାପୀ କରି ତିନିଗୋଟି ସୁତ ॥ ୧୮ ॥
ଶଶାଙ୍କ ଦୁର୍ବାସା ଦତ୍ତାତ୍ରେୟ ମହାଯୋଗୀ ।
ଏ ତିନିହେ ଅଟନ୍ତି ସଂସାର ଉପଯୋଗୀ ॥ ୧୯ ॥
ପୁଲସ୍ତ୍ୟଙ୍କ ବନିତାଯେ ପ୍ରୀତି ନାମେ ବାଳୀ ।
ତାହା ଗର୍ଭୁଂ ଜନମିଲେ କୁମର ଦତ୍ତୋଳି ॥ ୨୦ ॥
ସେଦତ୍ତୋଳି ପୁଣି ସ୍ୱାୟଂଭୁବ ମନ୍ୱନ୍ତରେ ।
ଅଗସ୍ତ୍ୟ ହୋଇଣ ଥିଲେ ପୂର୍ବ ଜନମରେ ॥ ୨୧ ॥
ଏଥୁ ଅନନ୍ତରେ ପୁଣି ପୁଲହଙ୍କ ବାମା ।
ସର୍ବଗୁଣେ ସୁଲକ୍ଷଣୀ ନାମ ତାଙ୍କ କ୍ଷମା ॥ ୨୨ ॥
ସେ ପୁଣି ଜନମ କଲେ ତିନିଗୋଟି ସୁତ ।
କର୍ମବାନ ବରିବାନ ସହିଷ୍ଣୁ ଏମନ୍ତ ॥ ୨୩ ॥
କ୍ରତୁ ପ୍ରଜାପତିଙ୍କର ଭାର୍ଯ୍ୟା ଯେ ସନ୍ନତୀ ।
ତହୁଂ ଜନମିଲେ ସର୍ବ ବାଳଖିଲ୍ୟାଯତି ॥ ୨୪ ॥
ଷାଠିଏ ସହସ୍ର ସେ ଯେ ସର୍ବେ ଉର୍ଦ୍ଧ୍ୱରେତା ।
ଅଙ୍ଗୁଷ୍ଠିଯବ ପ୍ରମାଣ ଶରୀର ଶୋଭିତା ॥ ୨୫ ॥
ମଧ୍ୟାହ୍ନ ଆଦିତ୍ୟ ପ୍ରାୟେ ତେଜ ସବୁଙ୍କର ।
ଏ ରୂପେ ଜନମ ହେଲେ ଯତିଙ୍କ ପ୍ରବର ॥ ୨୬ ॥
ବଶିଷ୍ଠ ମହାମୁନିଙ୍କ ଯେବଣଟି ଭାର୍ଯ୍ୟା ।
ମହାତପସ୍ୱିନୀ ସେ ଯେ ନାମ ତାଙ୍କ ଉର୍ଜ୍ଜା ॥ ୨୭ ॥
ତାହା ଗର୍ଭୁଂ ଜନମ ହୋଇଲେ ସପ୍ତସୁତ ।
ସେମାନଙ୍କ ନାମମାନ ଶୁଣ ତପୋବନ୍ତ ॥ ୨୮ ॥
ପ୍ରଥମ କୁମର ରଜ ଦ୍ୱିତୀୟ ଯେ ଗାତ୍ର ।
ଉର୍ଦ୍ଧ୍ୱବାହୁ ନାମ ଯେ ତୃତୀୟ ଯଜଂପୁତ୍ର ॥ ୨୯ ॥
ଚତୁର୍ଥରେ ସନଦ ଯେ ପଞ୍ଚମେ ଅନଘ ।
ଷଷ୍ଠେ ସୁତପା ସପ୍ତମେ ଶୁକ୍ର ମହାଭାଗ ॥ ୩୦ ॥
ଏମନ୍ତେ ସପତଋଷି ନିର୍ମଳ ଶରୀର ।
ବଶିଷ୍ଠଙ୍କରେ ତରୁଂ ହୋଇଲେ ଅବତାର ॥ ୩୧ ॥
ବ୍ରହ୍ମାମୁଖୁଂ ସମ୍ଭୂତ ଯେ ଅଗ୍ନି ନାମେ ସୁତ ।
ତାହାଙ୍କର ସ୍ୱାହା ଭାର୍ଯ୍ୟା ଅଟଇ ବିଦିତ ॥ ୩୨ ॥
ତାଙ୍କଠାରୁଂ ତିନିପୁତ୍ର ହୋଇଲେ ଜନମ ।
ଅତିଶୟ ତେଜସ୍ୱୀ ଉଦାର ପରାକ୍ରମ ॥ ୩୩ ॥

ଏକ ନାମ ପାବକ ଆରକ ପବମାନ ।
ତୃତୀୟ କୁମର ଶୁଚି ନାମେ ବିଦ୍ୟମାନ ।। ୩୪ ।।
ଏମାନେ ଜଳ ଅଶନେ କବଳ କରନ୍ତି ।
ଯେଣୁ ରବିମଣ୍ଡଳରେ ସବୁ କାଳେ ଥାନ୍ତି ।। ୩୫ ।।
ସେ ତିନିଙ୍କ ପୁତ୍ରମାନେ ଜନ୍ମ ହେଲେ ପୁଣ ।
ଜଣ ଜଣକେ ପନ୍ଦର ପନ୍ଦର ପ୍ରମାଣ ।। ୩୬ ।।
ଏ ରୂପେ ପଞ୍ଚଚାଳିଶି ସେମାନେ ହୋଇଲେ ।
ବହ୍ନିନାମ ବହିଣ ଜଗତେ ଖ୍ୟାତ ହେଲେ ।। ୩୭ ।।
ପିତା ଏକ ପୁତ୍ର ତିନି ଏମନ୍ତରେ ଚାରି ।
ପଉତ୍ର ପଞ୍ଚଚାଳିଶିମାନେ ମିଶିକରି ।। ୩୮ ।।
ସର୍ବେ ଅଣଞ୍ଚାସ ମୂର୍ତ୍ତି ହୋଇଲେ ଅନଳ ।
ପିତୃବଂଶ ଏବେ କହିବା ହେ ତପଶୀଳ ।। ୩୯ ।।
ସର୍ଜନା ବ୍ରହ୍ମା କଲେକ ଯେଉଁ ପିତୃମାନେ ।
ତାହାଙ୍କର ଗଣମାନ ଶୁଣିବା ବିଧାନେ ।। ୪୦ ।।
ଅଗ୍ନିସ୍ୱାତ୍ତାଗଣ ଯେ ବରକ୍ଷଦ ଗଣ ।
ଅନଗ୍ନି ସାଗ୍ନିନାମରେ ଗଣମାନ ପୁଣ ।। ୪୧ ।।
ସେମାନଙ୍କଠାରୁଂ ସ୍ୱଧାଦେବୀ କଲେ ଜାତ ।
ମେନା ବୈଧାରିଣୀ ନାମେ ବେନି ଯେ ଦୁହିତ ।। ୪୨ ।।
ସେ ଦୁହେଁ ବ୍ରହ୍ମବାଦିନୀ ଯୋଗିନୀ ହୋଇଲେ ।
ଉତ୍ତମ ପରମ ଜ୍ଞାନମାନ ସମ୍ପାଦିଲେ ।। ୪୩ ।।
ସର୍ବଗୁଣମାନଙ୍କରେ ହୋଇଲେ ଉଦିତ ।
ଶୁଣ ହୋ ତପସ୍ୱୀକୁଳରତ୍ନ ତପୋବନ୍ତ ।। ୪୪ ।।
ଏ ରୂପେ ଦକ୍ଷକନ୍ୟାଙ୍କ ସନ୍ତତି ଯେତେକ ।
ସବୁ ତୋତେ କହିଲୁଂ କରିଣ ଠିକ ଠିକ ।। ୪୫ ।।
ଏହା ଶ୍ରଦ୍ଧାବନ୍ତରେ ଶୁଣନ୍ତି ଯେତେ ପ୍ରାଣୀ ।
ଅପୁତ୍ରକ ହୋଇଣ ନୁହନ୍ତି କେହି ପୁଣି ।। ୪୬ ।।
ଯେବଣ ପୁତ୍ର ଜନ୍ମଇ ହୁଏ ଗୁଣବନ୍ତ ।
ଦୀର୍ଘ ପରମାୟୁ ଧନଜନରେ ସେ ଯୁକ୍ତ ।। ୪୭ ।।
ବହୁ କୀର୍ତ୍ତିମାନଙ୍କରେ ଉଦିତ କରେ କୁଳ ।
ସୁତା ହେଲେ ବେନିବଂଶ ତାରଇ କେବଳ ।। ୪୮ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ଭୃଗୁବଂଶ ଦଶମ ଅଧ୍ୟାୟ ସମାପତ ।। ୪୯ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୫୦ ।।

# ଏକାଦଶ ଅଧ୍ୟାୟ

ଏଥୁଁ ଅନନ୍ତରେ ଯେ କହନ୍ତି ପରାଶର ।
ସ୍ୱାୟମ୍ଭୁବ ମୁନି ବଂଶ ଶୁଣ ମୁନିବର ॥ ୧ ॥
ସ୍ୱାୟମ୍ଭୁବ ମନୁର ଯେ ବେନି ପୁତ୍ର ହେଲେ ।
ପ୍ରିୟବ୍ରତ ଉତ୍ତାନପାଦ ଯେ ବୋଲାଇଲେ ॥ ୨ ॥
ମହାବଳବନ୍ତ ସେ କେବଳ ଧର୍ମବେତ୍ତା ।
ପୂର୍ବେରେତ କହି ଅଛୁଂ ଏଦୁହିଙ୍କ କଥା ॥ ୩ ॥
ସେ ଦୁହିଙ୍କ ମଧରେ ଯେ ଉତ୍ତାନପାଦର ।
ଦୁଇ ଗୋଟି ଭାର୍ଯ୍ୟା ଯେ ହୋଇଲେ ମୁନିବର ॥ ୪ ॥
ଜ୍ୟେଷ୍ଠ ନାମ ସୁନୀତୀ ଯେ କନିଷ୍ଠ ସୁରୁଚି ।
ବେନି ବାମା ମହା ରୂପବନ୍ତ ମହାଶୁଚି ॥ ୫ ॥
କନିଷ୍ଠା ପତ୍ନୀରେ ରାଜା ମହାପ୍ରୀତିବନ୍ତ ।
ତା ଗର୍ଭୁଁ ଜନ୍ମିଲା ଉତ୍ତମ ନାମେ ସୁତ ॥ ୬ ॥
ସେ ପୁଣି ପିତାର ହେଲା ଅତିପ୍ରିୟକର ।
ଜ୍ୟେଷ୍ଠାପତ୍ନୀ ଦୁର୍ଭାଗା ଯେ ଅଟଇ ପତିର ॥ ୭ ॥
ତାହା ଗର୍ଭେ ଜନମ ହୋଇଲା ଏକପୁତ୍ର ।
ଧ୍ରୁବ ନାମ ତାହାର ସୁଶୀଳ ସୁପବିତ୍ର ॥ ୮ ॥
ଏକ ଦିନେ ରାଜା ସିଂହାସନେ ବସିଥିଲା ।
ଉତ୍ତମ କୁମର ଆସି କୋଳରେ ବସିଲା ॥ ୯ ॥
ତାହା ଦେଖି କରିଣ ଯେ ଧ୍ରୁବ ନାମେ ସୁତ ।
ପିତା କୋଳେ ବସିବାକୁ କଲା ମନୋରଥ ॥ ୧୦ ॥
ସେ କାଳେ ନୃପତି ତାକୁ ସେନେହ ନ କଲା ।
ପ୍ରତକ୍ଷେ ଯା ସୁରୁଚି କି ଆଗରେ ଦେଖିଲା ॥ ୧୧ ॥
ସପତ୍ନୀର ତନୟକୁ ପିତା ଆଗେ ଦେଖି ।
କ୍ରୋଧରେ ସୁରୁଚି କରି ରକ୍ତବର୍ଣ୍ଣ ଆଖି ॥ ୧୨ ॥
ବୋଇଲା ଆରେ କୁମର କେଡ଼େ ତୋ ସାହସ ।
ପିତା କୋଳେ ବସିବାକୁ କରିଛୁ ଅଭିଳାଷ ॥ ୧୩ ॥
ଅନ୍ୟ ସ୍ତିରୀ ଗର୍ଭେ ସିନା ତୋହର ସମ୍ଭୂତ ।
ମୋହ ଉଦରେ ତ ହୋଇ ନାହୁଁ ଉତପତ ॥ ୧୪ ॥
ଉତ୍ତମରୁ ଉତ୍ତମଟି ଯେବଣ ଆସନ ।
ଚକ୍ରବର୍ତ୍ତୀ ବିନା ଅନ୍ୟ କେ ଅଛି ଭାଜନ ॥ ୧୫ ॥
ମୋହର ପୁତ୍ର ମାତ୍ରକ ସେ ତହିଁକି ଯୋଗ୍ୟ ।
ଦୁର୍ମତି ପଣେ ତୁ ବାଞ୍ଛା କରିବି ତା ଭୋଗ ॥ ୧୬ ॥

ସତେ କି ଏ ନୃପତିର ଅଟୁ ତୁହି ସୁତ ।
ହେଲେ ମୋହୋ ଗର୍ଭରୁଂ ତ ହୋଇନାହୁଂ ଜାତ ।। ୧୭ ।।
ଏହା ତ ଅଟଇ ମହାନୃପତି ଆସନ ।
ସର୍ବମଣ୍ଡଳାଧିପତିଙ୍କର ସେବାସ୍ଥାନ ।। ୧୮ ।।
ମୋ ପୁତ୍ରର ସିନା ଯୋଗ୍ୟ ଅଟେ ଏ ସର୍ବଥା ।
ତୁ କାହିଁକି ଆତ୍ମାକ୍ଳେଶୀ ହୋଉଅଛୁ ବୃଥା ।। ୧୯ ।।
ମୋହ ପୁତ୍ର ପ୍ରାୟେ ମନୋରଥ ଉଛେ କରୁ ।
ବିଅର୍ଥରେ ସିନା ଏବେ ଦୁଃଖପାଇ ମରୁ ।। ୨୦ ।।
ସୁନୀତି ଯେ ଅଟଇ ଦୁର୍ଭାଗା ନାରୀ ସିନା ।
ତହିଁ ଜନ୍ମ ତୋହର କି ଏତେ ସମ୍ଭାବନା ।। ୨୧ ।।
କାକ ହେବ କି ସୁବର୍ଣ୍ଣ ପଞ୍ଜରିର ଭଳି ।
ଭେକ ହୋଇ କରିବ କି ପଦ୍ମ ବନେ କେଳି ।। ୨୨ ।।
ରାକ୍ଷସକୁ ମିଳିବ କି ଅମୃତ ଭୋଜନ ।
ପାପୀ କାହିଁ ପାଇବ ସୁଧର୍ମା ନାମେ ସ୍ଥାନ ।। ୨୩ ।।
ଶୂଦ୍ରକୁ ବେଦପଠନ ଅତି ପରପଞ୍ଚ ।
ଏଣୁ କରି ଶିଶୁରେ ନୃପତି ପାଶୁ ଘୁଞ୍ଚ ।। ୨୪ ।।
ମାତା ଯହୁଂ ବୋଇଲା ଏମନ୍ତ ଭାଷା ମନ୍ଦ ।
ତାହା ଶୁଣି ଧ୍ରୁବ ଯେ ହୋଇଲା କାନ୍ଦ କାନ୍ଦ ।। ୨୫ ।।
ପିତା ପାଶ ଛାଡ଼ି କରି ବାହୁଡ଼ିଣ ଗଲା ।
ନିଜ ଜନନୀ ମନ୍ଦିରେ ପ୍ରବେଶ ହୋଇଲା ।। ୨୬ ।।
ଦେଖିଲାକ ସୁନୀତି କୁମରମଣି ମୁଖ ।
ସନ୍ତତେ ନେତ୍ରରୁ ବହି ଯାଉଛି ଲୋତକ ।। ୨୭ ।।
ଅଙ୍ଗ ଅଙ୍ଗ କମ୍ପମାନ ହେଉଛି ଅଧର ।
ଦମଦମ ହୃଦୟ କ୍ରୋଧତା ଗୁରୁତର ।। ୨୮ ।।
ତାହା ଦେଖି ଜନନୀ କୋଡ଼ରେ ଆଣି ଘେନି ।
ପଚାରଇ ଶ୍ରୀକରରେ ଆଉଂସି ମୂର୍ଦ୍ଧନି ।। ୨୯ ।।
କାହିଁକି ମୋହର ବାବୁ ଏଡ଼େ କ୍ରୋଧ ତୋର ।
କେହୁ ତତେ କି ବୋଇଲା କହ ମୋ ଆଗର ।। ୩୦ ।।
ତତେ ପରାଭବ କଲା ଯଉଂ ମହାତମା ।
ସେ କି ନ ଜାଣଇ ବାବୁ ତୋ ପିତା ମହିମା ।। ୩୧ ।।
ଏମନ୍ତ ମାତା ବୋଲନ୍ତେ କୁମର କହଇ ।
ଶୁଣ ଗୋ ଜନନୀ ମୋର ମନ୍ଦଭାଗ୍ୟ ଏହି ।। ୩୨ ।।
ସିଂହାସନେ ପିତା ମୋର ଥିଲେ ବିଜେ କରି ।
ସ୍ନେହ ଭରେ ଉତ୍ତମକୁ ନିଜ ଅଙ୍କେ ଧରି ।। ୩୩ ।।

ତା ଦେଖି ମୁଁ ପୁଣି ପିତା କୋଳ କଲି ଇଚ୍ଛା ।
ସେ କାଳେ ଉତ୍ତମମାତା କ୍ରୋଧ କଲେ ତୁଚ୍ଛା ।। ୩୪ ।।
ବୋଇଲେ ଦୁର୍ଭାଗା ନାରୀ ସୁତ ସିନା ତୁହି ।
ତୋତେ ତ ନିଜ ଉଦରେ ଧରି ନାହିଁ ମୁହିଁ ।। ୩୫ ।।
ଏଣୁ ଉଚ୍ଚସ୍ଥାନକୁ ତୋ କାହିଁକି କାମନା ।
ଏହା ବୋଲି କରି ଦେଲେ ଅନେକ ଭର୍ତ୍ସନା ।। ୩୬ ।।
ଅତି ଗର୍ବେ ରାଜା ଆଗେ ବୋଇଲେ ଯା ବାଛି ।
ତା ଶୁଣି ଜନକ ହେଲେ ନ ବୋଇଲେ କିଛି ।। ୩୭ ।।
ଏହା ବୋଲି ଅତି ଉଚ୍ଚେ ନିଶ୍ୱାସ ପକାଇ ।
ନିଜ ମାତା ଆଗେ ସର୍ବ ବୃତ୍ତାନ୍ତ ଯେ କହି ।। ୩୮ ।।
ପୁନଃପୁନଃ ଶୋକାତୁର ହୋଇଲା କୁମର ।
ତାହା ଦେଖି ଦୁର୍ମନା ହୋଇଲା ନାରୀବର ।। ୩୯ ।।
ଖରଶ୍ୱାସ ଛାଡ଼ିଣ ଲୋତକପୂର୍ଣ୍ଣ ଆଖି ।
ସୁନୀତି ଏହା ବୋଇଲା ହୋଇ ଦିନମୁଖୀ ।। ୪୦ ।।
ବାବୁ ସୁରୁଚି ଯା କହିଲାଟି ଏହୁ ସତ୍ୟ ।
ଯେଣୁ ତୁହି ଅଳ୍ପଭାଗ୍ୟ ଅର୍ଜିଛୁରେ ସୁତ ।। ୪୧ ।।
ପୁଣ୍ୟବନ୍ତ ଅଟନ୍ତି ଯେବଣ ପ୍ରାଣୀମାନେ ।
ସେମାନଙ୍କ ବିଷୟରେ ଏମନ୍ତ ବିଧାନେ ।। ୪୨ ।।
ଶତ୍ରୁମାନେ ହୋଇଲେ ହେଁ ଏହା ନ କହନ୍ତି ।
ଦୁର୍ଭାଗ୍ୟବନ୍ତକୁ ବାବୁ ସମସ୍ତେ ବୋଲନ୍ତି ।। ୪୩ ।।
ଏଣୁ କରି ଉଦ୍ବେଗକୁ ନ ପାଅ ତୁ ଏବେ ।
ଭୁଞ୍ଜିବୁନା ଯେଉଁ କର୍ମ ଅର୍ଜିଅଛୁ ପୂର୍ବେ ।। ୪୪ ।।
ସେ କାରଣୁ ତୋହ କ୍ରୋଧ ହରିବା ନିମିତ୍ତେ ।
କାହା ସଖ୍ୟ ହେବ ବାବୁ କହିଲୁ ଯା ମତେ ।। ୪୫ ।।
ଯେଉଁ ଲୋକର ଅଛଇ ଅନେକ ସୁକୃତ ।
ତାହାରି କେବଳ ରାଜସିଂହାସନଛତ୍ର ।। ୪୬ ।।
ରଥଗଜ ଅଶ୍ୱଆଦି ତାହାରି କେବଳ ।
ଏଥି କି କାହିଁକି ବାବୁ ହେଉଛୁ ବିକଳ ।। ୪୭ ।।
ଏବେ ମନସ୍ତାପ ତେଜି ଶାନ୍ତି ଭାବଭଜ ।
ଆମ୍ଭ କର୍ମରେ ଅଛିରେ ତନୁଜ ।। ୪୮ ।।
ପୂର୍ବଜନ୍ମେ କରିବାରୁ ଅନେକ ସୁକୃତ ।
ସୁରୁଚି ସୁପ୍ରୀତିବନ୍ତ କରି ନରନାଥ ।। ୪୯ ।।
ମୋହ ପ୍ରାୟେ ପୁଣ୍ୟହୀନ ଅରକ୍ଷ୍ୟ ଯୁବତୀ ।
ଭାର୍ଯ୍ୟା ବୋଲି କରି ମାତ୍ର ବଚନେ କୁହନ୍ତି ।। ୫୦ ।।

ସୁରୁଚି ମହାଦେଈର ଯେବଣଟି ପୁତ୍ର ।
ସର୍ବପୁଣ୍ୟ ସମ୍ପନ୍ନରେ ପରମ ପବିତ୍ର ।। ୫୧ ।।
ମୋହର ଗର୍ଭରୁ ପୁତ୍ର ହୋଇଲୁ ତୁ ଯେଣୁ ।
ଅଳ୍ପ ପୁଣ୍ୟ ତୋହର ହୋଇଲା ଧ୍ରୁବ ତେଣୁ ।। ୫୨ ।।
ସେ କାରଣୁ ଦୁଃଖ ଆଉ ନ କରରେ ବାବୁ ।
ମୋହର ଅଦୃଷ୍ଟ ମାତ୍ର ତୁ ସିନା ଭୁଞ୍ଜିବୁ ।। ୫୩ ।।
ଯାହାର ଯେଉଁ ସମୟେ ଭାଗ୍ୟ ପ୍ରାପ୍ତ ହୁଏ ।
ସେ ସମୟେ ସେ ପରମ ସନ୍ତୋଷକୁ ପାଏ ।। ୫୪ ।।
ପୁଣି ହିଁ ହୁଅଇ ଅତିଶୟ ବଳବନ୍ତ ।
ଏହା ଅନ୍ୟଥା ନୁହଇ ଶୁଣ ଆରେ ସୁତ ।। ୫୫ ।।
ସୁରୁଚିର ଦୁର୍ବଚନମାନଙ୍କରେ କରି ।
ଏଡ଼େ ଦୁଃଖ ଯେବେ ବାବୁ ମନେ ଅଛୁ ଧରି ।। ୫୬ ।।
ତେବେ ଅନେକ ସୁକୃତିମାନଙ୍କୁ ସମ୍ପାଦ ।
ଯେବଣ ସୁକୃତ ଅଟେ ସର୍ବଫଳପ୍ରଦ ।। ୫୭ ।।
ଅତି ଶୁଦ୍ଧ ଚରିତରେ ଧର୍ମଆତ୍ମା ହୁଅ ।
ସମସ୍ତ ପ୍ରାଣୀ ହିତରେ ପ୍ରୀତିମାନ ବହ ।। ୫୮ ।।
ସର୍ବଜନରେ ମିତ୍ରତା ହୃଦୟରେ ଘେନ ।
ଏମନ୍ତ ହେଲେ ସମ୍ପଦ ହୋଇବ ନନ୍ଦନ ।। ୫୯ ।।
ଯେମନ୍ତ ସମସ୍ତ ଜଳ ସବୁ ଆଡ଼େ ଥାନ୍ତି ।
ନିମ୍ନସ୍ଥାନ ଦେଖିଲେ ତହିଁକି ବହିଯାନ୍ତି ।। ୬୦ ।।
ସେହି ରୂପେ ଗୁଣବନ୍ତେ ସମସ୍ତ ସମ୍ପତ୍ତି ।
ସକଳ ପ୍ରକାରେ ଆସି ନିଶ୍ଚଳେ ରହନ୍ତି ।। ୬୧ ।।
ଏଣୁ କରି ବିଚାରିଲେ ଏହି କଥା କର ।
ନୋହିଲେ ଶାନ୍ତି କି ଭଜି ରହରେ କୁମର ।। ୬୨ ।।
ମାତାର ଏମନ୍ତ ବାକ୍ୟ ଶୁଣି କରି ଧ୍ରୁବ ।
ବୋଲଇ ଗୋ ଜନନୀ କହିଲ ଅସମ୍ଭବ ।। ୬୩ ।।
ଶାନ୍ତି ଭଜିବାକୁ ବୋଲି ବୋଇଲ ଗୋ ଯାହା ।
ମୋହର ହୃଦରେ ମାତା ନ ରହଇ ତାହା ।। ୬୪ ।।
ସୁରୁଚି ବଚନେ ଭିନ୍ନ ହେଉ ଅଛି ଯେଣୁ ।
ଯେତେ ହିତ କହିଲେ ଗୋ ନ ରହଇ ତେଣୁ ।। ୬୫ ।।
ଯେମନ୍ତ ଭଙ୍ଗାହାଣ୍ଡିରେ ନ ରହଇ ଜଳ ।
ସେହି ରୂପେ ମୋ ହୃଦରେ ତୋ ବାକ୍ୟ କେବଳ ।। ୬୬ ।।
ମାତ୍ରକ କଥାଏ ଏକା ଅଛି ମୋହ ଭରସା ।
ଯତି ହୋଇଣ କରିବି ଅତ୍ୟନ୍ତ ତପସ୍ୟା ।। ୬୭ ।।

ସର୍ବ ଉତ୍ତମମାନଙ୍କ ମଧ୍ୟେ ଯେ ଉତ୍ତମ ।
ସମସ୍ତ ସଂସାରେ ସୁପୂଜିତ ଅଭିରାମ ।। ୬୮ ।।
ଏମନ୍ତ ଯେବଣ ଉଚ୍ଚସ୍ଥାନତା ପାଇବି ।
ଯେମନ୍ତେ ଏହା ହୋଇବ ସେକଥା କରିବି ।। ୬୯ ।।
ସୁରୁଚି ପ୍ରିୟ ବନିତା ମହାରାଜାଙ୍କର ।
ମୁହିଂତ ନୁହଇ ତାଙ୍କ ଉଦର କୁମର ।। ୭୦ ।।
ଆପଣଙ୍କ ଗର୍ଭେ ସିନା ହୋଇଛି ସମ୍ଭୂତ ।
ତଥାପି ମୋର ପ୍ରଭାବ ଦେଖ ଆଗୋ ମାତ ।। ୭୧ ।।
ଉତ୍ତମ କୁମର ଯେହୁ ସେ ମୋହର ଭ୍ରାତ ।
ସୁରୁଚି ଗର୍ଭେ ସେ ପୁଣି ହୋଇଛନ୍ତି ଜାତ ।। ୭୨ ।।
ତାହାଙ୍କୁ ନୃପ ଆସନ ଦେଲେ ଯେବେ ପିତା ।
ସେ କଥା ସେ ରୂପେ ହୋଉ ନାହିଁ କିଛି ଚିନ୍ତା ।। ୭୩ ।।
ତାଙ୍କ ଦେଲା କଥା ମୁହିଁ ଇଚ୍ଛା କରୁ ନାହିଁ ।
ମୋହର କର୍ମରେ ମାଗୋ ଯାହାଟି ଅଛଇ ।। ୭୪ ।।
ସେହି ସ୍ଥାନେ ଏକା ମୋ ସନ୍ତତ ଅଭିଳାଷ ।
ପିତୃ ପିତାମହ ଆଦିଙ୍କି ତା ହେବ ଅଦୃଶ୍ୟ ।। ୭୫ ।।
କହୁଛନ୍ତି ପରାଶର ଶୁଣ ମୁନିମଣି ।
ଜନନୀଙ୍କି ଏମନ୍ତ କହିଣ ଧ୍ରୁବ ପୁଣି ।। ୭୬ ।।
ଛାମୁରୁ ମେଲାଣି ହୋଇ ନବରରୁ ଗଲା ।
ନଗର ବାହାର ଉପବନରେ ମିଳିଲା ।। ୭୭ ।।
ସେ କାଳରେ ସେଠାରେ ଦେଖିଲେ ସପ୍ତଋଷି ।
ତାହା ଅନୁଗ୍ରହ ଅର୍ଥେ ପୂର୍ବୁଂଛନ୍ତି ଆସି ।। ୭୮ ।।
କୃଷ୍ଣାଜିନ ଉତ୍ତରୀୟ ବଲ୍କଳ ଯେ ପିନ୍ଧି ।
ପର୍ବତ ସମାନ କରି ଜଟାମାନ ବାନ୍ଧି ।। ୭୯ ।।
ବିଷ୍ଟରମାନଙ୍କେ ବସିଛନ୍ତି ଯୋଗଧ୍ୟାନେ ।
ରାଜପୁତ୍ର ତାହାଙ୍କୁ ଯେ ଦେଖିଲା ନୟନେ ।। ୮୦ ।।
ଦେଖିବା ମାତ୍ରେ ଚରଣେ ପ୍ରଣିପାତ ହୋଇ ।
ନମ୍ର ଭାବେ ସ୍ତୁତିମାନ ଉଚ୍ଚାରିଣ ତହିଁ ।। ୮୧ ।।
ତଦୁତ୍ତାରେ କହିଲା ଶୁଣ ହେ ମୁନିବର ।
ତୁମ୍ଭେ ସମସ୍ତେ କୃପାଳୁ ଦୀନଜନଙ୍କର ।। ୮୨ ।।
ଉତ୍ତାନପାଦ ରାଜାର ତନୟ ମୁଁ ଜାଣ ।
ସୁନୀତି ମହାଦେଈଙ୍କ ଗର୍ଭୁଜାତ ପୁଣ ।। ୮୩ ।।
ଅତି ଦୁଃଖ ହେତୁ ତୁମ୍ଭ ପାଶକୁ ଆଗତ ।
ମୋହର ଗତିକି ପ୍ରତି ତୁମ୍ଭେ ଜଗନ୍ନାଥ ।। ୮୪ ।।

ଧ୍ରୁବତହୁଁ ଏହାଶୁଣି ସପତ ତପସ୍ୱୀ ।
ସାନୁରାଗ ହୋଇଣ କହନ୍ତି ମନ୍ଦେ ହସି ॥ ୮୫ ॥
ହେ ବାବୁ ନୃପ ନନ୍ଦନ ସ୍ୱଭାବେ ତୁ ଶିଶୁ ।
ପାଞ୍ଚ ବରଷ ବାଳକ ପ୍ରାୟେ ଅଛୁ ଦିଶୁ ॥ ୮୬ ॥
ତୋର ଦୁଃଖ କାରଣ ତ କିଛି ଦିଶୁ ନାହିଁ ।
କାହିଁକି ଅଇଲୁ ବାବୁ ଅତିରୋଷ ବହି ॥ ୮୭ ॥
ଇଷ୍ଟ ଜ୍ଞାତି ବିଯୋଗ ହେତୁରୁ ଯେଉଁ ଦୁଃଖ ।
ତା ହିତ ତୋଠାରେ ଦିଶୁ ନାହିଁ ହୋ ବାଳକ ॥ ୮୮ ॥
ଶରୀରେ ବ୍ୟାଧି ବୋଲିବା ସେହି କିଛି ନାହିଁ ।
କାହିଁକି ଏଡ଼େ ନିର୍ବେଦ ଦିଅ କି ନା କହି ॥ ୮୯ ॥
ସପ୍ତଋଷି ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ଧ୍ରୁବ କହେ ଶୁଣ ହେ ସକଳ ବିପ୍ରମଣି ॥ ୯୦ ॥
ଯେଉଁ ରୂପେ କନିଷ୍ଠ ଜନନୀ ଦେବା ଦୁଃଖ ।
ଆଦ୍ୟପ୍ରାନ୍ତ କରି ସବୁ କହିଲା ବାଳକ ॥ ୯୧ ॥
ତାହା ଶୁଣିକରି ମୁନିମାନେ ପରସ୍ପରେ ।
ସମ୍ଭାଷଣ ହୋଇଣ ବୋଇଲେ ଉଚ୍ଚସ୍ୱରେ ॥ ୯୨ ॥
ଦେଖ କେଡ଼େ ଆଶ୍ଚର୍ଯ୍ୟ କ୍ଷତ୍ରିୟ ଜାତି ତେଜ ।
ବାଳକର ହେଲେ କ୍ଷମା ନାହିଁ ଆହେ ଦ୍ୱିଜ ॥ ୯୩ ॥
ମାତାର ସପତ୍ନୀ ଯାହା କଲାଟି ଧିକ୍କାର ।
ତାହି ଏହା ହୃଦୁ ହୋଇ ନାହିଁ ହେ ବାହାର ॥ ୯୪ ॥
ଏହା ବୋଲି ବୋଇଲେ ଧନ୍ୟ ହେ କ୍ଷତ୍ରିପୁତ୍ର ।
ଧନ୍ୟ ତୋର ଜନନୀ ଯେ ଧନ୍ୟ ତୋର ଗୋତ୍ର ॥ ୯୫ ॥
ଦୁଃଖରୁ ଏବେ ଯହିଁ କି କରୁ ବ୍ୟବସାୟ ।
ସେ କଥା ଆମ୍ଭଙ୍କୁ କହ ନୃପତି ତନୟ ॥ ୯୬ ॥
ଯେବଣ କାର୍ଯ୍ୟକୁ ତୋର ରୁଚୁ ଅଛି ମନ ।
ତାହା କହ ଦେବୁ ଆମ୍ଭେ ସର୍ବ ତପୋଧନ ॥ ୯୭ ॥
ମୁନିଙ୍କର ମୁଖରୁଁ ଏମନ୍ତ ବାକ୍ୟ ପାଇ ।
କରପତ୍ର ଯୋଡ଼ି ଧ୍ରୁବ କୁମର କହଇ ॥ ୯୮ ॥
ଆହେ ବ୍ରାହ୍ମଣଉତ୍ତମେ ମୋହଠାରୁ ଶୁଣ ।
ଅର୍ଥ ବିଷୟରେ ମୋର ଇଚ୍ଛା ନାହିଁ ପୁଣ ॥ ୯୯ ॥
ରାଜ୍ୟ ବିଷୟରେ ହେଲେ କିଛି ନାହିଁ ଲୋଭ ।
କଥା ଏ ଶୁଣିବା ସର୍ବତପସ୍ୱୀ ପୁଙ୍ଗବ ॥ ୧୦୦ ॥
ପୂର୍ବେ କେହି ଭୋଗ କରି ନାହାନ୍ତି ଯାହାକୁ ।
ମୋହ ଇଚ୍ଛା ହେଉଅଛି ଏମନ୍ତ ସ୍ଥାନକୁ ॥ ୧୦୧ ॥

ଏହି କଥା କରିବ ମୋହର ସର୍ବେ ତୁମ୍ଭେ ।
ଯେଉଂ ରୂପେ ପାଇବି କହିବା ତାହା ଏବେ ॥ ୧୦୨ ॥
ସର୍ବପଦମାନଙ୍କରୁ ଉଚ୍ଚ ଯେଉଂ ପଦ ।
ସେ କି ରୂପେ ମିଳିବ ତା କହ ହେ କୋବିଦ ॥ ୧୦୩ ॥
ଧ୍ରୁବଙ୍କର ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ସପ୍ତଋଷି ମଧରେ ମରୀଚି ମୁନି ଭଣି ॥ ୧୦୪ ॥
ଶୁଣରେ କୁମରମଣି ଯେଉଂ ନରମାନେ ।
କେତେବେଳେ ନ ରହନ୍ତି ହରି ଆରାଧନେ ॥ ୧୦୫ ॥
ତାହାଙ୍କୁ ଉତ୍ତମ ସ୍ଥାନ ପ୍ରାପ୍ତି କେବେ ନୋହେ ।
ତେଣୁକରି କୃଷ୍ଣ ଭଜ ନିଶ୍ଚଳ ହୃଦୟେ ॥ ୧୦୬ ॥
ତାହାଶୁଣି କରି ପୁଣି ଅତ୍ରି କହୁଛନ୍ତି ।
ବ୍ରହ୍ମା ଆଦି ଯେତେ ଶ୍ରେଷ୍ଠ ଦେବତା ଅଛନ୍ତି ॥ ୧୦୭ ॥
ସେମାନଙ୍କ ପରମପୁରୁଷ ଜନାର୍ଦ୍ଦନ ।
ସେ ବିଷୟେ ଭଜବାବୁ ହୋଇବେ ପ୍ରସନ୍ନ ॥ ୧୦୮ ॥
ସେହି କେବଳ ଅକ୍ଷୟ ସ୍ଥାନକୁ ଲଭଇ ।
ଏହା ସତ୍ୟ ମୁ କହିଲି ମନେରଖ ତୁହି ॥ ୧୦୯ ॥
ତଦନ୍ତରେ ଅଙ୍ଗିରା ଯେ କହନ୍ତି ବଚନ ।
ଯେଉଂ ମହାତ୍ମା ଅଚ୍ୟୁତ ନିତ୍ୟ ସନାତନ ॥ ୧୧୦ ॥
ଯାହାର ଗର୍ଭରେ ଅଛି ଏ ସର୍ବ ଜଗତ ।
ସେହି ଗୋବିନ୍ଦକୁ ଆରାଧନା କର ସୁତ ॥ ୧୧୧ ॥
ଯେବେ ଉଚ୍ଚସ୍ଥାନକୁ ତୋ ଇଚ୍ଛା ଅଛି ବାଳ ।
ତେବେ ଏ ମୋହର ହିତ ବାକ୍ୟ ପ୍ରତିପାଳ ॥ ୧୧୨ ॥
ଏଥୁ ଅନ୍ତେ ପୁଣି ହିଁ ଯେ କହନ୍ତି ପୁଲସ୍ତ୍ୟ ।
ପରମବ୍ରହ୍ମ ଅଟନ୍ତି ଯେବଣ ଅଚ୍ୟୁତ ॥ ୧୧୩ ॥
ସେ ହରିକି ଭଜିଲେ ପାଇବୁ ମୁକ୍ତି ଗ୍ରାମ ।
ପରମଧାମ ପରମପୁରୁଷ ଯେ ବ୍ରହ୍ମ ॥ ୧୧୪ ॥
ତହିଂ ଉତ୍ତାରେ ଧ୍ରୁବଙ୍କୁ କହନ୍ତି ଯେ କ୍ରତୁ ।
ଯାଗରେ ଯାଗ ପୁରୁଷ ଯେଉଂ ବିଶ୍ୱକେତୁ ॥ ୧୧୫ ॥
ଯେଉଂ ପରମପୁରୁଷ ନାମ ବେଦ ଗାଇ ।
ସେ ତୁଷ୍ଟ ହେଲେ କି ଉଚ୍ଚସ୍ଥାନ ପ୍ରାପ୍ତି ନୋହି ॥ ୧୧୬ ॥
ଏହା ଶୁଣି ପୁଲହ ଯେ କହୁଛନ୍ତି ତହିଂ ।
ଇନ୍ଦ୍ର ଯେଉଂ ଜଗତପତିକି ମନେ ଧ୍ୟାଇ ॥ ୧୧୭ ॥
ଆପଣାର ସ୍ଥାନକୁ ପାଇଲା ପୁନରପି ।
ସେ ଯଜ୍ଞପତି ବିଷ୍ଣୁଙ୍କୁ ଭଜ ହୋ ଅଦ୍ୟାପି ॥ ୧୧୮ ॥

ଏଥୁଁ ପୁଣି ବଶିଷ୍ଠ ବୋଲନ୍ତି ଧ୍ରୁବ ଶୁଣ ।
ଆରାଧିତ ହୁଅନ୍ତେ ଯେବଣ ନାରାୟଣ ॥ ୧୧୯ ॥
ଯେଉଁ ଯେଉଁ କଥା ଇଛା ତାହା ତାହା ପାଇ ।
ତ୍ରୈଲୋକ୍ୟ ଅନ୍ତରଗତ ସ୍ଥାନ ଯେ ବୋଲାଇ ॥ ୧୨୦ ॥
ତାହାଠାରୁ ଉତ୍ତମର ଉତ୍ତମ କେ ଅଛି ।
ସେ ସ୍ଥାନ ପାଇବୁ ବାଳ ଭଜ ଶିରୀବସ୍ଥି ॥ ୧୨୧ ॥
ସପ୍ତଋଷିଙ୍କ ମୁଖରୁ ଏ ବଚନ ଶୁଣି ।
ବିନୟ ହୋଇଣ ପୁଣି କହେ ପୁତ୍ରମଣି ॥ ୧୨୨ ॥
ଆହେ ମହାଭାଗମାନେ କହିଲଟି ଯାହା ।
ବିଷ୍ଣୁ ଆରାଧନା କର ସତ୍ୟବାକ୍ୟ ଏହା ॥ ୧୨୩ ॥
ସେ ହରିଙ୍କ ପରିତୋଷ ଅର୍ଥେ ଯେଉଁ ଜପ ।
ତାହା ମୋତେ ଆଜ୍ଞା ହୋଉ କହିଣ ସ୍ୱରୂପ ॥ ୧୨୪ ॥
ସେ ମହାତ୍ମା ବିଷ୍ଣୁଙ୍କ ଯେବଣ ଆରାଧନ ।
ତାହା କି ରୂପେ କରିବି କର ଅବଧାନ ॥ ୧୨୫ ॥
ପ୍ରସନ୍ନ ବଦନ ହୋଇ ଆଜ୍ଞା ଦିଅ ମୋତେ ।
ପ୍ରଣିପତ୍ୟ ହେଉଛିଁ ତୁମ୍ଭର ପଦାଗ୍ରତେ ॥ ୧୨୬ ॥
ଧ୍ରୁବ ମୁଖୁଁ ଏମନ୍ତ ବିନୟ ବାକ୍ୟ ଶୁଣି ।
ଋଷିମାନେ ବୋଲନ୍ତି ଶୁଣ ହେ ପୁତ୍ରମଣି ॥ ୧୨୭ ॥
ଯେବଣ ପ୍ରକାରେ ନରେ ବିଷ୍ଣୁ ସେବା କରି ।
କାର୍ଯ୍ୟମାନେ ସାଧନ୍ତି ତା କହିବା ବିସ୍ତାରି ॥ ୧୨୮ ॥
ଯେତେବେଳେ ଧ୍ୟାନରେ ରହିବ ମହାଭାଗ ।
ପ୍ରଥମୁ କରିବ ବାହ୍ୟ ଅର୍ଥ ପରିତ୍ୟାଗ ॥ ୧୨୯ ॥
ତହିଁ ଉତ୍ତାରେ ଜଗତଧାମ ବିଷ୍ଣୁଠାରେ ।
ନିଜ ଚିତ୍ତକୁ ରଖିବ ଅତି ନିଶ୍ଚଳରେ ॥ ୧୩୦ ॥
ଏରୂପେ ନିଶ୍ଚଳ ଚିତ୍ତେ ସମାଧି କରିବ ।
ଅତି ଯତ୍ନ ପ୍ରକାରରେ ଧଇର୍ଯ୍ୟ ଧରିବ ॥ ୧୩୧ ॥
ଯେମନ୍ତ ପ୍ରକାରେ ପୁଣି ଜପିବ ସେ କାଳେ ।
ତାହା କହୁଅଛୁ ପୁତ୍ର ଶୁଣିବା ନିଶ୍ଚଳେ ॥ ୧୩୨ ॥
ଦ୍ୱାଦଶାକ୍ଷର ମନ୍ତ୍ରରେ ଜପ ଯେ କରିବ ।
ଯେବଣ ମନ୍ତ୍ରେ ସନ୍ତୁଷ୍ଟ ପ୍ରଭୁ ବାସୁଦେବ ॥ ୧୩୩ ॥
ପୂର୍ବେ ତୋର ପିତାମହ ସ୍ୱାୟମ୍ଭୁବମନୁ ।
ନିଶ୍ଚଳ ଆସନେ ଜପିଲେ ଏ କହି ମନୁ ॥ ୧୩୪ ॥
ତେବେ ତାଙ୍କଠାରେ ତୁଷ୍ଟ ହେଲେ ଜନାର୍ଦ୍ଦନ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ଯେଉଁ ସମ୍ପତ୍ତି ସେମାନ ॥ ୧୩୫ ॥

ମନୋରଥ ପୂର୍ଣ୍ଣ କରିଦେଲେ ତାହାଠାରେ ।
ତେଣୁ ମନୁବଂଶ ପ୍ରଚରିଲେ ଜଗତରେ ।। ୧୩୬ ।।
ସେହି ରୂପେ ତୁହି ପୁଣି ଭଜ ସେହି ହରି ।
ତୁଷ୍ଟ କର ବାବୁ ଏହି ମନ୍ତ୍ର ଜପ କରି ।। ୧୩୭ ।।
ଏହା ବୋଲି ମନ୍ତ୍ରରାଜ କର୍ଣ୍ଣରେ କହିଲେ ।
ବାଞ୍ଛା ସିଦ୍ଧ ହେଉ ବୋଲି ଆଶୀର୍ବାଦ କଲେ ।। ୧୩୮ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ଧ୍ରୁବ ନିର୍ବେଦ ଏଗାର ଅଧ୍ୟା ସମାପତ ।। ୧୩୯ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୪୦ ।।

# ଦ୍ୱାଦଶ ଅଧ୍ୟାୟ

ଏଥୁ ଅନନ୍ତରେ ଯେ କହନ୍ତି ପରାଶର ।
ଶୁଣ ମୁନି ଧ୍ରୁବର ଯେମନ୍ତ ସମାଚାର ॥ ୧ ॥
ସପ୍ତଋଷି ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ଇଷ୍ଟ ମନ୍ତ୍ର ହୃଦରେ ଧରିଣ ପୁତ୍ରମଣି ॥ ୨ ॥
ସମସ୍ତ ଚରଣେ ପଡ଼ି ଘେନି ଆଶୀର୍ବାଦ ।
ସେଠାରୁ ବାହାର ହୋଇ ନୃପତି ଦାୟାଦ ॥ ୩ ॥
ଆତ୍ମା ମୋର କୃତକାର୍ଯ୍ୟ ହେଲା ବୋଲି ଭାଳି ।
ଅତି ଆନନ୍ଦରେ ଗଲା ମହାଶୁଦ୍ଧିଶାଳୀ ॥ ୪ ॥
ମଧୁବନ ନାମରେ ଯେବଣ ପୁଣ୍ୟ ସ୍ଥଳ ।
ଯମୁନା ନଦୀତଟରେ ଦିଶଇ ମଞ୍ଜୁଳ ॥ ୫ ॥
ପୂର୍ବ କାଳେ ମଧୁ ନାମା ଦୈତ୍ୟ ତହିଁ ଥିଲା ।
ତେଣୁ କରି ମଧୁବନ ନାମ ତା ହୋଇଲା ॥ ୬ ॥
ସେ ମଧୁ ଦୈତ୍ୟର ପୁତ୍ର ଲବଣ ରାକ୍ଷସ ।
ଶତ୍ରୁଘନ ତାହାକୁ ପୂର୍ବରେ କରି ନାଶ ॥ ୭ ॥
ତହିଁ ଯେଉଁ ପୁରୀ ଏକ କଲେ ଦିବ୍ୟତୋରା ।
ତାହାର ନାମଟି ପୁଣି ହୋଇଲା ମଥୁରା ॥ ୮ ॥
ଦେବତାମାନଙ୍କ ଦେବ ଯେଉଁ ଭଗବାନ ।
ତହିଁରେ ସେ ସବୁକାଳେ କରିଛନ୍ତି ସ୍ଥାନ ॥ ୯ ॥
ସମସ୍ତ ପାପହରଣ ଅଟଇ ସେ ମହୀ ।
ତହିଁ ନୃପନନ୍ଦନ ପ୍ରବେଶ ଯାଇ ହୋଇ ॥ ୧୦ ॥
ମରୀଚ୍ୟାଦି ସପ୍ତଋଷି ଆଦେଶକୁ ଘେନି ।
ଯମୁନା ତଟେ ବସିଲା ସିଦ୍ଧପୀଠ ଚିହ୍ନି ॥ ୧୧ ॥
ସେ ମହାତୀର୍ଥରେ ବସି ଆରମ୍ଭିଲା ତପ ।
ଦେବେଶ ବିଷ୍ଣୁଙ୍କୁ ହୃଦେ ଧ୍ୟାଇ କଲା ଜପ ॥ ୧୨ ॥
ଅନନ୍ୟମନା ହୋଇ ତା ଧ୍ୟାନ କଲା ଯହୁଁ ।
ସର୍ବ ଶୁଭଗତ ବିଷ୍ଣୁ ଜାଣିଲେକ ତହୁଁ ॥ ୧୩ ॥
ସର୍ବ ଭାଗବତଟି ଯେବଣ ଭଗବାନ ।
ସେ କାଳେ ଭକ୍ତ ହୃଦୟ ପଦେ କଲେ ସ୍ଥାନ ॥ ୧୪ ॥
ସେ ଯୋଗିଚିତ୍ତରେ ଯହୁଁ ରହିଲେ ଶ୍ରୀଧର ।
ସେ ବାଳକ ହେଲା ବ୍ରହ୍ମାଣ୍ଡରୁ ଅତି ଭାର ॥ ୧୫ ॥
ସମସ୍ତ ଭୂତଧାରିଣୀ ଯେବଣଟି ମହୀ ।
ସେ କୁମର ମହାଭାର ନ ପାରିଲା ସହି ॥ ୧୬ ॥

୧୫. ଖ : ବ୍ରହ୍ମାଣ୍ଡ ରୂପ ଅତି ଭାରି ।

ଉଭା ହୋଇ କରି ଯହୁଁ ବାମ ପାଦେ ରହି ।
ଯୋଗ ଆରମ୍ଭିଲାକ ପରମ ବ୍ରହ୍ମ ଧ୍ୟାଇ ।। ୧୭ ।।
ସେ କାଳେ ବାମ ଭାଗର ଅର୍ଦ୍ଧ ବସୁନ୍ଧରା ।
ତଳକୁ ନମ୍ର ହୋଇଲା ନ ସହିଲା ଭାରା ।। ୧୮ ।।
ତଦନ୍ତେ ଦକ୍ଷିଣ ଭାଗେ ଉଭା ହେଲା ଯହୁଁ ।
ଦକ୍ଷିଣ ଅର୍ଦ୍ଧ ଅବନୀ ନମ୍ର ହେଲା ତହୁଁ ।। ୧୯ ।।
ପାଦ ଅଙ୍ଗୁଷ୍ଠିରେ ରହି କରନ୍ତେ ତପସ୍ୟା ।
ସପର୍ବତ ହୋଇଣ ଚଳିଲା ସର୍ବରସା ।। ୨୦ ।।
ନଦୀ ନଦ ସମୁଦ୍ର ଇତ୍ୟାଦି ଜଳାଶୟେ ।
ସର୍ବେ କ୍ଷୋଭ ପାଇଲେ ଲଭିଣ ମହା ଭୟେ ।। ୨୧ ।।
ତାହାଙ୍କର କ୍ଷୋଭ ସକାଶୁଁ ସକଳ ଅମରେ ।
ସନ୍ତତ ମହାକ୍ଷୋଭିତ ହେଲେ ଯେ ଯାହାରେ ।। ୨୨ ।।
ସେ କାଳରେ ଯାମା ନାମ ଯେତେକ ଅମର ।
ଇନ୍ଦ୍ର ସଙ୍ଗତରେ କରି ଅନେକ ବିଚାର ।। ୨୩ ।।
ଅତ୍ୟନ୍ତ କ୍ରୋଧ କରିଣ ଧ୍ୟାନଭଙ୍ଗ ଅର୍ଥେ ।
ଅନେକ ଉପାୟମାନ କଲେ ଯେଝା ମତେ ।। ୨୪ ।।
ତହୁଁ ପୁଣି ସକଳ କୁଷ୍ମାଣ୍ଡ ଗଣ ମିଳି ।
ଦେବଇନ୍ଦ୍ର ସତେ ଅନେକ ମତେ ଭାଳି ।। ୨୫ ।।
ଅତ୍ୟନ୍ତ ଧ୍ରୁବ ସମାଧି ଭାଙ୍ଗିବା ଅର୍ଥରେ ।
ବିବିଧ ଉପାୟମାନ କଲେ ପରସ୍ପରେ ।। ୨୬ ।।
ସବୁଆଡ଼େ ଉତ୍ପାତ ଯେ ହୋଇଲା ବହୁତ ।
ମାୟାରୂପୀ ସୁନୀତି ନାମରେ ନିଜ ମାତ ।। ୨୭ ।।
କୁମର ତପସ୍ଥାନକୁ ଅତି ବେଗେ ଯାଇ ।
ଦେଖିଲା ବାଳକ କଷ୍ଟେ ତପସ୍ୟା କରଇ ।। ୨୮ ।।
ଅନାଇ ଲୋତକ ପୂର୍ଣ୍ଣ କରି ବେନି ଆଖି ।
ପୁରତରେ ରହିଣ ଅତ୍ୟନ୍ତ ହୋଇ ଦୁଃଖୀ ।। ୨୯ ।।
ମାୟାରେ ମୋହିତ ହୋଇ ବୋଲେ ଆହା ପୁତ୍ର ।
ଆସ ବାବୁ କଷ୍ଟ ନ ପାଅ ତୋ ମୃଦୁଗାତ୍ର ।। ୩୦ ।।
ଶରୀର ଖିନ୍ନ କରିବା ଅର୍ଥେ ଯେ ଦାରୁଣ ।
ଏମନ୍ତ ତପରୁ ନିବର୍ତ୍ତିଣ ରହ ପୁଣ ।। ୩୧ ।।
ଅନେକ ମନୋରଥରେ ତତେ ଅଛି ପାଇ ।
ତପୁ ମନ ନିବର୍ତ୍ତାଅ କହୁଅଛି ମୁହିଁ ।। ୩୨ ।।
ମୁହିଁ ଦୀନ ଅନାଥ ଏକାକୀ ଦୁଃଖୀ ସିନା ।
ମତେ ତ୍ୟକ୍ତ ନ କର ହୋ କରୁଛି ପ୍ରାର୍ଥନା ।। ୩୩ ।।

ମୋହ ସପତ୍ନୀ ବଚନେ ଏଡ଼େ କ୍ରୋଧ କରି ।
କଷ୍ଟେ ତପ ନ କର କହୁଛି ପୁରସରି ।। ୩୪ ।।
ଅଗତିନାରୀଟି ମୁହିଂ ମୋର ତୁହି ଗତି ।
ଏମନ୍ତ ନ କର ବାବୁ ଆସ ମୋର କତି ।। ୩୫ ।।
ଦାରୁଣ ତପସ୍ୟା କାହିଂ ତୁହି ପୁଣି କାହିଂ ।
ଯେଣୁ ପାଞ୍ଚବରଷ ବୟସ ଅଛି ହୋଇ ।। ୩୬ ।।
ସେ କାରଣୁ ଏଥୁଁ ମନ ନିବର୍ତ୍ତାଅ ବାଳ ।
ଏ କଷ୍ଟ ନିର୍ବନ୍ଧେ ବାବୁ କିଛି ନାହିଂ ଫଳ ।। ୩୭ ।।
ଖେଳିବାର ତୋର ଏ ସମୟ ଅଟେ ବାବୁ ।
ତହିଂ ଉତ୍ତାରେଣ ବିଦ୍ୟା ମାନ ହିଂ ପଢ଼ିବୁ ।। ୩୮ ।।
ତହୁଁ ପୁଣି କରିବୁ ସମସ୍ତ ଭୋଗମାନ ।
ତଦନ୍ତରେ ତପ ସିନା ଅଟଇ ପ୍ରଧାନ ।। ୩୯ ।।
ଏ ତୋ ଖେଳିବା ସମୟେ ତପ ଯାହା କରୁ ।
ଆତ୍ମାର ବିନାଶ କଥା ସିନା ତୁ ବିଚାରୁ ।। ୪୦ ।।
ମୋର ପ୍ରୀତି ତୋହର ପରମ ଧର୍ମ ସିନା ।
ଏଣୁ କରି ତତେ ମୁହିଂ କହୁଛିରେ ଦେନା ।। ୪୧ ।।
ବୟସ ଅବସ୍ଥା ଅନୁରୂପେ ଯଉଂ କେଳି ।
ତହିଂରେ ପ୍ରବର୍ତ୍ତି ବାବୁ ତହିଂ କି ତୁ ଭଲି ।। ୪୨ ।।
ମୋର ପ୍ରୀତି ବିରୋଧ ଅକାଳ ଯଉଁ ତପ ।
ସେ ବଡ଼ ଅଧର୍ମ ବାବୁ ନିବର୍ତ୍ତରେ ବାପ ।। ୪୩ ।।
ଯେବେ ଏ ଘୋର ତପସ୍ୟା ନ ଛାଡ଼ିବୁ ତୁହି ।
ତୁହି ଦେଖୁ ଦେଖୁ ପ୍ରାଣ ତେଜିବିଟି ମୁହିଂ ।। ୪୪ ।।
ଏମନ୍ତେ ଅନେକ କହି କଲାକ ରୋଦନ ।
ନୟନରୁ ଲୋତକ ତେଜିଣ ଘନ ଘନ ।। ୪୫ ।।
ଏ ରୂପେ କରି ମାତାକୁ ଅନାଇଲେ ହେଲେ ।
ନ ଚାହିଂଲା ପ୍ରାୟେ ସ୍ଥିତ ହୋଇଛି ସେ କାଳେ ।। ୪୬ ।।
ବିଷ୍ଣୁଙ୍କଠାରେ ହେବାରୁ ସମାହିତ ମନା ।
ବ୍ରହ୍ମାଣ୍ଡ ସମ୍ପତ୍ତି ହେଲେ ତୃଣ ପରି ସିନା ।। ୪୭ ।।
ତହୁଁ ପୁଣି ପୁତ୍ରକୁ ଅନାଇଂ ମାୟାନାରୀ ।
ଜାଣିଲା ଏହାର ତପ ନୁହଇ ନିବାରି ।। ୪୮ ।।
ସେ କାଳରେ ବୋଇଲା ଶୁଣରେ ମୋର ବାବୁ ।
ଏ ଭୟଙ୍କର ବନରେ ଏକା ତୁ ଡରିବୁ ।। ୪୯ ।।
ମହାଘୋର ରୂପରେ ରାକ୍ଷସମାନେ ଆସି ।
ଶସ୍ତ୍ର କରେ ଘେନିଣ ଯେ ତତେ ଯିବେ ନାଶି ।। ୫୦ ।।

ଏଥକୁ ତୁ ସାବଧାନ ହୁଅ ପୁତ୍ର ଗୋଟି ।
ଏହା କହି ଜନନୀ ଯେ ଯାଅନ୍ତେ ଲେଉଟି ॥ ୫୧ ॥
ସେହି ସମୟେ ସେ ସ୍ଥାନେ ଅନେକ ରାକ୍ଷସେ ।
ଆବିର୍ଭୂତ ହୋଇଲେ ସେ ଭୟଙ୍କର ବେଶେ ॥ ୫୨ ॥
ବଜ୍ରଟଙ୍କ ପରାୟେ କାହାର ଦନ୍ତମାନ ।
ଅଧରକୁ ନିକିଳି କରାଇ ଭୟୋତ୍ପନ୍ନ ॥ ୫୩ ॥
କାହାର ଅନେକ କର ବହୁତ କା ଶିର ।
ଏକପାଦ କାହାର କାହାର ଲମ୍ବୋଦର ॥ ୫୪ ॥
କଦଳୀ ପତ୍ର ପରି କା ଜିହ୍ୱା ଲହଲହ ।
ଅଞ୍ଜନପୁଞ୍ଜ ପରାୟେ ସମସ୍ତଙ୍କ ଦେହ ॥ ୫୫ ॥
ଦଗ୍ଧ ତମ୍ବା ଚକ୍ର ପରି ବୁଲାଇ ନୟନ ।
ଉର୍ଦ୍ଧ୍ୱକେଶ ଭ୍ରୂକୁଟିରେ କୁଟିଳ ଆନନ ॥ ୫୬ ॥
ପ୍ରଳୟ ମେଘ ଗର୍ଜନ ପରି କରି ଧ୍ୱନି ।
ହସ୍ତରେ ଅନେକ ଶସ୍ତ୍ରମାନ ଛନ୍ତି ଘେନି ॥ ୫୭ ॥
ଜ୍ୱାଳାମାଳାମାନଙ୍କରେ ବିକରାଳ ମୁଖ ।
ଏମନ୍ତ ଉଗ୍ର ବେଶରେ ହୋଇ ଏକମୁଖ ॥ ୫୮ ॥
ସର୍ବେ ଆସି ରାଜପୁତ୍ର ପୁରତରେ ଉଭା ।
ଯମକାମିଗଣ ପ୍ରାୟେ ବିକାଶଇ ପ୍ରଭା ॥ ୫୯ ॥
ତହୁଁ ପୁଣି ଗଦାଚକ୍ର ମୁଦ୍ଗର ବୁଲାଇ ।
ଧ୍ରୁବ ପରେ ନିଶାଚର ପହୁଡ଼ିଲେ ନେଇ ॥ ୬୦ ॥
ଶୃଗାଳମାନେ ସନ୍ତତ ବେଢ଼ିଣ ବୋବାନ୍ତି ।
ମୁଖମାନଙ୍କରୁ ଅଗ୍ନି ଜ୍ୱାଳା କରି ବାନ୍ତି ॥ ୬୧ ॥
ଏ ରୂପେ ସକଳ ଭୟଙ୍କର ରୂପ ଯେତେ ।
ତପସ୍ୱୀ ବାଳକ ଚାରି ଆଡ଼େ ଯେଝା ମତେ ॥ ୬୨ ॥
ବେଢ଼ି ନାନା ଉତ୍ପାତରେ ତ୍ରାସ କରାଇଲେ ।
ହୁଁ କାର ନାଦେ ତର୍ଜନାମାନ ଆରମ୍ଭିଲେ ॥ ୬୩ ॥
କେ ବୋଇଲେ ହାଣହାଣ କେ ବୋଇଲେ ମାର ।
କେ ବୋଇଲେ କାଟ କାଟ ଏହାର ଶରୀର ॥ ୬୪ ॥
କେକେମାନେ ବୋଇଲେ ଯେ ଗୋଟାସୁଦ୍ଧା ଗିଳି ।
କେକେ ବୋଇଲେ ଚୋବାଇ କରହ କବଳି ॥ ୬୫ ॥
ଏ ରୂପରେ ଅନେକ ଗର୍ଜନମାନ କରି ।
ସିଂହଉଷ୍ଟ୍ରମକରାଦି ମୁଖମାନ ଧରି ॥ ୬୬ ॥
ରାଜପୁତ୍ରକୁ ନାନାଦି ଭୟ ଦେଖାଇଲେ ।
ପୁନଃପୁନ ବିକରାଳ ତର୍ଜନା ସେ କଲେ ॥ ୬୭ ॥

ଗୋବିନ୍ଦରେ ଆସକ୍ତ ହୃଦୟ ତାର ଯେଣୁ ।
ଏ ସର୍ବେ ଦୃଷ୍ଟିଗୋଚରରେ ନ ଦିଶିଲେ ତେଣୁ ॥ ୬୮ ॥
ରାକ୍ଷସ ଯେତେ ତାହାଙ୍କ କର ଶସ୍ତ୍ର ଯେତେ ।
ଶୃଗାଳାଦି ଭୟଙ୍କର ପଶୁ ଥିଲେ ଯେତେ ॥ ୬୯ ॥
ଏହାଙ୍କର ରୂପ କିଛି ନ ଦିଶିଲା ଡୋଳେ ।
ନାଦମାନେ ସମ୍ଭାଇଲା ନାହିଁ କର୍ଣ୍ଣ ବିଳେ ॥ ୭୦ ॥
ପରମ ବିଷ୍ଣୁଙ୍କୁ ସେ ଯେ ନିଜାଶ୍ରୟ କରି ।
ସନ୍ତତ ଏକାଗ୍ରଚିତ୍ତ ହୋଇ ତପଚାରି ॥ ୭୧ ॥
ଅନ୍ୟ କଥା ମାତ୍ରକ ଯେ ନ ଦେଖିଲା କିଛି ।
କେବଳ ବିଷ୍ଣୁଙ୍କ ରୂପ ଧ୍ୟାନେ ଦିଶୁଅଛି ॥ ୭୨ ॥
ଏଥୁଁ ଅନନ୍ତରେ ପୁଣି ମାୟା ଭୟ ଯେତେ ।
କ୍ରମେକ୍ରମେ ଲୀନ ଆସି ହୁଅନ୍ତେ ସମସ୍ତେ ॥ ୭୩ ॥
ସେ କାଳେ ସମସ୍ତ ଦେବେ କ୍ଷୋଭକୁ ପାଇଲେ ।
ଭକ୍ତ ପରାଭବରୁ ଶଙ୍କିତମନା ହେଲେ ॥ ୭୪ ॥
ସର୍ବେ ଏକଠାବେ ରୁଣ୍ଡି କଲେକ ବିଚାର ।
ସ୍ୱର୍ଗ ସମ୍ପତ୍ତି ଘେନିବ ନୃପତି କୁମର ॥ ୭୫ ॥
ଏବେ କି ବୁଦ୍ଧି କରିବା ନାହିଁ ଆମ୍ଭ ଗତି ।
ଏଥେ ଶରଣ ମାତ୍ରକ ଲକ୍ଷ୍ମୀଦେବୀପତି ॥ ୭୬ ॥
ଏହା ବୋଲି ଧ୍ରୁବ ତପେ ତାପିତ ଯେ ହୋଇ ।
ଆରତେ ଡ଼ାକନ୍ତି ରଖ ବ୍ରହ୍ମାଣ୍ଡ ଗୋସାଇଁ ॥ ୭୭ ॥
ଜଗତ ଜ୍ୟୋତି ଅନାଦିନିଧନ ହେ ହରି ।
ଶରଣ ଶରଣରକ୍ଷାକାରୀ ଦଇତ୍ୟାରି ॥ ୭୮ ॥
ହେ ଦେବ ଦେବ ଜଗତନାଥ ହେ ପରେଶ ।
ଆହେ ଶ୍ରୀପୁରୁଷୋତ୍ତମ ଅଖିଳ ନିବାସ ॥ ୭୯ ॥
ଧ୍ରୁବ ତପେ ତାପିତ ହୋଇଲୁ ଆମ୍ଭେମାନେ ।
ତେଣୁ ତୁମ୍ଭଙ୍କୁ ଶରଣ ଗଲୁଁ ଅତି ଦୀନେ ॥ ୮୦ ॥
ଦିନେ ଦିନେ ପ୍ରତି କଳାମାନଙ୍କେ ଶଶାଙ୍କ ।
ଯେଉଁ ରୂପେ କ୍ରମେ କ୍ରମେ ହୁଅଇ ଅଧିକ ॥ ୮୧ ॥
ସେହି ରୂପେ ତପସ୍ୟା ଏହାର ବୃଦ୍ଧି ହୁଏ ।
ଏଥିକି କରିବୁ ଆହେ କେବଣ ଉପାୟେ ॥ ୮୨ ॥
ଉତ୍ତାନପାଦକୁମର ତପ ସକାଶରୁଁ ।
ଦେବଗଣେ ଭୟ ପାଇଲୁଁ ହେ ଜଗଦ୍‌ଗୁରୁ ॥ ୮୩ ॥
ଏଣୁ କରି ତୁମ୍ଭଙ୍କୁ ଶରଣ ଗଲୁ ସର୍ବେ ।
ଏ ଘୋର ତପସ୍ୟା ତାର ନିବର୍ତ୍ତାଅ ଏବେ ॥ ୮୪ ॥

ପାଞ୍ଚ ବରଷ ବୟସ ଅଟଇ କୁମର ।
ଯଉଂ ତପ କରଇ ସେ ଅତି ଅଗୋଚର ॥ ୮୫ ॥
କି ମନୋରଥ ତାହାର ଆମ୍ଭେ ଜଣାନାହିଁ ।
ଇନ୍ଦ୍ରପଦ ଇଚ୍ଛା ଅବା କରି ଅଛି ସେହି ॥ ୮୬ ॥
କି ଅବା ସୂର୍ଯ୍ୟଙ୍କ ପଦ କି କୁବେରଙ୍କ ଶିରି ।
କି ଚନ୍ଦ୍ର ହୋଇବ ଅବା ଜଳ ଅଧିକାରୀ ॥ ୮୭ ॥
ତେଣୁ କରି ଆପଣଙ୍କୁ କହିଲୁ ଗୁହାରି ।
ଆମ୍ଭଙ୍କୁ ପ୍ରସନ୍ନ ହୁଅ ଦେବ ଚକ୍ରଧାରି ॥ ୮୮ ॥
ଏ ଶଙ୍କାଶଲ୍ୟ ଆମ୍ଭର ହୃଦରୁ ଉଦ୍ଧର ।
ଉତ୍ତାନପାଦ ତନୟ ତପସ୍ୟା ନିବାର ॥ ୮୯ ॥
ଅମରଙ୍କ ଏ ଗୁହାରି ଶୁଣି ଭଗବାନ ।
ଆବିର୍ଭୂତ ହୋଇଣ କହନ୍ତି ଦେବେ ଶୁଣ ॥ ୯୦ ॥
ସେ ଯଉଂ ବାଳକ କରେ ଅନେକ ତପସ୍ୟା ।
ଇନ୍ଦ୍ରପଦ ଠାରେ ତାର ନାହିଁ ପ୍ରତି ଆଶା ॥ ୯୧ ॥
ସୂର୍ଯ୍ୟପଦେ ତାହାର ଯେ ଅଭିଳାଷ ନାହିଁ ।
ବରୁଣ କୁବେର ପଦ କି କରିବ ସେହି ॥ ୯୨ ॥
ଯଉଂ କାମନା କରିଛି ପ୍ରାର୍ଥନା ମନେ ଭାବି ।
ସେ କଥା ତାହାକୁ ମୁଁ ଅବଶ୍ୟଟି ଦେବି ॥ ୯୩ ॥
ଆହେ ସର୍ବ ଦେବତା ନକର ଏଥେ ଚିନ୍ତା ।
ଆପଣା ସ୍ଥାନରେ ରହ ହୋଇଣ ଅଚିନ୍ତା ॥ ୯୪ ॥
ତପରେ ଆସକ୍ତଚିତ୍ତ ଯେବଣଟି ବାଳ ।
ମୁଁ ତାକୁ ନିବର୍ତ୍ତାଇ ରଖିବି କେବଳ ॥ ୯୫ ॥
ଦେବ ଦେବ ଶ୍ରୀମୁଖୁଁ ଏମନ୍ତ ଆଜ୍ଞାଘେନି ।
ସର୍ବଦେବେ ପଦ୍ମପାଦେ ଲଗାଇ ମୂର୍ଦ୍ଧନି ॥ ୯୬ ॥
ହୃଦୟ ସନ୍ତାପ ତେଜି ବାସବ ସଙ୍ଗତେ ।
ନିଜ ପୁରେ ଯାଇଣ ଯେ ରହିଲେ ନିଶ୍ଚିନ୍ତେ ॥ ୯୭ ॥
ଏଥୁଁ ଅନନ୍ତରେ ପୁଣି ଦେବ ଭଗବାନ ।
ବାଳକ ଭକ୍ତିରେ ପରିତୋଷ ହୋଇ ପୁଣ ॥ ୯୮ ॥
ଧ୍ରୁବଠାକୁ ସେହି ଲାଗେ ବିଜେ କରି ହରି ।
ଶଙ୍ଖଚକ୍ର ଗଦାପଦ୍ମ ଚତୁର୍ଭୁଜେଧରି ॥ ୯୯ ॥
ପ୍ରସନ୍ନ ବଦନେ ଉଭା ହୋଇ ଜଗନ୍ନାଥ ।
ବୋଇଲେକ ଶୁଣିମା ଉତ୍ତାନପାଦ ସୁତ ॥ ୧୦୦ ॥
ହେ ବାବୁ ସର୍ବମଙ୍ଗଳ ହୋଇବ ତୋହର ॥
ତପସ୍ୟା ଦେଖି ସନ୍ତୋଷ ହୋଇଲା ମୋହର ॥ ୧୦୧ ॥

୯୩. ଖ : ମତେ ଭାବି

ତେଣୁ କରି ଆଗରେ ହୋଇଲି ଉପସ୍ଥିତ ।
ମୁହିଟି ଭକ୍ତସୋଦର ଦେବ ଜଗନ୍ନାଥ ।। ୧୦୨ ।।
ଯାହା ଇଚ୍ଛା ବର ମାଗ ଦେବି ବାବୁ ତତେ ।
ତୁଷ୍ଟ ହେଲି ଆପଣାର ଭକ୍ତି ଅନୁମତେ ।। ୧୦୩ ।।
ତେଣୁ କରି ଯାଚୁଅଛି ମାଗ ଏବେ ବର ।
ମନୋରଥ ପୂର୍ଣ୍ଣ ହେବ ବିଳମ୍ବ ନ କର ।। ୧୦୪ ।।
କହୁଛନ୍ତି ପରାଶର ଶୁଣ ମଇତ୍ରେୟ ।
ଯଉଂ ବର ଯାଚିଲେ ଧ୍ରୁବକୁ ଜଗନ୍ମୟ ।। ୧୦୫ ।।
ସେ ଦେବ ଦେବଙ୍କ ଆଜ୍ଞା ଶୁଣି ନୃପବାଳ ।
ସେ କାଳେ ଚାହିଁଲା ଫେଡ଼ି ନୟନ ଯୁଗଳ ।। ୧୦୬ ।।
ଦେଖିଲା ଆଗରେ ଭକ୍ତକୃପାମୟ ରୂପ ।
ଯାହା ହୃଦେ ଧ୍ୟାନ କରି କରୁଥିଲା ତପ ।। ୧୦୭ ।
ସେହି ମୂର୍ତ୍ତି ସାକ୍ଷାତେ ଯେ ଆଗରେ ବିଜୟେ ।
ଶଙ୍ଖଚକ୍ର ଗଦାଧନୁ ଅସି କରେ ଶୋହେ ।। ୧୦୮ ।।
ନବରତ୍ନ କିରୀଟି ବିବିଧ ଅଳଙ୍କାର ।
ଶ୍ରୀଅଙ୍ଗରେ ଭୂଷଣ କଟିରେ ପୀତାମ୍ବର ।। ୧୦୯ ।।
କୋଟି କନ୍ଦର୍ପ ମୂରତି ଅନାଦି ଅଚ୍ୟୁତ ।
ନିଜ ଭକ୍ତ ପୁରତରେ ହୋଇ ଉପସ୍ଥିତ ।। ୧୧୦ ।।
ଦେଖି ନୃପ କୁମର ସାନନ୍ଦମନା ହେଲା ।
ଶ୍ରୀପଦ୍ମଚରଣେ ନେଇ ଶିର ଲଗାଇଲା ।। ୧୧୧ ।।
ମହୀରେ ସାଷ୍ଟାଙ୍ଗେ ଶୋଇ ଅତି ବେଗେ ଉଠି ।
ପ୍ରେମଗଦଗଦରେ ପୁଲକ ଅଙ୍ଗଯଷ୍ଟି ।। ୧୧୨ ।।
ଅତର୍କିତେ ଦେଖନ୍ତେ ପରମ ଭୟ ହେଲା ।
ସ୍ତୁତି କରିବାକୁ ଧ୍ରୁବ ମନ ବଳାଇଲା ।। ୧୧୩ ।।
ସେ କାଳେ ବିଚାର କଲା ନିଜ ହୃଦୟରେ ।
କି ବୋଲି ସ୍ତୁତି କରିବି ପ୍ରଭୁଙ୍କ ଛାମୁରେ ।। ୧୧୪ ।।
କଉଂ ବାକ୍ୟ ପଢ଼ିଲେ ଏହାଙ୍କୁ ହେବ ସ୍ତୁତି ।
ଏମନ୍ତ ବୋଲି ବ୍ୟାକୁଳ କରି ନିଜ ମତି ।। ୧୧୫ ।।
ଅନାଦି ଈଶ୍ୱର ପାଦେ ଶରଣକୁ ଗଲା ।
ତହୁଁ ପୁଣି ପ୍ରଭୁଙ୍କୁ ଏମନ୍ତ ଜଣାଇଲା ।। ୧୧୬ ।।
ଆହେ ଦେବ ଦେବ ଭଗବାନ ଜଗଦୀଶ ।
ମୋହ ତପସ୍ୟାରେ ଯେବେ ପରମ ସନ୍ତୋଷ ।। ୧୧୭ ।।
ତେବେ ସ୍ତୁତି କରିବାକୁ ବିଚାରୁଛିଁ ମୁହିଁ ।
ଏ ବର ପ୍ରଥମୁ ଦିଅ ବ୍ରହ୍ମାଣ୍ଡ ଗୋସାଇଁ ।। ୧୧୮ ।।

୧୧୨.କ : ଅଙ୍ଗେ ଉଠି

ବ୍ରହ୍ମା ଇନ୍ଦ୍ର ଆଦି ଯେତେ ଯେତେ ଦେବତାଏ ।
ଯାହାଗତି ନ ଜାଣନ୍ତି ସର୍ବଥା କେବେହେଂ ॥ ୧୧୯ ॥
ସେହି ପ୍ରଭୁ ତୁମ୍ଭେ ଅଟ ବ୍ରହ୍ମାଣ୍ଡନାୟକ ।
ତୁମ୍ଭଙ୍କୁ ସ୍ତୁତି କରିବି କେହିଂ ମୁଁ ବାଳକ ॥ ୧୨୦ ॥
ତୁମ୍ଭ ଭକ୍ତିରେ କୁଶଳ ହଉ ମୋର ମନ ।
ପାଦପଦ୍ମ ସ୍ତୁତିରେ ପ୍ରଭୁ ଭଗବାନ ॥ ୧୨୧ ॥
ଏହି ବୁଦ୍ଧି ପ୍ରଥମୁ ମୋଠାରେ ଆଜ୍ଞାକର ।
କୃତାଞ୍ଜଳି ହୋଇଣ ନମଇଂ ବାରମ୍ବାର ॥ ୧୨୨ ॥
କହନ୍ତି ଶକ୍ତିତନୟ ଶୁଣ ମୁନିବର ।
ଏହା ଜଣାଇଲା ଯହୁଂ ନୃପତି କୁମର ॥ ୧୨୩ ॥
ଶୁଣି ପରମସନ୍ତୋଷ ଦେବଚକ୍ରପାଣି ।
ଶଙ୍ଖପ୍ରାନ୍ତ କୁମରକୁ ଛୁଆଂଇଲେ ଆଣି ॥ ୧୨୪ ॥
ସେ କାଳେ ପ୍ରସନ୍ନ ମୁଖ ନୃପତି ନନ୍ଦନ ।
ନମ୍ର ହୋଇ ପ୍ରଣାମ କରିଣ ପୁନଃପୁନ ॥ ୧୨୫ ॥
ଚରାଚରଙ୍କ ବିଧାତା ଯେବଣ ଅଚ୍ୟୁତ ।
ତାହାଙ୍କୁ ସ୍ତୁତି କଲାକ ଯୋଡ଼ି କରପତ୍ର ॥ ୧୨୬ ॥
ଅବନୀ ଜଳ ଅନିଳ ଅନଳ ଆକାଶ ।
ମନ ବୁଦ୍ଧି ଭୂତାଦି ପ୍ରକୃତି ଯେ ବିଶେଷ ॥ ୧୨୭ ॥
ଏ ସର୍ବରୂପ ଅଟନ୍ତି ଯଉଂ ପ୍ରଭୁଙ୍କର ।
ସେହି ତୁମ୍ଭେ ତୁମ୍ଭଙ୍କୁ ପ୍ରଣାମ ବାରମ୍ବାର ॥ ୧୨୮ ॥
ସଦା ଶୁଦ୍ଧ ଅତି ସୂକ୍ଷ୍ମ ଚରାଚର ବ୍ୟାପୀ ।
ପ୍ରଧାନରୂପର ଯଉଂ ପୁରୁଷ ନିଷ୍ପାପୀ ॥ ୧୨୯ ॥
ଯାହାର ରୂପ ଅଟଇ ଏମନ୍ତ ପ୍ରକାର ।
ସେହି ତୁମ୍ଭେ ତୁମ୍ଭଙ୍କୁ ପ୍ରଣାମ ବାରମ୍ବାର ॥ ୧୩୦ ॥
ଏମନ୍ତ ଅଟନ୍ତି ଯଉଂ ପରଂବ୍ରହ୍ମ ଆତ୍ମା ।
ସର୍ବ ଜଗତର ପରାତ୍ପର ଯେ ମହାତ୍ମା ॥ ୧୩୧ ॥
ଅଖିଳ ଯା ନିବାସ ଯେ ଅଖିଳ ଆଧାର ।
ସେହି ତୁମ୍ଭେ ତୁମ୍ଭଙ୍କୁ ପ୍ରଣାମ ବାରମ୍ବାର ॥ ୧୩୨ ॥
ଯେବଣ ନିର୍ଗୁଣ ଆତ୍ମା ନିତ୍ୟ ସନାତନ ।
ଭୂମି ଆଦି କରି ଯେତେ ପଞ୍ଚଭୂତମାନ ॥ ୧୩୩ ॥
ଗନ୍ଧ ଆଦି କରିଣ ଯେ ଯେତେକ ତନ୍ମାତ୍ର ।
ବୁଦ୍ଧି ଆଦି ଇନ୍ଦ୍ରିୟଙ୍କ ଯେ ଅଟେ ଶାଶ୍ୱତ ॥ ୧୩୪ ॥
ପ୍ରକୃତି ପୁରୁଷ ଦୁଇ ଠାରୁଁ ଯେ ବାହାର ।
ସେହି ତୁମ୍ଭେ ତୁମ୍ଭଙ୍କୁ ପ୍ରଣାମ ବାରମ୍ବାର ॥ ୧୩୫ ॥

୧୩୧. ପର ପରମ ମହାତ୍ମା
୧୩୫(କ)ରୁ ୧୩୫(ଘ) ଯାଏ ଚାରିପଦ 'କ' ପୋଥିରେ ନାହିଁ । କିନ୍ତୁ ଏହା ମୂଳାନୁଯାୟୀ ।

ଏମନ୍ତ ଉଚ୍ଚାରି ପୁଣି ନମସ୍କାର କରି ।
ବୋଇଲେ ହେ ପରମ ଈଶ୍ୱର ଦେବହରି ॥ ୧୩୫ ॥ (କ)
ସଦା ଶୁଦ୍ଧ ଦିବ୍ୟ ଯେଉଁ ତୁମ୍ଭର ସ୍ୱରୂପ ।
ସର୍ବଗତ ସମସ୍ତ କାରଣେ ବୁଦ୍ଧିରୂପ ॥ ୧୩୫ ॥ (ଖ)
ଯୋଗୀମାନଙ୍କର ଚିନ୍ତ୍ୟ ଅବିକାରବନ୍ତ ।
ସାକ୍ଷାତ ବ୍ରହ୍ମ ସମ୍ୟକ ସର୍ବ ଆତ୍ମାଭୂତ ॥ ୧୩୫ ॥ (ଗ)
ଏମନ୍ତ ଯଉଂ ସ୍ୱରୂପ ଅଟଇ ତୁମ୍ଭର ।
ସେହି ତୁମ୍ଭେ ତୁମ୍ଭଙ୍କୁ ପ୍ରଣାମ ବାରମ୍ବାର ॥ ୧୩୫ ॥ (ଘ)
ଅନେକ ଯାହାର ଶିର ଅନେକ ନୟନ ।
ଅନେକ ପାଦ ଅନେକ ରୂପେ ବିଦ୍ୟମାନ ॥ ୧୩୬ ॥
ବ୍ରହ୍ମାଣ୍ଡ ସ୍ୱରଶ ସକାଶରୁ ସର୍ବବ୍ୟାପୀ ।
ଭଗବନ୍ତ ଅପ୍ରମାଣ ଅବ୍ୟୟ ସ୍ୱରୂପୀ ॥ ୧୩୭ ॥
ଯେ ଭୂତ ଯେ ପୁଣି ଭାବ୍ୟ ଏ ସମସ୍ତ ଯେତେ ।
ଆପଣ ହେ ଶ୍ରୀପୁରୁଷୋତ୍ତମ ଏ ଜଗତେ ॥ ୧୩୮ ॥
ତୋ ଠାରୁଂ ବିରାଟ ଯେ ତୋ ଠାରୁଂ ସ୍ୱରାଟ ।
ତୋଠାରୁଂ ମହାପୁରୁଷ ତୋଠାରୁଂ ସମ୍ରାଟ ॥ ୧୩୯ ॥
ଯଉଂ କାରଣୁ ଏମାନେ ହେଲେ ତୋହଠାରୁ ।
ସେହେତୁ ଏ ସର୍ବ ତୁମ୍ଭେ ଏକା ଜଗଦ୍ଗୁରୁ ॥ ୧୪୦ ॥
ବ୍ରହ୍ମାଣ୍ଡର ଅଧଊର୍ଦ୍ଧ୍ୱ ମଧ୍ୟେ ଯେ ତିର୍ଜକ ।
ଏ ସର୍ବ ତୁମ୍ଭେ କେବଳ ବ୍ରହ୍ମାଣ୍ଡନାୟକ ॥ ୧୪୧ ॥
ହେ ବିଶ୍ୱ ବିଧାତା ତୁମ୍ଭଠାରୁଂ ଏ ସଂସାର ।
ହୋଇକରି ସଞ୍ଚରିଛି ନାନା ପରକାର ॥ ୧୪୨ ॥
ପୂର୍ବେ ଯା ହୋଇଥିଲା ସେହି ତୁମ୍ଭଠାରୁଂ ।
ଏଣିକି ଯା ହେବ ତାହା ହିଁ ଆପଣା ହେତୁରୁଂ ॥ ୧୪୩ ॥
ଏଣୁ କରି ବିଶ୍ୱରୂପ ଅଟଇ ତୁମ୍ଭର ।
ତୁମ୍ଭର ସ୍ୱରୂପଟି ଏ ବ୍ରହ୍ମାଣ୍ଡ ନିକର ॥ ୧୪୪ ॥
ଏହା ଗର୍ଭେ ଅଛି ସର୍ବଭୂତମୟ ବିଶ୍ୱ ।
ଏଣୁ କରି ତୁହି ସର୍ବ ସକଳ ବିନାଶ ॥ ୧୪୫ ॥
ତୋହଠାରୁ ଯଜ୍ଞ ଜାତ ସର୍ବ ଭୂତ ଜାତ ।
ପୃଷଦାଜ୍ୟ ନାମେ ଯାହା ଦଧି ମିଶ୍ର ଘୃତ ॥ ୧୪୬ ॥
ଆରଣ୍ୟକ ବନ୍ୟପଶୁ ବେନି ଯେ ପ୍ରକାର ।
ଚାରିବେଦ ଆଦି ଯେତେ ତୋତହୁଁ ବାହାର ॥ ୧୪୭ ॥
ମୁଖରୁଂ ବ୍ରାହ୍ମଣ ଜାତ ବାହୁରୁଂ କ୍ଷତ୍ରିୟ ।
ଉରୁରୁଂ ବୈଶ୍ୟ ପାଦରୁଂ ଜାତ ଶୂଦ୍ରଚୟ ॥ ୧୪୮ ॥

ନୟନ ଯୁଗଳୁଂ ସୂର୍ଯ୍ୟ କର୍ଣ୍ଣରୁଂ ଅନିଳ ।
ତୁମ୍ଭମନରୁଂ ସମ୍ଭୂତ ଚନ୍ଦ୍ରମା ମଣ୍ଡଳ ।। ୧୪୯ ।।
ଅନ୍ତଃକରଣରୁଂ ପ୍ରାଣ ତୁଣ୍ଡରୁଂ ଅନଳ ।
ନାଭିକମଳୁଂ ଜନମ ଗଗନମଣ୍ଡଳ ।। ୧୫୦ ।।
ଶିରରୁଂ ସର୍ଗ ଶ୍ରବଣୁ ଦଶଦିଗଜାତ ।
ପାଦଦୁଇରୁଂ ଅବନୀ ହୋଇଲା ସମ୍ଭୂତ ।। ୧୫୧ ।।
ଏ ରୂପେ ତୋଠାରୁଂ ସର୍ବ ହୋଇଲେ ଜନମ ।
ଯେଉଂ ରୂପେ ନ୍ୟଗ୍ରୋଧ ଅଟଇ ମହାଦ୍ରୁମ ।। ୧୫୨ ।।
ହେଲେ ହେଂ ସେ ପୁଣି କ୍ଷୁଦ୍ର ବୀଜଗର୍ଭେ ଥାଇ ।
ଅଙ୍କୁରି ବଢ଼ିଲେ ଦିଗ ଗଗନ ବ୍ୟାପଇ ।। ୧୫୩ ।।
ସେହି ରୂପେ ପ୍ରଳୟରେ ସମସ୍ତ ସଂସାର ।
ତୋହର ଗର୍ଭରେ ଥାଇ ଅଣୁପରକାର ।। ୧୫୪ ।।
ତାହାର ତୁ ପୁଣି ହୋଇଥାଉ ବୀଜଭୂତ ।
ସୃଷ୍ଟିକାଳେ ତୋହ ଠାରୁଂ ପ୍ରଚରେ ଜଗତ ।। ୧୫୫ ।।
ଯେମନ୍ତ କଦଳୀ ଦ୍ରୁମ ପରି ହୋଇଥାଏ ।
ବଳ୍କଳ ପତ୍ରରୁଂ ପୁଣି ସେହୁ ଅନ୍ୟ ନୁହେଂ ।। ୧୫୬ ।।
ପୁରକୁ ପୁର ବଳ୍କଳ ଲାଗିବାରୁଂ କରି ।
ପୁଷ୍ଟ ହୋଇସିନା ସେ ଦିଶଇ ଦ୍ରୁମ ପରି ।। ୧୫୭ ।।
ସେହି ରୂପେ ସଂସାରର ନାଡ଼ି ଭୂତ ତୁମ୍ଭେ ।
ତୁମ୍ଭ ଘେନି ସଂସାର ରହିଛି ଅତିଦମ୍ଭେ ।। ୧୫୮ ।।
ପ୍ରକୃତିମାନେ ତୋହର ବଳ୍କଳ ପରାୟେ ।
ସେମାନଙ୍କେ ତୋହର ଶ୍ରୀଅଙ୍ଗ ଶୋଭାପାଏ ।। ୧୫୯ ।।
ସଂସାର ଜନିକା ଅଟେ ତୁମ୍ଭ ଯେଉଂ ଶକ୍ତି ।
ତୋହରିଠାରେ କେବଳ ଅଟେ ତାର ସ୍ଥିତି ।। ୧୬୦ ।।
ଆପଣା ସ୍ୱରୂପ ସୁଖ କରଣେ ପ୍ରକାଶ ।
ଅଘଟନଘଟନା ସେ କରଇ ଅବଶ୍ୟ ।। ୧୬୧ ।।
ତୋହଠାରୁଂ ଅଭିନ୍ନ ସେ ଏଣୁ ଏକାକିନୀ ।
ତୋହ ବିନା ଜୀବକୁ ସେ ନ ଘେନଇ ପୁଣି ।। ୧୬୨ ।।
ଦ୍ରବ୍ୟଗୁଣମୟୀ ଜୀବରେ ଯେଉଂ ଶକ୍ତି ରହେ ।
ସେ ପୁଣି ତାହାର ପରି କେତେବେଳେ ନୋହେ ।। ୧୬୩ ।।
ସାତ୍ୱିକ ଗୁଣରେ ମନ କରଇ ଆହ୍ଲାଦ ।
ତମ ଗୁଣ ବହିଣ ସନ୍ତାପ କରେ ହୃଦ ।। ୧୬୪ ।।
ବେନି କଥା ମିଶ୍ରିତେ ରାଜସଗୁଣ ବହେ ।
ସେ ପୁଣି ତୋହ ନିର୍ଗୁଣ ଶରୀରେ ନ ରହେ ।। ୧୬୫ ।।

ଆହେ ସର୍ବମୟ ଦେବ ଅନନ୍ତ ଅଚ୍ୟୁତ ।
କାର୍ଯ୍ୟ ପ୍ରକାରରେ କରି ଅଟ ପୃଥଗ୍‌ଭୂତ ॥ ୧୬୬ ॥
କାରଣପ୍ରକାରେ ପୁଣି ଏକୀଭୂତ ହୁଅ ।
ଭୂତ ସୂକ୍ଷ୍ମ ରୂପେ ଭୂତଭୃତ ଯେ ବୋଲାଅ ॥ ୧୬୭ ॥
ମହାଭୂତରୂପ ତୁମ୍ଭେ ଭୂତାତ୍ମା ସ୍ୱରୂପ ।
ଏଣୁ ତୁମ୍ଭଙ୍କୁ ମୋ ନମସ୍କାର ଅସଂକ୍ଷେପ ॥ ୧୬୮ ॥
ଆହେ ବ୍ୟକ୍ତ ପ୍ରଧାନ ପୁରୁଷ ହେ ବିରାଟ ।
ଆହେ ସମ୍ରାଟ ସ୍ୱରୂପି ହେ ପ୍ରଭୁ ସ୍ୱରାଟ ॥ ୧୬୯ ॥
ଅନ୍ତର୍ଗତେ ଯହଂ ରୂପ ହୁଅଇ ଭାବନା ।
ପୁରୁଷମାନଙ୍କେ ତୁମ୍ଭେ ସେହି ନିତ୍ୟସିନା ॥ ୧୭୦ ॥
ସବୁଠାରେ ସର୍ବଭୂତ ସ୍ୱରୂପି ଆପଣ ।
ଶର୍ବ ତୁମ୍ଭେ ସର୍ବ ରୂପ ଧର ନାରାୟଣ ॥ ୧୭୧ ॥
ସର୍ବ ଚରାଚର ତୁମ୍ଭଠାରୁଂ ଉତପତି ।
ତାହାଙ୍କର ସର୍ବକାର୍ଯ୍ୟ ତୁମ୍ଭେ ବିଶ୍ୱପତି ॥ ୧୭୨ ॥
ଏଣୁ କରି ତୁମ୍ଭେ ଏକା ସର୍ବ ଆତ୍ମାରୂପ ।
ତୁମ୍ଭଙ୍କୁ ମୋହର ନମସ୍କାର ଅସଂକ୍ଷେପ ॥ ୧୭୩ ॥
ଆପଣହିଂ ସର୍ବାତ୍ମକ ଆପଣ ସର୍ବେଶ ।
ଯେଣୁ କରି ସମସ୍ତ ଭୂତରେ ତୁମ୍ଭ ବାସ ॥ ୧୭୪ ॥
ସେ କାରଣୁ କି କହିବି ପ୍ରଭୁଙ୍କ ଛାମୁରେ ।
ସମସ୍ତେ ଜାଣ ତ ଯାହା ପ୍ରକାଶେ ହୃଦରେ ॥ ୧୭୫ ॥
ସେ ସର୍ବାତ୍ମାସର୍ବଭୂତ ଈଶ୍ୱର ହେ ସର୍ବ ।
ଆହେ ସର୍ବ ସମ୍ଭବ ଦେବ ଶ୍ରୀ ବାସୁଦେବ ॥ ୧୭୬ ॥
ଯହଂ ସକାଶରୁ ତୁମ୍ଭେ ଅଟ ସର୍ବଭୂତ ।
ତେଣୁ କରି ଜାଣ ସମସ୍ତଙ୍କ ମନୋରଥ ॥ ୧୭୭ ॥
ହେ ନାଥ ଯେଣୁ ଆପଣ ମତେ ଦେଖାଦେଲ ।
ମୋହର ଯେ ମନୋରଥ ସଫଳତା କଲ ॥ ୧୭୮ ॥
ତପସ୍ୟା ମୋହର ପୁଣି ହୋଇଲା ସଫଳ ।
ଏଥରୁଂ ଅଧିକ କିମ୍ପା ଗାଇବି ଆଦିମୂଳ ॥ ୧୭୯ ॥
ରାଜପୁତ୍ର ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
ପ୍ରସନ୍ନ ହୋଇଣ ଆଜ୍ଞା ଦେଲେ ଚକ୍ରପାଣି ॥ ୧୮୦ ॥
ହେ ଧ୍ରୁବ ମତେ ତୁ ଯହୁଂ କଲୁ ଦରଶନ ।
ସେହି ତପସ୍ୟାର ଫଳ ଏହା ମନେ ଘେନ ॥ ୧୮୧ ॥
ମୋହର ଦର୍ଶନ କେବେ ନୁହଇ ବିଫଳ ।
ତେଣୁ ବାଞ୍ଛା ବର ମାଗ ନୃପତି ଦୁଲ୍ଲାଳ ॥ ୧୮୨ ॥
ମନରେ ତୋ ଇଚ୍ଛା ଯା ସେହି କଥା ଦେବି ।

ଯେଉଁ ରୂପେ ବୋଲିବୁ ତା ଅବଶ୍ୟ କରିବି ॥ ୧୮୩ ॥
ଆମ୍ଭେ ଯେତେବେଳେ ହୋଉଁ ନୟନ ଗୋଚର ।
ସର୍ବ ମନୋରଥ ଯେ ମିଳଇ ପ୍ରାଣୀଙ୍କର ॥ ୧୮୪ ॥
ପ୍ରଭୁଙ୍କର ଶ୍ରୀମୁଖରୁ ଏହା ଶୁଣି ଧ୍ରୁବ ।
କୃତକୃତ ହୋଇ ବୋଲେ ଶୁଣ ବାସୁଦେବ ॥ ୧୮୫ ॥
ଆହେ ଭଗବାନ ସର୍ବଭୂତଙ୍କ ଈଶ୍ୱର ।
ସମସ୍ତଙ୍କ ହୃଦ ପଦ୍ମେ ଯାହାର ବିହାର ॥ ୧୮୬ ॥
ସେ ପ୍ରଭୁଙ୍କୁ କେଉଁ କଥା ଅଟେ ଅଗୋଚର ।
ମନରେ ମୋହର ଯାହା ବାଞ୍ଛିତ ନିକର ॥ ୧୮୭ ॥
ତଥାପି ଆଜ୍ଞାରେ ତାହା କହିବଇଁ ସିନା ।
ତା ସହିଣ ହୃଦୟରେ ଦୁର୍ଲ୍ଲଭ ପ୍ରାର୍ଥନା ॥ ୧୮୮ ॥
ହେ ଜଗତ ପ୍ରଭୁ ଶ୍ରେଷ୍ଠ ତୋହର ପ୍ରସନ୍ନେ ।
କେଉଁ କଥା ଦୁର୍ଲ୍ଲଭ ଏ ଚଉଦ ଭୁବନେ ॥ ୧୮୯ ॥
ତୋର ପ୍ରସନ୍ନ ମାତ୍ରକେ ହେଲା ଯେଉଁ ଫଳ ।
ତ୍ରୈଲୋକ୍ୟ ରୂପରେ ତାହା ଭୁଞ୍ଜେ ଆଖଣ୍ଡଳ ॥ ୧୯୦ ॥
ଏଣୁ କରି ଯାହାଠାରେ ତୋହର କରୁଣା ।
ତାହାକୁ ଏ ଜଗତରେ କେଉଁ କଥା ଊଣା ॥ ୧୯୧ ॥
ଯାହା ପଚାରିଲ ଏବେ ହୁଅ ସାବଧାନ ।
ଏକଦିନେ ମୁଁ ଗଲି ପିତାର ସନ୍ନିଧାନ ॥ ୧୯୨ ॥
ପିତା ବସିଛନ୍ତି କୋଳେ ଘେନି ନିଜ ସୁତ ।
ତହିଁକି ମୋହର ପୁଣି ହେଲା ମନୋରଥ ॥ ୧୯୩ ॥
ସେ କଥା ଜାଣି ଉତ୍ତମ ପୁତ୍ରର ଜନନୀ ।
ସେ ପୁଣି ମୋହର ନିଜ ମାତାର ସପତ୍ନୀ ॥ ୧୯୪ ॥
ହିଂସା ଗୁଣ ବହିଣ ବୋଇଲା ମତେ ଚଳି ।
ରାଜାସନେ ବସିବାକୁ ତୁହି ନିକି ଭଲି ॥ ୧୯୫ ॥
ମୋହ ପୁତ୍ର ଯେ ଅଟେ ସେ ସିନା ଯୋଗ୍ୟ ତହିଁ ।
ତୋତେ ତ ନିଜ ଗର୍ଭରେ ବହି ନାହିଁ ମୁହିଁ ॥ ୧୯୬ ॥
ଏଣୁ କରି ଏ ସ୍ଥାନୁ ଅନ୍ତର ହୁଅ ଏବେ ।
ଏମନ୍ତ ପ୍ରକାରେ ଧିକ୍କାରିଲା ଅତି ଗର୍ବେ ॥ ୧୯୭ ॥
ତେଣୁ ମୁହିଁ ଆସିକରି ଅଭିମାନେ ତପ ।
ତୁମ୍ଭେ ତ ଅନ୍ତରଯ୍ୟାମୀ ଜଗତ ଅଧିପ ॥ ୧୯୮ ॥
ଯେଉଁ ସ୍ଥାନ ମତେ ଦେବ ହେବ ଅତି ଉଚ୍ଚ ।
ଜଗତ ଆଧାରଭୂତ ହୋଇବ ସୁସଜ୍ଜ ॥ ୧୯୯ ॥
ସର୍ବ ଉତ୍ତମ ସ୍ଥାନରୁଂ ହେବ ସେ ଉତ୍ତମ ।
ଏ ପ୍ରାର୍ଥନା କରୁଛି ହେ ଶ୍ରୀପୁରୁଷୋତ୍ତମ ॥ ୨୦୦ ॥

ପ୍ରସନ୍ନ ହୋଇ ଏମନ୍ତ ଅକ୍ଷୟ ଯେ ସ୍ଥାନ ।
ମତେ ପ୍ରଦାନ କରିବ ଦେବ ଭଗବାନ ॥ ୨୦୧ ॥
ରାଜପୁତ୍ରଠାରୁ ଏହା ଶୁଣି ପଦ୍ମନାଭ ।
ଆନନ୍ଦିତ ହୋଇଣ ବୋଲନ୍ତି ଶୁଣ ଧ୍ରୁବ ॥ ୨୦୨ ॥
ଯେଉଁ ସ୍ଥାନ ପ୍ରାର୍ଥନା ତୁ କଲୁ ଆସି ମତେ ।
ସେହି କଥା ଅବଶ୍ୟ ଯେ ପାଇବୁ ଇସିତେ ॥ ୨୦୩ ॥
ପୂର୍ବକାଳେ ଅନ୍ୟ ଜନ୍ମେ ତୁହିଁ ପୁଣି ମତେ ।
ସନ୍ତୁଷ୍ଟ କରାଇ ଅଛୁ ଭକ୍ତି ଅନୁମତେ ॥ ୨୦୪ ॥
ଏ ଜନ୍ମରେ ତପ କରି ମାଗିଲୁ ଯେ ଫଳ ।
ତେଣୁ ଏବେ ତତେ ମୁଁ ଦେବାର ହେଲା ମୂଳ ॥ ୨୦୫ ॥
ପୂର୍ବକାଳେ ତୁହି ହୋଇଥିଲୁ ହୋ ବ୍ରାହ୍ମଣ ।
ମାତାପିତାଙ୍କ ଚରଣ ସେବାରେ ନିପୁଣ ॥ ୨୦୬ ॥
ନିଜକୁଳ ଧର୍ମପାଳନାରେ ତତପର ।
ମୋଠାରେ ଏକାଗ୍ରଚିତ୍ତ ସର୍ବଦା ତୋହର ॥ ୨୦୭ ॥
ଏହି ଅନୁରୂପରେ ଅନେକ କାଳ ଗଲା ।
ରାଜପୁତ୍ର ଏକ ତୋର ମିତ୍ର ହୋଇଥିଲା ॥ ୨୦୮ ॥
ସେ ରାଜପୁତ୍ର ତାର ଯୌବନ ସମୟରେ ।
ସମସ୍ତ ଭୋଗବିଳାସେ ପ୍ରତିଦିନ ଥାଏ ॥ ୨୦୯ ॥
ଉଜ୍ଜ୍ୱଳାକୃତିରେ ଦିଶୁଥାଇ ଅତି ତୋରା ।
ରତ୍ନ ଆଭରଣରେ କୁବେର ପୁତ୍ରପରା ॥ ୨୧୦ ॥
ତାହା ସଂସର୍ଗରୁ ତାର ଦୁର୍ଲ୍ଲଭ ସମ୍ପତ୍ତି ।
ଅନାଇଣ ତୋହର ଏମନ୍ତ ହେଲା ମତି ॥ ୨୧୧ ॥
ମୁହିଁ ଯେବେ ରାଜପୁତ୍ର ହୋଇ ଜାତ ହୋନ୍ତି ।
ଏ ରାଜ ସମ୍ପତ୍ତିମାନ ବିଭୋଗ କରନ୍ତି ॥ ୨୧୨ ॥
ଏବେ ଯେବେ ଅନ୍ୟ ଜନ୍ମେ ହେବି ରାଜପୁତ୍ର ।
ସମ୍ପତ୍ତି ଭୁଞ୍ଜିବି ଉଚ୍ଚସ୍ଥାନ ଦୋଳାଛତ୍ର ॥ ୨୧୩ ॥
ଏହା ମନେ କଳ୍ପି ମତେ କଲୁ ଉପାସନା ।
ଏଣୁ ଏ ଜନ୍ମରେ ରାଜପୁତ୍ର ହେଲୁ ସିନା ॥ ୨୧୪ ॥
ଉତ୍ତାନପାଦ ରାଜାର ବିଚିତ୍ର ମନ୍ଦିରେ ।
ଜନ୍ମ ଲଭିଲୁ ତୁ ବାବୁ ସୁନୀତି ଉଦରେ ॥ ୨୧୫ ॥
ସେ ପୁଣି ଅଟଇ ସ୍ୱାୟମ୍ଭୁବମନୁ କୁଳ ।
ତୋହ ବିନା ଆନକୁ ସେ ଉତ୍ତମ କେବଳ ॥ ୨୧୬ ॥
ହେଲେ କି ଏ ଜନ୍ମ ତୋର ତୁଚ୍ଛ ଅଟେ ସିନା ।
ଯେଣୁ ମତେ ଭକ୍ତି ପୂର୍ବେ କରିଛୁ ଭାବନା ॥ ୨୧୭ ॥
ମତେ ଆରାଧନା କଲା ମାତ୍ରେ ଦୀନ ନରେ ।

ଅବିଳମ୍ବେ ବସନ୍ତି ଯେ ଅମର ପଦରେ ॥ ୨୧୮ ॥
ମୋହଠାରେ ଅର୍ପିତ କରିଛୁ ଯେବେ ମନ ।
କି ଛାର ସ୍ୱର୍ଗକୁ ଆଦି ଏ ତିନିଭୁବନ ॥ ୨୧୯ ॥
ତ୍ରୈଲୋକ୍ୟରୁ ଅଧିକ ଅଟଇ ଯେଉଁସ୍ଥାନ ।
ତହିଁ ତୋତେ ନେଇ କରି ରଖିବି ନନ୍ଦନ ॥ ୨୨୦ ॥
ସର୍ବାଗ୍ରହ ତାରାଙ୍କ ଆଶ୍ରୟ ଭୂତ ହେବ ।
ମୋହ ପ୍ରସାଦୁଂ ସନ୍ଦେହ ନ କର ହେ ଧ୍ରୁବ ॥ ୨୨୧ ॥
ସୂର୍ଯ୍ୟ ଠାରୁଂ ଚନ୍ଦ୍ର ଠାରୁଂ ଭୂମିପୁତ୍ର ଠାରୁଂ ।
ବୁଧ ଠାରୁଂ ବୃହସ୍ପତି ଠାରୁଂ ଶୁକ୍ର ଠାରୁଂ ॥ ୨୨୨ ॥
ଅର୍କସୁତ ଠାରୁଂ ଅତି ଉଚ୍ଚ ଯେଉଁସ୍ଥାନ ।
ସର୍ବଋଷମାନଙ୍କ ପରେ ଯେ ବିଦ୍ୟମାନ ॥ ୨୨୩ ॥
ସପ୍ତଋଷିମାନଙ୍କ ସ୍ଥାନରୁ ଯେହୁ ଉଚ୍ଚ ।
ବିମାନେ ଚଳନ୍ତି ଯେଉଁ ଦେବତା ପ୍ରତକ୍ଷ ॥ ୨୨୪ ॥
ସେ ସମସ୍ତ ଉପରେ ଯେବଣ ସ୍ଥାନ ମୂଳ ।
ତାହା ତୋହ ନିମିତ୍ତରେ ଦେଲି ନୃପବାଳ ॥ ୨୨୫ ॥
କେତେ କେତେ ଦେବତା ଏ ଚାରି ଯୁଗେ ଥାନ୍ତି ।
କେତେ ଦେବେ ମନ୍ୱନ୍ତର ପର୍ଯ୍ୟନ୍ତେ ରହନ୍ତି ॥ ୨୨୬ ॥
ତୋତେ ପୁଣି ଏ ରୂପରେ ନଦେବି ସୁମତି ।
ବିକଳ୍ପ ପର୍ଯ୍ୟନ୍ତେ ତୋର ହୋଇବ ସଂସ୍ଥିତି ॥ ୨୨୭ ॥
ଏବେ ତପସିଦ୍ଧ ହେଲା ପୁରକୁ ତୋ ଯାଯା ।
ବିବାହ ହୋଇଣ ପିତା ଅନ୍ତେ ହୁଅ ରାଜା ॥ ୨୨୮ ॥
ପୂର୍ବ ଅଭିଳାଷ ଅନୁରୂପେ କର ଭୋଗ ।
ତହୁଁ ପୁଣି ପ୍ରାର୍ଥନା ସ୍ଥାନକୁ ହେବୁ ଯୋଗ୍ୟ ॥ ୨୨୯ ॥
ପୁତ୍ରକୁ ରାଜା କରିଣ ମାତା ସଙ୍ଗେ ଘେନି ।
ଉଚ୍ଚସ୍ଥାନେ ଆସିଣ ବସିବୁ ମହାଜ୍ଞାନି ॥ ୨୩୦ ॥
ତୋହ ମାତା ହେତୁରୁ ସୁନୀତି ଦେବୀ ପୁଣି ।
ଅତି ନିର୍ମଳ ଚରିତା ମହାସୁଲକ୍ଷଣୀ ॥ ୨୩୧ ॥
ସେ ଏକ ବିମାନେ ବସି ତାରକା ସ୍ୱରୂପେ ।
ତେତିକି କାଳ ପର୍ଯ୍ୟନ୍ତ ଥିବ ତୋ ସମୀପେ ॥ ୨୩୨ ॥
ଏ ଧ୍ରୁବ ଚରିତ ବାବୁ ତୋହର ଆଖ୍ୟାନ ।
ସମାହିତ ମନା ହୋଇ କରି ଯେତେ ଜନ ॥ ୨୩୩ ॥
ପ୍ରାତଃକାଳେ ଉଠି ଯେବେ କୀର୍ତ୍ତନ କରିବ ।
ତାହାଙ୍କ ଅନେକ ପୁଣ୍ୟ ହେବ ସର୍ବ ଶୁଭ ॥ ୨୩୪ ॥
ତୋ ନାମ ହି ଉଚ୍ଚାରିଲେ ସେହି ଫଳ ହେବ ।
ଏ ବାକ୍ୟ ଧ୍ରୁବ ଅଟଇ ଶୁଣିମା ହେ ଧ୍ରୁବ ॥ ୨୩୫ ॥

ଏମନ୍ତ ଧ୍ରୁବକୁ କହି ଦେବ ଜନାର୍ଦ୍ଦନ ।
ଦେଖୁ ଦେଖୁ ସେକାଳେ ହୋଇଲେ ଅନ୍ତର୍ଦ୍ଧ୍ୟାନ ॥ ୨୩୬ ॥
କହୁଛନ୍ତି ପରାଶର ଶୁଣ ତପୋବନ୍ତ ।
ଏ ରୂପରେ ପୂର୍ବେ ଦେବଦେବ ଜଗନ୍ନାଥ ॥ ୨୩୭ ॥
ପ୍ରସନ୍ନ ହୋଇ କରିଣ ଯେଉଁ ବର ଦେଲେ ।
ତେଣୁ କରି ଧ୍ରୁବ ଉଚ୍ଚସ୍ଥାନକୁ ପାଇଲେ ॥ ୨୩୮ ॥
ସେ ଧ୍ରୁବର ଅଭିମାନ ଯେବଣ ମହିମା ।
ନେତ୍ରେ ଦେଖି ସୁରାସୁର ଗୁରୁ ମହାତମା ॥ ୨୩୯ ॥
ବୃହସ୍ପତି ଶୁକ୍ର ବେନି ଶ୍ଳୋକମାନ କରି ।
ଗାୟନ କଲେ ସୁଖରେ ମୁଖରେ ଉଚ୍ଚାରି ॥ ୨୪୦ ॥
ଦେଖ ବାଳକର କେଡ଼େ ତପସ୍ୟା ପ୍ରଭାବ ।
ଦେଖ ବାଳକର ତପଫଳ ଅସମ୍ଭବ ॥ ୨୪୧ ॥
ଦେଖ କେଡ଼େ ଆଶ୍ଚର୍ଯ୍ୟ ଏ ବାଳକର ରୀତି ।
ଯାହାର ତଳରେ ସପ୍ତଋଷି ରହିଛନ୍ତି ॥ ୨୪୨ ॥
ଧ୍ରୁବର ଜନନୀ ଏ ଯେ ନାମ ତା ସୁନୀତି ।
ମହାଧର୍ମଶୀଳା ପତିବ୍ରତା ସତ୍ୟବତୀ ॥ ୨୪୩ ॥
ଏହାର ମହିମାମାନ ଅତି ଅଗୋଚର ।
ତାହା ବର୍ଣ୍ଣି ପାରିବାକୁ ସଖ୍ୟ ମହୀରେ କାହାର ॥ ୨୪୪ ॥
ତ୍ରୈଲୋକ୍ୟର ଆଶ୍ରୟ ପ୍ରଧାନ ଯେଉଁ ସ୍ଥାନ ।
ସ୍ଥିର ପ୍ରଭାବରେ କରି ଅଟେ ବିଦ୍ୟମାନ ॥ ୨୪୫ ॥
ତାହାକୁ ଅବିଳମ୍ବରେ ପାଇଲା ସୁକେଶୀ ।
ଧ୍ରୁବକୁ ଗର୍ଭେ ଧରିବା ମହାତ୍ମ୍ୟ ପ୍ରକାଶି ॥ ୨୪୬ ॥
ଏମନ୍ତ ବୋଲି ସନ୍ତତେ କରନ୍ତି ଗାୟନ ।
କହନ୍ତି ଶକ୍ତି ନନ୍ଦନ ଶୁଣ ତପୋଧନ ॥ ୨୪୭ ॥
ଧ୍ରୁବ ସ୍ୱର୍ଗାରୋହଣ କୀର୍ତ୍ତନ ଯେ କରି ।
ସେ ପାପରୁ ତରି ବସଇ ସ୍ୱର୍ଗପୁରୀ ॥ ୨୪୮ ॥
ସ୍ଥାନ ଭ୍ରଷ୍ଟ ନୁହଇ ବହୁତ କାଳ ଜିଂଏ ।
କୁଳରେ କଳଙ୍କ ତାର ନ ଲାଗେ କେବେ ହେଂ ॥ ୨୪୯ ॥
ଶ୍ରୀ ବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ଧ୍ରୁବ ସ୍ୱର୍ଗାରୋହଣ ଦ୍ୱାଦଶ ଅଧ୍ୟା ଖ୍ୟାତ ॥ ୨୫୦ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭନାରାୟଣ ମହାପାତ୍ର ॥ ୨୫୧ ॥

# ତ୍ରୟୋଦଶ ଅଧ୍ୟାୟ

ଏଥୁ ଅନନ୍ତରେ ଯେ କହନ୍ତି ପରାଶର ।
ଶୁଣ ବାବୁ ମଇତ୍ରେୟ ଧ୍ରୁବ ସମାଚାର ॥ ୧ ॥
ବିଷ୍ଣୁ ଠହୁଁ ବର ପାଇ ନୃପତି କୁମର ।
ପ୍ରବେଶ ହୋଇଲା ଆସି ଆପଣା ମନ୍ଦିର ॥ ୨ ॥
ସମସ୍ତ ଚରିତ ନିଜ ମାତାଙ୍କୁ କହିଲା ।
ଏଥୁ ଉତ୍ତାରେ ସେ କାଳେ ବିବାହ ହୋଇଲା ॥ ୩ ॥
ତଦନ୍ତରେ ସିଂହାସନେ ହୋଇଲା ଅଭିଷେକ ।
ଅଖଣ୍ଡିତ ରାଜତ୍ୱ ଯେ କଲା ସୁବିବେକ ॥ ୪ ॥
ତହୁଁ ପୁଣି ପୁତ୍ର ଜାତ ହୋଇଲାକ ତାର ।
ତାହାଠାରେ ସମର୍ପି ସକଳ ରାଜ୍ୟଭାର ॥ ୫ ॥
ମାତାଙ୍କୁ ସଙ୍ଗେ ଘେନିଣ ସ୍ୱ ଦେହରେ ଗଲା ।
ଜୀବନ୍ମୁକ୍ତ ହୋଇ ଉଚ୍ଚସ୍ଥାନକୁ ପାଇଲା ॥ ୬ ॥
ଧ୍ରୁବଙ୍କର ଭାରିଜା ଯେ ଶମ୍ଭୁ ନାମେ ସତୀ ।
ପତି ଯୋଗୁଁ ଜାତ କଲା ଯେବଣ ସନ୍ତତି ॥ ୭ ॥
ଅତ୍ୟନ୍ତ ବିଚକ୍ଷଣ ହେଲା ସେ  ସେ କୁମର ।
ଅତି ଭବ୍ୟ ସୁଚରିତ ଶ୍ଳିଷ୍ଟି ନାମ ତାର ॥ ୮ ॥
ଶ୍ଳିଷ୍ଟିର ଭାରିଜା ଯେ ସୁଛାୟା ନାମେ ନାରୀ ।
ପତି ଯୋଗୁଁ ସେ ପଞ୍ଚ କୁମର ଜାତ କରି ॥ ୯ ॥
ଅତିହିଁ ନିଷ୍ପାପୀ ସେ ଯେ ସର୍ବେ ଗୁଣବନ୍ତ ।
ତାହାଙ୍କର ନାମମାନ ଶୁଣ ତପୋବନ୍ତ ॥ ୧୦ ॥
ଏକ ନାମ ରିପୁ ଯେ ଦ୍ୱିତୀୟ ରିପୁଞ୍ଜୟ ।
ତୃତୀୟ ବିପ୍ର ବୃକଳ ଚତୁର୍ଥ ତନୟ ॥ ୧୧ ॥
ବୃକତେଜା ବୋଲି ଯେ ପଞ୍ଚମ ପୁତ୍ର ନାମ ।
ତାଙ୍କ ବଂଶ ଏବେ ଶୁଣ ତପସ୍ୱୀ ଉତ୍ତମ ॥ ୧୨ ॥
ରିପୁଙ୍କର ଯେଉଂ ପତ୍ନୀ ନାମ ତା ବୃହତୀ ।
ତାହା ଗର୍ଭୁଁ ଚାକ୍ଷୁଷ ହୋଇଲେ ଉତପତି ॥ ୧୩ ॥
ସମସ୍ତଠାରେ ବ୍ୟାପିଲା ନିଜ ତେଜ ଯାର ।
ଏମନ୍ତ ପ୍ରତାପୀ ସେ ଯେ ହୋଇଲା କୁମର ॥ ୧୪ ॥
ତାହାର ଭାରିଜା ଯେ ବାରଣୀ ନାମେ ସତୀ ।
ଅନରଣ୍ୟ ପ୍ରଜାପତି ଦୁହିତା ସୁମତୀ ॥ ୧୫ ॥
ପଦ୍ମିନୀ ଜାତି କନ୍ୟା ସେ ଚାକ୍ଷୁଷ ଶୃଙ୍ଗାରେ ।
ପୁତ୍ର ଏକ ଜାତ କଲା ଅତି ମନୋହରେ ॥ ୧୬ ॥

୧୨. କ : ନାମମାନ ଶୁଣ ତପୋବନ୍ତ, ୧୫. ମୂଳ ସଂସ୍କୃତରେ ଅରଣ୍ୟ,

ଷଷ୍ଠ ମନ୍ୱନ୍ତରେ ସେ ଚାକ୍ଷୁଷ ମନୁ ହେଲା ।
ସେ ବୈରାଜପ୍ରଜାପତି କନ୍ୟାକୁ ବରିଲା ॥ ୧୭ ॥
ସେ ସୁନ୍ଦରୀ କନ୍ୟା ଗୋଟି ଅଟଇ ନଦ୍ୱଳା ।
ମନୁ ତା ସଂଭୋଗେ ଦଶ ପୁତ୍ର ଜାତ କଲା ॥ ୧୮ ॥
ଉତ୍ତମ କୁମରେ ସେ ଯେ ଅତି ବଳବନ୍ତ ।
ତାହାଙ୍କର ନାମମାନ ଶୁଣ ତପୋବନ୍ତ ॥ ୧୯ ॥
ଉରୁ ପୁରୁ ଶତଦ୍ୟୁମ୍ନ ଆବର ତପସ୍ୱୀ ।
ସତ୍ୟବାକ ଶୁକ୍ର ଅଗ୍ନିଷ୍ଟୋମ ଯେ ବିଶେଷି ॥ ୨୦ ॥
ଅତିରାତ୍ର ସୁଦ୍ୟୁମ୍ନ ଯେ ଅଭିମନ୍ୟୁ ତୁଲେ ।
ଏ ରୂପେ ଦଶ ନଦ୍ୱଳା ଗର୍ଭେ ଜନ୍ମ ହେଲେ ॥ ୨୧ ॥
ଉରୁକୁମରର ଯେ ଆଗ୍ନେୟୀ ଭାର୍ଯ୍ୟା ହେଲା ।
ସେ ପୁଣି ଷଡକୁମର ଗର୍ଭୁଁ ଜାତ କଲା ॥ ୨୨ ॥
ମହାପ୍ରଭାବନ୍ତ ସେ ଯେ ଏକୁଁ ଏକ ବଳୀ ।
ତାହାଙ୍କ ନାମ କହିବି ଶୁଣ ତପଶାଳୀ ॥ ୨୩ ॥
ଏକ ନାମ ଅଙ୍ଗ ଯେ ଆରକ ସୁମନସ ।
ତୃତୀୟ ସ୍ୱାତି ଚତୁର୍ଥ କ୍ରତୁ ନାମେ ଶିଷ ॥ ୨୪ ॥
ପଞ୍ଚମରେ ଅଙ୍ଗୀରସ ଷଷ୍ଠରେ ଯେ ଶିବ ।
ଏ ରୂପରେ ଷଡ ଗୋଟି ହୋଇଲେ ଆତ୍ମଜ ॥ ୨୫ ॥
ଅଙ୍ଗ ନାମେ ପୁତ୍ରର ସୁନିଥା ଭାର୍ଯ୍ୟା ହେଲା ।
ତାହା ଗର୍ଭେ ଏକଇ କୁମର ଜନମିଲା ॥ ୨୬ ॥
ସେ ମହାସୁବୁଦ୍ଧି ପୁତ୍ର ନାମ ତାର ବେନ ।
ସନ୍ତତି ଅର୍ଥେ ବିଚାରି ମହରଷିମାନ ॥ ୨୭ ॥
ତାହାର ଦକ୍ଷିଣ କର ମନ୍ଥନ ଯେ କଲେ ।
ତହୁଁ ପୁଣି ପୃଥୁରାଜା ଜନମ ହୋଇଲେ ॥ ୨୮ ॥
ଯହୁଁ ପୃଥୁ ପ୍ରଜାଙ୍କର ହିତ ନିମିତ୍ତରେ ।
ମହୀକି ସୁରଭୀ ଦୁହିଁଲେ ପୂର୍ବରେ ॥ ୨୯ ॥
ଏମନ୍ତ ସେ ବେନରାଜା ବଂଶର ମହିମା ।
ସେବେନକୁ ଜାତ କଲେ ଅଙ୍ଗ ମହାତମା ॥ ୩୦ ॥
ଏହା ଶୁଣି ମଇତ୍ରେୟ ପୁଣି ଯେ ପଚାରି ।
ସେବେନ ଚରିତ ମତେ କହ ତପଚାରି ॥ ୩୧ ॥
କି ନିମିତ୍ତେ ବେନପାଣି ମହରଷିମାନେ ।
ମନ୍ଥନ କଲେକ ପୁଣି କେବଣ ବିଧାନେ ॥ ୩୨ ॥
କେମନ୍ତ ପ୍ରକାରେ ଜନ୍ମ ହେଲେ ପୃଥୁରାଜା ।
ସବିସ୍ତାର କରି ମତେ କହ ମହାତେଜା ॥ ୩୩ ॥

୨୫. ଉଭୟ ପାଣ୍ଡୁଲିପିରେ ଭସିଜା ମୂଳରେ ଶିବ ।
୧୮. ସଂସ୍କୃତ ନଦ୍ୱଳା, ପୋଥିରେ ନଦ୍ୱଳା

ମଇତ୍ରେୟ ବଚନେ କହନ୍ତି ପରାଶର ।
ଯାହା ପଚାରିଲ ଶୁଣ ମନ କରି ଧୀର ॥ ୩୪ ॥
ସୁନିଥା ନାମରେ ବାବୁ ଯେବଣଟି କନ୍ୟା ।
ମୃତ୍ୟୁର ପ୍ରଥମ ଗର୍ଭ ସେ ଯୁବତୀ ଧନ୍ୟା ॥ ୩୫ ॥
ତାହାକୁ ବିବାହେ ଉରୁକୁମରକୁ ଦେଲେ ।
ସେ ଅଙ୍ଗ ସେ ପ୍ରିୟା ସଙ୍ଗେ ବହୁ ଭୋଗ କଲେ ॥ ୩୬ ॥
ତା ଗର୍ଭୁଁ ଜନମ ହେଲେ ବେନ ମହାରାଜା ।
ଅତ୍ୟନ୍ତ ପ୍ରତାପୀ ସେ ସ୍ୱଭାବେ ମହାତେଜା ॥ ୩୭ ॥
ମାତାମହ ଦୋଷରେ ସେ ହେଲେ ଅତି ଦୁଷ୍ଟ ।
ଋଷିମାନେ ରାଜ୍ୟରେ ବାନ୍ଧିଲେ ତାକୁ ପାଟ ॥ ୩୮ ॥
ଯେଉଁ କାଳେ ଅଭିଷେକ ହୋଇଲା ସେ ବେନ ।
ସେ କାଳେ ପୃଥ୍ୱୀରେ ଦିଆଇଲା ସେ ଘୋଷଣ ॥ ୩୯ ॥
ବୋଇଲା ସଂସାରେ କେହି ତପ ନ କରିବ ।
ଦାନହୀନ ଦେବ ଯାଗମାନଙ୍କୁ ଛାଡ଼ିବ ॥ ୪୦ ॥
ଯାଗମାନଙ୍କର ଭୋକ୍ତା ଆନ କେହି ନାହିଁ ।
ମୁହିଁ ଏକା ପ୍ରଭୁ ଯଜ୍ଞପତି ମୁଁ ଅଟଇ ॥ ୪୧ ॥
ଏହାଶୁଣି କରି ସର୍ବ ମହଋଷିମାନେ ।
ବେନ ନୃପତିକି ପୂଜା କରି ଏକଦିନେ ॥ ୪୨ ॥
ସାମ ବେଦମାନ ପଢ଼ି ଆଗେ ସ୍ଥିତ ହେଲେ ।
ପ୍ରଜାହିତରେ ରାଜାଙ୍କୁ ଏମନ୍ତ କହିଲେ ॥ ୪୩ ॥
ଆହେ ନୃପ ତିଳକ ଆମ୍ଭର ତହୁଁ ଶୁଣ ।
ସଂସାର ହିତରେ ଯାହା କହୁଅଛୁଁ ପୁଣ ॥ ୪୪ ॥
ରାଜ ଦେହ ସମ୍ପତ୍ତିର ଯେହୁ ଉପକାରୀ ।
ପ୍ରଜାମାନଙ୍କ ପ୍ରଧାନ ହିତଟି ଆହୁରି ॥ ୪୫ ॥
ଏମନ୍ତ ପ୍ରସଙ୍ଗ ଶୁଣ ଏକମନା ହୋଇ ।
ଯେଉଁ ବେଦ ସର୍ବ ଯଜ୍ଞ ଈଶ୍ୱର ଅଟଇ ॥ ୪୬ ॥
ସେ ହରିଙ୍କି ପୂଜିବୁ ଯେ ମହାଯାଗ କରି ।
ତୋହର ମଙ୍ଗଳମାନ ହେବ ତେଣେ କରି ॥ ୪୭ ॥
ସେ ଯାଗରେ ଆପଣଙ୍କ ବଂଶବୃଦ୍ଧି ହେବ ।
ସେ ପୁଣି ଏ ଅବନୀର ଧାରଣ ହୋଇବ ॥ ୪୮ ॥
ଯେଉଁ ମହାପ୍ରଭୁ ଯଜ୍ଞ ପୁରୁଷଟି ସେହି ।
ସେଇ ବିଷ୍ଣୁଙ୍କୁ ଆରାଧନା କଲେ ନରସାଇଁ ॥ ୪୯ ॥
ଯାଗରେ କରି ଆମ୍ଭର ସକାଶରୁଁ ହରି ।
ତୁମ୍ଭର ସକଳ କାମ ଦେବେ ପୂର୍ଣ୍ଣ କରି ॥ ୫୦ ॥

ଯଜ୍ଞେଶ୍ୱରଙ୍କୁ ଯାଗରେ କରି ଯେତେ ନୃପେ ।
ରାଜ୍ୟରେ ପୂଜା କରିବେ ଅତି ଅସଂକ୍ଷେପେ ॥ ୫୧ ॥
ସେ ନୃପତିମାନଙ୍କର ସର୍ବ ଇଚ୍ଛାବର ।
ଅବଶ୍ୟ ଦିଅନ୍ତି ହରି ଭକତ ସୋଦର ॥ ୫୨ ॥
ଋଷିମାନଙ୍କ ମୁଖରୁଁ ଏ ବଚନ ଶୁଣି ।
ପ୍ରତିଉତ୍ତର ତହିଁକି ବେନରାଜା ଭଣି ॥ ୫୩ ॥
ଆହେ ଋଷିମାନେ ଯାହା କହିଲ ଆପଣ ।
ତୁମ୍ଭର ଏ ବଚନ ଅଟଇ ଅପ୍ରମାଣ ॥ ୫୪ ॥
ମୋହଠାରୁଁ ଅଧିକ ଅଛି କେ ଏ ସଂସାରେ ।
କାହାକୁ ସେବା କରିବ ସର୍ବ ମୁନିବରେ ॥ ୫୫ ॥
ଯଜ୍ଞେଶ୍ୱର ବୋଲିଣ ଯେବଣ ସେହୁ ହରି ।
ସେ କେହୁ କାହିଁରେ ପୁଣି ଅଛି ବିଜେକରି ॥ ୫୬ ॥
ତାହାକୁ କେ ଦେଖିଅଛି ଏହା ସର୍ବ ମିଛ ।
ଯାହାକୁ ସେବା କରିବ ଶୁଣ ତା ପ୍ରତକ୍ଷ ॥ ୫୭ ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଇନ୍ଦ୍ର ବାୟୁ ଯମ ।
ସବିତା ଅଗ୍ନି ବରୁଣ ଧାତା ପୂଷା ସୋମ ॥ ୫୮ ॥
ମଙ୍ଗଳ ଶନିକି ଆଦି ଗ୍ରହ ଋକ୍ଷ ଯେତେ ।
ଏମାନଙ୍କୁ ଘେନିଣ ସକଳ ଦଇବତେ ॥ ୫୯ ॥
ଏ ଶାପ ଅନୁଗ୍ରହରେ ଯୁକ୍ତ ଯେହୁମାନେ ।
ରାଜାର ଶରୀରେ ଏ ରହନ୍ତି ପ୍ରତିଦିନେ ॥ ୬୦ ॥
ତେଣୁ ସର୍ବମୟ ଦେବ ଅଟଇ ନୃପତି ।
ଏହା ଜାଣି ମୋହ ଆଜ୍ଞା ପାଳ ସର୍ବ ଯତି ॥ ୬୧ ॥
ମୁହିଁ ଯାହା କହିବି ସେ କଥା ସର୍ବେ କର ।
ଅନ୍ୟ ଦେବ ଅଛି ବୋଲି ମନେଏ ନଧର ॥ ୬୨ ॥
ଏଣୁ କରି କିଛିହିଁ କାହାକୁ ଦେବ ନାହିଁ ।
ଦେବାର ଥିଲେ ସେ ଧନ ଆଣ ମୋର ତହିଁ ॥ ୬୩ ॥
ଯାଗ କରିବାକୁ ଯେବେ ଅଛି ଅଭିଳାଷ ।
ସେ ସାମଗ୍ରୀ ସର୍ବ ମୋ ପୁରକୁ ଘେନି ଆସ ॥ ୬୪ ॥
ଯେବେ ଜପ କରିବ ମୋହର ନାମ ଜପ ।
ମୋ କୀର୍ତ୍ତି କୀର୍ତ୍ତନରେ ଧ୍ୟାଅ ମୋର ରୂପ ॥ ୬୫ ॥
ଯେମନ୍ତ ଯୁବତୀଙ୍କର ପତି ସେବା ଧର୍ମ ।
ସେହି ରୂପେ ମୋ ଆଜ୍ଞା ପାଳନ ଦ୍ୱିଜୋତ୍ତମ ॥ ୬୬ ॥
ନୃପତିର ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ପୁଣି ହିଁ ସମସ୍ତ ଋଷି ବିନୟରେ ଭଣି ॥ ୬୭ ॥

ହେ ମହାରାଜ ଏମନ୍ତ କେବେ ହେଁ ନ କହ ।
ଦିଅ ଆଜ୍ଞା ଧର୍ମନାଶ ନୋହୁ ଦୟାବହ ॥ ୬୮ ॥
ହବିମାନଙ୍କରେ ସିନା ଅଛି ଏ ଜଗତ ।
ବୁଝାଇ କହିବା ଶୁଣିମା ହେ ନରନାଥ ॥ ୬୯ ॥
ଅନଳେ ଘୃତ ଧାରା ଆମ୍ଭେ ଦେଉଂ ଯେବେ ।
ତେଣେ କରି ସନ୍ତୋଷ ହୁଅନ୍ତି ସର୍ବ ଦେବେ ॥ ୭୦ ॥
ସେ ପୁଣି ଦିଅନ୍ତି ନରଲୋକେ ଜଳଧାରା ।
ତେଣେ କରି ଶସ୍ୟବନ୍ତ ହୁଏ ବସୁନ୍ଧରା ॥ ୭୧ ॥
ଏମନ୍ତ ହେଲେ ଅବନୀ ପ୍ରାଣୀଙ୍କି ପୋଷଇ ।
ଏ ସକାଶୁଁ ଧର୍ମେ ନୃପ ଜଗତ ଅଛଇ ॥ ୭୨ ॥
ଧର୍ମନାଶ ଯାଆନ୍ତେ ସଂସାର ନାଶ ଯିବ ।
ସେ କାଳେ ଆପଣ କାହିଁ ରାଜବ କରିବ ॥ ୭୩ ॥
ଅଭିମାନକୁ ତେଜିଣ ଆଜ୍ଞାଦିଅ ବେଗ ।
ସଂସାର ହିତ ନିମିତ୍ତେ ଆରମ୍ଭିବୁ ଯାଗ ॥ ୭୪ ॥
ଏ ରୂପେ କହନ୍ତେ ପୁଣି ମହରିଷି ଗଣେ ।
କ୍ରୋଧ ହେଲା ନୃପତି ଯେ ଶୁଣିଣ ଶ୍ରବଣେ ॥ ୭୫ ॥
ବୋଇଲା କହୁଛ କେତେ ପୁନଃପୁନ କରି ।
ମୁହିଁ ଆଜ୍ଞା ଦିଅଇ ଆହେ ତପଚାରି ॥ ୭୬ ॥
ରାଜା ତହୁଁ ଏହାଶୁଣି ମହଋଷିଗଣ ।
କାଳାନଳର ପ୍ରାୟେକ ହୋଇଲେ କ୍ରୋଧେଣ ॥ ୭୭ ॥
ବୋଇଲେ ଏ ପାପି କି ମାର ମାର ମରୁ ।
ସଂସାରର ଅରିଷ୍ଟ ଯେ ଏହିଠାରୁଁ ସରୁ ॥ ୭୮ ॥
ଯଜ୍ଞ ପ୍ରଭୁ ଯଜ୍ଞପତି ଅନାଦି ନିଧନ ।
ତାହାଙ୍କୁ ଯେ ନିନ୍ଦାକଲା ଅଧର୍ମ ଭାବେଣ ॥ ୭୯ ॥
ତେଣୁ ଏ ପାପିଷ୍ଠ ରାଜା ପଣେ ଯୋଗ୍ୟ ନୋହେ ।
ଏହା ପରସ୍ପରେ ବୋଲି ତପସ୍ୱୀ ସବିହେ ॥ ୮୦ ॥
ମନ୍ତ୍ରପୂତ କରିଣ ହସ୍ତରେ କୁଶଧରି ।
ରାଜା ଉପରକୁ ଯେ ମାଇଲେ ଶୀଘ୍ର କରି ॥ ୮୧ ॥
ମୁନିଙ୍କର କୁଶ ଯହୁଁ ପଡ଼ିଲା ଶରୀରେ ।
ପ୍ରାଣଛାଡ଼ି ନୃପତି ଢ଼ଳିଲା ମହିଂରେ ॥ ୮୨ ॥
ହରିଙ୍କି ଆଦି ସକଳ ଧର୍ମ ନିନ୍ଦିବାରୁଁ ।
ରାଜାତ ମୃତ ହୋଇଣ ଥିଲାକ ପୂର୍ବରୁଁ ॥ ୮୩ ॥
ଋଷିମାନେ ତହିଁ ହେଲେ ନିମିତ୍ତ କେବଳ ।
ଏକେତ ସେ ସର୍ବେ ସଂସାରର ଆଦିମୂଳ ॥ ୮୪ ॥

୭୭. କ : ମହା କ୍ରୁଦ୍ଧ ହୋଇଲେ ଯେମନ୍ତ କାଳାନଳ

ବଚନକ୍ଷୁର ପ୍ରେରଣ କୁଶ ବଜ୍ରଶୂଚି ।
ଯାହା ପ୍ରୟୋଗେ ଅମରେ ନପାରନ୍ତି ବଞ୍ଚି ॥ ୮୫ ॥
ମନୁଷ୍ୟ ମାତ୍ରକ ସିନା ଏ କିସ ପଦାର୍ଥ ।
ଇଛା ଏ ଅର୍ଜିଲାକର୍ମ ଯୋଗୁଁ ହେଲା ହତ ॥ ୮୬ ॥
ଯେତେବେଳେ ମୃତ୍ୟୁ ଲଭି ପଡ଼ିଲା ରାଜନ ।
ସେ କାଳେ ଅନେକ ହେଲା ଉତପାତ ମାନ ॥ ୮୭ ॥
ଅତର୍କିତେ ପ୍ରବଳ ହୋଇଲା କୋଳାହଳ ।
ଧ୍ୱନିପୂର୍ଣ୍ଣ ହେଲା ଦିଗ ଗଗନ ମଣ୍ଡଳ ॥ ୮୮ ॥
ଏହା ଦେଖି ଚିତ୍ର ମଣି ସର୍ବ ତପୋଚାରି ।
ଏ କିସ ବୋଲି ପାରୁଷ ଜନଙ୍କୁ ପଚାରି ॥ ୮୯ ॥
ପଚାରନ୍ତେ ଋଷିଙ୍କି କହିଲେ ଜନଚୟ ।
ଅରାଜକ ହେବାରୁଁ ରାଜ୍ୟରେ ଚୌର ଭୟ ॥ ୯୦ ॥
ସବୁଆଡ଼େ ହୋଇଲାକ ଅତ୍ୟନ୍ତ ପ୍ରବଳେ ।
ଅଚଉରେ ପରଧନ ମାନ ଚୋରି କଲେ ॥ ୯୧ ॥
ତାହା ଦେଖି ସର୍ବଜନେ ଆତୁର ଯେ ହୋଇ ।
କୋଳାହଳ ଧ୍ୱନି କରି ଏଣେ ତେଣେ ଧାଇଁ ॥ ୯୨ ॥
ତେଣୁ ଉଦ୍ବେଗ ହୋଇଣ ସକଳ ଚଉରେ ।
ପଳାବନ୍ତେ ଏଣେ ତେଣେ ସକଳ ଦିଗରେ ॥ ୯୩ ॥
ସେ କାରଣୁ ସବୁ ଆଡ଼େ ଦିଶେ ରେଣୁମୟ ।
ଆହୁରି ଅଛି ଏଣିକି ନାନା ରୂପେ ଭୟ ॥ ୯୪ ॥
ପୁରଜନ ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ଚକିତ ହୋଇଣ ଯେ ସକଳ ମୁନିମଣି ॥ ୯୫ ॥
ସେ କାଳେ ସମସ୍ତେ କଲେ ଏକଇ ବିଚାର ।
ବୋଇଲେ ନୃପତି ବିନା ନୁହଇ ସଂସାର ॥ ୯୬ ॥
ଏଥକୁ ଉପାୟ ଏବେ କରିବା ବିଶେଷେ ।
ଏ ଶବରୁ ଜାତ କରି ଏକଇ ପୁରୁଷେ ॥ ୯୭ ॥
ଅବନୀରେ ସ୍ଥାପିବା ଯେ ନରପତି ପଣେ ।
ଏମନ୍ତ ନିଶ୍ଚୟ କରି ସର୍ବଋଷିଗଣେ ॥ ୯୮ ॥
ଯଙ୍ଗ ରାଜା ଅନପତ୍ୟ ହୋଇ କରି ମଲା ।
ତାହାର ଶବ ଗୋଟି ଯେ ସେଠାରେ ପଡ଼ିଲା ॥ ୯୯ ॥
ସେ ଶବର ଉରୁଭାଗ ଯତନ ପ୍ରକାରେ ।
ପୁତ୍ର ଅର୍ଥେ ମନ୍ଥିଲେ ଯେ ସର୍ବ ମୁନିବରେ ॥ ୧୦୦ ॥
ଯେତେବେଳେ ଅତିଶାଏ ମନ୍ଥିଲେକ ଉରୁ ।
ସେ କାଳେ ପୁତ୍ରେକ ଜନ୍ମ ହୋଇଲା ତହିଁରୁ ॥ ୧୦୧ ॥

ଅଙ୍ଗାର ସ୍ତମ୍ଭ ପରାୟେ ତାହାର ଶରୀର ।
କ୍ଷୁଦ୍ରଚକ୍ଷୁ ବେନି ଗୁଞ୍ଜା ବୀଜର ଆକାର ।। ୧୦୨ ।।
ସ୍ୱଭାବରେ ଖର୍ବତନୁ ମର୍କଟବଦନ ।
ଅତିସ୍ଥୂଳ ମସ୍ତକ ପେଚକ ପକ୍ଷି ସ୍ୱନ ।। ୧୦୩ ।।
ଏମନ୍ତ ରୂପରେ ଜାତ ହୋଇଣ ପୁରୁଷ ।
ଋଷିଙ୍କି ବୋଇଲା କହ କରିବି ମୁଁ କିସ ।। ୧୦୪ ।।
ଏମନ୍ତେ ଅତି ଆତୁରେ ପଚାରନ୍ତେ ବାଳ ।
ତାହା ରୂପ ଦେଖିଲେ ସମସ୍ତ ତପଶୀଳ ।। ୧୦୫ ।।
ବୋଇଲେ ଏଡ଼େ ବିକୃତ ଯେବେ ଏହା ଗାତ୍ର ।
କଉଂଣିସି କାର୍ଯ୍ୟେ ଯୋଗ୍ୟ ନୁହଇ ଏ ପୁତ୍ର ।। ୧୦୬ ।।
ଏହା ପରସ୍ପରେ ସମ୍ଭାଷଣ ହୋଇ ପୁଣି ।
ବୋଇଲେ  ତୁ ନିଷୀଦନ କହ କିଛି ବାଣୀ ।। ୧୦୭ ।।
ନିଷୀଦ ବୋଲନ୍ତେ ତା ନିଷାଦ ନାମ ହେଲା ।
ନିଶ୍ଚିନ୍ତ ହୋଇ ଋଷିଙ୍କ ପାଶରେ ବସିଲା ।। ୧୦୮ ।।
ବେନର ଯେବଣ ସ୍ଥାନ ହୋଇଲା ମନ୍ଥନ ।
ସେହିଦ୍ୱାରେ ବାହାରି ତା ପାପ କର୍ମମାନ ।। ୧୦୯ ।।
ପୁରୁଷେକ ହୋଇଣ ସେ ହୋଇଲା ନିଷାଦ ।
ଶବର ଯାହାକୁ ବୋଲନ୍ତି ହେ ଜ୍ଞାନବିଦ ।। ୧୧୦ ।।
ସମସ୍ତ ପାପ ଲକ୍ଷଣମାନ ତାର ଅଙ୍ଗେ ।
ଅତିଶୋଭାକର ଜନ୍ମି ବଣ୍ୟ ବେଶ ସଙ୍ଗେ ।। ୧୧୧ ।।
ହୃଦୟରେ ବିରାଜଇ ଗୁଞ୍ଜା ଫଳମାଳ ।
କୁକ୍କୁଟ ପୁଚ୍ଛେ ମଣ୍ଡିତ ତାଲୁପରଚୂଳ ।। ୧୧୨ ।।
କୁଟଜ କୁସୁମଗୁଚ୍ଛ ତାଲୁ ପରେ ସାଜେ ।
ଆରକୂଟ କଟକ ଚରଣ କରେ ରାଜେ ।। ୧୧୩ ।।
କୁମ୍ଭିକୁଟଜ ବକଳ କଟି କରପଟି ।
ପତ୍ରାବଳୀ ମଣ୍ଡନ ଯେ ନିତମ୍ବେ ପ୍ରକଟି ।। ୧୧୪ ।।
କଟିସୂତ୍ରେ କୁଠାର କନ୍ଧରେ କୋଡ଼ିକାଙ୍କ ।
କରେକାଷ୍ଠବେଚା ଧନୁ ତ୍ରିକନାଶାୟକ ।। ୧୧୫ ।।
ଏମନ୍ତ ବେଶ ଦେଖିଣ ପୁଣି ସର୍ବମୁନି ।
ବୋଇଲେ ହୋ ନିଷାଦ ଶୁଣ ତୁ ଆମ୍ଭ ବାଣୀ ।। ୧୧୬ ।।
କାନନ ଦୁର୍ଗମ ଭୂମି ଗିରି ଆଦି ଯେତେ ।
ଏମାନେ ଭୋଗ କରିଣ ରହତୁ ନିଶ୍ଚିନ୍ତେ ।। ୧୧୭ ।।
ତୋହ ବଂଶ ଯେତେ ହେବେ ବନ ଅଧିକାରୀ ।
ବଞ୍ଚିବେ ହୋଇ ସଲିଳ ଫଳ ମୂଳାହାରି ।। ୧୧୮ ।।

ବନ୍ୟ ଶସ୍ୟ ଯାହାହେବ ରାଜ କରେଦେବେ ।
କନ୍ଧେ ଭାର ବହିଣ ସେ ସେବା କରିଥିବେ ॥ ୧୧୯ ॥
ଏମନ୍ତ ବର ଋଷିଏ ଦେଲେ ତାକୁ ଯହୁଁ ।
ସେ ରୂପେ ତା ବଂଶେ ବନଭୋଗ କଲେ ତହୁଁ ॥ ୧୨୦ ॥
ତଦନ୍ତରେ ରାଜାର ଦକ୍ଷିଣ ବାହୁ ମଧେ ।
ପୁଣି ହିଁ ମନ୍ଥନ ଯେ କରନ୍ତେ ସର୍ବସିଦ୍ଧେ ॥ ୧୨୧ ॥
ତହିଁରୁଂ ବେନର ପୁତ୍ର ଏକ ଜାତ ହେଲା ।
ଶରୀର ଦୀପ୍ତି ଯେ ସର୍ବ ଦିଗେ ପ୍ରକାଶିଲା ॥ ୧୨୨ ॥
ସାକ୍ଷାତେ ଜଳିଲା ଅଗ୍ନି ପ୍ରାୟେ ତାର ତେଜ ।
ଅତ୍ୟନ୍ତ ପ୍ରତାପବନ୍ତ ପୃଥୁ ମହାରାଜ ॥ ୧୨୩ ॥
ପୃଥୁଜାତ ହୁଅନ୍ତେ ଯେ ସେହି ସମୟରେ ।
ଆକାଶରୁଂ ଧନୁ ଏକ ପଡ଼ିଲା ମହୀରେ ॥ ୧୨୪ ॥
ଯାହା ଶ୍ରୀକରେ ବହନ୍ତି ଦେବ ସଦାଶିବ ।
ଆଦି ମହାଶସ୍ତ୍ର ସେ ତା ନାମ ଅଜଗବ ॥ ୧୨୫ ॥
ପିନାକ ବୋଲି ତାହାକୁ ବୋଲନ୍ତି ସମସ୍ତେ ।
ସେ ଶରାସନ ପ୍ରବେଶ ନୃପତି ନିମନ୍ତେ ॥ ୧୨୬ ॥
ତହୁଁ ପୁଣି ପଡ଼ିଲା ଅନେକ ଦିବ୍ୟଶର ।
ଅଭେଦ କବଚ ଆଦି କରି ତତପର ॥ ୧୨୭ ॥
ଯେତେବେଳେ ପୃଥୁରାଜା ହୋଇଲେକ ଜାତ ।
ସର୍ବପ୍ରାଣୀଙ୍କର ଯେ ଆନନ୍ଦମୟ ଚିତ୍ତ ॥ ୧୨୮ ॥
ବେନ ରାଜା ପୁନ୍ନାମ ନରକୁଁ ମୁକ୍ତ ହୋଇ ।
ସ୍ୱପୁତ୍ର ସକାଶୁଁ ସ୍ୱର୍ଗେ ବସିଲେକ ଯାଇ ॥ ୧୨୯ ॥
ସେ କାଳେ ସେ ନୃପତିର ଅଭିଷେକ ଅର୍ଥେ ।
ଅଇଲେ ସପ୍ତ ସମୁଦ୍ର ନଦୀମାନେ ଯେତେ ॥ ୧୩୦ ॥
ନାନା ରତ୍ନମାନ ତୀର୍ଥଜଳମାନ ଧରି ।
ମୂର୍ତ୍ତିବନ୍ତେ ନୃପତି ସମୀପେ ବିଜେକରି ॥ ୧୩୧ ॥
ପିତାମହ ଅଇଲେ ଯେ ଅନେକ ସମ୍ଭାରେ ।
ବିଜେକରି ହଂସ ଯୁକ୍ତ ବିମାନ ଉପରେ ॥ ୧୩୨ ॥
ଅଙ୍ଗିରାଙ୍କୁ ଆଦି କରି ମହରଷି ଗଣେ ।
ସମସ୍ତେ ଅଇଲେ ଦେବ ବିଧାତା ଗହଣେ ॥ ୧୩୩ ॥
ବାସବ ଅଇଲେ ମହାନାଗ କନ୍ଧେ ଚଢ଼ି ।
ସର୍ବଦେବଗଣ ସଙ୍ଗେ ପଟୁଆର ପଡ଼ି ॥ ୧୩୪ ॥
ଗନ୍ଧର୍ବଙ୍କ ଗୀତବାଦ୍ୟ ଅପସରା ନାଟ ।
ଅସ୍ତୁକରା ପୁରୁଷଙ୍କ ଆଶୀର୍ବାଦ ପାଠ ॥ ୧୩୫ ॥

ଏ ରୂପରେ ସ୍ଥାବର ଜଙ୍ଗମ ଆଦି ଯେତେ ।
ସର୍ବଭୂତମାନେ ଯେ ଅଇଲେ ଯେଝା ମତେ ॥ ୧୩୬ ॥
ପୃଥୁଜନ୍ମ ଥାନରେ ପ୍ରବେଶ ହୋଇକରି ।
ବାଳକ ଲକ୍ଷଣ ଅନାଇଲେ କୁଶଧାରୀ ॥ ୧୩୭ ॥
ଦକ୍ଷିଣହସ୍ତେ ଅଛଇ ବିଷ୍ଣୁ ଚକ୍ରଚିହ୍ନ ।
ଦେଖି ସୃଷ୍ଟିକରତା ପରମ ତୋଷମନ ॥ ୧୩୮ ॥
ବିଚାରିଲେ ଏ ପୃଥୁ ସାକ୍ଷାତ ବିଷ୍ଣୁଜାତ ।
ଏବେ ଏକା ତ୍ରିଭୁବନ ହୋଇବ ସୁଖିତ ॥ ୧୩୯ ॥
ଏହାବୋଲି ନାନା ତୀର୍ଥ ଜଳମାନଙ୍କରେ ।
ରାଜାପଣେ ଅଭିଷେକ କଲେ ପୃଥୁ ଶିରେ ॥ ୧୪୦ ॥
ସେହି ସମୟରେ ବାଜିଲା ଅମର ଦୁନ୍ଦୁଭି ।
ଶୁକ୍ଳ ମେଘେ ଦେବ ପୁଷ୍ପ ବରସିଲେ ଭୁବି ॥ ୧୪୧ ॥
ସର୍ବରିଷି ଉଚ୍ଚାରିଣ କଲେ ବେଦପାଠ ।
ଗନ୍ଧର୍ବେ ଗାଇଲେ ଯେ ଅପ୍ସରା କରେ ନାଟ ॥ ୧୪୨ ॥
ନାନାବାଦ୍ୟ କୋଳାହଳ ହୋଇଲା ସେ କାଳେ ।
ଶିରେ ପାଟ ବାନ୍ଧିଲେ ପରମ ଶୁଭବେଳେ ॥ ୧୪୩ ॥
ବିଷ୍ଣୁଙ୍କର ଚକ୍ର ଚିହ୍ନ ଦେଖିବାରୁଁ ନରେ ।
ବୋଇଲେ ଏ ଚକ୍ରବର୍ତ୍ତୀ ସର୍ବ ରାଜାପରେ ॥ ୧୪୪ ॥
ଦେବଗଣମାନେ ହେଲେ ଏହାର ପ୍ରଭାବ ।
ନାଶ କରିବାକୁ କେହି ସମର୍ଥ ନୋହିବ ॥ ୧୪୫ ॥
ଏହା ବୋଲି ବ୍ରହ୍ମାଦି ଅମର ସର୍ବେ ଗଲେ ।
ତେଣୁ ଚକ୍ରବର୍ତ୍ତିଙ୍କର ଚକ୍ରବର୍ତ୍ତୀ ହେଲେ ॥ ୧୪୬ ॥
ଜନ୍ମ ହେବାମାତ୍ରକେ ତ ଯୁବା ହୋଇଥିଲେ ।
ତହୁଁ ବ୍ରହ୍ମାଦିଋଷିଏ ଅଭିଷେକ କଲେ ॥ ୧୪୭ ॥
ବିଧିବନ୍ତେ ଅଭିଷେକ ହୋଇଲେ କ ଯହୁଁ ।
ମହାଚକ୍ରବର୍ତ୍ତିତ୍ୱ ଯେ ଲଭିଲେ ସେ ତହୁଁ ॥ ୧୪୮ ॥
ନିଜ ପିତା ହେଲେ ସର୍ବଶତ୍ରୁଙ୍କୁ ଜିଣିଲେ ।
ମାତ୍ରକ ପ୍ରଜାଙ୍କ ମନମାନ ନ ରଞ୍ଜିଲେ ॥ ୧୪୯ ॥
ପ୍ରଜାରେ ଏହାଙ୍କ ଯହୁଁ ହେଲା ଅନୁରାଗ ।
ତେଣୁ ରାଜାପଣେ ଅବନୀ କି ହେଲେ ଯୋଗ୍ୟ ॥ ୧୫୦ ॥
ଦିନୁଦିନୁ ତାଙ୍କ ହେଲା ପ୍ରଭାବ ପ୍ରକାଶ ।
ଚରାଚର ସମସ୍ତେ ଆଜ୍ଞାରେ ହେଲେ ବଶ୍ୟ ॥ ୧୫୧ ॥
କରନ୍ତି ଯେବେ ସମୁଦ୍ରେ ପ୍ରୟାଣ ଆରମ୍ଭ ।
ସେହି ସମୟରେ ହୁଅଇ ମହା ଜଳସ୍ତମ୍ଭ ॥ ୧୫୨ ॥

ବନେଗଲେ ପର୍ବତେ ହୋଇଣ ବେନିଭାଗ ।
ମାର୍ଗ ଦିଅନ୍ତି ଏ ରୂପେ ନୋହେ ଆଜ୍ଞା ଭଙ୍ଗ ।। ୧୫୩ ।।
ସର୍ବ ଦ୍ରୁମରେ ଫଳିଲେ ପୁରି ପୁଞ୍ଜମଧୁ ।
ଏଥୁଁ ଆନଚରିତ ଶୁଣ ହୋ ମହାସାଧୁ ।। ୧୫୪ ।।
ଏକ ସମୟରେ ପୃଥୁ ରାଜା ମହାଭାଗ ।
ସର୍ବ ଶୁଭେ କରନ୍ତେଣ ପିତାମହ ଯାଗ ।। ୧୫୫ ।।
ସୋମପାନ ଦିନେ ସୋମ ଛେଚିବା ସମୟେ ।
ଏକ ପୁତ୍ରେ ତହିଁରୁ ଜନ୍ମିଲା ଶୋଭାମୟେ ।। ୧୫୬ ।।
ତହିଁ ଉତ୍ତାରେଣ ପୁଣି ସେହି ମହାଯାଗେ ।
ସୁବୁଦ୍ଧି ପୁତ୍ରେକ ଜନ୍ମ ହେଲା ସେହି ଲାଗେ ।। ୧୫୭ ।।
ମହରଷିମାନେ ଯେହୁ ତାହାଙ୍କୁ ଦେଖିଲେ ।
ଦୁହିଙ୍କି ସୁତ ମାଗଧ କରି ନାମ ଦେଲେ ।। ୧୫୮ ।।
ନାମ ଦେଇଣ ବୋଇଲେ ହେ ବେନି ସୁମତି ।
ଏ ପୃଥୁ ମହାରାଜାଙ୍କୁ କର ତୁମ୍ଭେ ସ୍ତୁତି ।। ୧୫୯ ।।
ମହାପ୍ରତାପବନ୍ତଟି ଅଟଇ ଏ ନୃପ ।
ତୁମ୍ଭର ସ୍ତୁତିପାତ୍ର ଯେ ଅଟଇ ସ୍ୱରୂପ ।। ୧୬୦ ।।
ଏହାଶୁଣି ସେ ବେନି ଯେ କୃତାଞ୍ଜଳି ହୋଇ ।।
ତପସ୍ୱିଙ୍କି ପଚାରିଲେ ଶୁଣିମା ଗୋସାଇଁ ।। ୧୬୧ ।।
ଏ ମହାରାଜାତ ଏବେ ହୋଇଛନ୍ତି ଜାତ ।
ଏହାଙ୍କର ଗୁଣକର୍ମ ହୋଇନାହିଁ ଖ୍ୟାତ ।। ୧୬୨ ।।
ଅଜଣାରେ କେମନ୍ତ ବର୍ଣ୍ଣିବୁଁ କଉଁ ଯଶ ।
ବର୍ଣ୍ଣିଲେ କି କାର୍ଯ୍ୟ ହେବ କହ ହେ ତାପସ ।। ୧୬୩ ।।
ସୁତମାଗଧ ଦୁହିଁଙ୍କ ମୁଖୁ ଏହା ଶୁଣି ।
ଋଷିମାନେ ବୋଲନ୍ତି ଶୁଣ ହେ ପୁତ୍ରବେନି ।। ୧୬୪ ।।
ଏ ନୃପତି ଚକ୍ରବର୍ତ୍ତି ରାଜା ମହାବଳ ।
କଉଁ କାର୍ଯ୍ୟମାନଙ୍କରେ ହୋଇବ କୁଶଳ ।। ୧୬୫ ।।
କଉଁ କର୍ମମାନ ପୁଣି କରିବ ଏଣିକି ।
ଯେତେଯେତେ ଗୁଣମାନ ହେବ ଉପରିକି ।। ୧୬୬ ।।
ସେ ଭବିଷ୍ୟ କଥାମାନ ଏବେ କର ସ୍ତୁତି ।
ଏମନ୍ତ ବୋଲି ବୋଇଲେ ଯଉଁ ସର୍ବ ଯତି ।। ୧୬୭ ।।
ତାହା ଶୁଣି ନୃପତି ଯେ ସନ୍ତୁଷ୍ଟ ହୋଇଲେ ।
ସେ କାଳେ ଏମନ୍ତ ଅନ୍ତର୍ଗତେ ବିଚାରିଲେ ।। ୧୬୮ ।।
ଋଷିମାନେ ତ ସର୍ବଜ୍ଞ ଅଟନ୍ତି ପଣ୍ଡିତ ।
ଏ ଦୁହିଁଙ୍କ ମୁଖେ ଗୁଣମାନ ମୋ ସନ୍ତତ ।। ୧୬୯ ।।

ସ୍ତୁତିମାନଙ୍କରେ ଖ୍ୟାତ କରାଇବା କଲେ ।
ସାକ୍ଷାତ କରି ମୋହର ଆଗେ ନ କହିଲେ ॥ ୧୭୦ ॥
ଏଣୁ ଏ ସୁତମାଗଧ ଯଉଂ କୀର୍ତ୍ତି ପୁଣ ।
ଗାୟନ କରିବେ ତାହା ହୋଇବ ପୁରାଣ ॥ ୧୭୧ ॥
ତାହା ମୁ କେବଳ ସମାହିତ ମନା ହୋଇ ।
ଅବଶ୍ୟ କରିବି ଯେ ସନ୍ଦେହ କିଛି ନାହିଁ ॥ ୧୭୨ ॥
ବର୍ଜନୀୟ କଥାମାନ କହିବେ ସେ ଯେତେ ।
ସେ ସର୍ବ ମୁହିଁ ଛାଡ଼ିବି ନ ଘେନିମି ଚିତ୍ତେ ॥ ୧୭୩ ॥
ତେବେ ସିନା ସଦ୍‌ଗୁଣମାନଙ୍କେ ଶ୍ଳାଘ୍ୟ ହେବି ।
ଏହା ପାଞ୍ଚିଲା ନୃପତି ସନ୍ତୋଷକୁ ଲଭି ॥ ୧୭୪ ॥
ଏଥୁ ଅନନ୍ତରେ ପୁଣି ସେ ସୁତମାଗଧ ।
ସ୍ତୁତି କରିବା ନିମିତ୍ତେ ବିଚାରିଲେ ପଦ ॥ ୧୭୫ ॥
ପୃଥୁ ମହାରାଜାର ଭବିଷ୍ୟ କର୍ମ ଯେତେ ।
ଉତ୍ତମ ସୁସ୍ୱରେ ଗାନ କଲେ ବିଧିମତେ ॥ ୧୭୬ ॥
ଏ ପୃଥୁ ନୃପତି ଶ୍ରୀ ବୀରାଧିବୀରବର ।
ମହାରାଜ ପ୍ରତାପି ରାଜାଧିରାଜେଶ୍ୱର ॥ ୧୭୭ ॥
ସତ୍ୟବାକ୍ୟ ଦାନଶୀଳ ମହାସତ୍ୟ ସନ୍ଧ ।
ସର୍ବନର ଈଶ୍ୱର ବିଦିତ ପୂର୍ଣ୍ଣାନନ୍ଦ ॥ ୧୭୮ ॥
ଅକାର୍ଯ୍ୟରେ ବିମୁଖ ଯେ ଏଣୁ ଲଜ୍ଜାବନ୍ତ ।
ନିଜପର ଜନେ ସମଭାବରୁଂ ମଇତ୍ର ॥ ୧୭୯॥
କ୍ଷମାଶୀଳ ବିକ୍ରାନ୍ତ ଯେ ଅଲଙ୍ଘିତ ଆଜ୍ଞା ।
ଧର୍ମଙ୍କ ସୁକୃତଜ୍ଞ ଦୟାବନ୍ତ ସୁ ପ୍ରତିଜ୍ଞା ॥ ୧୮୦ ॥
ପ୍ରିୟ ଭାସି ଗର୍ବେଶ୍ୱର ମାନ୍ୟେଯା ମାନନା ।
ମହାଯଜ୍ୱା ବ୍ରହ୍ମଣ ସର୍ବଦା ହୃଷ୍ଟମନା ॥ ୧୮୧ ॥
ସଦାସାଧୁ ବସ୍ଚଳ ଯେ ଶତ୍ରୁମିତ୍ରଠାରେ ।
ତା' ଅପକ୍ଷପାତୀ ନୃପତି ନ୍ୟାୟ ବ୍ୟବହାରେ ॥ ୧୮୨ ॥
ଏ ରୂପ ଅନେକ ସ୍ତୁତିମାନଙ୍କରେ ଗଣ ।
ଖ୍ୟାତ କରିଣ ସେ ସୁତମାଗଧ ଯେ ପୁଣ ॥ ୧୮୩ ॥
ନୃପତିଙ୍କି ଶୁଣାଇଲେ ଅତି ଯତ୍ନକରି ।
ତାହାଶୁଣି ଅତି ଆନନ୍ଦରେ ପୃଥୁ ଦଣ୍ଡଧାରୀ ॥ ୧୮୪ ॥
ସେହିରୂପେ ଏ ମହିକି ପାଳନା ଯେ କଲେ ।
ଯହୁଁ ଯାଗ କରି ବହୁ ଦକ୍ଷିଣାକୁ ଦେଲେ ॥ ୧୮୫ ॥
ଏଥୁ ଅନନ୍ତରେ ପୁଣି ସର୍ବଜନ ପ୍ରଜା ।
ଛାମୁକୁ ଆସି ବୋଇଲେ ଶୁଣ ମହାରାଜା ॥ ୧୮୬ ॥

୧୭୧.କ : କରାଇବେ ମୋତେ ସ୍ତୁତି ମାନଙ୍କେ ଶ୍ରବଣ

ଦେଖ ଆମ୍ଭର ଶରୀର କ୍ଷୁଧାରେ ଆତୁର ।
ଶସ୍ୟ ବିନା ପ୍ରାଣୀନାଶ ଗଲେଟି ନିକର ।। ୧୮୭ ।।
ଯେତେବେଳେ ତୁମ୍ଭ ପିତା ହେଲେ ପରଲୋକ ।
ସେହିକ୍ଷଣିରେ ସଂସାର ହେଲା ଅରାଜକ ।। ୧୮୮ ।।
ସେକାଳେ ଯେତେକ ଅଉଷଧିମାନେ ଥିଲେ ।
ସମସ୍ତ ଯେ ବସୁମତୀ ଗ୍ରାସ କରିଦେଲେ ।। ୧୮୯ ।।
ତେଣୁକରି ପ୍ରଜା ସର୍ବେ ହୋଇଛନ୍ତି କ୍ଷୟ ।
ତୁମ୍ଭେ ହୋଇ ଯେବେ ନୋହିବ ସହାୟ ।। ୧୯୦ ।।
ଆମ୍ଭ ସମସ୍ତ ପ୍ରାଣୀର ବୃତ୍ତିମାନ ଦେଇ ।
ସଂସାର ଯେବେ ପାଳିବ ନାହିଁ ନରସାଇଁ ।। ୧୯୧ ।।
ତେବେ ଏହି ଠାଉଁ ଯେ ସକଳେ ଯିବୁଁ ନାଶ ।
ଏଣୁ ତୁମ୍ଭଙ୍କୁ ଗୁହାରି କରୁ ନରଈଶ ।। ୧୯୨ ।।
ମଧୁମାତ୍ରକ ଆମ୍ଭର ହୋଇଛି ଆହାର ।
ଏଣୁକରିଁ କିରୂପେ ବଞ୍ଚିବୁ ନରେଶ୍ୱର ।। ୧୯୩ ।।
ଦିଅଆମ୍ଭ ପ୍ରଜାଙ୍କର ଜୀବନ ଔଷଧି ।
ନୋହିଲେ କ୍ଷୁଧାତୃଷାରେ ମରିବୁଁ ଅବଧି ।। ୧୯୪ ।।
ପ୍ରଜାଙ୍କର ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ମହାକ୍ରୋଧବନ୍ତ ହୋଇ ପୃଥୁ ନୃପମଣି ।। ୧୯୫ ।।
ଦିବ୍ୟ ଅଜଗବ ଧନୁ ବାମ କରେ ଧରି ।
ଦେବଶର ମାନ ଯେ ଗୁଣରେ ସନ୍ଧିକରି ।। ୧୯୬ ।।
ବସୁଧାକୁ ମାରିବାକୁ ଧାଇଁଲେକ ଯହୁଁ ।
ଦେଖିଣ ଅବନୀ ଦେବୀ ତ୍ରସ୍ତ ହୋଇ ତହୁଁ ।। ୧୯୭ ।।
ସୁରଭୀ ରୂପ ଧରିଣ ବେଗେ ପଳାଇଲା ।
ବ୍ରହ୍ମଲୋକ ଆଦି ସର୍ବ ଭୁବନ ବୁଲିଲା ।। ୧୯୮ ।।
ଯଉଁ ଯଉଁ ଭୁବନେ ସେ ହୁଅଇ ପ୍ରବେଶ ।
ତହିଁ ଦେଖଇ ପୃଥୁକ ଧନୁର୍ଦ୍ଧର ବେଶ ।। ୧୯୯ ।।
ସେଠାରୁ ଆନପୁରକୁ ଯାଏ ଯେତେବେଳେ
ପୃଥୁଙ୍କୁ ଦେଖଇ ଧନୁର୍ବାଣ କରମୂଳେ ।। ୨୦୦ ।।
ଏ ରୂପେ ସମସ୍ତ ପୁର ବୁଲିଲାକ ମହୀ ।
ପୃଥୁ ନ ଛାଡ଼ିଣଛନ୍ତି ସଙ୍ଗତେ ଗୋଡ଼ାଇଁ ।। ୨୦୧ ।।
କଉଂଠାରେ ରକ୍ଷା ଯହୁଁ ନ ଦିଶିଲା ତାକୁ ।
ପାଞ୍ଚିଲା ଶରଣ ନିଶ୍ଚେ ଯିବଇଁ ଏହାଙ୍କୁ ।। ୨୦୨ ।।
ଏହା ବୋଲି ପୃଥୁରାଜା ଆଗେ ଉଭା ହୋଇ ।
ଅତିଭୟେ ଘନ ଘନ ଶରୀର କମ୍ପଇ ।। ୨୦୩ ।।

୧୯୮. ଖ : ତେଣୁ ମୁହିଁ ଆସିକରି

ଦେଖିଲା କୋଦଣ୍ଡପାଣି ପୃଥୁ ମହିଂପାଳ ।
ଅବନୀକି ମାରିବାକୁ ତେଜେ ବିକରାଳ ॥ ୨୦୪ ॥
ମହାପରାକ୍ରମକୁ ଶରୀରେ ଛନ୍ତି ବହି ।
ତାଙ୍କ ବାଣ ମୁଖରୁଂ ତରିବା ଅର୍ଥେ ମହି ॥ ୨୦୫ ॥
କରପତ୍ର ଜୋଡ଼ିଣ ବୋଲେ ମହାରାଜ ।
ସ୍ତିରୀଛାର ଗୋଟାକୁ କିଏ କ୍ଷତ୍ରିୟ ତେଜ ॥ ୨୦୬ ॥
ସ୍ତିରୀବଧିବାରେ ତୁମ୍ଭ ଏ ଯଉଂ ଉଦ୍ୟମ ।
ତହିଂ ଯେତେ ପାପ ହୁଏ ହେ ନୃପସତ୍ତମ ॥ ୨୦୭ ॥
ତାହା କି ତୁମ୍ଭଙ୍କୁ ଶାସ୍ତ୍ରାନ୍ତରେ ଜଣାନାହିଂ ।
ଏମନ୍ତ କର୍ମ କରୁଛ କାହିଂପାଇ ॥ ୨୦୮ ॥
ଅବନୀ ମୁଖରୁ ଯେ ଏମନ୍ତ ବାଣି ଶୁଣି ।
ପୃଥୁ ବୋଲନ୍ତି ଶୁଣିମା ଗୋ ଦୁଷ୍ଟକାରିଣୀ ॥ ୨୦୯ ॥
ଦୁଷ୍ଟ ହୋଇ କରିଣ ଯେବଣ ଲୋକଥିବ ।
ତାହା ବଧେ ଯେବେ ବହୁତଙ୍କ ଭଲ ହେବ ॥ ୨୧୦ ॥
ତେବେ ସେ ଜଣକୁ ବଧିବାର କଥା ଭଲ ।
ଦୁଷ୍ଟଜନ ବିନାଶଟି ପରମମଙ୍ଗଳ ॥ ୨୧୧ ॥
ରାଜା ତହୁଂ ଏହାଶୁଣି କହଇ ଧରଣୀ ।
ପ୍ରଜା ଅର୍ଥେ ମତେ ଯେବେ ନାଶିବଟି ପୁଣି ॥ ୨୧୨ ॥
ତେବେ ସେ ପ୍ରଜାମାନଙ୍କ ଆଧାର କେ ଦେବ ।
ଏହା ଚିତ୍ତରେ ବିଚାରି ହେ ରାଜପୁଙ୍ଗବ ॥ ୨୧୩ ॥
ମହୀ ଏମନ୍ତ କହନ୍ତେ ପୃଥୁରାଜ ଭଣି ।
ମୋହ ଆଜ୍ଞା ନମାନିଲୁ ଯେବେ ତୁ ଧରଣୀ ॥ ୨୧୪ ॥
ତେବେ ତୋତେ ନାରାଚରେ ଅବଶ୍ୟ ମାରିବି ।
ଆମ୍ଭ ଯୋଗବଳେ ପ୍ରଜାମାନଙ୍କୁ ଧରିବି ॥ ୨୧୫ ॥
ଏହା ଶୁଣି ବସୁଧା ଯେ ହୋଇ ଅତି ତ୍ରସ୍ତ ।
ପ୍ରଣମ୍ୟ କରି ନୃପକୁ ଯୋଡ଼ି ବେନି ହସ୍ତ ॥ ୨୧୬ ॥
ନୃପ ପ୍ରତାପ ଭୟରେ କମ୍ପମାନ ହୋଇ ।
ସମୀପରେ ରହିଣ କୋମଳ କରି କହି ॥ ୨୧୭ ॥
ହେ ମହାରାଜନ ମତେ କଲ ଯଦି କ୍ଷମା ।
ତେବେ ମୋହଠାରୁ ଏକ ଉପାୟ ଶୁଣିମା ॥ ୨୧୮ ॥
ଉପାୟରେ କରି ସର୍ବ କାର୍ଯ୍ୟସିଦ୍ଧ ହୋଇ ।
ତେଣୁକରି ଆପଣଙ୍କୁ କହୁଅଛି ମୁହିଂ ॥ ୨୧୯ ॥
ମହା ଅଉଷଧି ଯେତେ କରିଥିଲି ଗ୍ରାସ ।
ସମସ୍ତେ ମୋ ଗର୍ଭେ ଜୀର୍ଣ୍ଣ ହେଲେ ନରଈଶ ॥ ୨୨୦ ॥

ସେମାନଙ୍କୁ ପାଇବାକୁ ଯେବେ କଲ ଇଚ୍ଛା ।
ତେବେ ମୁଁ ଅବଶ୍ୟ ଦେବି ରହୁ ତୁମ୍ଭ କକ୍ଷା ॥ ୨୨୧ ॥
ମାତ୍ରକ ସମସ୍ତେ କ୍ଷୀର ହୋଇଛନ୍ତି ଏବେ ।
ତାହା ଦୁହିଁଲେ ମିଳିବେ ଅଉଷଧି ସର୍ବେ ॥ ୨୨୨ ॥
ତେବେ ସେ ପ୍ରଜାଙ୍କ ହିତ ନିମିତ୍ତରେ ହେବେ ।
ଏଥକୁ ବସ୍ତ୍ର କାହାକୁ ବିଚାରିବା ଏବେ ॥ ୨୨୩ ॥
ଯେଉଁ ବସ୍ତ୍ର ପ୍ରସାଦେ ଶ୍ରବିବ କ୍ଷୀରଧାରା ।
ସେ ପୁଣି ହରିବ ପ୍ରଜାଙ୍କର କଷ୍ଟଭାରା ॥ ୨୨୪ ॥
ଅଉଷଧି ବୀଜଭୂତ ହୋଇ କ୍ଷୀର ପୁଣି ।
ସବୁଆଡ଼େ ଯେମନ୍ତ ବହିବ ନୃପମଣି ॥ ୨୨୫ ॥
ତେମନ୍ତ ପ୍ରକାରେ ମୋତେ ସମାନ ଯେ କର ।
ବେନ ଅରାଜକରେ ଯେ ହୋଇଛି ନାରଖାର ॥ ୨୨୬ ॥
କହୁଛନ୍ତି ପରାଶର ଶୁଣ ମୁନି ମଣି ।
ଏମନ୍ତ ପ୍ରକାରେ ଯହୁଁ କହିଲା ଧରଣୀ ॥ ୨୨୭ ॥
ଶୁଣି ପୃଥୁ ନୃପତି ଯେ ସନ୍ତୁଷ୍ଟ ହୋଇଲେ ।
ସର୍ବ ଗିରି ଧନୁ ଅଗ୍ରେ ଖୋଳି ପକାଇଲେ ॥ ୨୨୮ ॥
ଅବ୍ୟବସ୍ଥା ହୋଇଣ ଯେ ଥିଲେ ସବୁ ଗିରି ।
ତାହା କ୍ରମ ବିଭାଗେ ରଖିଲେ ପୂର୍ବପରି ॥ ୨୨୯ ॥
ତେଣୁ ସବୁ ଗିରିମାନେ ହେଲେ ସମତୁଲ ।
ଯେଝା ଭାଗ ପ୍ରମାଣ ଯେ ଘେନି ତପଶୀଳ ॥ ୨୩୦ ॥
ପୂର୍ବେ ବେନ ନାଶ ଯାନ୍ତେ ଅରାଜକ କାଳେ ।
ବିଷମ ହୋଇଣ ବସୁମତୀ ଯହୁଁ ଥିଲେ ॥ ୨୩୧ ॥
ପ୍ରାଚୀନ ଗ୍ରାମ ପାଟଣାମାନଙ୍କ ବିଭାଗ ।
କିଛି ହୋଇ ନ ଥିଲା ଶୁଣ ହେ ମହାଭାଗ ॥ ୨୩୨ ॥
ଶସ୍ୟମାନେ ନୋହିଥିଲେ ନୋହିବାରୁଁ କୃଷି ।
ବଣିଜାର ପଥ ଯେ ନୋହିଲାକ ବିଶେଷି ॥ ୨୩୩ ॥
ଗୋରକ୍ଷକୁ ଆଦି କରି କିଛି ନୋହିଥିଲା ।
ପୃଥୁଠାରୁଁ ଆରମ୍ଭି ସମସ୍ତ ସମ୍ଭବିଲା ॥ ୨୩୪ ॥
ଯେତେବେଳେ ପୂର୍ବପରି ହେଲା ବସୁମତୀ ।
ପ୍ରତି ପ୍ରତି ସ୍ଥାନେ ହେଲେ ପ୍ରଜାମହୀପତି ॥ ୨୩୫ ॥
ଗ୍ରାମ ପାଟଣା ପୂର୍ବର ପରାୟେ ରଚନ ।
ପ୍ରତିଖଣ୍ଡେ ହେଲେ ଏକ ଏକଇ ରାଜନ ॥ ୨୩୬ ॥
ଫଳମୂଳ ଆହାର ଯେ ପ୍ରଜାମାନଙ୍କର ।
ସେ କାଳରେ ହୋଇଲା ଶୁଣ ହେ ମୁନିବର ॥ ୨୩୭ ॥

ନଷ୍ଟ ହୋଇଥିଲେ ଯେତେ ସର୍ବ ଅଉଷଧି ।
ତାହା ପାଇବା ନିମିତ୍ତେ କରି ପୁଣି ବୁଦ୍ଧି ॥ ୨୩୮ ॥
ସ୍ୱାୟମ୍ଭୁବମନୁଙ୍କୁ ଯେ ବତ୍ସ ରୂପ କରି ।
ଆପଣା ହସ୍ତକୁ ପାତ୍ର କରି ଦଣ୍ଡଧାରୀ ॥ ୨୩୯ ॥
ସୁରଭି ରୂପେ ମହୀକି ସେକାଳେ ଦୁହିଁଲେ ।
ସେ ଦୁଗ୍ଧରୁ ସର୍ବ ଶସ୍ୟ ମାନ ଜାତ ହେଲେ ॥ ୨୪୦ ॥
ହେଲେ ସେମାନେ ପ୍ରଜାଙ୍କ ହିତକାମ ଅର୍ଥେ ।
ସେ ଅନ୍ନରେ କରି ଜନେ ବଞ୍ଚିଲେ ସମସ୍ତେ ॥ ୨୪୧ ॥
ଅଦ୍ୟାପି ହିଁ ବର୍ତ୍ତିଛନ୍ତି ନିତ୍ୟ ତାହା ଖାଇ ।
ଶୁଣିବା ହେ ମଇତ୍ରେୟ ଋଷି ପୁଣ୍ୟଦେହି ॥ ୨୪୨ ॥
ପୃଥୁରାଜା ଭୂମିରେ ହୋଇଲେ ପ୍ରାଣଦାତା ।
ତେଣୁକରି ସେ ନିଶ୍ଚେ ହେଲେ ଯେ ଧର୍ମପିତା ॥ ୨୪୩ ॥
ଯେ ଅଟଇ ମନ୍ତ୍ରଗୁରୁ ବିଦ୍ୟାଗୁରୁ ଯେହି ।
ଯେହୁ ଭୟରୁ ରଖଇ ଯେହୁ ଅନ୍ନ ଦେଇ ॥ ୨୪୪ ॥
ଏ ପଞ୍ଚ ଜନକୁ ଯେ ଜନକ ସଙ୍ଗେ ମଣି ।
ଏଣୁ ଅବନୀର ପିତା ପୃଥୁ ନୃପମଣି ॥ ୨୪୫ ॥
ସେ କାରଣୁ ମହୀର ପୃଥିବୀ ସଞ୍ଜ୍ଞା ହେଲା ।
ଯେଣୁ ପୃଥୁଙ୍କର ଧର୍ମ ନନ୍ଦିନୀ ହୋଇଲା ॥ ୨୪୬ ॥
ତହୁଁ ପୁଣି ଦେବଗଣେ ସର୍ବ ଋଷିମାନେ ।
ଦାନବରକ୍ଷ ଗନ୍ଧର୍ବ ଆଦି ଯେତେ ଜନେ ॥ ୨୪୭ ॥
ଉରଗ ଯକ୍ଷ ପିତର ତରୁଗିରି ବରେ ।
ଇଚ୍ଛାପାତ୍ରମାନ ସର୍ବେ ଘେନି ନିଜ କରେ ॥ ୨୪୮ ॥
ଯେ ଯାହାର ଇଚ୍ଛା ଫଳପ୍ରଦ କ୍ଷୀରମାନ ।
ଅବନୀଠାରୁ ସମସ୍ତେ କଲେକ ଦୋହନ ॥ ୨୪୯ ॥
ସେ ଗାଈକି ଯେତେ ବତ୍ସ ଯେବଣ ଦୋହନ ।
ସେହି ଅନୁରୂପେ ଫଳପ୍ରାପ୍ତି ସେହୁମାନ ॥ ୨୫୦ ॥
କେତେମାନେ ଦୁହିଁଣ ପାଇଲେ କେତେ କ୍ଷୀର ।
ଶୁଣ ତାହା କହିବା କରିଣ ସବିସ୍ତାର ॥ ୨୫୧ ॥
ଦେବତାଏ ସେ କାଳେ ଇନ୍ଦ୍ରଙ୍କୁ ବତ୍ସ କଲେ ।
ତହୁଁ ପୁଣି ଦେବରାଜ ଦେବଦୋଗ୍ଧା ହେଲେ ॥ ୨୫୨ ॥
ସୁବର୍ଣ୍ଣ ପାତ୍ରରେ ସେ ଦୁହିଁଲା ବେଳେ କ୍ଷୀର ।
ବସୁମତୀ ସୁରଭୀସ୍ତନରୁଁ ନିରନ୍ତର ॥ ୨୫୩ ॥
ତହୁଁ ପୁଣି ମୁନିମାନେ ସୋମ ବତ୍ସ କଲେ ।
ବୃହସ୍ପତି ଦୋଗ୍ଧାକୁ ନେଇଣ ନିଯୋଜିଲେ ॥ ୨୫୪ ॥

ବେଦପାତ୍ରରେ ସେ ପୁଣି ଦୁହିଁଲେକ କ୍ଷୀର ।
ତପ ବ୍ରହ୍ମ ଏ ବେନିକି ଅବନୀ ଧେନୁର ।। ୨୫୫ ।।
ଦୈତ୍ୟ ଗଣମାନଙ୍କର ବିରୋଚନ ବସ୍ତ ।
ଦ୍ୱିମୂର୍ଦ୍ଧା ଦୋଗ୍ଧା ତହିଁରେ ହୋଇଲା ପ୍ରତ୍ୟକ୍ଷ ।। ୨୫୬ ।।
ଲୋହପାତ୍ରେ ମାୟା କ୍ଷୀର ଅବନୀରୁ ଦୁହିଁ ।
ସମସ୍ତେ ତା ଗ୍ରହଣ କଲେକ ତୋଷ ହୋଇଂ ।। ୨୫୭ ।।
ରାକ୍ଷସଙ୍କ ପୁଣି ଯେ ସୁମାଳି ବସ୍ତ ହେଲା ।
ଜନ୍ତୁନାଭ ଦୋଗ୍ଧା ରୂପେ ସ୍ଥିତ ଯେ ହୋଇଲା ।। ୨୫୮ ।।
କପାଳ ପାତ୍ରରେ ସେ ଦୁହିଁଲା ରକ୍ତ କ୍ଷୀର ।
ତାହା ପୁଣି ସମସ୍ତେ ଯେ କଲେକ ଆହାର ।। ୨୫୯ ।।
ତଦନ୍ତେ ପର୍ବତେ କଲେ ହିବନ୍ତ ବସ୍ତ ।
ମେରୁକୁ ଦୋଗ୍ଧା କରିଣ ରଖିଲେ ପ୍ରତ୍ୟକ୍ଷ ।। ୨୬୦ ।।
ପାଷାଣ ପାତ୍ରେ ଦୁହିଁଲେ ମହୀଧେନୁ କ୍ଷୀର ।
ଅଉଷଧିମାନେ ରତ୍ନ ଗଣ ଯେ ଆବର ।। ୨୬୧ ।।
ଗନ୍ଧର୍ବମାନଙ୍କ ଚିତ୍ରରଥ ବସ୍ତ ହେଲା ।
ବିଶ୍ୱାବସୁ ଗନ୍ଧର୍ବ ଯେ ଦୁହକ ହୋଇଲା ।। ୨୬୨ ।।
ପଦ୍ମପାତ୍ରରେ ଦୁହିଁଲେ ଦିବ୍ୟଗନ୍ଧ କ୍ଷୀର ।
ଏଥୁ ଅନନ୍ତରେ ପୁଣ ତପସ୍ୱୀ ଶେଖର ।। ୨୬୩ ।।
ଉରଗ ମାନଙ୍କ ବସ୍ତ ହୋଇଲା ତକ୍ଷକ ।
ଧୃତରାଷ୍ଟ୍ରକୁ ସେ କାଳେ କଲେକ ଦୋହକ ।। ୨୬୪ ।।
ଲାଉ ପାତ୍ର ଘେନିଣ ଯେ ବିଷ କ୍ଷୀର ଦୁହିଁ ।
ସବୁଯାକ ବାଣ୍ଟିଣ ଭକ୍ଷଣ କଲେ ତହିଁ ।। ୨୬୫ ।।
ଯକ୍ଷମାନଙ୍କର ଯେ କୁବେର ହେଲା ବସ୍ତ ।
ସୁକର୍ଣ୍ଣ ଦୋଗ୍ଧା ତହିଁରେ ହୋଇଲା ପ୍ରତ୍ୟକ୍ଷ ।। ୨୬୬ ।।
କଞ୍ଚାମୃତ୍ତିକା ପାତ୍ରରେ ଅନ୍ତର୍ଦ୍ଧାନ କ୍ଷୀର ।
ମହୀସୁରଭୀ ସ୍ତନରୁଂ ଦୁହିଁଲେ ନିକର ।। ୨୬୭ ।।
ତହୁଂପୁଣି ପିତୃଙ୍କର ଯମ ବସ୍ତା ହେଲା ।
ଅନ୍ତକ ଦୋଗ୍ଧା ରୂପରେ ସ୍ଥିତ ଯେ ହୋଇଲା ।। ୨୬୮ ।।
ତେଣୁ ରୂପା ପାତ୍ରରେ ଦୁହିଁଲେ ସ୍ୱଧା କ୍ଷୀର ।
ଏଥୁ ଅନନ୍ତରେ ପୁଣି ସର୍ବ ତରୁବର ।। ୨୬୯ ।।
ପ୍ଲକ୍ଷପାଦପକୁ ଯେ ତହିଁରେ ବସ୍ତା କଲେ ।
ଶାଳବୃକ୍ଷକୁ ଦୋହକ କରି ନିଯୋଗିଲେ ।। ୨୭୦ ।।
ପଲାଶ ପତ୍ରରେ ଦୁହିଁଲେ ପ୍ରରୋହଣ କ୍ଷୀର ।
ଏ ରୂପେ ଯେ ଯାହା ଭାବେ ନେଲେ ଚରାଚର ।। ୨୭୧ ।।

ଏମନ୍ତ ପ୍ରକାରେ ପୁଣି ସେ ଯଉଁ ଧରିତ୍ରୀ ।
ସେହି ଏକା ଧାତ୍ରୀ ସେହି ଏକାଟି ବିଧାତ୍ରୀ ।। ୨୭୨ ।।
ସର୍ବସଂସାର ଧାରିଣୀ ଶୋଷିଣୀଟି ସେହି ।
ଯଉଁ ପୃଥ୍ୱୀ ବିଷ୍ଣୁପଦୁଁ ଅଛି ଜନ୍ମହୋଇ ।। ୨୭୩ ।।
ସେ ମହୀକି ଦୋହନ କଲେକ ଯଉଁ ରାଜା ।
ତାଙ୍କ ଏମନ୍ତ ପ୍ରଭାବ ଶୁଣ ବ୍ରହ୍ମତେଜା ।। ୨୭୪ ।।
ବେନଙ୍କର ପୁତ୍ର ସେ ଯେ ବୀର୍ଯ୍ୟବନ୍ତ ଅତି ।
ଜନ୍ମ ହୋଇ ପୂର୍ବେ ହୋଇଥିଲେ ମହୀପତି ।। ୨୭୫ ।।
ଜନରଞ୍ଜନ ସକାଶୁ ରାଜା ବୋଲାଇଲେ ।
ସେହିଠାରୁ ରାଜା ଶବ୍ଦ ବିଖ୍ୟାତ ସକଳେ ।। ୨୭୬ ।।
ଏମନ୍ତ ପ୍ରକାରେ ପୃଥୁ ବେନଙ୍କ ନନ୍ଦନ ।
ଏହାଙ୍କର ଜନ୍ମ ଯେ କରଇ ସଂକୀର୍ତ୍ତନ ।। ୨୭୭ ।।
ତାହାର ଦୁଷ୍କୃତ କିଛି ଶରୀରେ ନ ରହେ ।
ଉତ୍ତମ ଫଳ ପ୍ରାପତ ହୁଅଇ ନିଶ୍ଚୟେ ।।୨୭୮ ।।
ଯଉଁ ଲୋକମାନେ ଏହା ଶୁଣନ୍ତି ନିଶ୍ଚଳେ ।
ତାହାଙ୍କ ଦୁଃସ୍ୱପ୍ନ ନାଶ ଯାଇ ତତକାଳେ ।। ୨୭୯ ।।
ପୃଥୁରାଜାଙ୍କର ଜନ୍ମ ପ୍ରଭାବ ଏମନ୍ତ ।
ଆଦ୍ୟ ପ୍ରାନ୍ତ ଶୁଣିଲ କି ଆହେ ତପୋବନ୍ତ ।। ୨୮୦ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପୃଥୁଙ୍କର ଜନ୍ମ ଏ ତ୍ରୟୋଦଶ ଅଧ୍ୟା ଖ୍ୟାତ ।। ୨୮୧ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୨୮୨ ।।

# ଚତୁର୍ଦ୍ଦଶ ଅଧ୍ୟାୟ

ଏଥୁ ଅନନ୍ତରେ ପୁଣି ପରାଶର ଭଣି ।
ଧ୍ରୁବବଂଶ ଚରିତ ଶୁଣ ହୋ ମୁନିମଣି ॥ ୧ ॥
ପୃଥୁଙ୍କର ହୋଇଲେ ଯେ ବେନି ଗୋଟି ସୁତ ।
ଅନ୍ତର୍ଧ୍ୟାନ ନାମପାଳି ନାମରେ ବିଦିତ ॥ ୨ ॥
ମହା ଧର୍ମବନ୍ତ ସେ ଅଟନ୍ତି ବେନିଭାଇ ।
ଅନ୍ତର୍ଦ୍ଧାନ ଶିଖଣ୍ଡିନୀ କନ୍ୟା ବିଭା ହୋଇ ॥ ୩ ॥
ତାହା ଗର୍ଭୁଁ ଜାତ କଲେ ଏକଇ କୁମର ।
ହବିର୍ଦ୍ଧାନ ବୋଲି କରି ନାମ ଯେ ତାହାର ॥ ୪ ॥
ଅଗ୍ନିବଂଶ ଦୁହିତା ଧୀଷଣା ନାମେ ନାରୀ ।
ହବିର୍ଦ୍ଧାନ ତାହାକୁ ବିବାହ ହୋଇ କରି ॥ ୫ ॥
ତାହା ଗର୍ଭୁଁ ଜାତକଲେ ପୁତ୍ର ଷଡ଼ ଗୋଟି ।
ତାହାଙ୍କର ନାମ ମାନ ଶୁଣ ମହାଘଟି ॥ ୬ ॥
ପ୍ରାଚୀନବର୍ହି ପ୍ରଥମ ଶୁକ୍ର ଯେ ଦ୍ୱିତୀୟ ।
ତୃତୀୟଗୟ ଚତୁର୍ଥ କୃଷ୍ଣ ମଇତ୍ରେୟ ॥ ୭ ॥
ପଞ୍ଚମର ବଜ୍ରନାମ ଷଷ୍ଠର ଅର୍ଜିନ ।
ଏ ରୂପେ ହୋଇଲେ ଷଡ଼ ଗୋଟି ତା' ନନ୍ଦନ ॥ ୮ ॥
ପ୍ରାଚୀନବର୍ହି ନାମରେ ଯେବଣ କୁମର ।
ପିତା ହବିର୍ଦ୍ଧାନ ହେତୁଂ ପ୍ରଭାବ ତାହାର ॥ ୯ ॥
ମହାରାଜ ସମ୍ପତ୍ତିରେ ହେଲା ଚକ୍ରବର୍ତ୍ତୀ ।
ପ୍ରଜାବୃଦ୍ଧି ଅର୍ଥରେ ସାକ୍ଷାତ ପ୍ରଜାପତି ॥ ୧୦ ॥
ଯଜ୍ଞ ବିଧି ଆଦି କରି ସମସ୍ତ କର୍ମରେ ।
ଯାହାକୁ ଶାସ୍ତ୍ର ପ୍ରାଚୀନ ହୋଏ ଅବନୀରେ ॥ ୧୧ ॥
ତେଣୁ ପ୍ରାଚୀନବର୍ହି ଯେ ନାମ ତା'ର ଖ୍ୟାତ ।
ଅବନୀ ମଣ୍ଡଳେ ସେହୁ ମହାବଳବନ୍ତ ॥ ୧୨ ॥
ଅନେକ ତପସ୍ୟାମାନ ପ୍ରଥମରୁଂ କଲା ।
ତପସ୍ୟା ଅନ୍ତରେ ଯେହ୍ନେ ଗୃହଇଚ୍ଛା କଲା ॥ ୧୩ ॥
ସମୁଦ୍ର ସୁତାସବର୍ଣ୍ଣା ନାମରେ ସୁନ୍ଦରୀ ।
ତାହାକୁ ବିବାହ ହେଲା ସେହୁ ଦଣ୍ଡଧାରୀ ॥ ୧୪ ॥
ସେ ରାଜା ସକାଶୁଁ ପୁଣି ସମୁଦ୍ର ଦୁହିତା ।
ଦଶପୁତ୍ର ଜାତ କଲା ସମସ୍ତେ ପ୍ରଚେତା ॥ ୧୫ ॥
ସେହୁ ସର୍ବେ ଧନୁର୍ବେଦ ବିଦ୍ୟାରେ ନିପୁଣ ।
ସବିଙ୍କର ପୁଣି ଏକାଧର୍ମ ଆଚରଣ ॥ ୧୬ ॥

ଏମନ୍ତ ସେ ସମସ୍ତେ ସମୁଦ୍ର ଜଳେ ପଶି ।
ଅୟୁତେ ବରଷ ମହାତପ କଲେ ବସି ॥ ୧୭ ॥
ଏହାଶୁଣି ମଇତ୍ରେୟ ପୁଣି ହିଁ ପଚାରି ।
କାହିଁକି ତପସ୍ୟା କଲେ କହ ତପଚାରି ॥ ୧୮ ॥
ସମୁଦ୍ରଜଳରେ ବୁଡ଼ି ତପ କରିବାରୁଁ ।
ପ୍ରଚେତାଙ୍କ କଉଂଫଳ ହେଲା କହ ଗୁରୁ ॥ ୧୯ ॥
ଶିଷ୍ୟଙ୍କର ବଚନେ କହନ୍ତି ଶକ୍ତିସୁତ ।
ଯାହା ପଚାରିଲ ଶୁଣ ହୋଇ ଏକଚିତ୍ତ ॥ ୨୦ ॥
ସେ ଦଶ ପ୍ରଚେତାମାନଙ୍କର ଯଉଂ ପିତା ।
ପ୍ରାଚୀନବର୍ହି ନାମେ ଯେ ପ୍ରଜାଙ୍କ ବିଧାତା ॥ ୨୧ ॥
ସେ ମହାତ୍ମା ଏକ ଦିନେ ବୋଇଲେ ପୁତ୍ରଙ୍କୁ ।
ତୁମ୍ଭେ ବାବୁ କ୍ଷମ ହୁଅ ପ୍ରଜା ସର୍ଜିବାକୁ ॥ ୨୨ ॥
ପୂର୍ବକାଳେ ବ୍ରହ୍ମା ମତେ ପ୍ରଜାପତି ପଣେ ।
ସାଡ଼ିଦେଇ କରିଣ ଯେ ବୋଇଲେ ଆପଣେ ॥ ୨୩ ॥
ତୁହି ସକଳ ପ୍ରଜାଙ୍କୁ କରିବୁ ସ୍ୱର୍ଜନା ।
ତେଣୁ ମୁହିଁ ତୁମ୍ଭଙ୍କୁ ଜନମ କଲି ସିନା ॥ ୨୪ ॥
ସେହିରୂପେ ମୁହିଁ କହୁଅଛି ସେହି କଥା ।
ପିତାର ବଚନ ବାବୁ ନ କର ଅନ୍ୟଥା ॥ ୨୫ ॥
ମୋହ ପ୍ରୀତି ଅର୍ଥରେ ସକଳ ପ୍ରଜାଙ୍କର ।
ପ୍ରଜାବୃଦ୍ଧିରେ ଆନନ୍ଦ ହେବେ ବେଦବର ॥ ୨୬ ॥
ଏ ରୂପରେ ପ୍ରଜାପତି ଯହୁଁ ଦେଲେ ଆଜ୍ଞା ।
ପିତାର ବଚନ ପୁତ୍ରେ ନ କଲେ ଅବଜ୍ଞା ॥ ୨୭ ॥
ଶୁଣିମା ମାତ୍ରକେ ମାନି ଶିରୋପରେ ଧରି
ସେହି ରୂପେ ହଉ ବୋଲି ସିଉକାର କରି ॥ ୨୮ ॥
ତହିଁ ଉତ୍ତାରେଣ ପୁଣି ପିତା ମୁଖ ଚାହିଁ ।
କରପତ୍ର ଯୋଡ଼ି ପଚାରିଲେ ଦଶ ଭାଇ ॥ ୨୯ ॥
ହେ ତାତ କେବଣ କର୍ମେ ପ୍ରଜା ବୃଦ୍ଧି ହେବେ ।
କି ରୂପେ ଆମ୍ଭେ ସମର୍ଥ ହୋଇବୁ ସେ ଭାବେ ॥ ୩୦ ॥
ସେ ସର୍ବକର୍ମ ଆମ୍ଭଙ୍କୁ ବୁଝାଇଣ କହ ।
ଏହା ବୋଲି ପଚାରନ୍ତେ ସକଳ ତନୟ ॥ ୩୧ ॥
ତାହାଙ୍କର ବଚନେ ପ୍ରାଚୀନବର୍ହି କହି ।
ବିଷ୍ଣୁଙ୍କୁ ଆରାଧବାବୁ ଏକଚିତ୍ତ ହୋଇ ॥ ୩୨ ॥
ସେ ପ୍ରଭୁ ଅଭୀଷ୍ଟ ବର ଦେବାର ପ୍ରଧାନ ।
ତାଙ୍କ ଆରାଧନରେ ହୋଇବେ ସର୍ବଜନ ॥ ୩୩ ॥

ଏକଥା ଅନ୍ୟଥା ନୁହେଁ ନପାଅ ସଂଶୟ ।
ଏଥୁ ଆଉ ଅଧିକ କି କହିବି ତନୟ ।। ୩୪ ।।
ତେଣୁକରି ପ୍ରଜାଙ୍କର ବି ବୃଦ୍ଧି ଅର୍ଥରେ ।
ସର୍ବଭୂତଙ୍କ ପ୍ରଭୁଙ୍କୁ ଭଜ ହୃଦୟରେ ।। ୩୫ ।।
ହରି ଆରାଧନାରେ କେବଳ କର କକ୍ଷା ।
ଯେବେ ମନୋରଥ ସିଦ୍ଧ କରିବାକୁ ଇଚ୍ଛା ।। ୩୬ ।।
ଧର୍ମ ଅର୍ଥ କାମ ମୋକ୍ଷ ଆଦି ଚାରିବର୍ଗ ।
ଏହା ଇଚ୍ଛା କରନ୍ତି ଯେବଣ ମହାଭାଗ ।। ୩୭ ।।
ସେମାନେ ସେ ସର୍ବଦା କରନ୍ତି ଆରାଧନ ।
ଯେଉଁ ପୁରୁଷ ଉତ୍ତମ ଆଦିଭଗବାନ ।। ୩୮ ।।
ଯାହାଙ୍କୁଟି ଆରାଧନା କଲା ମାତ୍ରକରେ ।
ପ୍ରଜାପତି ସୃଷ୍ଟିମାନ କଲେକ ଆଦରେ ।। ୩୯ ।।
ସେ ପ୍ରଭୁଙ୍କୁ ତୁମ୍ଭେ ଏବେ ଆରାଧନା କର ।
ତେଣେ କରି ବୃଦ୍ଧି ହେବ ପ୍ରଜାମାନଙ୍କର ।। ୪୦ ।।
ଏମନ୍ତ ପିତା ବଚନ କର୍ଣ୍ଣ ପଥେ ଶୁଣି ।
ପ୍ରଚେତା ନାମରେ ସେ ଯେ ଦଶ ପୁତ୍ର ପୁଣି ।। ୪୧ ।।
ବିଷ୍ଣୁ ଆରାଧନେ ସମାହିତ ମନା ହେଲେ ।
ସମୁଦ୍ର ଜଳରେ ପଶି ମହାତପ କଲେ ।। ୪୨ ।।
ଜଗତପତିଙ୍କଠାରେ ଚିତ୍ତବୃତ୍ତି ଦେଇ ।
ଅୟୁତେ ବରଷ ଯେ ବସିଲେ ଦଶଭାଇ ।। ୪୩ ।।
ଯେଉଁ ଲୋକ ସର୍ବଲୋକ ପରାୟଣ ନାରାୟଣ ।
ଭକ୍ତଙ୍କ ଅଭୀଷ୍ଟ ଦେବା ବିଷୟେ ନିପୁଣ ।। ୪୪ ।।
ସେ ହରିଙ୍କି ଏକାଗ୍ରଚିତ୍ତରେ ସ୍ତୁତି କରି ।
ଜଳ ମଧରେ ରହିଲେ ତପସ୍ୟା ଆଚରି ।। ୪୫ ।।
ଏହାଶୁଣି ପୁଣି ପଚାରିଲେ ମଇତ୍ରେୟ ।
ସମୁଦ୍ର ଜଳରେ ପଶି ସମସ୍ତ ତନୟ ।। ୪୬ ।।
ବିଷ୍ଣୁଙ୍କ ଗୁଣ କୀର୍ତ୍ତନ ମାନ ଯେହ୍ନେ କଲେ ।
ତହୁଁ କଉଂ ପୁଣ୍ୟ ହେଲା କହ ଏହା ଭଲେ ।। ୪୭ ।।
ଏହା ପଚାରନ୍ତେ ପରାଶର ପୁଣି ଭାଷି ।
ଯାହା ପଚାରିଲ ଶୁଣ ମଇତ୍ରେୟ ଋଷି ।। ୪୮ ।।
ବିଷ୍ଣୁମୟ ଆତ୍ମା ହୋଇ ସେ ପ୍ରଚେତାମାନେ ।
ସମୁଦ୍ର ଜଳରେ ବୁଡ଼ି କରି ଶୁଦ୍ଧମନେ ।। ୪୯ ।।
ସ୍ତୁତି କଲେ ଗୋବିନ୍ଦଙ୍କୁ ପୂର୍ବରେ ଯେମନ୍ତେ ।
ତାହା ଏବେ କହିବା ଶୁଣିମା ଏକଚିତ୍ତେ ।। ୫୦ ।।

ଜଳ ମଧ୍ୟେ ରହି ସର୍ବେ ଯୋଗାସନେ ବସି ।
ସ୍ତୁତି କଲେ ପ୍ରଚେତା ଧ୍ୟାଇଣ ବ୍ରହ୍ମରାସି ॥ ୫୧ ॥
ସର୍ବ ବଚନମାନଙ୍କ ଯେବଣ ପ୍ରତିଷ୍ଠା ।
ସେ ଯହିଁ ହୋଇଛି ନିତ୍ୟ ସ୍ଥାୟୀ ନିଷ୍ଠା ॥ ୫୨ ॥
ସର୍ବ ଜଗତର ଯେ ଅଟଇ ଆଦି ଅନ୍ତ ।
ଅନୁପମ ଆଦି ଜ୍ୟୋତି ଯେବଣ ଅନନ୍ତ ॥ ୫୩ ॥
ଅଭେଦ ଅପାରବନ୍ତ ଯେବଣ ପରମ ।
ସେ ପ୍ରଭୁଙ୍କୁ ସନ୍ତତ ଆମ୍ଭର ନମୋନମଃ ॥ ୫୪ ॥
ସର୍ବଚରାଚରଙ୍କର ଯେ ଅଟେ କାରଣ ।
ଯାହା ରୂପ ଅରୂପ ଦିବସ ନିଶା ଜାଣ ॥ ୫୫ ॥
ସନ୍ଧ୍ୟା ରୂପେ ଖ୍ୟାତ ପୁଣି ଯେବଣ ପରମ ।
କାଳ ରୂପି ପ୍ରଭୁଙ୍କୁ ଆମ୍ଭର ନମୋ ନମ ॥ ୫୬ ॥
ଯଉଂ ଶୁଦ୍ଧ ଆତ୍ମାକୁ ଦେବତା ପିତୃମାନେ ।
ଭୁଞ୍ଜୁଛନ୍ତି ପରମ ଜ୍ଞାନରେ ପ୍ରତିଦିନେ ॥ ୫୭ ॥
ସର୍ବପ୍ରାଣୀ ଜୀବନ ଯେ ଦେବଙ୍କ ଉତ୍ତମ ।
ସେ ସୋମଆତ୍ମା ପ୍ରଭୁଙ୍କୁ ଆମ୍ଭ ନମୋନମଃ ॥ ୫୮ ॥
ଯଉଂ ତୀବ୍ରଆତ୍ମା ନିଜ ପ୍ରଭାମାନଙ୍କରେ ।
ଆକାଶ ଦିଗ ଉଜ୍ଜ୍ୱଳ କରିଣ ନିର୍ଭରେ ॥ ୫୯ ॥
ଅତ୍ୟନ୍ତରେ ଗ୍ରାସ ଯେ କରଇ ସର୍ବତମ ।
ନିଦାଘ ଶୀତ ଜଳର ଯୋନି ଅନୁପମ ॥ ୬୦ ॥
ଦୁର୍ନିରୀକ୍ଷ ଯେବଣ ଅନାଦି ପରଂବ୍ରହ୍ମ ।
ସେ ସୂର୍ଯ୍ୟ ଆତ୍ମାକୁ ଯେ ଆମ୍ଭର ନମୋନମ ॥ ୬୧ ॥
କଠିଣ ଗୁଣରେ କରି ଏ ସର୍ବ ସଂସାର ।
ପୂର୍ଣ୍ଣ କରି ଅଛଇ ଯେ ପରମଈଶ୍ୱର ॥ ୬୨ ॥
ଶବ୍ଦାଦି ପଞ୍ଚ ବିଷୟମାନେଛନ୍ତି ଯହିଁ ।
ସର୍ବବ୍ୟାପୀ ହୋଇଣ ଯେ ଜଗତେ ଅଛଇଂ ॥ ୬୩ ॥
ସଂସାରର କାରଣ ଯେବଣ ମହାବ୍ରହ୍ମ ।
ସେ ଭୂତଆତ୍ମା ପ୍ରଭୁଙ୍କୁ ଆମ୍ଭ ନମୋନମଃ ॥ ୬୪ ॥
ସମସ୍ତ ଦେହୀମାନଙ୍କ ଯେହୁ ବୀଜଭୂତ ।
ଶୁକ୍ରସ୍ୱରୂପରେ ଯେଣୁ ଶରୀରରେ ଖ୍ୟାତ ॥ ୬୫ ॥
ଯଉଂ ହରି ମେଧାଙ୍କ ମାହାତ୍ମ୍ୟ ଅନୁପମ ।
ସେ ଜଳରୂପୀ ପ୍ରଭୁଙ୍କୁ ଆମ୍ଭର ନମୋନମଃ ॥ ୬୬ ॥
ହବ୍ୟଭୁକ ଧନଞ୍ଜୟ ଏମନ୍ତ ପ୍ରକାରେ ।
ସର୍ବଦେବତାଙ୍କ ମୁଖ ରୂପେ ଯେ ପ୍ରଚରେ ॥ ୬୭ ॥

ପିତୃମାନଙ୍କର କବ୍ୟଭୁକ ଯେଉଁ ବ୍ରହ୍ମ ।
ସେ ପାବକ ଆତ୍ମାକୁ ଆମ୍ଭର ନମୋନମଃ ।। ୬୮ ।।
ପଞ୍ଚପ୍ରାଣ ହୋଇଣ ଯେ ସର୍ବ ଦେହେ ରହି ।
ଯେଉଁ ପ୍ରଭୁ ପ୍ରତିକ୍ଷଣେ ଚେଷ୍ଟା କରୁଥାଇ ।। ୬୯ ।।
ଏମନ୍ତ ଆକାଶ ଯୋନି ଯେ ପୁରୁଷୋତ୍ତମ ।
ସେ ବାୟୁ ଆତ୍ମାକୁ ଆମ୍ଭର ନମୋନମଃ ।। ୭୦ ।।
ସର୍ବପ୍ରାଣୀଙ୍କର ଅବକାଶ ଯେହୁ ଦିଏ ।
ଯେ ଅନନ୍ତମୂର୍ତ୍ତି ବହି ସଦା ଶୁଦ୍ଧେ ରହେ ।। ୭୧ ।।
ସେ ଅନାଦି ନିଧନ ଯେ ଦେବ ଆତ୍ମାରାମ ।
ଏମନ୍ତ ବ୍ୟୋମମୂର୍ତ୍ତୀଙ୍କୁ ଆମ୍ଭ ନମୋନମଃ ।। ୭୨ ।।
ସର୍ବେନ୍ଦ୍ରିୟମାନଙ୍କର ଯେ ସର୍ବଦା ସ୍ଥାନ ।
ଶବ୍ଦାଦି ରୂପମାନଙ୍କେ ଯେହୁ ବିଦ୍ୟମାନ ।। ୭୩ ।।
ଏମନ୍ତ ବିଷୟ ଆତ୍ମା ଯେଉଁ ଦେବବ୍ରହ୍ମ ।
ସେ ବିଧାତା ଋପିଙ୍କି ଆମ୍ଭର ନମୋନମଃ ।। ୭୪ ।।
ଯେବଣ ପ୍ରଭୁ ବିଷୟମାନଙ୍କୁ ଘେନଇ ।
ସନ୍ତତ ଇନ୍ଦ୍ରିୟ ଆତ୍ମା ରୂପେ ପ୍ରଚରଇ ।। ୭୫ ।।
କ୍ଷର ଅକ୍ଷର ପ୍ରକାରେ ଯା ନିତ୍ୟ ବିଶ୍ରାମ ।
ସେ ଜ୍ଞାନମୂଳ ପ୍ରଭୁଙ୍କୁ ଆମ୍ଭ ନମୋନମଃ ।। ୭୬ ।।
ସର୍ବଇନ୍ଦ୍ରିୟମାନଙ୍କେ ଘେନି ଯେତେ ଅର୍ଥ ।
ସେମାନଙ୍କୁ ଆତ୍ମା ଅର୍ଥେ ଯେ କରଇ ଦତ୍ତ ।। ୭୭ ।।
ଯେ ଅନ୍ତଃକରଣଭୂତ ଯେବଣ ପରମ ।
ସେ ବିଶ୍ୱ ଆତ୍ମାକୁ ଯେ ଆମ୍ଭର ନମୋନମଃ ।। ୭୮ ।।
ଯେଉଁ ଅନନ୍ତ ରୂପରେ ସର୍ବ ବିଶ୍ୱ ଅଛି ।
ଯାହାଠାରୁଂ ସେହି ରୂପେ ସମ୍ଭବ ହୋଇଛି ।। ୭୯ ।।
ଯାହାଠାରେ ସେ ପୁଣି ଯେ ହୁଅଇ ସଂଯମ ।
ସେ ପ୍ରକୃତି ଧର୍ମଙ୍କ ଆମ୍ଭର ନମୋନମଃ ।। ୮୦ ।।
ସମସ୍ତ ପଦାର୍ଥମାନଙ୍କରୁଂ ଯେହୁ ଶୁଦ୍ଧ ।
ଯେଉଁ ନିର୍ଗୁଣ ଅଜ୍ଞାନେ ପୁଣି ପ୍ରାଏ ବୋଧ ।। ୮୧ ।।
ସେ ଆତ୍ମାସ୍ୱରୂପୀ ଦେବ ପୁରୁଷଉତ୍ତମ ।
ତାହାଙ୍କୁ ସନ୍ତତେ ଯେ ଆମ୍ଭର ନମୋନମଃ ।। ୮୨ ।।
ଅବିକାର ପଦାର୍ଥ ଯେ ଜନ୍ମ ଯାର ନାହିଁ ।
ଶୁଦ୍ଧ ନିର୍ଗୁଣ ଯେ ନିରଞ୍ଜନ ସଦାସ୍ଥାୟୀ ।। ୮୩ ।।
ବିଷ୍ଣୁଙ୍କ ପରମପଦ ଯେ ପରମବ୍ରହ୍ମ ।
ତାହାଙ୍କୁ ସନ୍ତତେ ଯେ ଆମ୍ଭର ନମୋନମଃ ।। ୮୪ ।।

ଦୀର୍ଘ ନୁହେଁ ହ୍ରସ୍ୱ ନୁହେଁ ନୋହେ ଅତିସ୍ଥୂଳ ।
ଅତିଅଣୁ ହିଁ ନୁହଇ ଯେଉଁ ଆଦିମୂଳ ॥ ୮୫ ॥
ନୁହଇ ଲୋହିତ ଯେ ନୁହଇ ସ୍ନେହଛାୟ ।
ନାହିଁ ତାର ତନୁ ଯେ ନୁହଇ ଶକ୍ତିମୟ ॥ ୮୬ ॥
ନାହିଁ ପବନ ଆକାଶ ସ୍ପର୍ଶ ଗନ୍ଧ ରସ ।
ନାହିଁ ଚକ୍ଷୁ କର୍ଣ୍ଣ ନାସା ନାହିଁ ଚର୍ମ ମାଂସ ॥ ୮୭ ॥
ନାହିଁ ଚିତ୍ତ ନାହିଁ ବାକ୍ୟ ଚଞ୍ଚଳ ହି ନାହିଁ ।
ମୁଖରୂପ ନାମ ଗୋତ୍ର ଅଇଲା ବା କାହିଁ ॥ ୮୮ ॥
ଅହେତୁକ ଅତେଜ ଅଭୟ ଭ୍ରାନ୍ତିହୀନ ।
ଅଜର ଅମର ଯେ ଇନ୍ଦ୍ରିୟ ଗୁଣଭିନ୍ନ ॥ ୮୯ ॥
ଅଜର ଶବ୍ଦ ରହିତ ଅବ୍ୟକ୍ତ ଅପ୍ଳୁତ ।
ଯେହୁଁ ପୁଣି ହୋଇ ନାହିଁ କାହିଁରେ ସଂବୃତ ॥ ୯୦ ॥
ପୂର୍ବାପର ଦୁଇ ଯେ ଯାହାର ଠାରେ ନାହିଁ ।
ବିଷ୍ଣୁଙ୍କ ପରମାକ୍ଷର ସେହି ତାକୁ କହି ॥ ୯୧ ॥
ଯେହୁଁ ଅଟେ ପରମଈ ଶବ୍ଦ ଗୁଣବନ୍ତ ।
ଅସଂଶ୍ରୟି ପଦାର୍ଥ ଯେ ଅଟେ ସର୍ବଭୂତ ॥ ୯୨ ॥
ସେହି ବିଷ୍ଣୁପଦକୁ ଆମ୍ଭର ନମସ୍କାର ।
ଜିହ୍ୱାରେ ଦୃଷ୍ଟିରେ ଯେ ଅତ୍ୟନ୍ତ ଅଗୋଚର ॥ ୯୩ ॥
କହୁଛନ୍ତି ପରାଶର ଶୁଣ ମହରଷି ।
ଏ ରୂପେ ଦଶପ୍ରଚେତା ସମାଧିରେ ବସି ॥ ୯୪ ॥
ସମାହିତମନେ ଯେଉଁ ବିଷ୍ଣୁ ସ୍ତୁତି କଲେ ।
ସିନ୍ଧୁ ମଧେ ଏ ରୂପେ ଅୟୁତେ ଅବ୍ଦ ନେଲେ ॥ ୯୫ ॥
ତହିଁ ଉତ୍ତାରେ ପ୍ରସନ୍ନ ହୋଇ ଭଗବାନ ।
ଜଳ ମଧେ ପ୍ରଚେତାଙ୍କୁ ଦେଲେ ଦରଶନ ॥ ୯୬ ॥
ଉନ୍ନିଦ୍ରନୀଳ ଉତ୍ପଳଦଳ ପ୍ରାୟେ ଛବି ।
ସେ ଶୋଭାର ମହିଂମା ବର୍ଣ୍ଣିବ କେଉଁ କବି ॥ ୯୭ ॥
ନାନା ରତ୍ନାଭରଣମାନଙ୍କେ ବିଭୂଷିତ ।
କଟୀରେ ପୀତବସନ ଘନେ କି ତଡ଼ିତ ॥ ୯୮ ॥
କଉସ୍ତୁଭ ବନମାଳା ବକ୍ଷସ୍ଥଳେ ରାଜେ ।
ପକ୍ଷିରାଜ ଗରୁଡ଼ କନ୍ଧରେ ପ୍ରଭୁ ବିଜେ ॥ ୯୯ ॥
ଏମନ୍ତ ସ୍ୱରୂପେ ଯହୁଁ ଆଗେ ଦେଖାଦେଲେ ।
ଦେଖି ସର୍ବପ୍ରଚେତା ଯେ ଆନନ୍ଦ ହୋଇଲେ ॥ ୧୦୦ ॥
ଭକ୍ତିଭରେ ନମ୍ର ହୋଇଂ ମସ୍ତକ ନୁଆଇଂ ।
ପୁନଃପୁନ ପ୍ରଣମ୍ୟ କଲେକ ଦଶଭାଇ ॥ ୧୦୧ ॥

ପ୍ରଣମ୍ୟ ଉତ୍ତାରେ ଉଭା ଶିରେ ଦେଇଂ କର ।
ତାହାଙ୍କୁ ଦେଖି ବୋଲନ୍ତି ଭଗତସୋଖର ॥ ୧୦୨ ॥
ଆହେ ସର୍ବପ୍ରଚେତା ମାଗିବା ଇଚ୍ଛାବର ।
ପ୍ରସନ୍ନ ହୋଇ ସୁମୁଖ ହେଲି ମୁନିବର ॥ ୧୦୩ ॥
ମୁହିଂ ବରଦ ତୁମ୍ଭର ଆଗେ ଉପସ୍ଥିତ ।
ନିଃସଂଶୟ ହୋଇ ମାଗ ଯାହା ମନୋରଥ ॥ ୧୦୪ ॥
ବରଦଙ୍କ ଶ୍ରୀମୁଖରୁଂ ଏ ବଚନ ଶୁଣି ।
ପ୍ରଣିପତ୍ୟ ହୋଇଣ ଯେ ଦଶଭ୍ରାତ ପୁଣି ॥ ୧୦୫ ॥
ପ୍ରଜା ବୃଦ୍ଧି ନିମିତ୍ତେ ଯା କହିଥିଲେ ପିତା ।
ସେହି ତା କେବଳ ଜଣାଇଲେ ଯେ ପ୍ରଚେତା ॥ ୧୦୬ ॥
ତାହା ଶୁଣି ହଉ ଯେ ବୋଇଲେ ଭଗବାନ ।
ବର ଦେଇ ସେହି କ୍ଷଣି ହେଲେ ଅନ୍ତର୍ଧ୍ୟାନ ॥ ୧୦୭ ॥
ବରପାଇଂ ଜଳ ମଧ୍ୟୁ ବାହାର ହୋଇଣ ।
ସର୍ବପ୍ରଚେତା ଅଇଲେ ତପସ୍ୱୀ ହେ ଶୁଣ ॥ ୧୦୮ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପ୍ରଚେତା ତପସିଦ୍ଧି ଚଉଦ ଅଧ୍ୟାଖ୍ୟାତ ॥ ୧୦୯ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୧୦ ॥

# ପଞ୍ଚଦଶ ଅଧ୍ୟାୟ

ଏଥୁ ଅନନ୍ତରେ ପୁଣି ମୈତ୍ରେୟ ପଚାରି ।
ଭୋ ଗୁରୁ ପ୍ରଚେତାମାନେ ଜଳରୁଂ ବାହାରି ॥ ୧ ॥
କି ରୂପରେ ପ୍ରଜାବୃଦ୍ଧି କଲେ ବର ପାଇ ।
ଏହାମତେ ସବିସ୍ତାରି କହିବା ବୁଝାଇ ॥ ୨ ॥
ଶିଷ୍ୟ ଏହା ପଚାରନ୍ତେ ଭଣି ପରାଶର ।
ଶୁଣବାବୁ ପ୍ରଚେତାଙ୍କ ଯେଉଂ ସମାଚାର ॥ ୩ ॥
ପିତାଙ୍କ ଉପଦେଶରୁଂ ପ୍ରଚେତା ସକଳେ ।
ଜଳେ ଯାଇଂ ତପସ୍ୟା କଲେକ ଯେତେବେଳେ ॥ ୪ ॥
ସେ କାଳେ ତାହାଙ୍କ ପିତା ପ୍ରାଚୀନବରହି ।
ନାରଦଙ୍କ ଶ୍ରୀମୁଖରୁଂ ଉପଦେଶ ପାଇ ॥ ୫ ॥
ମହାଜ୍ଞାନ ଉଦୟ ହେବାରୁଂ ଛାଡ଼ି ଗୃହ ।
ବନେ ଯାଇ ସେହି ତପ କଲେକ ଦୁଃସହ ॥ ୬ ॥
ସେ କାଳରେ ଅରାଜକ ହେଲା ଯେଉଂ ମହୀ ।
ପ୍ରଜାଙ୍କ କ୍ଷୟ ହୋଇଲା ଅତିଶୟ ହୋଇ ॥ ୭ ॥
ପୃଥ୍ୱୀରକ୍ଷା ଅର୍ଥରେ ନୋହିଲେ କେହି ଯହୁଁ ।
ସବୁଆଡ଼େ ସର୍ବପ୍ରାଣୀ ନାଶ ଗଲେ ତହୁଁ ॥ ୮ ॥
ଏଣୁ ସବୁଆଡ଼ରେ ଅରଣ୍ୟ ମାଡ଼ି ଗଲେ ।
ମହାଦ୍ରୁମମାନେ ମହୀ ମଣ୍ଡଳେ ବଢ଼ିଲେ ॥ ୯ ॥
ଦ୍ରୁମ ଶାଖାମାନଙ୍କରେ ଗଗନ ଆଚ୍ଛନ୍ନ ।
ବହିବାକୁ ସମର୍ଥ ନୋହିଲା ପବମାନ ॥ ୧୦ ॥
ଏ ରୂପେ ଦଶ ସହସ୍ର ବରଷ ଯେ ଗଲା ।
ପ୍ରଜାମାନଙ୍କର ଚେଷ୍ଟା କିଛିହିଁ ନୋହିଲା ॥ ୧୧ ॥
ଏଥୁଁ ସର୍ବେ ପ୍ରଚେତା ପାଇଣ ବିଷ୍ଣୁ ବର ।
ଯେତେବେଳେ ସିନ୍ଧୁ ଜଳୁ ହୋଇଲେ ବାହାର ॥ ୧୨ ॥
ଦେଖିଲେ ଅବନୀମହୀରୁହରେ ସମ୍ପୂର୍ଣ୍ଣ ।
ଆକାଶ ଦିଗ ବ୍ୟାପିଛି ମହାଶାଖାମାନ ॥ ୧୩ ॥
ଯନ୍ତୁମାନଙ୍କର ଯେ ସଂଚାର କିଛି ନାହିଁ ।
ତା ଅନାଇଂ ଛନ ଯେ ହୋଇଲେ ଦଶଭାଇ ॥ ୧୪ ॥
ମହାକ୍ରୋଧବନ୍ତ ହୋଇ ଛାଡ଼ନ୍ତେ ନିଶ୍ୱାସ ।
ମୁଖମାନଙ୍କରୁଂ ଅଗ୍ନି ପବନ ପ୍ରକାଶ ॥ ୧୫ ॥
ପ୍ରକାଶିଣ ମହାବାତ ବହିଲାକ ଜହୁଁ ।
ସର୍ବ ତରୁ ଉପାଡ଼ିଣ ପକାଇଲା ତହୁଁ ॥ ୧୬ ॥

ଉନ୍ମୂଳ କରିଣ ପୁଣି ଶୁଖାଇଣ ଦେଲା ।
ତହୁଁ ଅନଳ ତାହାଙ୍କୁ ପୋଡ଼ି ପକାଇଲା ।। ୧୭ ।।
ଏ ରୂପରେ ମହାତରୁ ବରେ ସର୍ବେଗଲେ ।
କିଛି ମାତ୍ର ଅବଶେଷ ସାମାନ୍ୟେ ରହିଲେ ।। ୧୮ ।।
ସେ କାଳରେ ସୋମଦେବ ଔଷଧିଙ୍କ ଈଶ ।
ପ୍ରଚେତାମାନଙ୍କ ପାଶେ ହୋଇଲେ ପ୍ରବେଶ ।। ୧୯ ।।
ତାହାଙ୍କୁ ବୋଇଲେ ପ୍ରଜାପତିମାନେ ଶୁଣ ।
ଏ ଯଉଂ କଥା କଲଟି ଅତି ବିଡ଼ମ୍ବଣ ।। ୨୦ ।।
ଯାହା ଫଳ ମୂଳାଦିରେ ପ୍ରଜାଙ୍କର ବୃଦ୍ଧି ।
ସେ ତରୁମାନଙ୍କୁ ଦଗ୍ଧ କଲ ଏକି ବିଧି ।। ୨୧ ।।
ତୁମ୍ଭେ ତ ପ୍ରଜାପାଳକ ଅଟ ଦଶଭାଇ ।
ଏ ବିଚାର ତୁମ୍ଭର କିଛିହିଁ ନ ଯୋଗାଇ ।। ୨୨ ।।
ଏବେ ଏକୋପସଂହର ମୋ ବଚନ ଶୁଣ ।
ବିଧାତାର ଆଦ୍ୟ ସୃଷ୍ଟି ଏ ସ୍ଥାବର ଗଣ ।। ୨୩ ।।
ଏମାନଙ୍କ ନାଶ ହେଲେ ନୁହଇ ସଂସାର ।
ସନ୍ଧି କରିବା ବୃକ୍ଷଙ୍କ ତୁମ୍ଭମାନଙ୍କର ।। ୨୪ ।।
ସ୍ଥାବରମାନଙ୍କ ଏକ କନ୍ୟା ଏବେ ଅଛି ।
ସ୍ତ୍ରୀ ରତ୍ନ ଭୂଷା ସେ ସାକ୍ଷାତେ କମଳାକ୍ଷୀ ।। ୨୫ ।।
ସେ ବର ବର୍ଣ୍ଣିନୀ ନାମ ଅଟଇ ମାରିଷା ।
ମୋହର କିରଣ ପାନରେ ବଢ଼ି ଅଛି ଯୋଷା ।। ୨୬ ।।
ଦଶ ପ୍ରଜାପତିଙ୍କ ସେ ଏକା ପତ୍ନୀ ହେବ ।
ଏହା ପୂର୍ବରୁଂ ବିଧାତା କରିଛି ସମ୍ଭବ ।। ୨୭ ।।
ଏମନ୍ତ ପ୍ରକାରେ ସେ ଯେ ବୃକ୍ଷଙ୍କର କନ୍ୟା ।
ସର୍ବ ସୁଲକ୍ଷଣୀ ସେ ସୁନ୍ଦରୀ କୁଳଧନ୍ୟା ।। ୨୮ ।।
ସେ କନ୍ୟାକୁ ତୁମ୍ଭ ଦଶଭାଇଙ୍କି ଯେ ଦେବା ।
ସେ ଧ୍ରୁବ ବଂଶବର୍ଦ୍ଧନୀ ହୁଅ ତାକୁ ବିଭା ।। ୨୯ ।।
ଆପଣାମାନଙ୍କ ତେଜ ଅର୍ଦ୍ଧ କରେ କରି ।
ମୋହର ତେଜ ଅର୍ଦ୍ଧକେ ପୁଣି ଏହୁ ନାରୀ ।। ୩୦ ।।
ଯଉଂ ପୁତ୍ର ଜାତ ସେ ଯେ କରିବ ପ୍ରତ୍ୟକ୍ଷ ।
ସେ ମହାସୁବୁଦ୍ଧି ହେବ ନାମ ତାର ଦକ୍ଷ ।। ୩୧ ।।
ପ୍ରଜାପତି ହୋଇ ସେ କରିବ ପ୍ରଜାବୃଦ୍ଧି ।
ଶୁଣିମା ଯଉଂ ରୂପରେ କାର୍ଯ୍ୟ ହେବସିଦ୍ଧି ।। ୩୨ ।।
ମୋହର ଅଂଶରେ ଯେ ତୁମ୍ଭମାନଙ୍କ ତେଜରେ ।
ଯୁକ୍ତ ହୋଇ କରିଣ ଯେ ଅତ୍ୟନ୍ତ ନିର୍ଭରେ ।। ୩୩ ।।

୨୩. ଖ : ଏହା ବୋଲି ଜାଣ

ଅଗ୍ନି ଅନଗ୍ନି ଦୁଇରେ କରି ସମ ହୋଇ ।
ପ୍ରଜାମାନଙ୍କର ବୃଦ୍ଧି କରିବଟି ସେହି ॥ ୩୪ ॥
ସେ ମାରୀଷୀ କନ୍ୟା ଜାତ ହୋଇଲା ଯେମନ୍ତେ ।
ତାହା ତୁମ୍ଭଙ୍କୁ କହିବା ଶୁଣ ଏକ ଚିତ୍ତେ ॥ ୩୫ ॥
ପୂର୍ବକାଳେ କଣ୍ଡୁ ନାମେ ଥିଲେ ଏକ ମୁନି ।
ବେଦ ବିଦ୍ୟାମାନଙ୍କେ ଶ୍ରେଷ୍ଠ ସେ ମହାଜ୍ଞାନୀ ॥ ୩୬ ॥
ସେ ଋଷି ଗୋମତୀ ନଦୀ ତୀରେ ରମ୍ୟ ସ୍ଥାନେ ।
ପରମ ତପ କରନ୍ତେ ମହା ଯୋଗଧ୍ୟାନେ ॥ ୩୭ ॥
ସେ ତପରେ ଟଳିଲା ଯେ ଇନ୍ଦ୍ରଙ୍କ ଆସନ ।
ମୋ ପଦ ଘେନିବ ବୋଲି ଭୟେ ମଘବାନ ॥ ୩୮ ॥
ସେ ତପସ୍ୟା ଭଙ୍ଗ କରିବାର ପାଇଁ ମନେ ।
ପ୍ରମ୍ଲୋଚା ଅପସରାକୁ ପେଶିଲେ ସେ ସ୍ଥାନେ ॥ ୩୯ ॥
ଇନ୍ଦ୍ରଙ୍କର ଆଜ୍ଞା ପାଇବର ଅପସରା ।
ନାନା ବେଶମାନଙ୍କରେ ହୋଇ ଦିବ୍ୟତୋରା ॥ ୪୦ ॥
ଋଷି ତପସ୍ୟା ସ୍ଥାନକୁ ଯାଇ ବରାରୋହା ।
ମନ୍ଦହାସ ଅପାଙ୍ଗ ଭଙ୍ଗିରେ ଚାରୁ ଦେହା ॥ ୪୧ ॥
ଋଷି ଅଗ୍ରେ ଦେଖାଇଲା ନାନା କାମରସ ।
ଦେଖିବା ମାତ୍ରକେ ମୁନି ହେଲେ ତାର ବଶ୍ୟ ॥ ୪୨ ॥
ତପସ୍ୟା ଅନ୍ତର କରି ସ୍ୱର୍ଗ କନ୍ୟା ତୁଲେ ।
ଶଏ ବରଷ ମନ୍ଦର ପର୍ବତେ ରମିଲେ ॥ ୪୩ ॥
ଅନୁଭବ କଲେ ଯେଉଂ ଦେବସ୍ତିରୀ ରସ ।
ବିଷୟରେ ଆସକ୍ତ ଯେ ହୋଇଲା ମାନସ ॥ ୪୪ ॥
ଏହି ଅନୁରୂପରେ ବରଷ ଶଏ ଗଲା ।
ମହାତପ ଭଙ୍ଗ ହେଲା ଅପ୍ସରା ଜାଣିଲା ॥ ୪୫ ॥
ଏକଦିନେ ଋଷିଙ୍କି ଯେ ବୋଇଲା ଗାନ୍ଧର୍ବୀ ।
ହେ ମୁନି ଆଜ୍ଞା ହୋଇଲେ ସ୍ୱର୍ଗପୁର ଯିବି ॥ ୪୬ ॥
ସୁମୁଖ ହୋଇ ପ୍ରସନ୍ନେ ଆଜ୍ଞା ମତେ କର ।
ଅପ୍ସରା ତହୁଂ ଏମନ୍ତ ଶୁଣି ମୁନିବର ॥ ୪୭ ॥
ତାହାଠାରେ ଆସକ୍ତ ହେବାରୁଂ ଚିତ୍ତବୃତ୍ତି ।
ଯାଅ ବୋଲି ତୁଣ୍ଡେ ନ କହିଲେ ମହାଯତି ॥ ୪୮ ॥
ବୋଇଲେ ଗୋପ୍ରିୟା ଆଉ ଦିନା କେତେ ରହ ।
ତହିଂ ଉତ୍ତାରେଣ ଯିବା କଥା ପଛେ କହ ॥ ୪୯ ॥
ଏହାଶୁଣି ପ୍ରମ୍ଲୋଚା ନାମରେ ବିଦ୍ୟାଧରୀ ।
ମୁନି ସଙ୍ଗେ ବିଷୟମାନଙ୍କୁ ଭୋଗ କରି ॥ ୫୦ ॥

ନାନାକ୍ରୀଡ଼ା ରସେ ନେଲା ରଜନୀ ବାସର ।
ଏମନ୍ତେ କେତେ ଅଧିକ ଶଏ ସମ୍ବତ୍ସର ॥ ୫୧ ॥
ଭୋଗ କଲା ଅନ୍ତରେ ଯେ ଅମର ତରୁଣୀ ।
ମୁନିକି ଚାହିଁ ମେଲାଣି ମାଗିଲା କ ପୁଣି ॥ ୫୨ ॥
ହେ ଭଗବନ୍ତ ମତେ ହେ ଆଜ୍ଞା ଏବେ ଦିଅ ।
ବହୁତ କାଳ ହେଲାନି ଯିବି ସୁରାଳୟ ॥ ୫୩ ॥
ପୁଣି ମୁନି ବୋଇଲେ ରହ ତୁ ଦିନା କେତେ ।
ଯିବା କଥା ପଛେ ମୁଁ କହଇ ସିନା ତତେ ॥ ୫୪ ॥
ଏହା ଶୁଣି ପ୍ରମ୍ଲୋଚା ଯେ ପୁଣି ହି ରହିଲା ।
ପୁଣି ଶଏ ବରଷୁ ଅଧିକ ଭୋଗ କଲା ॥ ୫୫ ॥
ତହିଁ ଉତ୍ତାରେଣ ଯେ ବୋଇଲା ଚନ୍ଦ୍ରାନନା ।
ସ୍ୱର୍ଗକୁ ଯିବଇଂ ମୁନିଆଜ୍ଞା ଦିଅ କିନା ॥ ୫୬ ॥
ସ୍ନେହରେ ଅଳପ ହସି କହନ୍ତେ ଏମନ୍ତ ।
ସେ ଦୀର୍ଘ ନେତ୍ରୀକି କୋଳେ ଘେନି ତପୋବନ୍ତ ॥ ୫୭ ॥
ବୋଇଲେ ଅଳପଦିନ ସିନା ଅଛୁ ରହି ।
ଚିରକାଳ ଭୋଗ ଅନ୍ତେ ଯିବୁ ଚାନ୍ଦମୁହିଁ ॥ ୫୮ ॥
ଏହା ଶୁଣି ସୁଶ୍ରୋଣି ଯେ ସନମତ କଲା ।
ଶ୍ୟାପକୁ ଭୟ କରିଣ କିଛି ନ ବୋଇଲା ॥ ୫୯ ॥
ପୁନରପି ମୁନି ସଙ୍ଗେ ବାମା ତେଜି ବ୍ରୀଡ଼ା ।
କିଛି ଊଣା ଦୁଇଶ ବରଷ କଲା କ୍ରୀଡ଼ା ॥ ୬୦ ॥
ପୁଣି ଇନ୍ଦ୍ରଭୁବନକୁ ଯିବାର ଅର୍ଥରେ ।
ଆଜ୍ଞା ମାଗିଲା ଋଷିଙ୍କି ବିନୟ ଭାବରେ ॥ ୬୧ ॥
ତାହାଶୁଣି ମୁନି ଯେ ନିଷେଧ ପୁଣି କଲେ ।
ଏହି ରୂପେ ପ୍ରତିଥର ଯିବି ଯିବି ବୋଲେ ॥ ୬୨ ॥
ମୁନି ତହିଁ ପ୍ରତି କି ବୋଲନ୍ତି ରହ ରହ ।
ଏହା ଶୁଣି ସୁନ୍ଦରୀର ଛାଡ଼ିବା ଦୁଃସହ ॥ ୬୩ ॥
ବିଚାରିଲା ଆଜ୍ଞା ଭାଙ୍ଗିଗଲେ ଦେବେ ଶାପ ।
ନ ଗଲେ ପୂର୍ବ ନାୟକ କରିବ ବା କୋପ ॥ ୬୪ ॥
ଜାର ପ୍ରିତି ହୋଇଲେ ହେ ପୂର୍ବ ପତି ସ୍ନେହ ।
ଛାଡ଼ିବା ବିଷୟ ତାକୁ ହୋଇଲା ଦୁଃସହ ॥ ୬୫ ॥
ତେମନ୍ତେ ହେଲେ ହେ ଜାର ସଙ୍ଗ ସ୍ନେହ ଭଙ୍ଗେ ।
ଯେତେ ପୀଡ଼ା ତାହା ମାତ୍ର ନ ସହିଲା ଅଙ୍ଗେ ॥ ୬୬ ॥
ଏଣୁ କରି ମୁନିଙ୍କି ଛାଡ଼ିଲା ନାହିଁ ବାଳା ।
ଅହୋନିଶି କୋଳରେ ରହିଣ କ୍ରୀଡ଼ା କଲା ॥ ୬୭ ॥

ମଦନରେ ଆସକ୍ତ ହୋଇଣ ଚିତ୍ତବୃତ୍ତି ।
ତାହା ତୁଲେ ସନ୍ତତ ରମିଲେ ମହାଯତି ॥ ୬୮ ॥
ତେଣୁ କରି ନୂଆଁ ନୂଆଁ ପ୍ରେମ ହେଲା ଜାତ ।
ଅନ୍ୟୋନ୍ୟରେ ଛାଡ଼ିବାକୁ ନ ବଳିଲା ଚିତ୍ତ ॥ ୬୯ ॥
ଏହି ଅନୁକ୍ରମେ ପୁଣି କେତେ କାଳ ଗଲା ।
ଦିନେ ସନ୍ଧ୍ୟା କାଳେ ସନ୍ଧ୍ୟା ମନରେ ପଡ଼ିଲା ॥ ୭୦ ॥
ସେ କାଳେ ଗାନ୍ଧର୍ବୀ ପାଶୁଁ ହୋଇଲା ଅନ୍ତର ।
ପର୍ଣ୍ଣଶାଳାରୁଁ ବାହାର ହୋଇଣ ତତପର ॥ ୭୧ ॥
ତାହା ଦେଖି ବିଦ୍ୟାଧରୀ ମୁନିଙ୍କି ପଚାରି ।
କଉଂଠାକୁ ଯିବାକୁ ହେଉଛି ତପୋଚାରି ॥ ୭୨ ॥
ଦେବାଙ୍ଗନା ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ବୋଇଲେ କ ମୁନି ଅସ୍ତ ହୋଇଲେ ତରଣି ॥ ୭୩ ॥
ସନ୍ଧ୍ୟାଉପାସନା ଏବେ କରିବା କାଳରେ ।
ନ କଲେଣ କ୍ରିୟା ଲୋପ ହୋଇବ ନିର୍ଭରେ ॥ ୭୪ ॥
ନିତ୍ୟକର୍ମ ଅନ୍ୟଥା ହୋଇଲେ ବଡ଼ ଦୋଷ ।
ଏଣେକରି ଦେବପିତୃଙ୍କର ଅସନ୍ତୋଷ ॥ ୭୫ ॥
ଏ ସକାଶୁଁ ଦଣ୍ଡେ ମାତ୍ର ରହିଥାଅ କିନା ।
ସନ୍ଧ୍ୟା କର୍ମ ସାରିଲେ ଶୃଙ୍ଗାର କରି ସିନା ॥ ୭୬ ॥
ଋଷିଙ୍କର ଏ ବଚନ ଶୁଣି ଶୁଭ୍ରକେଶୀ ।
ଆନନ୍ଦରେ କହଇ ଅଳପ ହୋଇ ହସି ॥ ୭୭ ॥
ଆହେ ସର୍ବଜ୍ଞ ପୁରୁଷ କହିଲ କେମନ୍ତ ।
ମୋହ ତୁଲେ କ୍ରୀଡ଼ା କଲ ବହୁ ବର୍ଷଶତ ॥ ୭୮ ॥
ଏବେ ସନ୍ଧ୍ୟା କର୍ମ କାଳ ହେଲା ଯା ବୋଇଲ ।
ଏ ବିପରିତ କଥା କେମନ୍ତେ କହିଲ ॥ ୭୯ ॥
ଦେବକନ୍ୟା ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ପୁଣି ହିଁ ତପସ୍ୱୀ କହେ ଶୁଣ ପ୍ରାଣମଣି ॥ ୮୦ ॥
ପ୍ରଭାତରେ ତୁହିଂ ଆସି ଥିଲୁ ନଦୀ ତୀରେ ।
ମୁହିଂ ତତେ ଦେଖିଲି ଯେ ଯୋଗ ସମୟରେ ॥ ୮୧ ॥
ତହୁଁ ପୁଣି ଆସି ହେଲୁଂ ଆମ୍ଭର ଆଶ୍ରମେ ।
ଦିବସ ଯାକରେ କ୍ରୀଡ଼ା ହେଲା ସୁମଧ୍ୟମେ ॥ ୮୨ ॥
ଏବେ ଆସି ପ୍ରବେଶ ହେଲା ସାୟଂକାଳ ।
ଦିବସର ପରିପାକ ହୋଇଛି କେବଳ ॥ ୮୩ ॥
ସନ୍ଧ୍ୟାକର୍ମର ଏହୁ କି ନୁହଇ ସମୟ ।
ଏଥେ କାହିଁକି ହସିଲୁ କହତା ନିର୍ଣ୍ଣୟ ॥ ୮୪ ॥

ଏ ବଚନେ ପ୍ରମ୍ଳୋଚା କହଇ ମୁନି ଶୁଣ ।
ପ୍ରାତଃକାଳେ ମୁଁ ଆସିଲି ଏକଥା ପ୍ରମାଣ ।। ୮୫ ।।
ଯାହା ଆପଣ କହିଲ ନୁହଇ ଏ ମିଛ ।
ହେଲେକି ଏହି ରୂପରେ ପ୍ରାତ ଲକ୍ଷଲକ୍ଷ ।। ୮୬ ।।
ଆଜପରି କେତେ ଗଲା ନ ପାରିଲ ଜାଣି ।
ଶତେ ଶତେ ବରଷେଣ କେ ପାରିବ ଗଣି ।। ୮୭ ।।
କହୁଛନ୍ତି ସୋମ ହେ ପ୍ରଚେତାମାନେ ଶୁଣ ।
ଏ ରୂପେ ଗାନ୍ଧର୍ବୀ ଯହୁଁ କହିଲାକ ପୁଣ ।। ୮୮ ।।
ତାହା ଶୁଣି ମୁନି ଯେ ଅତ୍ୟନ୍ତ ତ୍ରସ୍ତ ହୋଇ ।
ସେ ଦୀର୍ଘ ନେତ୍ରୀବାଳାକୁ ପୁଣି ପଚାରଇ ।। ୮୯ ।।
ଆଗୋ ସୁନ୍ଦରୀ କହିବା ହେଉ ସତ୍ୟ ମତେ ।
ତୋହ ସେଙ୍ଗେ କ୍ରୀଡ଼ା କରୁଁ ଗଲା କାଳ କେତେ ।। ୯୦ ।।
ତାହାଶୁଣି ପ୍ରମ୍ଳୋଚା ବୋଲଇ ବିପ୍ରବର ।
ଭୋଗହେଲା ନବଶତ ସପ୍ତ ସମ୍ବତ୍ସର ।। ୯୧ ।।
ତାହାପରେ ଷଡ଼ମାସ ତିନିଦିନ ଗଲା ।
ଆପଣାଙ୍କୁ ସେ ପୁଣି ଦିବସେ ପ୍ରତେ ହେଲା ।। ୯୨ ।।
ଦେବକନ୍ୟା ଏମନ୍ତ କହନ୍ତେ ଋଷି ଭଣି ।
ପରିହାସ ତେଜି ସତ୍ୟ କହ ପ୍ରାଣମଣି ।। ୯୩ ।।
ତୋହ ସଙ୍ଗେ ରମିବାରୁଁ ଏକଦିନ ପରି ।
ମୋହ ମନେ ମଣି ଅଛି ଆଗୋ ବିଦ୍ୟାଧରି ।। ୯୪ ।।
ତୁହି ଯାହା କହୁଅଛୁ ଏ ବଚନ ଶୁଣି ।
ପରିହାସ କରେ ଅବା ଏହା ଅଛି ଜାଣି ।। ୯୫ ।।
ଏହାଶୁଣି ପ୍ରମ୍ଳୋଚା ଯେ ବୋଲଇ ଗୋସାଇଁ ।
ତୁମ୍ଭର ଆଗରେ ମିଛ କହିବି କି ମୁହିଁ ।। ୯୬ ।।
ବିଶେଷରେ ଆପଣ ତ ପଚାରିଲ ମତେ ।
ମୁନି ଧର୍ମ ମାନଙ୍କରେ ନିଯୁକ୍ତ ସଂତତେ ।। ୯୭ ।।
ତେଣୁ ମୁହିଁ କହିଲି ଏକଥା ଅଟେ ସତ ।
ଏଥିରେ ସନ୍ଦେହ ନାହିଁ ଆହେ ତପୋବନ୍ତ ।। ୯୮ ।।
କହୁଛନ୍ତି ସୋମ ଶୁଣ ପ୍ରଚେତା ସକଳେ ।
ଗାନ୍ଧର୍ବୀ ଏମନ୍ତ ଜହୁଁ କହିଲା ସେ କାଳେ ।। ୯୯ ।।
ତାହାଶୁଣି ତପସ୍ୱୀ ଯେ ନିର୍ବେଦ ହୋଇଲା ।
କି କରିବି ବୋଲିକରି ମନେ ବିଚାରିଲା ।। ୧୦୦ ।।
ପୁଣିହିଁ ବୋଇଲା ଧିକ ଧିକ ହେଉ ମତେ ।
ନିଷ୍ଫଳକୁ ଗଲା ଯେ ତପସ୍ୟା ମାନ ଯେତେ ।। ୧୦୧ ।।

ବ୍ରହ୍ମଜ୍ଞାନି ମାନଙ୍କର ଯେହୁ ଅଟେ ଧନ ।
ତାହି ମୋର ନାଶଗଲା ହୋଇଲି ଅଜ୍ଞାନ ॥ ୧୦୨ ॥
କଉଂ ଲୋକ ମୋହର ବିବେକ ନେଲା ହରି ।
ମୋହ ନିମିତ୍ତରେ ସ୍ତିରୀ ଏକ ଜାତ କରି ॥ ୧୦୩ ॥
କ୍ଷୁଧାତୃଷା ଶୋକ ମୋହ ଜରାମୃତ୍ୟୁ ଷଟ ।
ଏମାନଙ୍କୁ ତେଜି ଯଉଂ ବ୍ରହ୍ମେ ହୋଇ ଭେଟ ॥ ୧୦୪ ॥
ଆପଣା ଜୟ ଅର୍ଥରେ ଯାହାକୁଟି ଜାଣି ।
ସେ ବ୍ରହ୍ମକୁ ପାସୋରିଲି ହୃଦରେ ନ ମଣି ॥ ୧୦୫ ॥
ଏଣୁ କରି ମୋହ ଗତି ହରି ନେଲା ଯେହୁ ।
ସେ କାମ ମହାଗ୍ରହକୁ ଧିକ କିନା ହେଉ ॥ ୧୦୬ ॥
ବେଦାତ୍ମିକା ବିଦ୍ୟାଙ୍କର ପ୍ରାପ୍ତିର କାରଣ ।
ଏମନ୍ତ ଯେ ସର୍ବବ୍ରତ ହେଲା ଅକାରଣ ॥ ୧୦୭ ॥
ନରକ ଗ୍ରାମ ମାର୍ଗରେ ସଙ୍ଗ ହୋଇବାରୁଂ ।
ସକଳ ତପସ୍ୟା ତେଜ ଗଲା ଶରୀରରୁଂ ॥ ୧୦୮ ॥
ସ୍ୱଇଚ୍ଛାରେ ଆପଣାକୁ ଏମନ୍ତ ପ୍ରକାରେ ।
ନିନ୍ଦା କରି ଧର୍ମଜ୍ଞ ଯେ ତହିଂର ଉତ୍ତାରେ ॥ ୧୦୯ ॥
ଅପସରା ମୁଖ ଚାହିଂ ବୋଲଇ ବଚନ ।
ଯାଅଲୋ ପାପିନୀ ତୁହି ଏଠାରୁଂ ବହନ ॥ ୧୧୦ ॥
ଯାଅ ତୁହି କରିବାର କଲୁ ତୁ ସମସ୍ତ ।
ସମ୍ପୂର୍ଣ୍ଣ ହୋଇଲା ଏବେ ତୋର ମନୋରଥ ॥ ୧୧୧ ॥
ଭାବଚେଷ୍ଟା ମାନଙ୍କରେ କରି ଇନ୍ଦ୍ରକାର୍ଯ୍ୟ ।
ମତେ କ୍ଷୋଭ କରାଇଣ କଲୁ ତୁ ନିର୍ଲଜ୍ଜ ॥ ୧୧୨ ॥
ଏଣୁ କରି ତତେ ଭସ୍ମ କରିବି ମୁ ଏବେ ।
କ୍ରୋଧ ଅଗ୍ନି ହୃଦେ ଯା ଜଳୁଛି ତୀବ୍ର ଭାବେ ॥ ୧୧୩ ॥
ହେଲେ କି ସଜ୍ଜନଙ୍କର ଏହି କଥାମାତ୍ର ।
ସାତ ପାଦ ଯାହା ସଙ୍ଗେ ଯାଇ ସେହୁ ମିତ୍ର ॥ ୧୧୪ ॥
ଏ ନୋହିଂ ତୋହର ସଙ୍ଗେ ଚିରକାଳ ମୁହିଂ ।
ଅତି ସୁଖେ କ୍ରୀଡ଼ା କଲି ଦିନ ବଞ୍ଚିଲଇଂ ॥ ୧୧୫ ॥
ତେଣୁ ତୋହର ଏବେ ଗୋ କିଛି ନାହିଂ ଦୋଷ ।
ତୋହଠାରେ କ୍ରୋଧ କଲେ ହୋଇବା କ କିସ ॥ ୧୧୬ ॥
ଆମ୍ଭ ଏ ଦୋଷ ଅତ୍ୟନ୍ତେ ହୋଇଅଛି ସିନା ।
ଇନ୍ଦ୍ରିୟ ବିକାର ଯେଣୁ କରି ନାହିଂ ବିନା ॥ ୧୧୭ ॥
ଏଣୁ କରି ଯୋଗୀଙ୍କ ଲକ୍ଷଣ ଆମ୍ଭ ନାହିଂ ।
ତତେ ଶାପ ଦେବାର ଗୋ ଉଚିତ ନୁହଇ ॥ ୧୧୮ ॥

ଶକ୍ରଙ୍କର ପ୍ରିୟ କଥା ବାଞ୍ଛା କରି ମନେ ।
ମୋହ ତପ କ୍ଷୟକଲୁ ଯାହା ଯତଂବନେ ॥ ୧୧୯ ॥
ଏଣୁକରି ନିନ୍ଦ୍ୟ ତୁହି ତତେ ଧିକ ହେଉ ।
ଯେଣୁ ମହାମୋହର ମଞ୍ଜୁଷା ରୂପ ବହୁ ॥ ୧୨୦ ॥
ପୁନଃପୁନଃ କରି ସୁମଧ୍ୟାକୁ ତପଚାରି ।
ଏମନ୍ତ ବୋଲିଣ ଯହୁଂ କହିଲେ ଧିକ୍କାରି ॥ ୧୨୧ ॥
ତାହାଶୁଣି ଗାନ୍ଧର୍ବୀ ଭୟରେ ଥରହର ।
ଝାଳରେ ସର୍ବାଙ୍ଗ ଯାକ ହେଲା ଜର ଜର ॥ ୧୨୨ ॥
ଏମନ୍ତ କରିଣ ତାକୁ ଦେଖି ମହାମୁନି ।
କ୍ରୋଧେ ବୋଇଲେ ଏଠାଗୁଂ ଯାଅ ଲୋ ପାପିନୀ ॥ ୧୨୩ ॥
ମୁନିଙ୍କ ତହୁଂ ଏମନ୍ତ ପାଇଣ ଭର୍ତ୍ସନା ।
ଆଶ୍ରମରୁଂ ବାହାର ହୋଇଲା ବାରାଙ୍ଗନା ॥ ୧୨୪ ॥
ଆକାଶକୁ ଯିବାକୁ ବିଚାର ଚିତ୍ତେ କରି ।
ତରୁବରେ ଆରୋହଣ କଲା ବିଦ୍ୟାଧରୀ ॥ ୧୨୫ ॥
ଶରୀରୁଂ ଅତିଶୟେ ସ୍ୱେଦ ବହୁଥିଲା ।
ତରୁ ପଲ୍ଲବରେ କରି ସେମାନ ପୋଛିଲା ॥ ୧୨୬ ॥
ଏ ବୃକ୍ଷରୁ ସେ ବୃକ୍ଷକୁ ଉଠିଯିବାବେଳେ ।
ଝାଳବିନ୍ଦୁମାନ ପୁଣି ଶ୍ରବିଲା ପ୍ରବଳେ ॥ ୧୨୭ ॥
ସେ ସର୍ବ ତରୁ ପଲ୍ଲବ ମାନଙ୍କରେ ପୋଛି ।
ଗମନ କଲା ଚଞ୍ଚଳ ମୃଗଶାବକାକ୍ଷୀ ॥ ୧୨୮ ॥
ଶୃଙ୍ଗାର ସମ ଏ ମହାଋଷି ବୀର୍ଯ୍ୟେ କରି ।
ଯେବଣ ଗର୍ଭକୁ ଧରିଥିଲା ବିଦ୍ୟାଧରି ॥ ୧୨୯ ॥
ସେ ପୁଣି ସର୍ବାଙ୍ଗ ଯାକେ ବ୍ୟାପ୍ତ ହୋଇଥିଲା ।
ଯେତେବେଳେ ରୋମଦ୍ବମେ ସ୍ୱେଦ ଜନମିଲା ॥ ୧୩୦ ॥
ସେହି ସଙ୍ଗେ ବାହାର ହୋଇଣ ମହାରେତ ।
ସର୍ବବୃକ୍ଷ ପଲ୍ଲବେ ହୋଇଲା ଅଭିଷିକ୍ତ ॥ ୧୩୧ ॥
ବୃକ୍ଷମାନେ ସେ ଗର୍ଭକୁ ଧଇଲେ ଯତନେ ।
ବାୟୁ ଗୋଟି କରିଣ ରଖିଲା ଏକ ସ୍ଥାନେ ॥ ୧୩୨ ॥
ସେ ଗର୍ଭକୁ ମୁହିଂ ପୁଣି କିରଣମାନଙ୍କେ ।
ଆପ୍ୟାୟିତ କରିଣ ରଖିଲି ମହା ସୁଖେ ॥ ୧୩୩ ॥
ସେ କାଳେ ସେ ପୁଣି ନିତ୍ୟେ କ୍ରମରେ ବଢ଼ିଲା ।
ବୃକ୍ଷ ଗର୍ଭରୁ କନ୍ୟା ଏ ଜାତ ହେଲା ॥ ୧୩୪ ॥
ମାରୀଷା ନାମରେ ସେ ଅଟଇ ବରଙ୍ଗନା ।
ପରମସୁନ୍ଦରୀ ମହା ସୁଲକ୍ଷଣୀ କନ୍ୟା ॥ ୧୩୫ ॥

ତାହା ବୃକ୍ଷମାନେ ତୁମ୍ଭ ନିମିତ୍ତରେ ଦେବେ ।
ଆହେ ରାଜପୁତ୍ରେ କୋପ ନ କରିବା ଏବେ ॥ ୧୩୬ ॥
ମାରୀଷା ନାମରେ ଯଉଂ ସୁଲକ୍ଷଣା-ବତୀ ।
କଣ୍ଡୁ ମହରଷିଙ୍କର ଅଟେ ସେ ସନ୍ତତି ॥ ୧୩୭ ॥
ସର୍ବବୃକ୍ଷମାନଙ୍କରୁ ହୋଇଛି ସମ୍ଭୂତ ।
ସେହି ରୂପେ ମୋର ପୁଣି ଅଟଇ ଅପତ୍ୟ ॥ ୧୩୮ ॥
ପବନର ସେହି ରୂପେ ଅଟଇ ତନୟା ।
ପ୍ରମ୍ଲୋଚା ବିଦ୍ୟାଧରୀର ପୁତ୍ରୀ ପୁଣ୍ୟ-ଦେହା ॥ ୧୩୯ ॥
ତହିଁ ଉତ୍ତାରେ ପୁଣି କଣ୍ଡୁ ମହାମୁନି ।
କ୍ଷୀଣ ତପ ହୁଅନ୍ତେ ଅପ୍ସରା ସଙ୍ଗେ ଘେନି ॥ ୧୪୦ ॥
ପୁରୁଷୋତ୍ତମ ନାମରେ ଯଉଂ କ୍ଷେତ୍ରବର ।
ସେ ବିଷ୍ଣୁ ସ୍ଥାନକୁ ଗଲେ ତପସ୍ୱୀ ଶେଖର ॥ ୧୪୧ ॥
ସେ ସ୍ଥାନରେ ଏକାଗ୍ରମାନସ ହୋଇ ରହି ।
ବ୍ରହ୍ମପାର ତପ କଲେ ହରିପାଦ ଧ୍ୟାଇ ॥ ୧୪୨ ॥
ଊର୍ଦ୍ଧ୍ୱବାହୁ ହୋଇଣ ରହି ସେ ମହାଯୋଗୀ ।
ବିଷ୍ଣୁ ଆରାଧିଲେ ସର୍ବ କର୍ମ ପରିତ୍ୟାଗି ॥ ୧୪୩ ॥
ଚନ୍ଦ୍ରତହୁଂ ଏହାଶୁଣି ସକଳ ପ୍ରଚେତା ।
ପଚାରିଲେ କହ ବ୍ରହ୍ମପାରସ୍ତବ କଥା ॥ ୧୪୪ ॥
ଯଉଂ ବ୍ରହ୍ମପାରସ୍ତବ ମୁଖରେ ଉଚ୍ଚାରି ।
କଣ୍ଡୁଋଷି ଆରାଧନା କଲେ ଦେବହରି ॥ ୧୪୫ ॥
ପ୍ରଚେତାମାନଙ୍କତହୁଂ ଏ ବଚନ ଶୁଣି ।
କହୁଛନ୍ତି କଳାକର ଶୁଣ ବୀରମଣି ॥ ୧୪୬ ॥
ଯେବଣ ବ୍ରହ୍ମପାରରେ କଣ୍ଡୁ କଲେ ସ୍ତୁତି ।
ତା' ଉଚ୍ଚାରଣ କରୁଛୁଂ ଦିଅ ଏଥେ ମତି ॥ ୧୪୭ ॥
ପାରପର ବିଷ୍ଣୁ ସେ ଅପାର ପାରପର ।
ପରମାନଙ୍କର ପର ଆତ୍ମାରୂପୀଶ୍ୱର ॥ ୧୪୮ ॥
ସେହି ବ୍ରହ୍ମ ପାରପର ପାରଭୂତ ପର ।
ପରମାନଙ୍କର ପୁଣି ଅଟେ ପାରପାର ॥ ୧୪୯ ॥
ସେହି କାରଣ କାରଣ ସଂଶ୍ରିତ ହି ସେହି ।
ତାହେତୁ ପରମ ହେତୁ ହେତୁ ଅଛି ହୋଇ ॥ ୧୫୦ ॥
ସର୍ବକର୍ମକର୍ତ୍ତୃ ରୂପମାନଙ୍କରେ କରି ।
ସର୍ବକାର୍ଯ୍ୟେ ସମସ୍ତ ରଖଇ ସେହି ହରି ॥ ୧୫୧ ॥
ସେହି ବ୍ରହ୍ମ ବ୍ରହ୍ମପ୍ରଭୁ ସେହି ସର୍ବଭୂତ ।
ବ୍ରହ୍ମ ପ୍ରଜାମାନଙ୍କର ପତି ସେ ଅଚ୍ୟୁତ ॥ ୧୫୨ ॥

୧୪୫. ବ୍ରହ୍ମପାରସ୍ତବ = ବ୍ରହ୍ମ ପରାୟଣସ୍ତବ; ଏହାର ଅର୍ଥ ଅତ୍ୟନ୍ତ ଗୂଢ଼ । ବ୍ୟାଖ୍ୟା କଲା ବେଳେ ଟୀକାକାରମାନେ ମଧ ଝୁଣ୍ଟିଛନ୍ତି । ଏଣୁ ବଲ୍ଲଭ ନାରାୟଣ ସ୍ତବଟିର ଅନୁବାଦ କଲାପରେ ସ୍ୱତନ୍ତ୍ରଭାବେ ପୁଣି ଏହାର ଅର୍ଥ ବୁଝାଇଛନ୍ତି ।

ସେହି ବ୍ରହ୍ମ ଅବ୍ୟୟ ସେ ସେହି ନିତ୍ୟ ଅଜ ।
ଅପକ୍ଷୟାଦିରେ ଅସଦ୍‌ଗତ ଅଧୋକ୍ଷଜ ॥ ୧୫୩ ॥
ସେ ପୁରୁଷୋତ୍ତମ ବ୍ରହ୍ମାକ୍ଷର ଅଜ ନିତ୍ୟ ।
ଯଉଁ ରୂପେ ଆପେ ହୋଇଛନ୍ତି ଆବିର୍ଭୂତ ॥ ୧୫୪ ॥
ସେହି ରୂପେ ମୋହର ରାଗାଦି ଦୋଷମାନେ ।
ସମସ୍ତେ ଯାଆନ୍ତୁ ନାଶ ତାହାର ପ୍ରସନ୍ନେ ॥ ୧୫୫ ॥
ଏହି ବ୍ରହ୍ମପାରସ୍ତବ ଅର୍ଥ ଏବେ ଶୁଣ ।
ଅତି ସ୍ଫୁଟ ରୂପରେ କରିବା ବିବରଣ ॥ ୧୫୬ ॥
ପାର ବୋଲିକରିଣ ଯେ କହିଅଛି ଯାହା ।
ସଂସାର ମାର୍ଗ ଅବଧି ସେଟି ଲକ୍ଷ୍ମୀ ନାହା ॥ ୧୫୭ ॥
ପର ବୋଲିକରି ଯା ଆବୃତ୍ତି ଶୂନ୍ୟ ସେହି ।
ଜହିଁକି ଗଲେ ପୁନରାବୃତ୍ତି ପୁଣି ନାହିଁ ॥ ୧୫୮ ॥
ସବୁଠାରେ ବ୍ୟାପୀବାରୁଁ ବିଷ୍ଣୁ ନାମ ତାର ।
ସଂସାରିକି ତାରିବାରୁଁ ସେ ଅପାର ପାର ॥ ୧୫୯ ॥
ଜଳସ୍ଥଳ ଅନଳ ଯେ ଅନୀଳ ଆକାଶ ।
ଏମାନଙ୍କୁ ପର ବୋଲିଟି ହେ ନୃପଶିଷ୍ୟ ॥ ୧୬୦ ॥
ସେମାନରୁଁ ପ୍ରଧାନ ହେବାରୁଁ ସେହୁ ପର ।
ପରମାତ୍ମା ସ୍ୱରୂପ ସେ ସାକ୍ଷାତ ଈଶ୍ୱର ॥ ୧୬୧ ॥
ବ୍ରହ୍ମପାର ବୋଲିକରି ଯାହା ଅଛି କହି ।
ବେଦ ଜାଣିମାରେ ସେ ଯେ ସମ୍ବନ୍ଧ ଅଟଇ ॥ ୧୬୨ ॥
ବ୍ରହ୍ମାୟୁଷ ସମାପ୍ତିରେ ବି ଅବଧିଭୂତ ।
ପରପାର ତାହାକୁ ବୋଲିଟି ରାଜସୁତ ॥ ୧୬୩ ॥
ପରମାନଙ୍କର ପର ବୋଲିଟି ହୋ ଯାହା ।
ଇନ୍ଦ୍ରିୟରୁ ଭିନ୍ନ ସେ ଯେ ଜଗତର ନାହା ॥ ୧୬୪ ॥
ନିରୂପାଧିତ୍ୱରେ କରି ଯେ ପରମେଶ୍ୱର ।
ପାରପାର ବୋଲି ତାକୁ କହି ହେ କୁମର ॥ ୧୬୫ ॥
ବ୍ରହ୍ମାଦିମାନଙ୍କୁ ପୁଣି ପାଳିବାରୁଁ କରି ।
ପାରପାର ଏମନ୍ତ ବୋଲନ୍ତି ଦେବହରି ॥ ୧୬୬ ॥
ସେ ଯଉଂ ପରମବିଷ୍ଣୁ ସର୍ବଙ୍କ କାରଣ ।
ହେତୁ ତ୍ରୟମାନଙ୍କର ସଂଶ୍ରିତ ଯେ ପୁଣ ॥ ୧୬୭ ॥
ସଂସାରର ହେତୁ ପୁଣି ବ୍ରହ୍ମାଦି ଯେ କହି ।
ତାହାଙ୍କ ପରମ ହେତୁଭୂତ ଯେ ହୁଅଇ ॥ ୧୬୮ ॥
ତାହାଙ୍କର କାରଣ ସେ ଅଟଇ ଅଚ୍ୟୁତ ।
ଏଥୁଁ ଉତ୍ତାରେଣ ଶୁଣିମାହେ ନୃପସୁତ ॥ ୧୬୯ ॥

ସର୍ବ ନିଜ ରୂପମାନଙ୍କରେ କରି ପୁଣି ।
ଯେହ୍ନୁ ସର୍ବ ସଂସାରେ ରଖାଇ ସର୍ବପ୍ରାଣୀ ॥ ୧୭୦ ॥
ଯଉଂ ବିଷ୍ଣୁ ଶୁଦ୍ଧ ବ୍ରହ୍ମ ହୁଅନ୍ତେଣ ପ୍ରଭୁ ।
ବ୍ରହ୍ମ ହୋଇ ସର୍ବଭୂତେ ବିହରନ୍ତି ବିଭୁ ॥ ୧୭୧ ॥
ବ୍ରହ୍ମ ହୋଇକରି ପ୍ରଜା ପାଳକ ସେ ହରି ।
ଏ ରୂପେ କେତେ କହିବି ଆଦ୍ୟପ୍ରାନ୍ତ କରି ॥ ୧୭୨ ॥
ଏମନ୍ତ ପ୍ରକାରେ ବ୍ରହ୍ମପାର ନାମେ ସ୍ତବ ।
ଏହା ନିତ୍ୟେ ଜପିଲେ ଯେ ଘେନି ଭକ୍ତିଭାବ ॥ ୧୭୩ ॥
ତହୁଁ ପରମ ସିଦ୍ଧି କି ପାଇଲେ ତପସ୍ୱୀ ।
ଏ ରୂପେ ଶୁଣି ମାରୀଷା ଚରିତ ବିଶେଷି ॥ ୧୭୪ ॥
ଏମନ୍ତ ପ୍ରକାରେ ଅଛି ମାରୀଷାସୁନ୍ଦରୀ ।
ତାହାକୁ ତୁମ୍ଭମାନଙ୍କୁ ଦେବା ବିଭା କରି ॥ ୧୭୫ ॥
ଏହା ଚରିତ କଥନେ ତୁମ୍ଭମାନଙ୍କର ।
ଫଳପ୍ରଦ ହେବ କାର୍ଯ୍ୟ ଗୌରବ ନିକର ॥ ୧୭୬ ॥
ସେ କନ୍ୟା ପୂର୍ବଜନ୍ମରେ ରାଜ ମହାଦେଈ ।
ପୁତ୍ର ନୋହୁଁ ପତି ଗଲା ପରଲୋକ ହୋଇ ॥ ୧୭୭ ॥
ସେ କାରଣୁ ବିଷ୍ଣୁଙ୍କୁ ଯେ ସେବା କଲା ସତୀ ।
ତା' ଭକ୍ତି ଦେଖିଣ ପ୍ରସନ୍ନ ରମାପତି ॥ ୧୭୮ ॥
ବୋଇଲେ ବରମାଗ ଗୋ ନୃପତି ରମଣୀ ।
ଯାହା ବାଞ୍ଛା କରିଛୁ ତା' ଦେବା ଏହିକ୍ଷଣି ॥ ୧୭୯ ॥
ବିଷ୍ଣୁଙ୍କର ଶ୍ରୀମୁଖୁଁ ଏମନ୍ତ ଆଜ୍ଞାପାଇ ।
କରପତ୍ର ଯୋଡ଼ିଣ କହଇ ମହାଦେଈ ॥ ୧୮୦ ॥
ଭୋ ପ୍ରଭୁ ବାଳକ କାଳୁ ହୋଇଲି ବିଧବା ।
ଏ ଜନ୍ମ ମୋ ବିଅର୍ଥ ଅଧିକ କି କହିବା ॥ ୧୮୧ ॥
ହୀନ ଭାଗ୍ୟ ଘେନିଣ ହୋଇଲି ଯହୁଁ ଜାତ ।
ତେଣୁ ବିଫଳ ହୋଇଲା ମୋହର ଜୀବିତ ॥ ୧୮୨ ॥
ଏଣୁକରି ଏତେ ମାତ୍ର ମାଗୁଅଛି ବର ।
ପ୍ରତି ଜନ୍ମେ ବହୁ ପତି ହୋଇବେ ମୋହର ॥ ୧୮୩ ॥
ଅତିଶ୍ଲାଘ୍ୟେ ହୋଇବେ ସେ ଜଗତେ କାରଣ ।
ପୁତ୍ର ଏକ ହେବ ସେ ଯେ ବ୍ରହ୍ମର ସମାନ ॥ ୧୮୪ ॥
ମୁହିଁ ଜନ୍ମିଲେ ହୋଇବି ଅଯୋନିସମ୍ଭୂତା ।
ଦିବ୍ୟ ରୂପ ସମ୍ପତ୍ତିରେ ହୋଇ କରି ଯୁକ୍ତା ॥ ୧୮୫ ॥
ସମସ୍ତେ ସାଦର ହୋଇ ଅନାଇବେ ମତେ ।
ଏହି ବର ଆଜ୍ଞା ହେଉ ପ୍ରଭୁ ତୋଷ ଚିତ୍ତେ ॥ ୧୮୬ ॥

କହୁଛନ୍ତି ସୋମ ଶୁଣ ନୃପତି କୁମରେ ।
ଏମନ୍ତ ପ୍ରକାରେ ଯହୁଁ ପ୍ରଭୁଙ୍କ ଛାମୁରେ ॥ ୧୮୭ ॥
ନୃପବାମା ଜଣାନ୍ତେଣ ବିଧିବନ୍ତ କରି ।
ତାହାଶୁଣି ସନ୍ତୋଷ ଯେ ହୋଇଲେ ଶ୍ରୀହରି ॥ ୧୮୮ ॥
ପାଦତଳେ ଯହୁଁ ପଡ଼ିଥିଲା ଦିବ୍ୟନାରୀ ।
ତାକୁ ତୋଳି ବସାଇଲେ ଶ୍ରୀହସ୍ତରେ କରି ॥ ୧୮୯ ॥
ବୋଇଲେ ଶୁଣ ଗୋ ସାଧ୍ୱୀ ମାଗିଲୁ ତୁ ଯାହା ।
ଅବଶ୍ୟ ଶ୍ରୀମୁଖେ ଆଜ୍ଞା କରି ଦେଲୁ ତାହା ॥ ୧୯୦ ॥
ସେହି ରୂପେ ଅନ୍ୟ ଜନ୍ମେ ଦଶ ପତି ହେବେ ।
ଉଦାର କର୍ମମାନଙ୍କେ ପ୍ରଖ୍ୟାତ ହୋଇବେ ॥ ୧୯୧ ॥
ମହାପରାକ୍ରମବନ୍ତ ହେବେ ପୁଣି ସେହି ।
ପୁତ୍ର ଏକ ଜନ୍ମିବ ତଦନୁରୂପ ହୋଇ ॥ ୧୯୨ ॥
ପ୍ରଜାପତି ଗୁଣମାନଙ୍କରେ ହେବ ଯୁକ୍ତ ।
ଅତିହି ମହାତ୍ମା ବୀର୍ଯ୍ୟବନ୍ତ ସୁପଣ୍ଡିତ ॥ ୧୯୩ ॥
ବଂଶମାନଙ୍କ କର୍ତ୍ତା ସେ ଜଗତରେ ହେବ ।
ତାହା ସନ୍ତତିମାନଙ୍କେ ଜଗତ ପୁରିବ ॥ ୧୯୪ ॥
ସେହି ରୂପେ ଅଯୋନିରୁ ଜନ୍ମ ହେବୁ ତୁହି ।
ସୁରୂପ ଉଦାର ଗୁଣାଦିରେ ଯୁକ୍ତ ହୋଇ ॥ ୧୯୫ ॥
ସର୍ବଜନଙ୍କର ମନ ପ୍ରୀତି କରାଇବୁ ।
ପତିବ୍ରତା ସକଳ ସଂସାରେ ବୋଲାଇବୁ ॥ ୧୯୬ ॥
ମୋହର ପ୍ରସାଦୁଂ ଏହା ଅବଶ୍ୟ ହୋଇବ ।
ଏହା ବୋଲି ଅନ୍ତର୍ଧ୍ୟାନ ହେଲେ ବାସୁଦେବ ॥ ୧୯୭ ॥
ବିଷ୍ଣୁ ମୁଖୁଂ ଏହା ଶୁଣି ବିଶାଳ ନୟନା ।
ପରମ ସନ୍ତୋଷ ହେଲା ନୃପତି ଅଙ୍ଗନା ॥ ୧୯୮ ॥
ସେହି ଜାତ ହୋଇ ନାମ ବହିଛି ମାରୀଷା ।
ତୁମ୍ଭମାନଙ୍କର ପତ୍ନୀ ହେବ ସେହୁ ଯୋଷା ॥ ୧୯୯ ॥
କହୁଛନ୍ତି ପରାଶର ମଇତ୍ରେୟ ଶୁଣ ।
ଏମନ୍ତ କହିଲେ ଯହୁଁ ରୋହିଣୀରମଣ ॥ ୨୦୦ ॥
ତା ଶୁଣି ପ୍ରଚେତାମାନେ ସନମତ କଲେ ।
ବୃକ୍ଷମାନଙ୍କରଠାରେ କୋପ ସଂହରିଲେ ॥ ୨୦୧ ॥
ଧର୍ମପତ୍ନୀ କରିଣ ଯେ ମାରୀଷା କନ୍ୟାକୁ ।
ଚନ୍ଦ୍ରବିଭା କରାଇଣ ଗଲେ ତ୍ରିଦିବଙ୍କୁ ॥ ୨୦୨ ॥
ମାରୀଷାକୁ ବିଭା ହୋଇ ସେ ଦଶ ପ୍ରଚେତା ।
ମହାସୁଖେ କ୍ରୀଡ଼ା କଲେ ହୋଇଣ ଅଚିନ୍ତା ॥ ୨୦୩ ॥

କେତେକାଳ ଅନ୍ତରେ ସେ ହେଲା ଗର୍ଭବତୀ ।
ତହିଁରୁଂ ଜନମ ହେଲେ ଦକ୍ଷ ପ୍ରଜାପତି ।। ୨୦୪ ।।
ପୂର୍ବକାଳେ ବ୍ରହ୍ମାର ଯେ ପୁତ୍ର ହୋଇଥିଲେ ।
ସେହି ଏକା ମାରୀଷା ଗର୍ଭରୁଂ ଜନମିଲେ ।। ୨୦୫ ।।
ସେ ଦକ୍ଷ ପୁଣି ଆପଣାଠାରୁଂ ସୃଷ୍ଟି ଅର୍ଥେ ।
ପୁତ୍ରମାନ ଜାତ କଲେ ବୃଦ୍ଧିର ନିମନ୍ତେ ।। ୨୦୬ ।।
ନୀଚ ଶ୍ରେଷ୍ଠ କରିଣ ସକଳ ଚରାଚରେ ।
ଯେତେକ ଜୀବ ଦ୍ୱିପଦ ଚତୁଷ୍ପଦାକାରେ ।। ୨୦୭ ।।
ବ୍ରହ୍ମାଙ୍କର ଆଜ୍ଞା ଘେନି ସୃଷ୍ଟି ଅର୍ଥେ କରି ।
ସମାହିତ ହୋଇ ସର୍ବ ସଂଚିଲେ ବିଚାରି ।। ୨୦୮ ।।
ହର୍ଯ୍ୟକ୍ଷାଦି ଯେତେକ ମାନସ ସୃଷ୍ଟି ମାନେ ।
ଏ ସର୍ବସର୍ଜିଲେ ଦକ୍ଷ ଉତ୍ତମ ବିଧାନେ ।। ୨୦୯ ।।
ଅତର୍କିତରେ ସେମାନେ ଯହୁଂ ନାଶ ଗଲେ ।
ତହୁଂ ପୁଣି ପଛେ ଦକ୍ଷ ସ୍ତିରୀ ସୃଷ୍ଟି କଲେ ।। ୨୧୦ ।।
ଦକ୍ଷଙ୍କ ନନ୍ଦିନୀ ସେ ଯେ ପଞ୍ଚାଶତେ ହେଲେ ।
ଧର୍ମଦେବତାଙ୍କୁ ତହୁଂ ଦଶ କନ୍ୟା ଦେଲେ ।। ୨୧୧ ।।
କଶ୍ୟପଙ୍କୁ ତେର କନ୍ୟା ଦେଲେକ ଯେ ପୁଣି ।
ତହିଂ ଉତ୍ତାରେଣ ଶୁଣିମା ହୋ ମୁନିମଣି ।। ୨୧୨ ।।
କାଳ ଜ୍ଞାନେ ଯୁକ୍ତ ହୋଇଥିଲେ ଯେତେ ନାରୀ ।
ସେ ସତାଇଶ ହୋଇଲେ ଚନ୍ଦ୍ର ମନୋହାରୀ ।। ୨୧୩ ।।
ସେହିଠାରୁ ଆରମ୍ଭି ମୈଥୁନ ସୃଷ୍ଟି ହେଲା ।
ସେ କନ୍ୟାମାନଙ୍କଠାରୁଂ ବହୁ ସମ୍ଭବିଲା ।। ୨୧୪ ।।
ଦେବଗନ୍ଧର୍ବ ଅପ୍ସରା ଦାନବ ଯେ ଦୈତ୍ୟ ।
ଗଜ ଗାବ ଖରାଦି ହୋଇଲେ ସର୍ବ ଜାତ ।। ୨୧୫ ।।
ପୂର୍ବକାଳେ ଥିଲେ କ ତପସ୍ୱୀମାନେ ଯେତେ ।
ତପ ବିଶେଷ ମାନଙ୍କେ ସୁଦିପ୍ତ ସନ୍ତତେ ।। ୨୧୬ ।।
ତାଙ୍କ ସଂକଳ୍ପରୁଂ ଦର୍ଶନ ସ୍ପର୍ଶନରୁଂ ।
ପ୍ରଜାମାନ ହୋଇଲେ ନାନା ଉପାୟରୁଂ ।। ୨୧୭ ।।
ଦକ୍ଷଠାରୁଂ ହେଲା ଏକା ମଇଥୁନ ସୃଷ୍ଟି ।
ଏହା ଉତ୍ତମ କରିଣ ଜାଣ ତପୋନିଷ୍ଠି ।। ୨୧୮ ।।
ଏହାଶୁଣି ପୁଣି ହି ଯେ ମୈତ୍ରେୟ ପଚାରି ।
ପୂର୍ବେ ତ କହିଛ ଶୁଣି ଅଛୁଂ ତପୋଚାରି ।। ୨୧୯ ।।
ପିତାମହଙ୍କ ଦକ୍ଷିଣ ଅଙ୍ଗୁଷ୍ଠିରୁଂ ଦକ୍ଷ ।
ଜାତ ହୋଇଅଛନ୍ତି ଏ ଅଟଇ ପ୍ରତ୍ୟକ୍ଷ ।। ୨୨୦ ।।

ପୁଣି ଏବେ କହିଲ ଯେ ପ୍ରଚେତାଙ୍କ ପୁତ୍ର ।
ଏହା କି ରୂପେ ହୋଇଲା ଅତି ହି ବିଚିତ୍ର ।। ୨୨୧ ।।
ଏବଡ଼ ସନ୍ଦେହ ମୋର ହୃଦେ ହେଲା ଜାତ ।
ସଂଶୟ ଫିଟାଇ କହିବାକ ତପୋବନ୍ତ ।। ୨୨୨ ।।
ଯେହୁ ଚନ୍ଦ୍ରଙ୍କ ଦୁହିତାସୁତ ହୋଇଥିଲେ ।
ସେ ପୁଣି କେମନ୍ତେ ତାଙ୍କ ଶଶୁର ହୋଇଲେ ।। ୨୨୩ ।।
ଏହି କଥାକୁ ସନ୍ଦେହ ଲାଗିଲା କ ମତେ ।
ଏହା ନିର୍ମଳ କରିଣ କହ ତୋଷ ଚିତ୍ତେ ।। ୨୨୪ ।।
ମଇତ୍ରେୟ ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
ପରାଶର କହନ୍ତି ଶୁଣ ହୋ ମୁନି ମଣି ।। ୨୨୫ ।।
ସବୁକାଳେ ଉତ୍ପତ୍ତି ବିନାଶ ଏହୁ ଦୁଇ ।
ପ୍ରାଣୀମାନଙ୍କରେ ନିତ୍ୟ ହୋଇଣ ଅଛଇ ।। ୨୨୬ ।।
ଏ ବିଷୟେ ଋଷିମାନେ ମୋହିତ ନୁହନ୍ତି ।
ଯେ ପୁଣି ଜ୍ଞାନ ଚକ୍ଷୁରେ ସର୍ବ ଦେଖୁଥାନ୍ତି ।। ୨୨୭ ।।
ଦକ୍ଷକୁ ଆଦି କରିଣ ଯେତେ ପ୍ରଜାପତି ।
ପ୍ରତିକଳ୍ପମାନଙ୍କରେ ସମ୍ଭବ ହୁଅନ୍ତି ।। ୨୨୮ ।।
ପୁଣିହିଂ ଲୀନ ହୁଅନ୍ତି ଦଇବ ବଶରେ ।
ଏଣୁ ପଣ୍ଡିତ ମୋହିତ ନୁହନ୍ତି ଏଠାରେ ।। ୨୨୯ ।।
ସର୍ବ ପ୍ରାଣୀମାନେ ଯେ ସଂସାରେ ଛନ୍ତି ରହି ।
ଏହାଙ୍କର ସାନବଡ଼ ପୂର୍ବୁଂ ହୋଇ ନାହିଂ ।। ୨୩୦ ।।
ତପସ୍ୟା ଏକା କେବଳ ସବୁଠାରୁଂ ବଡ଼ ।
ତପହିଂ କାରଣ ପ୍ରଭୁତ୍ୱରେ ସେହି ଗାଢ଼ ।। ୨୩୧ ।।
ତପ ବିନା ବୟସ ନୁହଇ ବଡ଼ କେବେ ।
ଏହି ରୂପେ ସେ କଥା ଚିତ୍ତରେ ଘେନ ଏବେ ।। ୨୩୨ ।।
ଏହାଶୁଣି ମଇତ୍ରେୟ ପୁଣିହି ପଚାରି ।
ପୂର୍ବଉତ୍ପତ୍ତି କହିବା ଏବେ ତପୋଚାରି ।। ୨୩୩ ।।
ଦେବ ଦାନବ ଗନ୍ଧର୍ବ ଉରଗ ରାକ୍ଷସ ।
ଏହାଙ୍କ ଜନ୍ମ ବିସ୍ତାରେ କହହେ ତାପସ ।। ୨୩୪ ।।
ଯାହାର ଉତ୍ପତ୍ତି ଯେଉଂ ରୂପେ ହେଲା ଅବା ।
ଏହାଶୁଣି ପରାଶର ବୋଲନ୍ତି କହିବା ।। ୨୩୫ ।।
ପୂର୍ବେ ପ୍ରଜାସର୍ଜିବା ଅର୍ଥରେ ବେଦପତି ।
ଦକ୍ଷପ୍ରଜାପତିଙ୍କି ଯେମନ୍ତ କହିଛନ୍ତି ।। ୨୩୬ ।।
ସେ ବଚନ ଅନୁରୂପେ ସର୍ଜିଲେ ଯେମନ୍ତେ ।
ତାହା ଶୁଣ ତୁମ୍ଭଙ୍କୁ କହିବା ବିଧିମତେ ।। ୨୩୭ ।।

ସେ କାଳରେ ପୁଣି ହି ଯେ ଦକ୍ଷପ୍ରଜାପତି ।
ପୂର୍ବରେ ପ୍ରାଣିମାନଙ୍କୁ କଲେକ ଉତ୍ପତ୍ତି ॥ ୨୩୮ ॥
ଦେବଋଷି ଗନ୍ଧର୍ବ ଯେ ଅସୁର ପନ୍ନଗ ।
ଏମାନଙ୍କୁ ଯେବେ ଜାତ କଲେ ମହାଭାଗ ॥ ୨୩୯ ॥
ସେ ସମସ୍ତେ ସେ କାଳରେ ମାତ୍ରକ ଜନ୍ମିଲେ ।
ବୃଦ୍ଧ ହୋଇ ପ୍ରଜା ଆଉ କେବେ ହେ ନୋହିଲେ ॥ ୨୪୦ ॥
ତହିଁ ଉତ୍ତାରେଣ ପୁଣି ସୃଷ୍ଟିର କାରଣେ ।
ମାନସରେ ପ୍ରଜାପତି ଚିନ୍ତିଲେ ଆପଣେ ॥ ୨୪୧ ॥
ଧର୍ମ ମଇଥୁନ କରି ନାନା ରୂପେ ପ୍ରଜା ।
ଜାତ କରିବାକୁ ଇଚ୍ଛା କଲେ ମହାତେଜା ॥ ୨୪୨ ॥
ସେକାଳେ ବୀରଣ ନାମ ପ୍ରଜାପତିଠାରୁଂ ।
କନ୍ୟା ଏକ ଜାତ ହେଲା ଅତିଶୟ ଚାରୁ ॥ ୨୪୩ ॥
ସେ କନ୍ୟାର ନାମ ପୁଣି ଅଶିକ୍ନୀ ହୋଇଲା ।
ଉତ୍ତମ ତପମାନଙ୍କେ କନ୍ୟା ଯୁକ୍ତ ହେଲା ॥ ୨୪୪ ॥
ସର୍ବଲୋକ ଧାରିଣୀ ରୂପରେ ସେହୁ ଜାତ ।
ତା' ଗର୍ଭୁ ଜନ୍ମିଲେ ପାଞ୍ଚସହସ୍ର ଯେ ସୁତ ॥ ୨୪୫ ॥
ହର୍ଯଶ୍ୱ ହୋଇଣ ସେମାନଙ୍କ ସଞ୍ଜ୍ଞାହେଲା ।
ତାଙ୍କୁ ଦେଖି ପ୍ରଜାପତି ସନ୍ତୁଷ୍ଟ ହୋଇଲା ॥ ୨୪୬ ॥
ପ୍ରଜା ଅର୍ଥରେ ତାହାଙ୍କୁ ନିଯୋଜନା କଲେ ।
ସେକାଳରେ ନାରଦ ଯେ ତାହାଙ୍କୁ ଦେଖିଲେ ॥ ୨୪୭ ॥
ପ୍ରିୟକରି ସେମାନଙ୍କୁ ପଚାରିଲେ ପୁଣି ।
କେଣିକି ଯାଉଛ ବାବୁ କହ ମତେ ପୁଣି ॥ ୨୪୮ ॥
ତୁମ୍ଭେ ପ୍ରଜା ସର୍ଜିବାକୁ ଯିବାର ପରାୟେ ।
ପ୍ରତେ ହେଉ ଅଛି ବାବୁ ମୋହର ହୃଦୟେ ॥ ୨୪୯ ॥
ତହିଁର ଉପାୟ ଏବେ କହଇ ମୁଁ ଶୁଣ ।
ଏକେ ତୁମ୍ଭେତ ହୋଇଛ ବାଳକ ଅଜ୍ଞାନ ॥ ୨୫୦ ॥
ଭୂମିର କେ ଅଧ ଉର୍ଦ୍ଧ୍ୱ ମଧ୍ୟ ଅବା କେହି ।
ଏହାର କ୍ରମ ଆପଣ ଜାଣିବତ ନାହିଁ ॥ ୨୫୧ ॥
ଏଣୁ କି ରୂପେ ସର୍ଜିବ ତୁମ୍ଭେ ମାନେ ପ୍ରଜା ।
ସର୍ଜି ନ ପାରିଲେ ପଛେ ପାଇବଟି ଲଜ୍ଜା ॥ ୨୫୨ ॥
ଏଣୁ ଆଗ ଅଧଉର୍ଦ୍ଧ୍ୱ ମଧ୍ୟ ଅବନୀର ।
କଳନା କଲା ଉତ୍ତାରେ ପଛେ ସୃଷ୍ଟିକର ॥ ୨୫୩ ॥
ନାରଦଙ୍କ ଏ ବଚନ ଶୁଣି ସର୍ବସୁତେ ।
ସର୍ବୁଦିଗେ ଭ୍ରମଣ କଲେକ ଯେଝାମତେ ॥ ୨୫୪ ॥

୨୪୨. ଖ. ଜାତକଲେ ସେ କାଳେ ଶୁଣହେ ମୁନିରାଜା ।

ଅଦ୍ୟାପି ହି ଭ୍ରମୁଛନ୍ତି ନିବର୍ତ୍ତ ନାହାନ୍ତି ।
ସମୁଦ୍ରମାନଙ୍କେ ଯେହ୍ନେ ନଦୀଙ୍କର ଗତି ॥ ୨୫୫ ॥
ଏମନ୍ତ ରୂପେ ହର୍ଯଶ୍ୱ ମାନେ ନାଶ ଗଲେ ।
ଯୋଗମାର୍ଗେ ଦକ୍ଷ ପ୍ରଜାପତି ତା ଜାଣିଲେ ॥ ୨୫୬ ॥
ପୁଣି ସେ ବୈରିଣୀ କନ୍ୟାଠାରୁ ତଦୁତ୍ତାରେ ।
ପୁତ୍ରମାନେ ଜାତକଲେ ସହସ୍ର ସଂଖ୍ୟାରେ ॥ ୨୫୭ ॥
ଶବଳାଶ୍ୱ ସଜ୍ଞା ପୁଣି ହୋଇଲା ତାଙ୍କର ।
ପ୍ରଜା ଅର୍ଥେ ତାହାଙ୍କୁ ପେସିଲେ ଦକ୍ଷେଶ୍ୱର ॥ ୨୫୮ ॥
ତାହାଙ୍କୁ ଦେଖି ନାରଦ ବୋଇଲେ କ ପୁଣି ।
କଉଂଠାକୁ ଯାଉଛ ସମସ୍ତ ପୁତ୍ରମଣି ॥ ୨୫୯ ॥
ଏହାଶୁଣି ସେ ବୋଇଲେ ପ୍ରଜାବୃଦ୍ଧି ଅର୍ଥେ ।
ପିତାଙ୍କ ଆଜ୍ଞାରେ ଆମ୍ଭେ ଯାଉଛୁଁ ସମସ୍ତେ ॥ ୨୬୦ ॥
ଶୁଣି ନାରଦ ବୋଇଲେ ସର୍ବେଶୁଭେ ଯାଅ ।
ତୁମ୍ଭ ଭ୍ରାତାଙ୍କୁ ପଚାରି ସଂସାର ଭିଆଅ ॥ ୨୬୧ ॥
ଏହା ଶୁଣି ସର୍ବେ ତହିଁ କଲେକ ବିଚାର ।
ଉତ୍ତମ କହିଲେ ଏ ନାରଦ ମୁନିବର ॥ ୨୬୨ ॥
ଭ୍ରାତାମାନଙ୍କର ସଙ୍ଗେ ଆଗ ଭେଟ ହେବା ।
ପଛେ ପିତା ଆଜ୍ଞାପାଳି ସୃଷ୍ଟି ଭିଆଇବା ॥ ୨୬୩ ॥
ଏହା ପାଞ୍ଚି ସମସ୍ତେ ଭ୍ରାତାଙ୍କୁ ଖୋଜିଗଲେ ।
ତାହାଙ୍କ ମାର୍ଗ ଖୋଜିଣ ଦିଗନ୍ତ ବୁଲିଲେ ॥ ୨୬୪ ॥
ବିଚାରିଲେ ଭ୍ରାତାଙ୍କର ଗଲା ମାର୍ଗେ ଯିବା ।
ଆଗମହୀ କଳି ପଛେ ପ୍ରଜାଙ୍କୁ ସର୍ଜିବା ॥ ୨୬୫ ॥
ଏହା ବୋଲି ସର୍ବ ଦିଗେ ଗଲେ ସର୍ବ ଯତି ।
ବୁଲୁଛନ୍ତି ଅଦ୍ୟାପିହି ନିବର୍ତ୍ତି ନାହାନ୍ତି ॥ ୨୬୬ ॥
ଏ ରୂପେ ଭ୍ରାତାଙ୍କୁ ଖୋଜି ସର୍ବେନାଶ ଗଲେ ।
କେହି କିଛି କାର୍ଯ୍ୟମାନ କରି ନ ପାରିଲେ ॥ ୨୬୭ ॥
ସେ ପୁତ୍ରମାନଙ୍କ ନାଶ ଜାଣି ପ୍ରଜାପତି ।
ନାରଦଙ୍କ ବିଷୟରେ କ୍ରୋଧ ହେଲେ ଅତି ॥ ୨୬୮ ॥
ମନେ ଦୁଃଖ ଘେନିଣ ତାହାଙ୍କୁ ଶାପଦେଲେ ।
ନାଶ ଯାଇ ଗର୍ଭବାସେ ରହ ତୁ ବୋଇଲେ ॥ ୨୬୯ ॥
ତହିଁ ଉତ୍ତାରେଣ ପୁଣି ବୈରିଣୀଙ୍କଠାରୁଂ ।
ଷାଠିଏ କନ୍ୟାଙ୍କୁ ଜାତ କଲେ ଜଗଦ୍ଗୁରୁ ॥ ୨୭୦ ॥
ଏହା ଆମ୍ଭେ ଶୁଣିଛୁଂ କହୁଛୁଂ ଏବେ ତତେ ।
ଶୁଣ ତା କାହାକୁ ଦେଲେ କେତେ କେତେ ॥ ୨୭୧ ॥

୨୬୮. ଖ : ସ୍ୱଧାଙ୍କୁ ଦୋଗ୍ଧ୍ରା କରି ତହିଁରେ ସ୍ଥିତ କଲେ ।

ଦଶ କନ୍ୟା ଧର୍ମଙ୍କୁ ଯେ କଶ୍ୟପଙ୍କୁ ତେର ।
ଚନ୍ଦ୍ରଙ୍କୁ ଦେଲେକ ସତାଇଶ ରାମାବର ।। ୨୭୨ ।।
ଅରିଷ୍ଟନେମିଙ୍କି ଚାରିଗୋଟି କନ୍ୟା ଦେଲେ ।
ବ୍ରହ୍ମପୁତ୍ରଙ୍କୁ ଯେ ଦୁଇଗୋଟି ସମର୍ପିଲେ ।। ୨୭୩ ।।
ଅଙ୍ଗୀରାଙ୍କୁ ପୁଣି ହି ଯେ ଦତ୍ତ କଲେ ଦୁଇ ।
କୃଶାଶ୍ୟ ତପସ୍ୱୀ ବେନି କନ୍ୟା ବିଭାହୋଇ ।। ୨୭୪ ।।
ଷାଠିଏ କନ୍ୟାଙ୍କୁ ଏ ରୂପରେ କଲେ ବିଭା ।
ତାଙ୍କ ନାମ ମାନ ଏବେ ଶୁଣ ହୋ କହିବା ।। ୨୭୫ ।।
ଅରୁନ୍ଧତି ବସୁ ବାମା ଲମ୍ୱା ଭାନୁ ନାମ ।
ମରୁତ୍ୱତି ସଂକଳ୍ପା ମୁହୂର୍ତ୍ତା ଅନୁପମ ।। ୨୭୬ ।।
ସାଧ୍ୱବିଶ୍ୱା ନାମେ ଯେ ଏମନ୍ତେ କନ୍ୟାଦଶ ।
ଧର୍ମଦେବତାଙ୍କ ପତ୍ନୀ ହେଲେ ହୋ ତାପସ ।। ୨୭୭ ।।
ସେମାନଙ୍କ ସନ୍ତତି ଯେତେକ ହେଲେ ପୁଣ ।
ସେ ସବୁ କହିବା ଏବେ କରତା ଶ୍ରବଣ ।। ୨୭୮ ।।
ବିଶ୍ୱଦେବାଙ୍କୁ ବିଶ୍ୱା କନ୍ୟା କଲା ଜାତ ।
ସାଧ୍ୟଠାରୁଂ ସାଧ୍ୟ ପଣେ ହୋଇଲେ ସମ୍ଭୂତ ।। ୨୭୯ ।।
ମରୁତ୍ୱତୀଠାରୁ ଜାତ ମହ୍ନୁତ୍ୱନ୍ତି ଗଣ ।
ବସୁଠାରୁଂ ଅଷ୍ଟବସୁ ହୋଇଲେ କ ପୁଣ ।। ୨୮୦ ।।
ଭାନୁଠାରୁ ଦ୍ୱାଦଶ ଭାନୁ ଜାତ ହେଲେ ।
ମୁହୂର୍ତ୍ତାରୁଂ ମୁହୂର୍ତ୍ତ ବା ଗଣ ଜନମିଲେ ।। ୨୮୧ ।।
ଲମ୍ୱାଠାରୁ ଘୋଷଣ ଯେ ହୋଇଲେ ସମ୍ଭୂତ ।
ଜାମାତାରୁଂ ନାଗବିଥି ମାନ ହେଲେ ଜାତ ।। ୨୮୨ ।।
ଅରୁନ୍ଧତୀଠାରୁ ହେଲେ ପୃଥିବୀ ବିଷୟ ।
ସଂକଳ୍ପ ଠାରୁଂ ସର୍ବାତ୍ମା ସଂକଳ୍ପ ଉଦୟ ।। ୨୮୩ ।।
ଏ ରୂପରେ ଦଶକନ୍ୟା ଠାରୁଂ ଦଶ ଗଣ ।
ସମ୍ଭୂତ ହୋଇଲେ ମଇତ୍ରେୟ ଋଷି ଶୁଣ ।। ୨୮୪ ।।
ଅନେକ ତେଜ ଅନେକ ବଳ ଯାହାଙ୍କର ।
ଅଗ୍ନି କେବଳ ଅଟନ୍ତି ଅଗ୍ରରେ ଯାହାର ।। ୨୮୫ ।।
ଏମନ୍ତ ଯେ ଯଉଂ ଅଷ୍ଟ ବସୁଦେବମାନେ ।
ତାହା ବିସ୍ତାରେ କହିବା ଶୁଣ ସାବଧାନେ ।। ୨୮୬ ।।
ଆପଧ୍ରୁବ ସୋମଧର ଅନିଳ ଅନଳ ।
ପ୍ରତ୍ୟୁଷ ପ୍ରଭାବ ଏ ଯେ ଅଷ୍ଟ ବସୁକୁଳ ।। ୨୮୭ ।।
ଏହାଙ୍କର ପୁତ୍ରମାନେ ପ୍ରତ୍ୟେକରେ ଶୁଣ ।
ଆପର ତନୟ ଚାରିଗୋଟି ହେଲେ ପୁଣ ।। ୨୮୮ ।।

ବୈତଣ୍ଡ ଶ୍ରମ ଶାନ୍ତଯେ ଧୁରିୟେ ନାମରେ ।
ଜନମ ହୋଇଲେ ଚାରିଗୋଟି ଯେ କୁମରେ ।। ୨୮୯ ।।
ଧ୍ରୁବଙ୍କର ପୁଣି ଯେ ହୋଇଲା ଯଉଂବାଳ ।
ଲୋକଙ୍କର ହର୍ତ୍ତା ଯେ ସାକ୍ଷାତ ସେହୁକାଳ ।। ୨୯୦ ।।
ସୋମଙ୍କର ବର୍ଚ୍ଚାପୁତ୍ର ହୋଇଲାକ ଜାତ ।
ତେଣେ କରି ସମସ୍ତେ ହୁଅନ୍ତି କାନ୍ତିବନ୍ତ ।। ୨୯୧ ।।
ଧରଙ୍କର ମନୋହରା ଭାର୍ଯ୍ୟା ଗର୍ଭୁ ଜାତ ।
ପଞ୍ଚପ୍ରକାରେ କୁମରେ ହୋଇଲେ କ ଖ୍ୟାତ ।। ୨୯୨ ।।
ଦ୍ରବିଣ ଯେ ହୁତ ହବ୍ୟବହ ନାମଧେୟ ।
ଶିଶିର ପ୍ରାଣ ରମଣ ଏ ପାଞ୍ଚତନୟ ।। ୨୯୩ ।।
ଅନିଳ ରସିବା ଭାର୍ଯ୍ୟା ଗର୍ଭରୁ ସମ୍ଭୂତ ।
ମନୋଜବ ଅବିଜ୍ଞାତ ଗତି ବେନିସୁତ ।। ୨୯୪ ।।
ଅଗ୍ନିଙ୍କର ନନ୍ଦନ ଯେ ହୋଇଲେ କୁମାର ।
ଶରସ୍ତମ୍ଭେ ଜନମିଲେ ଚାରି ପରକାର ।। ୨୯୫ ।।
ଶାଖା ବିଶାଖା ଆବର ନୈଗମେ ଯତିନି ।
କୃର୍ତ୍ତିକାରୁଂ ଜନ୍ମି କାର୍ତ୍ତିକେୟ ନାମ ଘେନି ।। ୨୯୬ ।।
ଏ ରୂପେ ଚାରି ପ୍ରକାର ନାମ ତାହାଙ୍କର ।
ପୃଷ୍ଠ ଭାଗେ ଜନମ ଅଟଇ ମୁନିବର ।। ୨୯୭ ।।
ପ୍ରତ୍ୟୁଷର କୁମର ଦେବଳ ଋଷି ହେଲେ ।
ସେ ଦେବଳ ତହୁଂ ପୁଣି ପୁତ୍ର ଜନମିଲେ ।। ୨୯୮ ।।
କ୍ଷମାବନ୍ତ ବୁଦ୍ଧିମନ୍ତ ହୋଇଲେ ସେ ବେନି ।
ଏଥି ଉତ୍ତାରେଣ ପୁଣି ଶୁଣ ମହାମୁନି ।। ୨୯୯ ।।
ବୃହସ୍ପତିଙ୍କର ଭଗିନୀ ଯଉଂ ବରସ୍ତିରୀ ।
ସେ ବ୍ରହ୍ମବାଦିନୀ କାମରୂପିଣୀ ସୁନ୍ଦରୀ ।। ୩୦୦ ।।
ମହାଯୋଗେ ସିଦ୍ଧତା ଅଟଇ କଳେବର ।
ଏକାକୀ ହୋଇ ଜଗତେ କରନ୍ତେ ସଂଚାର ।। ୩୦୧ ।।
ପ୍ରଭାବ ନାମେ ଅଷ୍ଟମ ବସୁ ସଙ୍ଗେ କାଳେ ।
କ୍ରୀଡ଼ା କରି ସେ ରେତ ଧଇଲା ଗର୍ଭସ୍ଥଳେ ।। ୩୦୨ ।।
ତହୁଂ ପୁଣି ଜାତ ଯେ ହୋଇଲେ ବିଶ୍ୱକର୍ମା ।
ପ୍ରଜାପତି ଏକ ସେ ସୁବୁଦ୍ଧି ମହାତମା ।। ୩୦୩ ।।
ସହସ୍ରେଶିଳ୍ପୀମାନଙ୍କ ଅଟଇ ସେ କର୍ତ୍ତା ।
ସର୍ବଦେବତାମାନଙ୍କ ବର୍ଦ୍ଧ କି ସୁଚେତା ।। ୩୦୪ ।।
ସର୍ବଭୂଷଣମାନଙ୍କ କର୍ତ୍ତା ପୁଣି ସେହି ।
ଶିଳ୍ପୀ ବିଦ୍ୟାବନ୍ତଙ୍କର ବର ସେ ଅଟଇ ।। ୩୦୫ ।।

ଯତଂ ବିଶ୍ୱକର୍ମା ସର୍ବ ଦେବମାନଙ୍କର ।
ବିମାନ ସକଳ ଗଢ଼ିବାରେ ଧୁରଂଧର ।। ୩୦୬ ।।
ଯତଂ ମହାତ୍ମାର ଶିଳ୍ପୀ ବିଦ୍ୟାମାନଙ୍କରେ ।
ଅଦ୍ୟାପି ପରିପୋଷଣ ହଉଛନ୍ତି ନରେ ।। ୩୦୭ ।।
ଏଥି ଉତ୍ତାରେ କହିବା ରୁଦ୍ରସର୍ଗ ଶୁଣ ।
ନୀଳଲୋହିତଙ୍କ ଠାରୁଂ ଜନ୍ମିଲେ ଯେ ପୁଣ ।। ୩୦୮ ।।
ଅଜୈକପାଦ ପ୍ରଥମେ ଅହିର୍ବ୍ରଧ୍ନ ପୁଣି ।
ବୃଷ୍ଟାରୁଦ୍ରମିସିଚାରି ପୁତ୍ର ମୁନିମଣି ।। ୩୦୯ ।।
ବୃଷ୍ଟାଙ୍କଠାରୁଂ ହୋଇଲେ ଏକାଦଶ ସୁତ ।
ବିଶ୍ୱରୂପ ମହାପୋଷ ସର୍ବେ ବଳବନ୍ତ ।। ୩୧୦ ।।
ହର ବହୁରୂପ ଯେ ଆବର ତ୍ରିଯମ୍ବକ ।
ଅପରାଜିତ ଯେ ବୃଷାକପି ସୁବିବେକ ।। ୩୧୧ ।।
ଶମ୍ଭୁ କପର୍ଦ୍ଦିରୈବତ ମୃଗବ୍ୟାଧ ନାମ ।
ସର୍ବ କପାଳୀ ଏ ରୂପେ ଏକାଦଶ ଭୀମ ।। ୩୧୨ ।।
ତିନିଭୁବନମାନଙ୍କ ଈଶ୍ୱର ଏମାନେ ।
ଏକାଦଶ ସଂସାରେ ରହିଲେ ପ୍ରଧାନେ ।। ୩୧୩ ।।
ଏଥୁଂ ପୁଣି ମହା ପରାକ୍ରମମାନ ବହି ।
ଅନେକ ରୂପରେ ଛନ୍ତି ଶତସଂଖ୍ୟା ହୋଇ ।। ୩୧୪ ।।
ଏଥୁଂ ପୁଣି କସ୍ୟପଙ୍କ ଅନ୍ୱି କହିବା ।
ଯତଂ ତେର କନ୍ୟା ଯେ କସ୍ୟପ ହେଲେ ବିଭା ।। ୩୧୫ ।।
ପୂର୍ବରେ ତୁମ୍ଭଙ୍କୁ ଯାହା କହିଅଛୁ ପୁଣ ।
ସେ କନ୍ୟାମାନଙ୍କର ନାମ ମାନ ଯେ ଶୁଣ ।। ୩୧୬ ।।
ଅଦିତି ଦିତି ଯେ ଦନୁ ଅରିଷ୍ଟା ସୁରସା ।
ଖସା ସୁରଭି ବିନତା, ତାମ୍ରା କ୍ରୋଧବଶା ।। ୩୧୭ ।।
ଇରା କଦ୍ରୁ ମୁନି ଯେ ଏମନ୍ତେ କନ୍ୟା ତେର ।
ଏମାନଙ୍କ ସନ୍ତତି ଶୁଣ ହେ ମୁନିବର ।। ୩୧୮ ।।
ଚାକ୍ଷୁସ ମନ୍ୱନ୍ତରେ ଯେ ଯତଂ ଦେବତାଏ ।
ଶ୍ରେଷ୍ଠ ହୋଇ ଜନମିଥାନ୍ତି ଅତିଶୀଏ ।। ୩୧୯ ।।
ଅତି ଅନ୍ତ ଯଶସ୍ୱୀ ଯେ ସେମାନେ ଅଟନ୍ତି ।
ଦ୍ୱାଦଶ ଗୋଟି ସମସ୍ତେ ତୁସିତେ ବୋଲାନ୍ତି ।। ୩୨୦ ।।
ମନୁ ଶେଷେ ସର୍ବେ ହୋଇ ଏକଠାବେ ଠୁଳ ।
ପରସ୍ପରେ ବିଚାର କରନ୍ତି ଏକମୂଳ ।। ୩୨୧ ।।
ବୋଲନ୍ତି ସମସ୍ତେ ଆସ ତତପର ଯିବା ।
ଅଦିତୀଙ୍କ ଶରୀରେ ପ୍ରବେଶ ହୋଇଥିବା ।। ୩୨୨ ।।

ବୈବସ୍ୱତ ମନ୍ୱନ୍ତରେ ପୁଣି ହେବା ଜାତ ।
ତେବେ ଆମ୍ଭ ସେହି ଶ୍ରେୟ ହୋଇବ ବହୁତ ।। ୩୨୩ ।।
ଚାକ୍ଷୁସ ମନୁ ଅନ୍ତରେ ବିଚାରି ଏମନ୍ତ ।
ସେମାନେ ଏକା କଶ୍ୟପ ଗୃହେ ହେଲେ ଜାତ ।। ୩୨୪ ।।
ଦକ୍ଷଙ୍କ ପ୍ରଥମ କନ୍ୟା ନାମ ଯା ଅଦିତୀ ।
ଯାହାଙ୍କ ଗର୍ଭରେ ସର୍ବେ ହେଲେ ଉତପତି ।। ୩୨୫ ।।
ଯାଗମାନ ଆଦି କରି ପୁଣି ବିଷ୍ଣୁ ଜାତ ।
ଶକ୍ର ଅର୍ଯ୍ୟମା ବିଧାତା ତ୍ୱଷ୍ଟା ଯେ ସମ୍ଭୂତ ।। ୩୨୬ ।।
ପୂଷା ବିବସ୍ୱାନ ଯେ ସବିତା ପୁଣି ମିତ୍ର ।
ବରୁଣ ଆଦି କରିଣ ଦ୍ୱାଦଶ ଆଦିତ୍ୟ ।। ୩୨୭ ।।
ଅଂଶୁମାନଙ୍କରେ କରି ହୋଇ ଯେ ପ୍ରକାଶ ।
ଯେଉଂ ତୁଷିତେ ଚାକ୍ଷୁସ ମନୁରେ ତ୍ରିଦଶ ।। ୩୨୮ ।।
ସେହିମାନେ ହୋଇଲେ ଯେ ଦ୍ୱାଦଶ ଆଦିତ୍ୟ ।
ଏହି ବୈବସ୍ୱତ ମନ୍ୱନ୍ତରେ ତପୋବନ୍ତ ।। ୩୨୯ ।।
ଚନ୍ଦ୍ରଙ୍କର ସତାଇଶ ଯେଉଂ ପତ୍ନୀମାନେ ।
ତାଙ୍କ ପୁତ୍ରମାନେ ହେଲେ ବହୁଦୀପ୍ତିମାନେ ।। ୩୩୦ ।।
ଅରିଷ୍ଟନେମିଙ୍କ ଯେଉଂ ପତ୍ନୀମାନେ ଥିଲେ ।
ତାହାଙ୍କର ଷୋଡ଼ଶ କୁମର ଜନମିଲେ ।। ୩୩୧ ।।
ବହୁ ପୁତ୍ର ନାମରେ ଯେ ଯେବଣ ପଣ୍ଡିତ ।
ଚାରି କନ୍ୟା ତାଙ୍କର ବିଦ୍ୟୁତ ନାମେ ଜାତ ।। ୩୩୨ ।।
ଅଙ୍ଗୀରାଙ୍କଠାରୁଂ ରୁଚି ମାନ ଜାତ ହେଲେ ।
ବ୍ରହ୍ମ ଋଷିମାନେ ଯେ ସହାର ତାଙ୍କୁ କଲେ ।। ୩୩୩ ।।
ଦେବଋଷିକୃଶାଶ୍ୱଙ୍କ ଯେଉଂ ପୁତ୍ରମାନେ ।
ପ୍ରହରଣ ନାମେ ଦେବେ ଜନ୍ମିଲେ ବିଧାନେ ।। ୩୩୪ ।।
ସହସ୍ରେଯୁଗ ଅନ୍ତରେ ସେହିମାନେ ପୁଣି ।
ଅନ୍ୟ ଯୁଗ ଆଦ୍ୟରେ ଜନ୍ମନ୍ତି ମୁନିମଣି ।। ୩୩୫ ।।
ଇଚ୍ଛାରେ ଜନ୍ମ ହୁଅନ୍ତି ତେତିଶ ପ୍ରକାରେ ।
ଯେମନ୍ତ ଉକ୍ତ ହୋଇଛି ସମସ୍ତ ସ୍ମୃତିରେ ।। ୩୩୬ ।।
ସେହି ଅଷ୍ଟବସୁ ଏକାଦଶରୁଦ୍ର ସେହି ।
ଦ୍ୱାଦଶ ଆଦିତ୍ୟ ପୁଣି ପ୍ରଜାପତି ଯେହି ।। ୩୩୭ ।।
ବଷଟକାର ଇତ୍ୟାଦି ସମସ୍ତେ ଜାତ ହୋନ୍ତି ।
ପ୍ରତିକାଳେ ଅଛି ତାଙ୍କ ପ୍ରଳୟ ଉତ୍ପତ୍ତି ।। ୩୩୮ ।।
ପୂର୍ବରୁଂ ଆମ୍ଭେ ଶୁଣିଛୁଂ ଦିତୀ ଗର୍ଭୁଂ ପୁଣି ।
କଶ୍ୟପଙ୍କର ଜନ୍ମିଲେ ବେନିପୁତ୍ରମଣି ।। ୩୩୯ ।।

ହିରଣ୍ୟକଶିପୁ ଜ୍ୟେଷ୍ଠ କୁମରର ନାମ ।
କନିଷ୍ଠ ଯେ ହିରଣାକ୍ଷ ବଳେ ଅନୁପମ ।। ୩୪୦ ।।
ମହାକ୍ଷତ୍ରିୟ ପ୍ରତାପେ ସମ କେହି ନାହିଁ ।
ଭୁଜବଳେ ବ୍ରହ୍ମାଣ୍ଡ ଅର୍ଜିଲେ ବେନିଭାଇ ।। ୩୪୧ ।।
ସିଂହିକା ନାମରେ ଏକ କନ୍ୟା ଜାତ ହେଲା ।
ବିପ୍ରଚିତ୍ତ ଦାନବର ଭାର୍ଯ୍ୟା ସେ ହୋଇଲା ।। ୩୪୨ ।।
ହିରଣ୍ୟକଶିପୁଠାରୁଁ ଚାରିଗୋଟି ସୁତ ।
ମହାତେଜବନ୍ତରେ ହୋଇଲେ ପୁଣି ଜାତ ।। ୩୪୩ ।।
ଅନୁହ୍ରାଦ ହ୍ରାଦ ପୁଣି ପ୍ରହ୍ଲାଦ ସଂହ୍ରାଦ ।
ଏ ରୂପେ ଚାରି ସୁତ ହୋଇଲେ ମୁନିଇନ୍ଦ୍ର ।। ୩୪୪ ।।
ଦୈତ୍ୟବଂଶ ବିବର୍ଦ୍ଧନ ଅଟନ୍ତି ସେମାନେ ।
ସେ ଚାରି ମଧେ ପ୍ରହ୍ଲାଦସ୍ଥିତ ଦିବ୍ୟଜ୍ଞାନେ ।। ୩୪୫ ।।
ସବୁଠାରେ ସମଦୃଷ୍ଟି ସ୍ୱଇଚ୍ଛାରେ ସ୍ଥିତ ।
ଜନାର୍ଦ୍ଦନେ ଯାହା ପରମ ଭକ୍ତିଜାତ ।। ୩୪୬ ।।
ଦୈତ୍ୟଇନ୍ଦ୍ର ହିରଣ୍ୟକଶ୍ୟପୁ ଯାହାଠାରେ ।
କ୍ରୋଧ କରି ପକାଇଲା ଅନଳ ଭିତରେ ।। ୩୪୭ ।।
ସେ ବହ୍ନି ଯାହାର ଅଙ୍ଗ ନକଲା ଦହନ ।
ହୃଦୟରେ ଥିବାରୁଁ ଅନାଦି ଭଗବାନ ।। ୩୪୮ ।।
ପାଶରେ ବାନ୍ଧି କରିଣ ମହାର୍ଣ୍ଣବ ଜଳେ ।
ରାଜାବାକ୍ୟେ ଦୈତ୍ୟେ ପକାଇଲେ ଯେତେବେଳେ ।। ୩୪୯ ।।
ସେ ଅଗାଧ ଜଳେ ବୁଡ଼ି ଚଳନ୍ତେଣ ସେହି ।
ତାହା ସଙ୍ଗେ ଚଳିଲା ଯେ ସପ୍ତଦୀପା ମହୀ ।। ୩୫୦ ।।
ଯେତେବେଳେ ଦୈତ୍ୟ ପହୁଡ଼ିଲେ ନାନା ଶସ୍ତ୍ର ।
କିଛି ଭେଦ ନୋହିଲା ତା ବଜ୍ରସମ ଗାତ୍ର ।। ୩୫୧ ।।
ସର୍ବପ୍ରକାରେ ଅଚ୍ୟୁତେ ଥିବାରୁ ମାନସ ।
ତାହା ଅଙ୍ଗେ ଶସ୍ତ୍ରାଦି ପାରିବେ କରି କିସ ।। ୩୫୨ ।।
ବିଷଦନ୍ତା ଅଗ୍ନିମୁଖା ମହାନାଗ ମାନେ ।
ଅତିଅନ୍ତ ତେଜସ୍ୱୀ ସେ ପ୍ରଖର ଗର୍ଜନେ ।। ୩୫୩ ।।
ମହାକ୍ରୋଧେ ଦଂଶନ୍ତେ ଯାହାକୁ ରାଜା ବୋଲେ ।
ସର୍ବ ବିଷଦଂଶନ ମୁଖରୁଁ ଝଡ଼ି ଗଲେ ।। ୩୫୪ ।।
ହିରଣ୍ୟକସ୍ୟପ ଆଜ୍ଞା ପାଇକରି ଦୈତ୍ୟେ ।
ଯାହା ଅଙ୍ଗେ ମଡ଼ାଇଲେ ବହୁ ପରବତେ ।। ୩୫୫ ।।
ସେ କାଳେ ଯେ ସ୍ମରଣ କରିବା ମାତ୍ରେ ହରି ।
ପ୍ରାଣରକ୍ଷା ହୋଇଲା ଖସିଲେ ସର୍ବ ଗିରି ।। ୩୫୬ ।।

୩୪୪. (କ) ମହାବୀର୍ଯ୍ୟବନ୍ତ ସେ ଯେ ଅସୁର ଦାୟାଦ

ଦୈତ୍ୟପତି ମହାଉଚ୍ଚ ଜଗତିରେ ଥାଇ ।
ଚରଣ ଧରିଣ ଚକ୍ରାକୃତିରେ ବୁଲାଇ ।। ୩୫୭ ।।
ଯାହାକୁ ଆକାଶମାର୍ଗେ ଫିଙ୍ଗିଣ ଦିଅନ୍ତେ ।
ସ୍ୱର୍ଗବାସୀ ଆସିଣ' ଯେ ଧଇଲେ ଇସିତେ ।। ୩୫୮ ।।
ଦୈତ୍ୟ ଇନ୍ଦ୍ର ଆଜ୍ଞାରେ ଯେ ପ୍ରଚଣ୍ଡ ପବନ ।
ଉଡ଼ାଇ ପକାଇବାକୁ ଯେ କରନ୍ତେଣ ମନ ।। ୩୫୯ ।।
ଯାହା ଶରୀର ସ୍ପରଶ ମାତ୍ରେ ଗଲା କ୍ଷୟ ।
ହରିସ୍ମରଣ ସମ୍ପୂର୍ଣ୍ଣ ହେବାରୁଂ ହୃଦୟ ।। ୩୬୦ ।।
ରାଜାର ଆଜ୍ଞାରେ ମହାବଳୀ ଦୈତ୍ୟମାନେ ।
ଆଣି ମହାମତ୍ତ ଦନ୍ତାବଳ କୋପମନେ ।। ୩୬୧ ।।
ଦନ୍ତ ଅଗ୍ରେ ବିଭିନ୍ନ କରାନ୍ତେ ହୃଦସ୍ଥଳୀ ।
ଯାହା ଅଙ୍ଗେ ଦନ୍ତେ ହେଲେ ମଞ୍ଜା ପ୍ରାୟ ଦଳି ।। ୩୬୨ ।।
ଦୈତ୍ୟରାଜ ପୁରୋହିତମାନେ ସର୍ବେ ମିଳି ।
ଅନଳରୁଂ କୃତ୍ୟାଜାତ କରିଦେଇ ବଳି ।। ୩୬୩ ।।
ଯାହାଠାକୁ ପେଷନ୍ତେ ନୋହିଲା କିଛି କାର୍ଯ୍ୟ ।
ସନ୍ତତ ହୃଦେ ବିଜୟେ ଯହୁଁ ଦେବରାଜ ।। ୩୬୪ ।।
ସମ୍ବରାସୁର ମାୟା ଯେ ଅନେକ ପ୍ରକାରେ ।
ବିଚାର କଲା ଯାହାର ବିନାଶ ଅର୍ଥରେ ।। ୩୬୫ ।।
ମାୟାଧର କୃଷ୍ଣଙ୍କର ଚକ୍ରର ପ୍ରସାଦେ ।
ସେ ସର୍ବ ମିଥ୍ୟାକୁ ଗଲା ଅତି ଅପ୍ରମାଦେ ।। ୩୬୬ ।।
ରାଜ ସୁପକାରମାନେ କପଟ ବିଚାରେ ।
ହାଳାହଳ ବିଷ ଦେଲେ ଯାହା ଭୋଜନରେ ।। ୩୬୭ ।।
ସେ ସର୍ବ ଜୀର୍ଣ୍ଣ ହୋଇଲା ନ କଲା ବିକାର ।
ଯେବଣ ସୁବୁଦ୍ଧି ସୁଦା ଶାନ୍ତ ଅମତ୍ସର ।। ୩୬୮ ।।
ସଂସାରେ ସର୍ବ ଜନ୍ତୁରେ ସମାନ ଯା' ଚିତ୍ତ ।
ନିଜ ଆତ୍ମା ପରମାତ୍ମା ବିଚାରେ ଏକତ୍ୱ ।। ୩୬୯ ।।
ସମସ୍ତଙ୍କ ଠାରେ ଯା ସନ୍ତତ ମିତ୍ର ଗୁଣ ।
ଧର୍ମ ଆତ୍ମା ସତ୍ୟବାଦୀ ଭକ୍ତିରେ ନିପୁଣ ।। ୩୭୦ ।।
ଶୌଚାଦି ଗୁଣମାନଙ୍କ ଅଟଇ ଯେ ସ୍ଥାନ ।
ସର୍ବ ସାଧୁମାନଙ୍କର ଉପମା ପ୍ରଧାନ ।। ୩୭୧ ।।
ଏମନ୍ତ ଭକ୍ତ ହୋଇଲେ ଯେଉଂ ପ୍ରହଲ୍ଲାଦ ।
ତାହାଙ୍କ ଚରିତ ବାବୁ ନିଗମେ ଅଗାଧ ।। ୩୭୨ ।।
ଯାହା ପଚାରିଲ ତାହା କହିଲୁଂ ଥୋକାଏ ।
ମାନସ ସର୍ଗରୁଂ ପ୍ରହଲ୍ଲାଦ ଜନ୍ମ ଯାଏ ।। ୩୭୩ ।।

ଆଉ ଯାହା ପୁଛିବ କହିବା ତାହା ପୁଣି ।
ଏହା ବୋଲି ନିବର୍ତ୍ତିଲେ ଋଷିକୁଳ ମଣି ॥ ୩୭୪ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପ୍ରହ୍ଲାଦ ଉତ୍ପତ୍ତି ପଞ୍ଚଦଶ ଅଧ୍ୟା ଖ୍ୟାତ ॥ ୩୭୫ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୩୭୬ ॥

# ଷୋଡ଼ଶ ଅଧ୍ୟାୟ

ଏହାଶୁଣି କରି ପୁଣି ମୈତ୍ରେୟ ପଚାରି ।
କଥାଏ ପୁଛଇ ଗୁରୁ କହିବା ବିସ୍ତାରି ।। ୧ ।।
ମାନସସର୍ଗମାନଙ୍କ କହିଲତ ବଂଶ ।
ନିତ୍ୟସ୍ଥାୟୀ ଅଟନ୍ତିଟି ଯେବଣ ପୁରୁଷ ।। ୨ ।।
ସେ ମହାବିଷ୍ଣୁ ସମସ୍ତ ଜଗତକାରଣ ।
ଏକଥା ହିଂ କହିଲ ଉତ୍ତମ ପ୍ରକାରେଣ ।। ୩ ।।
ତହୁଁ ପୁଣି କହିଲ ଯେ ପ୍ରହ୍ଲାଦ ଚରିତ ।
ଦୈତ୍ୟମାନଙ୍କରେ ସେ ଉତ୍ତମ ମହାଭକ୍ତ ।। ୪ ।।
ତାହାକୁ ମହା ଅନଳ ଦହି ନ ପାରିଲା ।
ଶସ୍ତ୍ରମାନଙ୍କରେ କରି ପ୍ରାଣହି ନଗଲା ।। ୫ ।।
ଯେହୁ ପଡ଼ନ୍ତେ ସମୁଦ୍ର ସଲୀଳ ଭିତରେ ।
ବସୁମତୀ ଅତି କ୍ଷୋଭ ହେଲା ନିରନ୍ତରେ ।। ୬ ।।
ଯାହାର ଅଙ୍ଗେ ପର୍ବତ ଦିଅନ୍ତେ ମଡ଼ାଇ ।
କେତେବେଳେ ନ ମଲା ସେ ବିଷ୍ଣୁପାଦ ଧ୍ୟାଇ ।। ୭ ।।
ସେ ପ୍ରହଲ୍ଲାଦ ବୀରର ଏମନ୍ତ ମହାତ୍ମ୍ୟ ।
ତୁମ୍ଭେ ଯା ଅଧିକ କରି କହିଲ ଉତ୍ତମ ।। ୮ ।।
ସେ ବିଷ୍ଣୁ ଭକ୍ତର ଯେଉଂ ଅତୁଳ ପ୍ରଭାବ ।
ତାହା ଏବେ ସବିସ୍ତାର କରିଣ କହିବ ।। ୯ ।।
ସେ ମହା ତିକ୍ଷ୍ମ ତେଜାର ଚରିତ ଯେତେକ ।
ଶୁଣିମା ଇଛାରେ ମୁଁ ଯେ ହୋଇଛି ଉତ୍ସୁକ ।। ୧୦ ।।
କଉଂ କାରଣରେ ବିଷ ଶସ୍ତ୍ରମାନଙ୍କରେ ।
ମାରିବାକୁ ଦୈତ୍ୟ ଇନ୍ଦ୍ର ପାଞ୍ଚିଲା ମନରେ ।। ୧୧ ।।
କାହିଂକି ସମୁଦ୍ରେ ପଡ଼ିଲା ସେ ଧର୍ମବନ୍ତ ।
କି କାରଣେ ମଡ଼ାଇଲେ ମହାପରବତ ।। ୧୨ ।।
କଉଂ କାରଣୁ ଉରଗ ଧରାଇଲେ ଆଣି ।
କି ନିମିତ୍ତେ ଗିରି ଶିଖୁ ଫିଙ୍ଗିଲେ ଧରଣୀ ।। ୧୩ ।।
ଅନଳରେ ପକାଇଲେ କଉଂ ବିଷୟରେ ।
କି କାରଣେ ମରାଇଲେ ଦିଗ୍ଧଦନ୍ତି ଦନ୍ତରେ ।। ୧୪ ।।
ଏହାର ଶୋଷକ ନିମିତ୍ତରେ ମହାନୀଳ ।
କଉଂ ନିମିତ୍ତରେ ହେଲା କହ ତପଶୀଳ ।। ୧୫ ।।
ଦୈତ୍ୟ ଗୁରୁ ଶୁକ୍ରାଦି ଯେ କୃତ୍ୟା ଜାତ କରି ।
ଭକ୍ତଠାକୁ ପେଶିଲେ ଯେ କି କଥା ବିଚାରି ।। ୧୬ ।।

୮. କ. 'କ' ପୋଥିରେ ସର୍ବତ୍ର ପ୍ରହଲାଦ ଅଛି ।

ଶମ୍ବର ଅନେକ ମାୟା କଲା କାହିଁ ପାଇଁ ।
ସୁପକାର ଦେଲେ ବିଷ କି ଅର୍ଥେ ଖୁଆଇ ॥ ୧୭ ॥
ତାହାପୁଣି ଦୈତ୍ୟ ପୁତ୍ର ଗର୍ଭେ ଜୀର୍ଣ୍ଣ ଗଲା ।
ସେ ମହାତ୍ମାର ଏ କଥା ଶୁଣି ମୁନିବଳା ॥ ୧୮ ॥
ତାହାଙ୍କର ଏହି ସର୍ବ ଯେତେକ ପ୍ରଭାବ ।
ସେ ଚରିତ ଶୁଣିବାକୁ ଇଚ୍ଛା ମୋ କହିବ ॥ ୧୯ ॥
ଦୈତ୍ୟମାନେ ରେ ରେ କରେ ଦଣ୍ଡ ଯେତେ ।
ଦେଉଥିଲେ ତାହା କିଛି ନଭେଦେ କିଞ୍ଚିତେ ॥ ୨୦ ॥
ଏବଡ଼ କୌତୁକ କଥା ଶୁଣିତ କାମନା ।
ଯଉଂଭକ୍ତ ବିଷ୍ଣୁଙ୍କ ବିଷୟେ ଦଉମନା ॥ ୨୧ ॥
ତାକୁ ନାଶ କରିବାକୁ କେ ହେବ ସମର୍ଥ ।
ମହାଧର୍ମପର ସେ ଯେ ଦୈତ୍ୟ ରାଜସୁତ ॥ ୨୨ ॥
ହରି ଆରାଧନାରେ ଉତ୍ତମ ଚିତ୍ତ ଯାର ।
ମହାଧର୍ମ ଆତ୍ମା ମହାଭାଗ ଭକ୍ତବର ॥ ୨୩ ॥
ସବୁକାଳେ ବିମସ୍ବର ଯାହାର ହୃଦୟ ।
ତାହାଠାରେ ଶତ୍ରୁପକ୍ଷ କରି ଦୈତ୍ୟ ଚୟ ॥ ୨୪ ॥
କଉଂ ହେତୁ ମାରିବାକୁ କଲେ ମନୋରଥ ।
ସେ ପୁଣି ନିଜ କୁଳରେ ହୋଇଣ ସମ୍ଭୂତ ॥ ୨୫ ॥
ଏ ଅତି ବିଚିତ୍ର କଥା ଶୁଣନ୍ତେ ରହସ୍ୟ ।
ଏହା କହି ମୁନିହେ ମୋହର ମନ ତୋଷ ॥ ୨୬ ॥
ଯଉଂ ଲୋକ ସର୍ବଗୁଣେ ହୋଇଥିବ ଯୁକ୍ତ ।
ଯଉଂ ଲୋକ ସାଧୁ ବିଷ୍ଣୁ ପାଦେ ଥିବ ଚିତ୍ତ ॥ ୨୭ ॥
ସେ ପୁଣି ଜନମ ହୋଇଥିବ ନିଜ ବୀର୍ଯ୍ୟେ ।
ଏମନ୍ତ ପୁରୁଷ କୁଳେ ନାଶିବ ଅକାର୍ଯ୍ୟେ ॥ ୨୮ ॥
ବିପକ୍ଷ ହେଲେ ହେ ମହାତମା ଯଉଂମାନେ ।
ପ୍ରବେଶ ନୁହନ୍ତି ନାଶ କରିବା ବିଧାନେ ॥ ୨୯ ॥
ଏଣୁ କରି ଏକଥାରେ ଲାଗିଲା ସନ୍ଦେହ ।
ଭୋ ଗୁରୁ ସମସ୍ତ ପରିପାଟୀ କରି କହ ॥ ୩୦ ॥
ଦୈତ୍ୟେଶ୍ୱର ଚରିତ ଯେମନ୍ତ ପ୍ରକାରେ ।
ତାହା ସବୁ ଶୁଣିମି ପ୍ରହ୍ଲାଦ ବିଷୟରେ ॥ ୩୧ ॥
ଏହା ବୋଲି କରପତ୍ର ଯୋଡ଼ି ତପୋଧନ ।
ପରାଶର ମୁଖ ଚାହିଁ ହୋଇଲେ ମଉନ ॥ ୩୨ ॥
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପ୍ରହ୍ଲାଦ ଚରିତ ଯେ ଷୋଡ଼ଶ ଅଧ୍ୟା ଖ୍ୟାତ ॥ ୩୩ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୩୪ ॥

୧୭. କାହିଁ ପାଇଁ ଗୁରୁ ଏତେ ଦଣ୍ଡ ତାକୁ ହେଲା ।

# ସପ୍ତଦଶ ଅଧ୍ୟାୟ

ଶିଷ୍ୟ ତହୁଁ ଏହାଶୁଣି ପରାଶର ଭଣି ।
ଯାହା ପଚାରିଲ ଶୁଣିମା ହେ ଋଷିମଣି ॥ ୧ ॥
ସେ ମହାମତି ଚରିତ ଅଶେଷୁଁ ଅଶେଷ ।
ଯଙ୍ଗ ପ୍ରହଲ୍ଲାଦ ବିଷ୍ଣୁ ପଦ୍ମପାଦ ବାସ ॥ ୨ ॥
ସବୁକାଳେ ଉଦାର ଚରିତ ମହାତମା ।
ତ୍ରୈଲୋକ୍ୟେରେ ବିଦିତ ଯେ ଯାହାର ମହିମା ॥ ୩ ॥
ତାହାର ପ୍ରତାପ ବାବୁ ବ୍ରହ୍ମାଣ୍ଡେ ଦୁର୍ଲ୍ଲଭ ।
ପରିପାଟୀ ଶୁଣିଲେ ମୋକ୍ଷ ହି ଅଛି ଲାଭ ॥ ୪ ॥
ପୂର୍ବେ ଦିତୀ ଗର୍ଭରୁଁ ଯେ ହୋଇଲାକ ଜାତ ।
ହିରଣ୍ୟକଶ୍ୟପ ନାମେ ମହାବଳୀ ଦୈତ୍ୟ ॥ ୫ ॥
ମହାଗର୍ବେଶ୍ୱର ସେ ବ୍ରହ୍ମାର ବରେ କରି ।
ଆପଣାରେ ବଶ୍ୟକଲା ତ୍ରୈଲୋକ୍ୟର ଶିରି ॥ ୬ ॥
ବ୍ରହ୍ମାଣ୍ଡ ମଧରେ ସେ ହୋଇଲା ଏକ ବୀର ।
ଏକଛତ୍ର ହେଲା ମହୀମଣ୍ଡଳେ ତାହାର ॥ ୭ ॥
ସ୍ୱର୍ଗ ଭୁବନେ ଇନ୍ଦ୍ରତ୍ୱ କଲା ପୁଣି ସେହି ।
ଆକାଶରେ ପ୍ରକାଶିଲା ସ୍ୱୟଂ ସୂର୍ଯ୍ୟ ହୋଇ ॥ ୮ ॥
ଅନଳ ପବନ ସୋମ ବରୁଣ କୁବେର ।
ଯମ ନୈରୁତ ଆଦି ସ୍ୱୟେଂ ଅବତାର ॥ ୯ ॥
ଯାଗ ଭାଗ ସମସ୍ତ ସେ ଏକା କଲା ଭୋଗ ।
ତା ଭୟରେ ଦେବତାଏ ତ୍ୟକ୍ତ କଲେ ସ୍ୱର୍ଗ ॥ ୧୦ ॥
ମହୀରେ ସଂଚରିଲେ ମନୁଷ୍ୟ ଦେହ ଧରି ।
ଦଇତ୍ୟାରି ସ୍ୱରୂପ ହୃଦରେ ଧ୍ୟାନ କରି ॥ ୧୧ ॥
ଏ ରୂପରେ ତ୍ରିଭୁବନ ଭୁଜବଳେ ଜିଣି ।
ତ୍ରୈଲୋକ୍ୟ ଐଶ୍ୱର୍ଯ୍ୟ ମଦେ ହୋଇଣ କାରେଣି ॥ ୧୨ ॥
ବ୍ରହ୍ମାଣ୍ଡେ ମହାପ୍ରତାପୀ ହୋଇଲା ଅସୁର ।
ଗନ୍ଧର୍ବେ ଗାୟନ କଲେ ଯଶକୀର୍ତ୍ତି ତାର ॥ ୧୩ ॥
ନାନା ଅଭିଳାଷ ଭୋଗ ମାନ ଭୁଞ୍ଜି ସୁଖେ ।
ଏକ ଧ୍ୱଜ କଲାକ ଏମନ୍ତେ ତିନିଲୋକେ ॥ ୧୪ ॥
ସର୍ବଦା ମଦିରା ପାନେ ଅତ୍ୟନ୍ତ ଆସକ୍ତ ।
ହିରଣ୍ୟକଶ୍ୟପୁ ନାମେ ମହାବଳି ଦୈତ୍ୟ ॥ ୧୫ ॥
ସ୍ଫଟିକ ଜଗତି ପରେ ନିତ୍ୟ ତାର ସଭା ।
ସେ କାଳେ ସର୍ବେ କରନ୍ତି ପାଦ ତଳେ ସେବା ॥ ୧୬ ॥

ସିଦ୍ଧ ଗନ୍ଧର୍ବ କିନ୍ନର ପନ୍ନଗ ସକଳ ।
ସନ୍ତତେ ସେବନ୍ତି ଦୈତ୍ୟରାଜ ପାଦତଳ ॥ ୧୭ ॥
କେକେ ବୀଣା ମୃଦଙ୍ଗ ବାଦନେ ତତପର ।
କେକେ ତାଳ କେକେ ଗୀତ ଆଳାପି ସୁସ୍ୱର ॥ ୧୮ ॥
ସ୍ୱର୍ଗ ନଟୀଏ କରନ୍ତି ଅଙ୍ଗ ଭଙ୍ଗେ ନାଟ ।
ଅସୁରର ଗୁଣ କୀର୍ତ୍ତିମାନ କରି ପାଠ ॥ ୧୯ ॥
ସିଦ୍ଧମାନେ ଆନନ୍ଦେ ସଭାରେ ଥାନ୍ତି ବସି ।
ମହାବଳୀ ଦୈତ୍ୟମାନଙ୍କର ସଙ୍ଗେ ମିଶି ॥ ୨୦ ॥
ଏ ରୂପେ ଦାନବେଶ୍ୱରଙ୍କର ମହାସଭା ।
ସୁଧର୍ମାକୁ କେତେ ଅବା ପଟାନ୍ତର ଦେବା ॥ ୨୧ ॥
ସେ ମହାଦୈତ୍ୟର ପୁତ୍ର ନାମ ପ୍ରହଲ୍ଲାଦ ।
ସର୍ବଗୁଣେ ବିଚକ୍ଷଣ ଅକଳଙ୍କ ହୃଦ ॥ ୨୨ ॥
ଗୁରୁଙ୍କ ମନ୍ଦିରେ ତାକୁ ବିଦ୍ୟା ନିମିତ୍ତରେ ।
ନିଯୋଜନା କରି ଥାଇ ଦୈତ୍ୟ ସନ୍ତତରେ ॥ ୨୩ ॥
ବାଳକ ପାଠ ସବୁ ଯେ ପଢୁଥାଇ ସୁତ ।
ଏ ରୂପେ କେତେଦିନ ଯାନ୍ତେ ହେ ତପୋବନ୍ତ ॥ ୨୪ ॥
ଏକ ସମୟରେ ପ୍ରହଲ୍ଲାଦ ମହାବୀର ।
ପିତାର ସଭାକୁ ଗଲା ଗୁରୁ ସଙ୍ଗତର ॥ ୨୫ ॥
ଦେଖିଲା ଜଗତି ପରେ ହିରଣ୍ୟକଶିପୁ ।
ଲୋହଗିରି ସମାନ ପୃଥୁଳ ଦିଶେ ବପୁ ॥ ୨୬ ॥
ମଦିରାପାନେ ଆସକ୍ତ ହୋଇ ଦୈତ୍ୟେଶ୍ୱର ।
ବୀର ବେଶେ ବସିଅଛି ସିଂହାସନ ପର ॥ ୨୭ ॥
ବିବିଧ ଆୟୁଧମାନ ଧରି ନିଜ କରେ ।
ମହାବଳୀ ଦୈତ୍ୟମାନେ ଛନ୍ତି ପଟୁଆରେ ॥ ୨୮ ॥
ଗନ୍ଧର୍ବ ଅପ୍ସରା ଗୀତ ନୃତ୍ୟେ ସାବଧାନ ।
ଏହି ସମୟେ ସଭାରେ ମିଳିଲା ନନ୍ଦନ ॥ ୨୯ ॥
ପିତାପାଦେଶିର ଯେ ଲଗାଇ ନମ୍ର ହୋଇ ।
ପ୍ରଣାମ କରି ମହୀରେ ଗଡ଼ଘାଲି ଶୋଇ ॥ ୩୦ ॥
ଦେଖି ଦୈତ୍ୟେଶ୍ୱର ଯେ ପରମାନନ୍ଦ ଭୋଳେ ।
କରେ ଟେକି କୁମରକୁ ବସାଇଲା କୋଳେ ॥ ୩୧ ॥
ଶିର ଆଘ୍ରାଣ କରି ଅଙ୍ଗୁ ଧୂଳି ଝାଡ଼ି ।
ମୁଖ ଚାହିଁ ବୋଇଲା କି ପାଠ ଅଛୁ ପଢ଼ି ॥ ୩୨ ॥
ଏତେ ଦିନ ହୋଇଲା ମୁଁ ନ ଶୁଣିଲି କେବେ ।
ମୋହ ଆଗେପଢ଼ କିନା ସମସ୍ତେ ଶୁଣିବେ ॥ ୩୩ ॥

ସର୍ବବିଦ୍ୟାମାନଙ୍କର ଯେହୁ ସାରଭୂତ ।
ଅତ୍ୟନ୍ତମଙ୍ଗଳକର ଯେ ତୋର ଶିକ୍ଷିତ ।। ୩୪ ।।
ତାହାପାଠ କର ବାବୁ ତୋ ମୁଖୁଁ ଶୁଣିବି ।
ଏହା ହସି ପଚାରନ୍ତେ ପୁତ୍ର ମୁଖ ଚୁମ୍ବି ।। ୩୫ ।।
ପିତା ଆଜ୍ଞା ପ୍ରମାଣେ ବୋଲଇ ପ୍ରହଲ୍ଲାଦ ।
ଯାହା ପଚାରିଲ ପିତା ହୋଇଣ ପ୍ରମୋଦ ।। ୩୬ ।।
ତାହା ତୁମ୍ଭ ଆଜ୍ଞାରେ କହିବି କିଛି କିଛି ।
ସାରଭୂତ ହୋଇ ମୋ ମନରେ ଯାହା ଅଛି ।। ୩୭ ।।
ଯେବଣ ପ୍ରଭୁର ଆଦିଅନ୍ତ ମଧ ନାହିଁ ।
ବୃଦ୍ଧିକ୍ଷୟ ଏ ଦୁଇର ଅଇଲା ଅବା କାହିଁ ।। ୩୮ ।।
ନାହିଁ ଯାର ଜନମ ଅବ୍ୟୟ ସନାତନ ।
ଜଗତ ନିବାସ ଜଗନ୍ନାଥ ଭଗବାନ ।। ୩୯ ।।
ଆର୍ତ୍ତତ୍ରାଣ ପରାୟଣ ଦେବ ନାରାୟଣ ।
ସର୍ବକାରଣମାନଙ୍କ ଯେ ଅଟଇ କାରଣ ।। ୪୦ ।।
ତାହାଙ୍କୁ ମୋହର ନମୋନମ ପ୍ରତିଦିନ ।
ଏ ବିଦ୍ୟା ବିନା ମୁଁ କିଛି ନ ଜାଣଇ ଆନ ।। ୪୧ ।।
ପ୍ରହଲ୍ଲାଦ ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
କ୍ରୋଧଭରେ ଅଧର କମ୍ପାଇ ବୀରମଣି ।। ୪୨ ।।
ରକ୍ତ ଲୋଚନେ ଶୁକ୍ର ସୁତଙ୍କୁ ଚାହିଁଲା ।
ହେ ବିପ୍ର ଅଧମ ଏହୁ କି ବିଦ୍ୟା ପଢ଼ିଲା ।। ୪୩ ।।
ବିଦ୍ୟାରେ ଅସାର ଏ ଯେ ଶତ୍ରୁ ଗୁଣ ସ୍ତୁତି ।
କେମନ୍ତେ ଶିଶୁକୁ ପଢ଼ାଇଲୁ ହୋ ଦୁର୍ମତି ।। ୪୪ ।।
ମୋହର ଆଜ୍ଞା ଲଙ୍ଘିଣ ଏ କି କର୍ମ କଲୁ ।
ଅକଳଙ୍କ କୁଳରେ କଳଙ୍କ ଲଗାଇଲୁ ।। ୪୫ ।।
ରାଜା ତହୁଁ ଏହାଶୁଣି ବୋଇଲେ ଭାର୍ଗବ ।
ମୋତେ ଏ କୋପ ନ କର ହେ ଦୈତ୍ୟପୁଙ୍ଗବ ।। ୪୬ ।।
ମୁହିଁ ଯଉଂ ଉପଦେଶ କହୁଥାଇ ନିତ୍ୟ ।
ତାହାକିଛି ନ ପଢ଼ଇ ଏ ତୋହର ସୁତ ।। ୪୭ ।।
ମୁହିଁ ଯାହା ପଢ଼ାଇ କରଇ ତାହା ବିନା ।
ଆପଣାମନକୁ କି କି ପଢୁଥାଇ ସିନା ।। ୪୮ ।।
ଗୁରୁ ତହୁଁ ଏହାଶୁଣି ହିରଣ୍ୟକଶିପୁ ।
କ୍ରୋଧଭରେ କମ୍ପାଇ ଆପଣା ମହାବପୁ ।। ୪୯ ।।
କୋଳରୁ ହାବୁକା ମାରି ପକାଇଲା ପେଲି ।
ତିରସ୍କାର କରିଣ ଦୁର୍ଭାଷାମାନ ବୋଲି ।। ୫୦ ।।

ଉଛେଡ଼ାକି କହିଲାରେ ଅଜ୍ଞାନ କୁମର ।
ମୋହର ଆଜ୍ଞା ଭାଙ୍ଗିଲୁ ତୋ ଛାର ପାମର ।। ୫୧ ।।
ମୁହିଁ ଯାହା କହିଥିଲି ସେ ପାଠ ତୋ ଗୁରୁ ।
ନ ପଢ଼ାଇଲା ସେ କଥା ତୁହିବା ନ କରୁ ।। ୫୨ ।।
ମୋହଠାରେ ନିର୍ଣ୍ଣୟ କରିଣ ଏହା କହ ।
ନୋହିଲେ ତୋହର ପ୍ରାଣ ଘେନିମି ନିଶ୍ଚୟ ।। ୫୩ ।।
ପିତା ତହୁଁ ଏହାଶୁଣି ବୋଲଇ କୁମର ।
ଯାହା ପଚାରିଲ ପିତା ଶୁଣ ମୋ ଉତ୍ତର ।। ୫୪ ।।
ଗୁରୁଙ୍କର ଏକଥାରେ କିଛି ଦୋଷ ନାହିଁ ।
ମୋହର ଇଚ୍ଛାରେ ଏକା ଏହା ପଢୁଥାଇ ।। ୫୫ ।।
ଯଉଂ ବିଷ୍ଣୁ ଅଟେ ସର୍ବସଂସାର ପାଳକ ।
ସମସ୍ତ ହୃଦରେ ସ୍ଥିତ ଯଉଂ ସର୍ବାତ୍ମକ ।। ୫୬ ।।
ସେ ପରମ ଆତ୍ମାକୁ ଛାଡ଼ିଣ କଉଂଜନ ।
କାହା ଚରିତ ଗାଇବ ଏହା ତାତ ଘେନ ।। ୫୭ ।।
ପୁତ୍ର ତହୁଁ ଏହାଶୁଣି କ୍ରୋଧେ କହେ ରାଜା ।
ତୁହି ଯେବେ କୁମରରେ ଜାଣୁ ବିଷ୍ଣୁପୂଜା ।। ୫୮ ।।
ତେବେ ସେ ବିଷ୍ଣୁ କେ ଅବା କହୁକି ନା ମତେ ।
ତାହାକୁ ତୁ ପୁନଃପୁନ ଭାବୁ ଅନ୍ତର୍ଗତେ ।। ୫୯ ।।
ଜଗତର ଈଶ୍ୱର ଏ ବୋଲି ମୋ ଆଗରେ ।
ନିଃଶଙ୍କେ ଉଚ୍ଚାରୁ ଅଛୁ ଯାହାକୁ ତୁଣ୍ଡରେ ।। ୬୦ ।।
ସେ କଉଂ ପୁରୁଷ ତୋଠାରୁ ତାହା ଶୁଣିମା ।
ତେବେ ସିନା ସତ କରି ମନକୁ ଆଣିମା ।। ୬୧ ।।
ପିତା ତହୁଁ ଏହାଶୁଣି କହଇ କୁମର ।
ଯାହା ପଚାରିଲ ତାତ ଶୁଣ ମୋ ଉତ୍ତର ।। ୬୨ ।।
ଯାହା ପରମ ପଦକୁ ମହାଯୋଗିମାନେ ।
ଧ୍ୟାନ କରୁଥାନ୍ତି ସଦା ସୁନିର୍ମଳ ଜ୍ଞାନେ ।। ୬୩ ।।
ଯେ ନାହିଁ ଶବ୍ଦଗୋଚର ମାନଙ୍କରେ ପୁଣି ।
ଏ ବିଶ୍ୱକୁ ଆପଣା ଯେ ଅଛଇ ନିର୍ମାଣି ।। ୬୪ ।।
ବିଶ୍ୱ ହୋଇ କରି ପୁଣି ପ୍ରକାଶିଛି ଯେହୁ ।
ସେ ବିଷ୍ଣୁଙ୍କ ମହିମା କେ ଅବା ମୁଖେ କହୁ ।। ୬୫ ।।
ସେ ପରମଈଶ୍ୱରଙ୍କୁ କେ ପାରିବ ଜାଣି ।
ମତେ କିମ୍ପା ପଚାର ଭୂପତି ଚୂଡ଼ାମଣି ।। ୬୬ ।।
ପୁତ୍ର ତହୁଁ ଏହାଶୁଣି ସେ ଅସୁରେଶ୍ୱର ।
ବୋଲଇ ଶୁଣରେ ମୂର୍ଖ ଦୁର୍ବୁଦ୍ଧି ପାମର ।। ୬୭ ।।

ସେ ପରମେଶ୍ୱର ବୋଲି ବୋଇଲୁ ଯା ତୁଣ୍ଡେ ।
ମୁହିଁ ଏକ ହୋଇ କରି ଥାଆନ୍ତେ ବ୍ରହ୍ମାଣ୍ଡେ ।। ୬୮ ।।
ଆନକେ ପରମେଶ୍ୱର ଅଛି କି ତୋହର ।
ମରିବାକୁ ପୁନଃପୁନ ବୋଲୁ ଏ ଉତ୍ତର ।। ୬୯ ।।
ହିରଣ୍ୟକଶିପୁ ତହୁଁ ଏହାଶୁଣି ସୁତ ।
ମୃଦୁବାକ୍ୟ କହଇ ଶୁଣିମା ହେଉ ତାତ ।। ୭୦ ।।
ତୋହର ବୋଲି କରିଣ ବୋଇଲ ଯା ମତେ ।
ଏକା ମୋର ନୁହଇ ଅଛଇ ସର୍ବଭୂତେ ।। ୭୧ ।।
ସର୍ବ ପ୍ରଜାମାନଙ୍କର ଅଟଇ ସେ ହରି ।
ସେହି ରୂପେ ତୁମ୍ଭର ପୁଣିଟି ଦଣ୍ଡଧାରି ।। ୭୨ ।।
ସେହି ଧାତା ସେ ବିଧାତା ସେ ପରମେଶ୍ୱର ।
ଏଥିକି କାହିଁକି ତାତ ଏଡ଼େକୋପ କର ।। ୭୩ ।।
ଏବେ ହେଲେ ପ୍ରସନ୍ନ ହୋଇବା ମୋହଠାରେ ।
ଏହା ବୋଲି ନମିଲା ଯେ ଜନକ ପୟରେ ।। ୭୪ ।।
ପ୍ରହଲ୍ଲାଦ ତହୁଁ ଏହାଶୁଣି ଦୈତ୍ୟେଶ୍ୱର ।
କ୍ରୋଧଭର ହୋଇ କହେ ଶୁଣରେ ପାମର ।। ୭୫ ।।
ସର୍ବଭୂତେ ସେହି ବୋଲି ବୋଇଲୁ ଯା ତୁହି ।
କହ କାହାର ହୃଦରେ ସେ ପୁଣି ଅଛଇ ।। ୭୬ ।।
ଏଡ଼େ ନଷ୍ଟ ବଚନ ଯା କହୁ ପୁନଃପୁନ ।
ଏଣୁ ଦୁର୍ବୁଦ୍ଧିମାନଙ୍କେ ପାପି ତୁ ନନ୍ଦନ ।। ୭୭ ।।
ପିତା ତହୁଁ ଏ ବଚନ ଶୁଣି ପ୍ରହଲ୍ଲାଦ ।
ବୋଇଲେ ହେ ମହାରାଜ କି କରିବା କ୍ରୋଧ ।। ୭୮ ।।
ମୋହ ହୃଦରେ କେବଳ ଅଛଇ କି ସେହି ।
ଚରାଚରମାନଙ୍କରେ ବ୍ୟାପିତ ଅଟଇ ।। ୭୯ ।।
ସର୍ବଲୋକମାନଙ୍କୁ ଆକ୍ରାନ୍ତ କରି ପୁଣି ।
ସର୍ବରୂପେ ରହିଛି ଜଗତ ଚିନ୍ତାମଣି ।। ୮୦ ।।
ମତେ ତତେ ସମସ୍ତଙ୍କୁ ସମସ୍ତ ପ୍ରକାରେ ।
ନିଯୁକ୍ତ କରିଛି ସର୍ବ ଚେଷ୍ଟାମାନଙ୍କରେ ।। ୮୧ ।।
ସର୍ବଠାରେ ସଞ୍ଚାର କରଇ ସର୍ବୋପରି ।
ସେହି ଏକା ତାତ ହେ ଅନାଦି ଦେବହରି ।। ୮୨ ।।
ପୁତ୍ର ତହୁଁ ଏହାଶୁଣି ହିରଣ୍ୟକଶିପୁ ।
କାଳସର୍ପ ପରାୟେ ବୁଲାଇ ନିଜ ବପୁ ।। ୮୩ ।।
କ୍ରୋଧେ କିଂକରଗଣଙ୍କୁ ବୋଲେ ଦଣ୍ଡଧାରୀ ।
ଏ ଦୁଷ୍ଟ ପୁତ୍ରକୁ ନିଅ ଏଠାରୁ ଘୋସାରି ।। ୮୪ ।।

ଗୁରୁଗୃହେ ନେଇ କରି ଛାଡ଼ ପୁନରପି ।
ଏବେ ହେଲେ ସୁକଥା ଶିଖୁ ଏ ମହାପାପୀ ॥ ୮୫ ॥
ଶତ୍ରୁର ମିଥ୍ୟାସ୍ତୁତିରେ ଏହାକୁ କେ ଅବା ।
ନିଯୁକ୍ତ କରିଅଛି ତା' କେମନ୍ତ ଜାଣିବା ॥ ୮୬ ॥
ଏବେ ହେଲେ ମୋ ବୋଲେ ସେ ଶିକ୍ଷାମାନ ଛାଡୁ ।
ନିଜକୁଳ ଧର୍ମ ବିଦ୍ୟା ନିଶ୍ଚିନ୍ତରେ ପଢୁ ॥ ୮୭ ॥
ରାଜା ତହୁଁ ଏହାଶୁଣି ଆସିଣ କିଙ୍କରେ ।
ପ୍ରହଲ୍ଲାଦ କର ଧରି ନେଲେକ ସତ୍ୱରେ ॥ ୮୮ ॥
ଗୁରୁଙ୍କ ମନ୍ଦିରରେ ପୁଣି ଛାଡ଼ିଲେ ନେଇ ।
ଏଥୁ ଅନନ୍ତରେ ଶୁଣିମା ହୋ ତପଦେହି ॥ ୮୯ ॥
ଗୁରୁଙ୍କର ଗୃହେ ରହି ବୀର ପ୍ରହଲ୍ଲାଦ ।
ପୁନରପି ବିଦ୍ୟା ପଢ଼େ କୃଷ୍ଣ ହରି ପଦ ॥ ୯୦ ॥
ଗୁରୁଙ୍କର ସେବା ଯେ ସନ୍ତତ କରୁଥାଇ ।
ମୁଖରେ ରାମ ଗୋବିନ୍ଦ ହରି ନାମ ଗାଇ ॥ ୯୧ ॥
ଏହି ଅନୁକ୍ରମରେ କେତେ ହେ କାଳ ଗଲା ।
ଦିନେ ଦୈତ୍ୟେଶ୍ୱର ଯେ ପୁତ୍ରକୁ ଅଣାଇଲା ॥ ୯୨ ॥
ପାଶରେ ବସାଇ ପୁଣି ପୁଛଇରେ ପୁତ୍ର ।
କି କି ପଢ଼ିଅଛୁ ବାବୁ କହ ସେ ଚରିତ ॥ ୯୩ ॥
ପିତାଙ୍କର ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
କୋମଳ କରିଣ ପ୍ରହଲ୍ଲାଦ ଜେନାଭଣି ॥ ୯୪ ॥
ଯାହାଠାରୁଁ ପ୍ରକୃତିପୁରୁଷ ଉତପତି ।
ଯାହାଠାରୁଁ ଚରାଚର ସର୍ବେ ହୋଇଛନ୍ତି ॥ ୯୫ ॥
ସେ ସମସ୍ତ ସଂସାରରେ ଯେ ଅଟେ କାରଣ ।
ପ୍ରସନ୍ନ ହୁଅନ୍ତୁ ସେହି ବିଷ୍ଣୁ ନାରାୟଣ ॥ ୯୬ ॥
ଏହାଶୁଣି ହିରଣ୍ୟକଶିପୁ ମହାକ୍ରୋଧୀ ।
ବୋଇଲା ଏ ଦୁରାତ୍ମାକୁ ପକାଅରେ ବଧି ॥ ୯୭ ॥
ଏଣେ କରି ଆମ୍ଭର କିଛି ହିଂ କାର୍ଯ୍ୟ ନାହିଂ ।
ଜୀବନ ଘେନିଲେ ଏକାମାତ୍ର ଭଲ ହୋଇ ॥ ୯୮ ॥
ଆପଣା ପକ୍ଷର ହାନି କଲାକ ବିଚାର ।
ଏଣୁଁ ନିଶ୍ଚେ ହୋଇଲା ଏ ଆମ୍ଭ କୁଳାଙ୍ଗାର ॥ ୯୯ ॥
ଏହା ବୋଲି ଆଜ୍ଞା ଯେ ଦିଅନ୍ତେ ଦୈତ୍ୟେଶ୍ୱର ।
ଶତସହସ୍ର ବାହାର ହେଲେ ଦୈତ୍ୟବୀର ॥ ୧୦୦ ॥
ଶସ୍ତ୍ରମାନ କରେ ଧରି ଧାଇଁଲେକ ବେଗେ ।
ପ୍ରହ୍ଲାଦକୁ ନାଶିବା ଅର୍ଥରେ ଉଭା ଆଗେ ॥ ୧୦୧ ॥

୮୫. ଖ. ସ୍ୱ କଥା । ୮୯. ଖ. ଛାଡ଼ି ଦେଲେ ନେଇ ।

ତାହା ଦେଖି ପ୍ରହ୍ଲାଦ ବୋଇଲେ ଆହେ ଦୈତ୍ୟେ ।
ତୁମ୍ଭଠାରେ ମୋହଠାରେ ପୁଣି ଏହୁ ଶସ୍ତ୍ରେ ।। ୧୦୨ ।।
ସବୁଠାରେ ସେ ବିଷ୍ଣୁ ଯେ ହୋଇଛନ୍ତି ସ୍ଥିତ ।
ଏଣୁ କେଣେ କରି କାହାଠାରେ ରେ ଆକ୍ରାନ୍ତ ।। ୧୦୩ ।।
ଏହାଶୁଣି ଦୈତ୍ୟମାନେ କୋପରେ ପ୍ରଜ୍ୱଳି ।
ଶତସହସ୍ର ସଂଖ୍ୟାରେ ଚାରିଆଡ଼େ ମିଳି ।। ୧୦୪ ।।
ନାନା ଶସ୍ତ୍ରମାନ ପହୁଡ଼ିଲେ ତା' ଉପରେ ।
ଉଚ୍ଚରେ ଗଳଗର୍ଜନମାନ କରି ଖରେ ।। ୧୦୫ ।।
ଯେତେବେଳେ ଅଙ୍ଗରେ ପଡ଼ିଲା ସର୍ବଶସ୍ତ୍ର ।
କିଛି ହିଁ ବେଦନା ଯେ ନ କଲା ଅଳ୍ପମାତ୍ର ।। ୧୦୬ ।।
ଗିରି ପରେ ଶିରିଶକୁ ସୁମବୃଷ୍ଟି ପରା ।
କୋମଳ ତନୁକୁ କିଛି ନ ଲାଗିଲା ଭାରା ।। ୧୦୭ ।।
ଏହା ଦେଖି ହିରଣ୍ୟକଶିପୁ ପୁଣି କହି ।
ଏବେ ହେଲେ ନିବର୍ତ୍ତି ରହରେ ମୂର୍ଖ ବାଇ ।। ୧୦୮ ।।
ତୋହ କଲା ଅପରାଧ ସବୁ କଲି କ୍ଷମା ।
ଅଭୟ ଦେଲି ଏବେ ହେଁ ନୁହ ମୂଢ଼ ଆତ୍ମା ।। ୧୦୯ ।।
ପିତା ତହୁଁ ଏହାଶୁଣି ବୋଲେ ପ୍ରହଲ୍ଲାଦ ।
ସର୍ବଭୟ ନାଶଇ ଯେବଣ ବିଷ୍ଣୁପାଦ ।। ୧୧୦ ।।
ସେ ଅନନ୍ତ ସଦାଚିତ୍ତେ କରନ୍ତେ ବିହାର ।
କାହିଁକି ରହିବ ତାତ ମୋହ ଭୟ ଛାର ।। ୧୧୧ ।।
ଯାହାକୁ ସ୍ମରଣେ କଲାମାତ୍ରେ ଅନ୍ତର୍ଗତେ ।
ଜନ୍ମକାଳ ଜରାକାଳ ଭୟ ବ୍ୟାଧି ଯେତେ ।। ୧୧୨ ।।
ସମସ୍ତେ ସେ କାଳେ ଯେବେ ନାଶକୁ ଯାଆନ୍ତି ।
ତେବେ ମୋର ତାତ ହେ କାହିଁକି ଆଉ ଭୀତି ।। ୧୧୩ ।।
ଏହାଶୁଣି ହିରଣ୍ୟକଶିପୁ ଅତି ରାଗେ ।
ବୋଇଲା ହେ ମହାସର୍ପମାନ ଆସ ବେଗେ ।। ୧୧୪ ।।
ଏ ଅଟଇ ଅତ୍ୟନ୍ତ ଦୁର୍ମତି ଦୁରାଚାର ।
ଏହାର ନାଶେ ମୋହର କେବଳ ବିଚାର ।। ୧୧୫ ।।
ଏଣୁ ବିଷଜ୍ୱାଳା ମୁଖ ଦଂଶନରେ କରି ।
ଏହି ଲାଗେ ଏହାକୁ ପକାଅ ସର୍ବେ ମାରି ।। ୧୧୬ ।।
ଦୈତ୍ୟେଶ୍ୱର ଶ୍ରୀମୁଖୁଁ ଏମନ୍ତ ଆଜ୍ଞାପାଇଂ ।
ସଭାରେ ଥିଲେକ ଯେତେ ମହା ମହା ଅହି ।। ୧୧୭ ।।
କୁଳିକ ତକ୍ଷକ ଆଦି ହୋଇଲେ ବାହାର ।
ଫଣାମାନ ଟେକିଣ ଗର୍ଜିଣ ଫୁଁଫୁଁକାର ।। ୧୧୮ ।।

୧୦୫. ପହୁଡ଼ିଲେ = ପ୍ରହାର କଲେ ।

ପ୍ରହଲ୍ଲାଦ କୁମରର ସର୍ବାଙ୍ଗ ଯାକରେ ।
ସମସ୍ତେ ଦଂଶିଲେ ବିଷଜ୍ୱାଳା ଦଂଶନରେ ॥ ୧୧୯ ॥
ସେ ସମୟେ କୃଷ୍ଣଙ୍କ ଅଭୟ ପାଦତଳେ ।
ସତ୍ୱଗୁଣେ ମତି ବୀର ଦେଇଛି ନିଶ୍ଚଳେ ॥ ୧୨୦ ॥
ସେ କାଳରେ ସର୍ପ ଆଘାତ ନ ଜାଣିଲା କିଛି ।
ବଜ୍ର ସ୍ତମ୍ଭ ପରାୟେ ଶରୀର ହୋଇଅଛି ॥ ୧୨୧ ॥
ସ୍ମରଣ ଆହ୍ଲାଦରେ ହେବାରୁଁ ସଂସ୍ଥିତ ।
ବିଷଜ୍ୱାଳା ମାଳା ନ ଜାଣିଲାକ କିଂଚିତ ॥ ୧୨୨ ॥
ସର୍ପଙ୍କର ଦନ୍ତମାନେ ସର୍ବେ ଗଲେ ଝଡ଼ି ।
ଫଣାମଣି ଗଣ ଫାଟି ଅବନୀରେ ପଡ଼ି ॥ ୧୨୩ ॥
ଏହା ଦେଖି ସର୍ପମାନେ ପଡ଼ିଲେ ବୋବାଳି ।
ବୋଇଲେ ଝଡ଼ିଲା ଆମ୍ଭ ସର୍ବ ଦନ୍ତାବଳି ॥ ୧୨୪ ॥
ଫଣାମାନଙ୍କର ମଣି ଗଣ ଚୂର୍ଣ୍ଣ ହେଲେ ।
ମୁଖମାନେ ରକ୍ତଶ୍ରବି ତାପକୁ ପାଇଲେ ॥ ୧୨୫ ॥
ହୃଦୟମାନଙ୍କେ ଆସି ପ୍ରକାଶିଲା କମ୍ପ ।
ଏହାର ଚର୍ମ କି ବଜ୍ର କପଟ ସ୍ୱରୂପ ॥ ୧୨୬ ॥
କିଂଚିତ୍‌ମାତ୍ରକ ଭିନ୍ନ ନୋହିଁ ଲାକ ଯେଣୁ ।
ଉପାୟଶୂନ୍ୟ ସମସ୍ତେ ହୋଇଲୁଟି ତେଣୁ ॥ ୧୨୭ ॥
ହେ ଦୈତ୍ୟେଶ୍ୱର ଆମ୍ଭରେ ନୁହଇ ଏ ସାଧ୍ୟ ।
ଆନକି ଉପାୟ ଥିଲେ ଏଣେ କରି ସାଧ୍ୟ ॥ ୧୨୮ ॥
ସର୍ପଙ୍କର ମୁଖରୁଁ ଏମନ୍ତ ବାକ୍ୟ ଶୁଣି ।
ମହାକ୍ରୋଧ ଭରେ ଯେ କମ୍ପିଣ ବୀରମଣି ॥ ୧୨୯ ॥
ଦିଗ୍ଦନ୍ତିମାନଙ୍କୁ ଚାହିଁ ବୋଇଲାକ ରାଗେ ।
ଆହେ ଦନ୍ତାବଳୀମାନେ ତୁମ୍ଭେ ଆସ ବେଗେ ॥ ୧୩୦ ॥
ବଜ୍ରମୁଷଳ ସମାନ ତୁମ୍ଭ ଦନ୍ତମାନେ ।
ତେଣେ କରି ଯୁକ୍ତ ହୋଇଅଛି ପ୍ରତିଦିନେ ॥ ୧୩୧ ॥
ମନ କଲେ ମେରୁଗିରି ଭିନ୍ନ କରିପାର ।
ବାଳକଶରୀର ସିନା ଏହା କେତେ ଛାର ॥ ୧୩୨ ॥
ଏହାର ଅଙ୍ଗ ବିଦାର ଏବେ ଦନ୍ତ ମୁନେ ।
ଯାଉ କୁଳକଳଙ୍କ ନ ଥାଉ ମୋ ଆସ୍ଥାନେ ॥ ୧୩୩ ॥
ବୋଲିବ ଅବା ଏ ଅଟେ ତୁମ୍ଭର କୁମର ।
କି ରୂପେ ନାଶ କରିବୁଁ ଏହାର ଶରୀର ॥ ୧୩୪ ॥
ଯେଉଂ କୁଳେ ଜନ୍ମି ଏ ସେ କୁଳ କଲା ନାଶ ।
ମୋ ତହୁଁ ସମ୍ଭବି ମୋର ଶତ୍ରୁରେ ବିଶ୍ୱାସ ॥ ୧୩୫ ॥

ଅନଳ ଯେମନ୍ତ ଅରୁଣିରୁଂ ଜାତ ହୋଇ ।
ତାକୁ ଦହିବା ଅର୍ଥରେ ସମର୍ଥ ହୁଅଇ ।। ୧୩୬ ।।
ସେହି ରୂପେ ମୋହର ଏ ଗୋତ୍ର ଶତ୍ରୁ ହେଲା ।
ଯହିଁରେ ସମ୍ଭବି ତାହା ନାଶକୁ ଇଛିଲା ।। ୧୩୭ ।।
ହିରଣ୍ୟକଶିପୁ ମୁଖୁଁ ଶୁଣି ଏହୁ ଆଜ୍ଞା ।
ଗର୍ଜିଲେ ଦିଗ ବାରଣେ କରିଣ ପ୍ରତିଜ୍ଞା ।। ୧୩୮ ।।
କୁଳାଚଳ ସମାନ ପ୍ରକାଶି ଅଙ୍ଗମାନ ।
ଶୁଣ୍ଢାଟେକି ଧାଇଂଲେ ଯେ କରିଣ ଗର୍ଜନ ।। ୧୩୯ ।।
ଥୋର ହସ୍ତ ମାରି ତଳେ କଚାଡ଼ି ପକାଇ ।
ଦନ୍ତମାନ ମାଇଲେ ଯେ ବକ୍ଷସ୍ଥଳେ ନେଇ ।। ୧୪୦ ।।
ସେ ସମୟେ ବୀର ଧ୍ୟାନ କରନ୍ତେ ଗୋବିନ୍ଦ ।
ହୃଦୟରେ ଥିଲା ପ୍ରଭୁପାଦ ଅରବିନ୍ଦ ।। ୧୪୧ ।।
ସେ ବଜ୍ର ଲକ୍ଷଣ ତେଜ ପ୍ରଭାବରେ କରି ।
ସହସ୍ର ସହସ୍ର ଦନ୍ତମାନ ହେଲେ ଚୂରି ।। ୧୪୨ ।।
ଶୀଳାଘାତେ ଯେମନ୍ତ କଦଳୀ ମଞ୍ଜା ଅଗ୍ର ।
ଛତୁପ୍ରାୟେ ହୋଇ ଛେଚି ହୋୟେ ଅତିଶୀଘ୍ର ।। ୧୪୩ ।।
ସେହି ରୂପେ ବକ୍ଷସ୍ଥଳେ ବାଜି ଗଲା ନାଶ ।
ସେ କାଳେ ପିତାକୁ ବୋଇଲାକ ବିଷ୍ଣୁ ଦାସ ।। ୧୪୪ ।।
ହେ ତାତ ଦେଖ ଏ ମହାଗଜ ଦନ୍ତମାନେ ।
ବଜ୍ରଠାରୁଂ ନିଷ୍ଠୁର ସମସ୍ତେ ସବୁ ଦିନେ ।। ୧୪୫ ।।
ସେମାନେ ଯା ଚୂର୍ଣ୍ଣ ହେଲେ ଏତିକି ମୋ ବଳ ।
ଏହା କିପାଇଂ ବିଚାର ନ କର ହୃଦସ୍ଥଳ ।। ୧୪୬ ।।
ଜନାର୍ଦ୍ଦନ ପ୍ରଭୁଙ୍କ ସ୍ମରଣ ଅନୁଭବ ।
ଏହି ରୂପେ ବିପତ୍ତି ହରେ ହେ ଦୈତ୍ୟ ପୁଙ୍ଗବ ।। ୧୪୭ ।।
ଏହା ଶୁଣି ହିରଣ୍ୟକଶ୍ୟପୁ ପୁଣି କହି ।
ଆହେ ଦିଗ୍‌ଗଜ ସକଳେ ତୁମ୍ଭେ ଥାଅ ରହି ।। ୧୪୮ ।।
ଆହେ ସମସ୍ତ ଅସୁରେ ବୀର ମହାବୀରେ ।
ତୁମ୍ଭେ ଆସି ଅନଳ ଜାଳ ଅତ୍ୟନ୍ତ ପ୍ରଖରେ ।। ୧୪୯ ।।
ପବନକୁ ବୋଇଲା ଆସ ହେ ମହାବାୟୁ ।
ଅଣଞ୍ଚାସ ମୂର୍ତ୍ତି ଘେନି ତୁମ୍ଭେ ଥିବ ବହୁ ।। ୧୫୦ ।।
ତୁମ୍ଭ ସହାଘେନି ଜଳି ପ୍ରଚଣ୍ଡ ଅନଳ ।
ଏ ପାପୀର ତନୁକୁ ଦହିବ ତତକାଳ ।। ୧୫୧ ।।
ଏମନ୍ତ ଆଜ୍ଞା ପାଇଣ ସମସ୍ତ କିଂକରେ ।
ମହାକାଷ୍ଠମାନ ବହି ଆଣିଲେ ସତ୍ୱରେ ।। ୧୫୨ ।।

ଜଗତି ତଳେ ଅଗାଧ ଅଗ୍ନିକୁଣ୍ଡେ ଖୋଳି ।
କାଷ୍ଠ ରାଶି ପକାଇ ଅଗ୍ନି ଯେ ଦେଲେ ଜାଳି ।। ୧୫୩ ।।
ପ୍ରହଲ୍ଲାଦକୁମରକୁ ସେ ମଧ୍ୟେ ପକାଇ ।
ଅନଳ ଘୃତମାନ ଯେ ନିଉଢ଼ିଲେ ନେଇଂ ।। ୧୫୪ ।।
ସେ କାଳରେ ପ୍ରଚଣ୍ଡରେ ବହିଲା ବତାଶ ।
ପ୍ରଳୟାନଳ ସମାନ ବହିଲା ହୁତାଶ ।। ୧୫୫ ।।
ଆକାଶମାର୍ଗକୁ ଯେ ଲାଗିଲା ମହାଶିଖା ।
ଧୂମ ଅନ୍ଧକାରେ ଦିଗେ ନ ଦେଲାକ ଦେଖା ।। ୧୫୬ ।।
ପ୍ରହଲ୍ଲାଦ ସର୍ବାଙ୍ଗରେ ଲାଗିଣ ଅନଳ ।
ଚନ୍ଦନରୁଂ ଅତ୍ୟନ୍ତ ଯେ ଲାଗିଲା ଶୀତଳ ।। ୧୫୭ ।।
ଅଗ୍ନିକୁଣ୍ଡ ମଧରେ ଥାଇଣ ପ୍ରହଲ୍ଲାଦ ।
ମୁଖରେ ଉଚ୍ଚାରି ହରି ହରି ହରି ପଦ ।। ୧୫୮ ।।
ହିରଣ୍ୟ କଶିପୁ ମୁଖ ଅନାଇଣ ବୋଲେ ।
ହେ ତାତ ପବନ ବହି ଉତ୍ତମହି କଲେ ।। ୧୫୯ ।।
ତେଣୁ କରି ଅଗ୍ନି ନ ଦହିଲା ମୋ ଶରୀର ।
ଚନ୍ଦନରୁଂ ଶୀତଳ ଯେ ଶିଖାମାନେ ତାର ।। ୧୬୦ ।।
ଦିଗ ମୁଖମାନଙ୍କୁ ଯେ ସବୁଆଡ଼େ ମୁହିଂ ।
ଏମନ୍ତ ପ୍ରକାରେ କରି ଦେଖୁ ଯେ ଅଛଇ ।। ୧୬୧ ।।
ଶୀତଳ ପଦ୍ମ ପାଖୁଡ଼ିମାନ ଚାରିଆଡ଼େ ।
ବେଢ଼ି ରହିଛନ୍ତି କି ଅତ୍ୟନ୍ତ ନିବିଡ଼େ ।। ୧୬୨ ।।
ଏଣୁ ରକ୍ତକମଳ ଉଦରେ ଥିଲା ପରି ।
ମହାଶୀତଳ ଲାଗୁଛି ଆହେ ଦଣ୍ଡଧାରି ।। ୧୬୩ ।।
ଏହି ସମୟରେ ପୁଣି ଦୈତ୍ୟେଶ୍ୱର ଆଗେ ।
ଶୁକ୍ରଙ୍କର ସୁତମାନେ ସର୍ବ ମହାଭାଗେ ।। ୧୬୪ ।।
ସମସ୍ତ ମହାତ୍ମା ନିଜ କୁଳ ପୁରୋହିତେ ।
ସାମବେଦ ଗାଇ ସ୍ତୁତି କରି ବିଧି ମତେ ।। ୧୬୫ ।।
ରାଜନକୁ ବୋଲନ୍ତି ହେ ଦୈତ୍ୟ ଇନ୍ଦ୍ରଗୁଣ ।
ନ ଜାଣିମା ପଣକୁ ହେଲାନି ଏ କଷଣ ।। ୧୬୬ ।।
ଏବେ କ୍ଷମା ହେଉ ମହାକୋପ ଶାନ୍ତି କର ।
ଆପଣଙ୍କର ଅଟଇ ଏ ସାନ କୁମର ।। ୧୬୭ ।।
ତୁମ୍ଭ ପୁତ୍ର ଯେହ୍ନେ ସେ ଦେବତା ସମ ସିନା ।
ବଧ କୋପ ଯାହାଟି ତାଠାରେ କର କିନା ।। ୧୬୮ ।।
ସେହି ରୂପେ ଆମ୍ଭେମାନେ ଏ ତୁମ୍ଭ ପୁତ୍ରକୁ ।
ସଂସ୍କାର କରିବୁ କହି ସ୍ୱକୁଳ ଧର୍ମକୁ ।। ୧୬୯ ।।

ଯେଉଁ ରୂପେ ଶତ୍ରୁଗୁଣ କୀର୍ତ୍ତନ ଛାଡ଼ିବ ।
ଶ୍ରୀମୁଖ ଆଜ୍ଞାମାନିଣ ବିନୟରେ ଥିବ ॥ ୧୭୦ ॥
ବାଳକ ଭାବ ସକଳ ଦୋଷଙ୍କର ସ୍ଥାନ ।
ତହିଁରେ ଅଟଇ ରାଜାଧିରାଜଙ୍କ ନନ୍ଦନ ॥ ୧୭୧ ॥
ତେଣୁକରି ବାଳକ ବିଷୟେ ଏହୁ କୋପ ।
ବିଅର୍ଥେ କରିବା ନୋହୁ ଦୈତ୍ୟ କୁଳ ଭୂପ ॥ ୧୭୨ ॥
ଏବେ ଆମ୍ଭ ବଚନେ ଯେମନ୍ତ ହରିସେବା ।
ଛାଡ଼ିବ ସେହି ରୂପରେ ଉପାୟ କରିବା ॥ ୧୭୩ ॥
ଯେବେ ଆମ୍ଭର ବୋଲ ନ ଘେନିବ ମୂର୍ଖପଣେ ।
ତାହା ନାଶ ଉପାୟ କରିବୁ ସେହି କ୍ଷଣେ ॥ ୧୭୪ ॥
ମହାଘାତକାରିଣୀ ଯେ କୃତ୍ୟା କରି ଜାତ ।
ତାହାକୁ ଅବଶ୍ୟ ଆମ୍ଭେ କରିବୁଟି ହତ ॥ ୧୭୫ ॥
କହୁଛନ୍ତି ପରାଶର ଶୁଣ ବ୍ରହ୍ମଜ୍ଞାନୀ ।
ଏମନ୍ତ ପ୍ରାର୍ଥନା ଯହୁଁ କଲେ ସର୍ବମୁନି ॥ ୧୭୬ ॥
ଶୁଣି ଦୈତ୍ୟେଶ୍ୱର ଯେ ଆନନ୍ଦ ହୋଇଲା ।
ଦୈତ୍ୟକରେ ପୁତ୍ରକୁ ଅଗ୍ନିରୁଂ କଢ଼ାଇଲା ॥ ୧୭୭ ॥
ତହିଂ ଉତ୍ତାରେଣ ନିଜ ପାଶକୁ ଅଣାଇ ।
ଗୁରୁ କୁମରଙ୍କ ହସ୍ତେ ସମର୍ପିଲା ନେଇଂ ॥ ୧୭୮ ॥
ବୋଇଲା ଏବେ ହେଲେ ହେଂ ଏହାକୁ ଶିଖାଇ ।
କୁଳଧର୍ମମାନଙ୍କେ ନିଯୁକ୍ତ କର ନେଇଂ ॥ ୧୭୯ ॥
ଯେବେ ତୁମ୍ଭବାକ୍ୟ ନ କରିବଟି ଏଥର ।
ଯେଉଂ ରୂପେ ମରିବ ଉପାୟ କରି ମାର ॥ ୧୮୦ ॥
ଏହା ଶୁଣି ଗୁରୁପୁତ୍ରେ ପ୍ରହ୍ଲାଦକୁ ଧରି ।
ଆପଣା ଗୃହକୁ ନେଲେ ଅତିଶୀଘ୍ର କରି ॥ ୧୮୧ ॥
ବହୁତ ଅସୁର ଶିଶୁମାନେ କରି ଗୋଷ୍ଠୀ ।
ପ୍ରହଲ୍ଲାଦ ସଙ୍ଗତେ ମିଶାଇ ତପନିଷ୍ଠି ॥ ୧୮୨ ॥
ଦୈତ୍ୟକୁଳଧର୍ମ ଯେ ସେ କାଳେ ପଢ଼ାଇଲେ ।
ଗୁରୁ ଉପଦେଶ ଅନ୍ତେ ପ୍ରହ୍ଲାଦ ବୋଇଲେ ॥ ୧୮୩ ॥
ଆରେ ଦୈତ୍ୟପୁତ୍ରମାନେ ମୋହଠାରୁଂ ଶୁଣ ।
ଯେଉଂ ବିଷୟରେ ପରମାର୍ଥ ହୁଏ ପୁଣ ॥ ୧୮୪ ॥
ସେ କଥା କେବେ ଅନ୍ୟଥା ନ କରିବ କେହି ।
ଲୋଭ ମୋହାଦିମାନଙ୍କ କାରଣ ଯେ ହୋଇ ॥ ୧୮୫ ॥
ତାହା ମାତ୍ର ଏ ସଂସାରେ ନ କରିବ କେବେ ।
ମୋହଠାରୁଂ ବଚନ ଶୁଣିବା ହେଉ ଏବେ ॥ ୧୮୬ ॥

ସମସ୍ତ ଜନ୍ତୁମାନେ ଜନ୍ମକୁ ପାଆନ୍ତି ।
ତହିଁ ଉତ୍ତାରେ ବାଳକ ଭାବ ଆଚରନ୍ତି ।। ୧୮୭ ।।
ତହିଁ ଉତ୍ତାରେଣ ପୁଣି ପାଆନ୍ତି ଯୌବନ ।
ସେକାଳେ ଯେତେକ କଥା କରନ୍ତି ସେମାନ ।। ୧୮୮ ।।
ତହୁଁ ପୁଣି ଦିନୁ ଦିନୁ ଆକର୍ଷନ୍ତେ ଜରା ।
ବାତୁଳ ଚେଷ୍ଟା ହୁଅଇ ଶିଶୁକାଳ ପରା ।। ୧୮୯ ।।
ତହିଁ ଉତ୍ତାରେଣ ପୁଣି ହୁଅଇ ଯେ ମୃତ୍ୟୁ ।
କେହି ନ ଜାଣଇ ଏ ଦଇବ ମାୟା ହେତୁ ।। ୧୯୦ ।।
ଏ କଥା ଆମ୍ଭମାନଙ୍କ ତୁମ୍ଭମାନଙ୍କର ।
ସମସ୍ତଙ୍କର ହୁଅଇ ଏ ବିଧି ବିଚାର ।। ୧୯୧ ।।
ଯେ ମରଇ ତାହାର ପୁଣିହିଁ ଜନ୍ମ ହୋଏ ।
ଏ କଥା କେତେବେଳେ ହେ ଅନ୍ୟଥାଟି ନୋହେ ।। ୧୯୨ ।।
ଜନ୍ମ ହୋଇଲେ ପୁଣି ମୃତ୍ୟୁ ହେବା ମୂଳ ।
ଜନ୍ମକାଳେ ଭୁଞ୍ଜେ ପୂର୍ବ ଜନ୍ମକୃତଫଳ ।। ୧୯୩ ।।
ସେ ଫଳ ଭୋଗ ପର୍ଯ୍ୟନ୍ତେ ପରମାୟୁ ଥାଇ ।
ଫଳଭୋଗ ସରିବା ସମୟେ ମୃତ୍ୟୁ ହୋଇ ।। ୧୯୪ ।।
ବିନା ପୂର୍ବାର୍ଜିତରେ ନୁହଇ ମୃତ୍ୟୁଜନ୍ମ ।
ଜନ୍ମମୃତ୍ୟୁ ଏକା ବାବୁ ପୂର୍ବାର୍ଜିତ କର୍ମ ।। ୧୯୫ ।।
ଯେଉଂ ସମୟରେ ଗର୍ଭେ ପ୍ରାଣୀ କରେ ବାସ ।
ସେହିଠାରୁଂ ଆରମ୍ଭି ଦୁଃଖାଦି ପରବେଶ ।। ୧୯୬ ।।
ତୁମ୍ଭେ ଅବା ବୋଲିବ ଯେ କ୍ଷୁଧାତୃଷା କଲେ ।
ଅନ୍ନପାନ ଭକ୍ଷିଲେଟି କି ଦୁଃଖ ସେ କାଳେ ।। ୧୯୭ ।।
ଏଥିର ଚରିତ ଏବେ କହଇଂ ମୁଁ ଶୁଣ ।
କ୍ଷୁଧାତୃଷା ଶାନ୍ତି ଅର୍ଥେ ଯେଉଂ ଅନ୍ନପାନ ।। ୧୯୮ ।।
ତାହା ଲୋଡ଼ିବା ଅର୍ଥରେ ଯେବଣ ଆୟାସ ।
ସେହିମାତ୍ର ଏକାଟି ଅତିଶୟ କ୍ଲେଶ ।। ୧୯୯ ।।
ବାଳକ ବୁଦ୍ଧିରୁଂ ସିନା ଏହା ମଣି ସୁଖ ।
ଏହାତହୁଂ ବଡ଼ ହୋଇ ନାହିଁ ଆଉ ଦୁଃଖ ।। ୨୦୦ ।।
ଦେଖ ଯେଉଂ ଲୋକଙ୍କର ଆମବାତ ଅଙ୍ଗ ।
ମର୍ଦ୍ଦନ ତାଡ଼ନେ ଚିତ୍ତ ହୋଇ ଥାଇ ସଙ୍ଗ ।। ୨୦୧ ।।
ମୁଷ୍ଟି ଆଦି ତାଡ଼ନା ଯେ ପାଇଲେ ଅନେକ ।
ସୁଖ କରିଣ ଅଙ୍ଗାନେ ଘେନନ୍ତି ସେ ଲୋକ ।। ୨୦୨ ।।
ଯେଉଂ ଯେଉଂମାନେ କାମ ଅଭିଳାଷି ନର ।
ସୁଖ ଘେନୁଥାନ୍ତି ସ୍ତିରୀ ଚରଣ ପ୍ରହାର ।। ୨୦୩ ।।

ଭ୍ରମ ଜ୍ଞାନମାନଙ୍କରେ ବିଚାରନ୍ତି ଏହା ।
ବଚନେ କହି ନୁହଇ ଦୁଃଖଏଟି ଯାହା ।। ୨୦୪ ।।
ଶରୀର କାନ୍ତି ଶୋଭାଦି କମନୀୟ ଗୁଣ ।
ବାସନାଦିରେ ଆନନ୍ଦ ଯେହ୍ନୁ ପୁଣ ।। ୨୦୫ ।।
ଏଣୁ ସର୍ବଲୋକଙ୍କର ଶରୀର ଅବା କେ ।
ଯେହ୍ନୁ ଯୁକ୍ତ ହୋଇଥାଇ ଶ୍ଳେଷ୍ମାଦିମାନଙ୍କେ ।। ୨୦୬ ।।
କାନ୍ତି କଉଂଠାରେ ଶୋଭା କଉଂଠାରେ ପୁଣି ।
ସଉରଭ୍ୟ ଗୁଣର ଅନ୍ତର କେତେ ଜାଣି ।। ୨୦୭ ।।
କମନୀୟ ଗୁଣର ଅନ୍ତର କେତେକେତେ ।
ଏମାନଙ୍କୁ ଦେହି ଘେନେ ଆନନ୍ଦିତ ଚିତ୍ତେ ।। ୨୦୮ ।।
ଭ୍ରମଜ୍ଞାନମାନଙ୍କରେ ବିଚାରନ୍ତି ଏହା ।
ବଚନେ କହି ନୁହଇ ଦୁଃଖ ଏଟି ଯାହା ।। ୨୦୯ ।।
ମାଂସ ରକ୍ତ ପୂୟ ବିଷ୍ଠା ମୂତ୍ର ସ୍ନାୟୁ ମଜ୍ଜା ।
ଅସ୍ଥି ଚର୍ମ ରୋମାଦି ଯହିଁରେ ହୋଏ ଖଞ୍ଜା ।। ୨୧୦ ।।
ସେ ଦେହରେ ପ୍ରୀତିବନ୍ତ ହୁଏ ଯେବେ ଲୋକ ।
ସେ ମୂଢ଼ର ପ୍ରିୟ ପୁଣି ନୋହେକି ନରକ ।। ୨୧୧ ।।
ଶୀତ ସକାଶରୁ ଯେ ଅଗ୍ନିର ସୁଖ ଜାଣି ।
ତୃଷ୍ଣା କଲେ ସୁଖ ବୋଲି ପିଉଥାଇ ପାଣି ।। ୨୧୨ ।।
କ୍ଷୁଧା କଲେ ଅନ୍ନଗ୍ରାସ ମଣି ମହା ସୁଖ ।
ଏମନ୍ତ ବିଚାର କଲେ ବୋଲାଇଟି ମୂର୍ଖ ।। ୨୧୩ ।।
ଦେଖ ସେ ଅନଳ ଶୀତ ସମୟ ନୋହିଲେ ।
ମହା ଦୁଃଖପ୍ରଦ ତହୁଂ ଅଟଇ ଅବହେଳେ ।। ୨୧୪ ।।
ତୃଷା ନୋହିବା ସମୟେ ଜଳପାନ ଦୁଃଖ ।
କ୍ଷୁଧା ନ ଥିଲେ କେ ପୁଣି ଯିବ ଅନ୍ନ ପାଖ ।। ୨୧୫ ।।
ଏ ରୂପରେ ଏମାନେତ ମହା ଦୁଃଖ ହେଲେ ।
ଏଣୁ ସୁଖ କେହି ନୋହେ ଶୁଣିମାହ ବାଳେ ।। ୨୧୬ ।।
ପୁତ୍ର କଳତ୍ର ସମ୍ବନ୍ଧମାନଙ୍କରେ କରି ।
ଯେତେ ଯେତେ ସ୍ନେହ କରୁଥାନ୍ତି ଦେହ ଧାରି ।। ୨୧୭ ।।
ତାଙ୍କ ବିଯୋଗ ଦୁଃଖ ତେତିକି ପ୍ରମାଣେ ।
ଶୋକଲୀଳା ହୃଦୟ ଖୋଳନ୍ତି ଅନୁକ୍ଷଣେ ।। ୨୧୮ ।।
ଯେତେକାଳ ପର୍ଯ୍ୟନ୍ତରେ ଗୃହ ହୋଇଥାଇ ।
ସେ ସମୟେ ସୁଖ ଦୁଃଖ ଏ ରୂପେ ଘେନଇଂ ।। ୨୧୯ ।।
ଯେଉଣସି କଉଣସି ଠାରେ ଗୃହଥାଉ ।
ମନ ମାତ୍ର ଗୃହଠାରେ ନ ଟଳଇ ଆଉ ।। ୨୨୦ ।।

୨୦୯. ଏହି ପଦଟି (କ) ପୋଥିରେ ନାହିଁ ।

ନାଶ ଦାହ ଅପହାର ଗୃହେ ହେବ ପରା ।
ଏହା ବିଚାରିଣ ମତି କରୁଥାଇ ତୋରା ।। ୨୨୧ ।।
ଏଣୁ କରି ଏ ସଂସାରେ ସୁଖ କିଛି ନାହିଁ ।
ଜନ୍ମ ହୋଇଲାରୁଂ ଏକା ମହାଦୁଃଖ ପାଇ ।। ୨୨୨ ।।
ମରିବା ସମୟେ ପୁଣି ତହୁଂ ବଡ଼ ଦୁଃଖ ।
ଯମଯାତନାମାନଙ୍କେ ପୁଣି ଉଗ୍ର ଦୁଃଖ ।। ୨୨୩ ।।
ଗର୍ଭରେ ରହିବା କାଳେ ଯେତଂ ଦୁଃଖହୋଏ ।
ତା ବଚନେ କହିବାକୁ କେ ସମର୍ଥ ନୁହେଂ ।। ୨୨୪ ।।
ଗର୍ଭେ ଥିଲେ ହେଲେ ଯେବେ କିଛି ସୁଖ ଲେଶ ।
ଅଛଇକି ପୁତ୍ରମାନେ ମୋ ଆଗେ ପ୍ରକାଶ ।। ୨୨୫ ।।
ଏଣୁ କରି ଏ ଜଗତ ସବୁ ଦୁଃଖମୟ ।
ଏଥିରେ ସନ୍ଦେହ ନାହିଁ ହେ ଦୈତ୍ୟ ତନୟ ।। ୨୨୬ ।।
ଏ ଭବସମୁଦ୍ର ଦୁଃଖମାନଙ୍କର ସ୍ଥାନ ।
ଏଣୁକରି ପ୍ରକାଶିବା ଅର୍ଥେ ଦିବ୍ୟ ଜ୍ଞାନ ।। ୨୨୭ ।।
ତୁମ୍ଭମାନଙ୍କୁ ସତ୍ୟ ମୁଁ କହୁଅଛି ଶୁଣ ।
ବିଷ୍ଣୁ ଏକା ଅଟନ୍ତି କେବଳ ପରାୟଣ ।। ୨୨୮ ।।
ହେ ବାଳକେ ତୁମ୍ଭେ ଯେ ନ ଜାଣ ଏହା କିଛି ।
ଦେହି ଯେହୁ ଦେହ ଥିବା ଯାଏ ଏକା ଅଛି ।। ୨୨୯ ।।
ଦେହପୁଣି ଗଲେ ସେ ଯେ ନୁହଇ ଶାଶ୍ୱତ ।
ଦେଖ ଜରା ଯୌବନ ଜନ୍ମାଦି ଯେତେ କୃତ୍ୟ ।। ୨୩୦ ।।
ଏ ସର୍ବ ଧର୍ମ ଦେହର କେବଳଟି ହୁଏ ।
ଆତ୍ମାକୁ ଲାଗଇ ନାହିଁ ହେ ଦୈତ୍ୟ ତନୟେ ।। ୨୩୧ ।।
ପ୍ରାଣୀ ଯେତଂ ସମୟେ ବାଳକ ହୋଇଥାଇ ।
ବିଚାରଇ ଯୋଗର ସମୟ ଏ ନୁହଇ ।। ୨୩୨ ।।
ଯୁବା ହେଲେ ଯତି ହେବି ଶ୍ରେୟ ନିମିତ୍ତରେ ।
ତହୁଂ ପୁଣି ଯୌବନ ଯେ ହୁଅନ୍ତେ କ୍ରମରେ ।। ୨୩୩ ।।
ସେ କାଳେ ବୋଲଇ ମୁଁ ହୋଇଲି ଏବେ ଯୁବା ।
କିଛି ଭୋଗ କରିବା ହୋଇବା ଆଗ ବିଭା ।। ୨୩୪ ।।
ବୃଦ୍ଧା ସମୟ ହୋଇଲେ କରିବା ତପସ୍ୟା ।
ତହୁଂ କ୍ରମରେ ଅନ୍ତର ହୁଅନ୍ତେ ସେ ଦଶା ।। ୨୩୫ ।।
ଜରା ସମୟେ ବୋଲଇ ବୃଦ୍ଧ ହେଲି ମୁହିଁ ।
କର୍ମମାନ କିଛି ଯେ ଗୋଚର ହୋଉ ନାହିଁ ।। ୨୩୬ ।।
କି କରିବି ମହାତ୍ମା ମୁଁ ବେଳ ହୁଂ ବୁଡ଼ିଲି ।
ସମର୍ଥ ସମୟେ ହିତ କିଛି ହିଁ ନ କଲି ।। ୨୩୭ ।।

ଏ ବୋଲି ଦୁରାଶାରେ ନିଯୋଜି ମାନସ ।
ସର୍ବଦା କେବଳ ମାତ୍ର ରହଇ ପୁରୁଷ ॥ ୨୩୮ ॥
ଦୁରାଶାରେ କରି ମାତ୍ର ହୋଏ ପିପାସିତା ।
କେବେ ହେଁ ନୁହଇ ଶ୍ରେୟ ଅଭିମୁଖେ ସ୍ଥିତ ॥ ୨୩୯ ॥
ରଜକ ଜାଲିକ ମାନେ ଯେଉଁ ପରକାରେ ।
ଶ୍ରେୟ ନ ଲଭି ମରନ୍ତି ରହି ମୁକ୍ତିଦ୍ୱାରେ ॥ ୨୪୦ ॥
ଯେଉଁ ରୂପେ ରଜକ ଜାହ୍ନବୀ ଜଳେ ଥାଇ ।
ବୋଲେ ଏ ବାସ ସେ ବାସ ଆଗ ମୁଁ ଧୁଅଇ ॥ ୨୪୧ ॥
ପଛେ ଜଳ ପିଇବି ଯେ ମନପୂର୍ଣ୍ଣ କରି ।
ଏହା ବୋଲି ବୋଲି ସେ ତୃଷାରେ ଯାଇ ମରି ॥ ୨୪୨ ॥
ଅଶୁଦ୍ଧ ବାସ ଧୋଇବା ପାପ ମାତ୍ର ପାଏ ।
ଗଙ୍ଗୋଦକ ସେବା ମୁକ୍ତି କେବେହେ ନ ପାଏ ॥ ୨୪୩ ॥
ସେହି ରୂପେ ଜାଲିକ ଯେ ତୃଷା ସମୟରେ ।
ପ୍ରବେଶ ହୁଅଇ ଯାଇ ଗଙ୍ଗାଙ୍କ ମଧ୍ୟରେ ॥ ୨୪୪ ॥
ମୀନ ଖେଳିବା ଦେଖିଣ କରେ ତହିଁ ସଧ ।
ବୋଲେ ଏ ମତ୍ସ ସେ ମତ୍ସ୍ୟ କରେ ଆଗ ବଧ ॥ ୨୪୫ ॥
ପଛେ ତୃଷା ହରିବି ଏ ଜଳ ପିଇ କରି ।
ଏହା ବୋଲି ମାରୁଁ ମାରୁଁ ଶ୍ରମେ ଯାଇ ମରି ॥ ୨୪୬ ॥
ମୀନ ମାରିବାର ପାପ ମାତ୍ର ସେହୁ ପାଏ ।
ଗଙ୍ଗୋଦକ ସେବା ମୁକ୍ତି କେବେ ହେଁ ନ ପାଏ ॥ ୨୪୭ ॥
ଏ ରୂପେ ପରମାନନ୍ଦ ସୁଖ ସିନ୍ଧୁହରି ।
ସେ ପୁଣି ଥାଆନ୍ତେ ଏହୁ ଚରାଚରେ ପୁରି ॥ ୨୪୮ ॥
ତାଙ୍କ ବିଷୟରେ କ୍ରୀଡ଼ା ନ କରନ୍ତି ଯେହୁ ।
ମହାପଶୁ ମଧ୍ୟରେ ଗଣନା ଯେ ସେହୁ ॥ ୨୪୯ ॥
ଯେଉଁ ଆବାଲ୍ୟକାଳେ ବିଅର୍ଥେ କ୍ରୀଡ଼ନ୍ତି ।
ଯୁବା ସମୟେ ଏ ବିଷୟେ ସୁମୁଖ ହୁଅନ୍ତି ॥ ୨୫୦ ॥
ସେହି ମାନେ ଅଜ୍ଞାନ ଅଟନ୍ତି ଏ ସଂସାରେ ।
ବୃଦ୍ଧତ୍ୱ ପାଆନ୍ତି କାଳେ ଆପଣା ଶକ୍ତିରେ ॥ ୨୫୧ ॥
ସେ ହେତୁଁ ବାଲ୍ୟକାଳୁଁ ବିବେକାତ୍ମା ହେବ ।
ତେବେ ସିନା ସଦା ନିଜ ଶ୍ରେୟକୁ ପାଇବ ॥ ୨୫୨ ॥
ବାଲ୍ୟକାଳୁ ସତ୍କଥା ଆଚରେ ଯେବେ ଦେହି ।
ବାଲ୍ୟ ଯୌବନ ବୃଦ୍ଧାଦି ଯେତେ ଭାବ ଥାଇ ॥ ୨୫୩ ॥
ସେମାନଙ୍କେ ସଙ୍ଗତ ନୁହଇ କେତେବେଳେ ।
ଏଣୁ କରି ତୁମ୍ଭ ହିତ ଅର୍ଥେ ଦୈତ୍ୟ ବାଳେ ॥ ୨୫୪ ॥

୨୪୭. (ଖ) ଜଳ ପିଇବାରୁ ତୃଷା କେବେ ହେଁ ନ ରହେ ।

ମୁହିଁ କହୁ ଅଛଇ ଯେ ନୁହଇଟି ମିଛ ।
ସତ୍ୟ ବୋଲି ହୃଦେ ଏହା ଘେନିବା ପ୍ରତ୍ୟକ୍ଷ ॥ ୨୫୫ ॥
ସେ ସକାଶୁଁ ଏବେ ଆମ୍ଭ ପ୍ରୀତି ନିମିତ୍ତରେ ।
ଚିତ୍ତ ଦିଅ ବନ୍ଧମୁକ୍ତି ପ୍ରଦ ବିଷ୍ଣୁ ଠାରେ ॥ ୨୫୬ ॥
ବିଷ୍ଣୁଙ୍କ ସ୍ମରଣେ କିଛି ଆୟାସଟି ନାହିଁ ।
ସ୍ମରଣ କଲା ମାତ୍ରେ ଯେ ଉତ୍ତମ ଦିଅଇ ॥ ୨୫୭ ॥
ତାହାକୁ ସନ୍ତତ ଯେହୁ କରନ୍ତି ସ୍ମରଣ ।
ସେମାନଙ୍କ ପାପ ନିଶ୍ଚେ କ୍ଷୟ ହୋଏ ଜାଣ ॥ ୨୫୮ ॥
ସର୍ବ ପ୍ରାଣୀମାନଙ୍କର ହିତ ଯେଉଂ ହରି ।
ତାଙ୍କଠାରେ ଚିତ୍ତ ଯେ ସନ୍ତତ ଥିବ କରି ॥ ୨୫୯ ॥
ତେବେ ତୁମ୍ଭ ମାନଙ୍କର ସର୍ବ ସୁଖ ହେବ ।
ସମସ୍ତ କ୍ଳେଶମାନରୁଂ ଅବଶ୍ୟ ତରିବ ॥ ୨୬୦ ॥
ଦେଖ ଏ ସର୍ବ ଜଗତ ତାପତ୍ରୟାଦିରେ ।
କ୍ଳେଶ ପାଉ ଅଛନ୍ତି ଯେ ଅତ୍ୟନ୍ତ ନିର୍ଭରେ ॥ ୨୬୧ ॥
ତେଣୁ କରି ଦୁଃଖ ପାଉଛନ୍ତି ସର୍ବଭୂତ ।
ତହିଁ ପଣ୍ଡିତ ଯେ ଦ୍ୱେଷ କରିବା ବିଅର୍ଥ ॥ ୨୬୨ ॥
ବୋଲିବ ସମସ୍ତ ପ୍ରାଣୀ ଥାନ୍ତୁ ସର୍ବଶୁଭେ ।
ମୁହିଁପୁଣି ହୀନ ଶକ୍ତି ଅଟଇ ସ୍ୱଭାବେ ॥ ୨୬୩ ॥
ଏହା ପାଞ୍ଚି ଅତ୍ୟନ୍ତରେ ସାନନ୍ଦ ହୋଇବ ।
ଦ୍ୱେଷମାତ୍ରକ ପ୍ରାଣୀଙ୍କ ଠାରେ ନ କରିବ ॥ ୨୬୪ ॥
ଯେଣୁ କରି ଶତ୍ରୁତାର ହାନି ମାତ୍ର ଫଳ ।
ଏଘେନି ଏ କଥା କେବେ ନ କରିବ ମୂଳ ॥ ୨୬୫ ॥
ଯେଉଂ ପ୍ରାଣୀମାନେ ଜୀବ ମାନଙ୍କର ଠାରେ ।
ଶତ୍ରୁପକ୍ଷ ହୁଅନ୍ତି ଯେ ସମସ୍ତ ପ୍ରକାରେ ॥ ୨୬୬ ॥
ତାହାଙ୍କୁ ଅତ୍ୟନ୍ତ ଦୁଃଖ ମାନଦିଏ ଧାତା ।
ଅତି ମୋହେ ଗ୍ରସ୍ତ ହୋନ୍ତି ନୋହେ ଏ ଅନ୍ୟଥା ॥ ୨୬୭ ॥
ଏଣୁ କରି ପଣ୍ଡିତେ ଯେ ଦ୍ୱେଷ ନ କରନ୍ତି ।
ସର୍ବଭୂତେ ସଦା ଦୟାପର ହୋଇଥାନ୍ତି ॥ ୨୬୮ ॥
ଆହେ ଦୈତ୍ୟ ପୁତ୍ରେ ମୁଁ ଯେ କହିଲି ଯେତେକ ।
ଏମନ୍ତ ଭେଦ କରନ୍ତି ଭିନ୍ନ ଦୃଷ୍ଟି ଲୋକ ॥ ୨୬୯ ॥
ପରମାର୍ଥ ବିଷୟ ଏଥିରେ ଅଛି ଯାହା ।
ସଂକ୍ଷେପରେ କହିବି ଶୁଣିମା ହୋଉ ତାହା ॥ ୨୭୦ ।
ସର୍ବଭୂତ ଅଟନ୍ତି ଯେବଣ ଲକ୍ଷ୍ମୀପତି ।
ଏ ସମସ୍ତ ଜଗତ ଯେ ତାହାଙ୍କ ବିଭୂତି ॥ ୨୭୧ ॥

୨୫୭. ଖ. ଜନ୍ମ କଲେ ହୋଇଣ ଅତି ବିସ୍ମୟରେ

ତେଣୁ ଆପଣା ସମାନ ଅଭେଦ କରିଣ ।
ସମସ୍ତଙ୍କୁ ଦେଖିବ ଯେ ଅବା ବିଚକ୍ଷଣ ॥ ୨୭୨ ॥
ସେ କାରଣୁ ତୁମ୍ଭେ ଆମ୍ଭେ ଏ ଅସୁର ଭାବ ।
ଯତ୍ନକରି ସେ ରୂପେ ହୋଇବା ଯତ୍ନପୂର୍ବ ॥ ୨୭୩ ॥
ଯେମନ୍ତ ପ୍ରକାରେ ଯେ ମିଳିବ ମୁକ୍ତିପଥ ।
ସେହି ଅନୁକ୍ରମରେ ଭଜିବା ଜଗନ୍ନାଥ ॥ ୨୭୪ ॥
ଦେଖ ଯେବଣ ନିବୃତ୍ତ ଅଗ୍ନିରେ ନ ପୋଡ଼େ ।
ସୂର୍ଯ୍ୟ କରେ ନ ସୁଖଇ ଚନ୍ଦ୍ରରେ ନ ପଡ଼େ ॥ ୨୭୫ ॥
ପବନରେ ନଉଡ଼ଇ ଇନ୍ଦ୍ରହିନ ନାଶେ ।
ବରୁଣ ଦେବତା ଯାକୁ ନ ବାନ୍ଧଇ ପାଶେ ॥ ୨୭୬ ॥
ନ ଦେଖନ୍ତି ସିଦ୍ଧେ ଯେ ରାକ୍ଷସେ ନ ନିୟନ୍ତି ।
ଦୈତ୍ୟ ଇନ୍ଦ୍ରମାନେ ଯାକୁ ନାଶି ନ ପାରନ୍ତି ॥ ୨୭୭ ॥
ଯକ୍ଷ ଗଣେ ଯାକୁ ନ ଚାହାନ୍ତି ଚକ୍ଷୁ ଘେନି ।
କିନ୍ନରମାନେ ଯାହାକୁ ନ ପାରନ୍ତି ଚିହ୍ନି ॥ ୨୭୮ ॥
ଉରଗମାନେ ଯାହାକୁ ନ କରନ୍ତି ନାଶ ।
ମନୁଷ୍ୟ ମାନେ ଜାଣନ୍ତି ନାହିଁ ଯାହା ଲେଶ ॥ ୨୭୯ ॥
ପଶୁମାନେ ଯାହାକୁ ନ କରନ୍ତି କବଳ ।
ନଷ୍ଟ ନୁହଇ ଯେ ଆତ୍ମା ଦୋଷରେ କେବଳ ॥ ୨୮୦ ॥
ଜ୍ୱର ଚକ୍ଷୁ ରୋଗ ଅତିସାର ପ୍ଳୀହ ଗୁଳ୍ମ ।
ଦ୍ୱେଷ ହିଂସା ମତ୍ସର ଯେ ରାଗ ଲୋଭ ତମ ॥ ୨୮୧ ॥
ଇତ୍ୟାଦିମାନଙ୍କେ ଯେହୁ ନୁହଇଟି କ୍ଷୟ ।
ଆନ କେହି ଯାହାକୁ ନ ନିୟନ୍ତି ନିଶ୍ଚୟ ॥ ୨୮୨ ॥
ଏମନ୍ତେ ଅତ୍ୟନ୍ତ ନିତ୍ୟ ନିର୍ମଳ ଯେ ହୋଏ ।
ସେ ନିବୃତ୍ତି ପାଇବାଟି କଲେ କ କଥାଏ ॥ ୨୮୩ ॥
ନିର୍ମଳ ହୃଦୟ ଯେବେ କୃଷ୍ଣେ ନିବେସିବା ।
ତେବେ ଏ ପଦାର୍ଥ ବାବୁ ନିଶ୍ଚନ୍ତେ ପାଇବା ॥ ୨୮୪ ॥
ଏ ଯେ ଅସାର ସଂସାର ସମୁଦ୍ର ଆବୃତ୍ତ ।
ଏଥି ଆନନ୍ଦେ ନ ପଡ଼ କହୁଛି ମୁଁ ସତ୍ୟ ॥ ୨୮୫ ॥
ହେ ଦୈତ୍ୟ ସମସ୍ତଠାରେ ସମତାକୁ ଯାଅ ।
ଅଚ୍ୟୁତ ସେବାରେ ଯେଉଂ ମମତ୍ୱତା ପାଅ ॥ ୨୮୬ ॥
ଯେବେ ପ୍ରସନ୍ନ ହୋଇବେ ଦେବ ପଦ୍ମନାଭ ।
ତେବେ କେଉଂ କଥା ଏଥେ ଦୁର୍ଲ୍ଲଭ ହୋଇବ ॥ ୨୮୭ ॥
ଧର୍ମ ଅର୍ଥ କାମମାନେ ଯାହାଠାରୁଂ ତୁଚ୍ଛ ।
ଏମନ୍ତ ପଦାର୍ଥ ଯେ ଯାହାକୁ ବୋଲି ମୋକ୍ଷ ॥ ୨୮୮ ॥

ଅନନ୍ତ ବ୍ରହ୍ମତରୁର ଯେହୁ ଅଟେ ଫଳ ।
ଆଶ୍ରେ କଳାମାତ୍ରେ ତାହା ପାଇବା କେବଳ ।। ୨ ୮ ୯ ।।
ଏମନ୍ତ ବୋଲିଣ ଦୈତ୍ୟ ପୁତ୍ରଙ୍କର ଆଗେ ।
ପ୍ରହଲ୍ଲାଦ କହିଲା ଯେ ଭକ୍ତି ଅନୁରାଗେ ।। ୨ ୯ ୦ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପ୍ରହଲ୍ଲାଦ ଭକ୍ତି ଯେ ସପ୍ତଦଶ ଅଧ୍ୟା ଖ୍ୟାତ ।। ୨ ୯ ୧ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୨ ୯ ୨ ।।

# ଅଷ୍ଟାଦଶ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣ ହେ ବ୍ରହ୍ମବେତ୍ତା ।
ଏଥୁ ଅନନ୍ତରେଣ ହୋଇଲା ଯେଉଁ କଥା ॥ ୧ ॥
ପ୍ରହଲ୍ଲାଦର ଏମନ୍ତ ଯେ ଚେଷ୍ଟାମାନ ଚାହିଁ ।
ସମସ୍ତ ଦାନବ ପୁତ୍ରେ ଭୟଯୁକ୍ତ ହୋଇ ॥ ୨ ॥
ରାଜା ଆଗେ ଯାଇଣ କହିଲେ ଏ ସମସ୍ତ ।
ଶୁଣି ମହାକ୍ରୋଧରେ ଅସୁରକୁଳନାଥ ॥ ୩ ॥
ସୁପକାରମାନଙ୍କୁ ଯେ ଡ଼କାଇ ସତ୍ୱର ।
ଆଜ୍ଞା ଦେଲା ହିରଣ୍ୟକଶିପୁ ମହାବୀର ॥ ୪ ॥
ଆହେ ସୁପକାରମାନେ ମୋହଠାରୁଁ ଶୁଣ ।
ଏ ମୋହର କୁମରର ଅନେକ ଦୁର୍ଗୁଣ ॥ ୫ ॥
ଅତିହି ଦୁର୍ମତି ସେ ଯେ ମହାମୂର୍ଖ ପୁଣି ।
କୁମାର୍ଗ ଉପଦେଶର ଅଟଇ କାରେଣି ॥ ୬ ॥
ସମସ୍ତଙ୍କୁ ଶିଖାଉଛି ଦୁରାଚାର କଥା ।
ଏଣୁ ରଖି ନ ଯୋଗାଇ ଏହାକୁ ସର୍ବଥା ॥ ୭ ॥
ତୁମ୍ଭେମାନେ ତହାଳ ପ୍ରୟୋଗ କରି ମାର ।
ହଳାହଳ ବିଷ ଦିଅ ଭକ୍ଷ ସଙ୍ଗତର ॥ ୮ ॥
ଯେତେକ ମଣୋହି ଦ୍ରବ୍ୟ ସବୁଠାରେ ଭରି ।
ଅଜଣାରେ ଭୁଞ୍ଜାଇ ପକାଅ ତାକୁ ମାରି ॥ ୯ ॥
ଏଥିରେ ସମସ୍ତେ କିଛି ବିଚାର ନ କର ।
ଯାଉ ପାପୀ ଏ କୁଳ କଳଙ୍କ ଦୁରାଚାର ॥ ୧୦ ॥
ଦୈତ୍ୟ ଇନ୍ଦ୍ର ଶ୍ରୀମୁଖୁଁ ଏମନ୍ତ ଆଜ୍ଞାପାଇଂ ।
ସର୍ବ ସୁପକାରମାନେ ପାକ ଗୃହେ ଯାଇ ॥ ୧୧ ॥
ଅନ୍ନ ବ୍ୟଞ୍ଜନ ପୂପାଦି ନାନା ଭକ୍ଷଠାରେ ।
ବିଷଭରି ପାକ କଲେ ଅତି ଯତନରେ ॥ ୧୨ ॥
ପ୍ରହଲ୍ଲାଦ ଜେନାକୁ ମୋଣହିଁ ସମୟେ ।
ବିଷ ଭକ୍ଷ ପରସିଲେ କପଟ ହୃଦୟେ ॥ ୧୩ ॥
ଦୈତ୍ୟେଶ୍ୱର କୁମରତ ମହାବିଷ୍ଣୁ ଭକ୍ତ ।
ମୋଣହିଁ ସମୟେ ଉଚ୍ଚେ ବୋଲନ୍ତି ଅନନ୍ତ ॥ ୧୪ ॥
ଇଷ୍ଟମନ୍ତ୍ର ସୁମରିଣ ଅନ୍ନ ସଙ୍ଗତରେ ।
ହଳାହଳ ଗ୍ରାସ କଲା ଉଦର ପୂର୍ଣ୍ଣରେ ॥ ୧୫ ॥
ଅବିକାର ଘେନିଣ ଭୋଜନ ମାନ ସାରି ।
ସ୍ୱଚ୍ଛ ଚିତ୍ତେ ବସିଲା ଗୋବିନ୍ଦ ଧ୍ୟାନକରି ॥ ୧୬ ॥

ଉଚ୍ଚାରନ୍ତେ ଅନନ୍ତ ନାମକୁ ମହାବଳୀ ।
ହାଳାହଳ ଜଠରେ ଅନଳେ ଗଲା ଜଳି ॥ ୧୭ ॥
କିଛି ହିଁ ବିକାର ଯହୁଁ ନୋହିଲାକ ତାର ।
ଦେଖି ତ୍ରସ୍ତ ହୋଇଲେ ସକଳ ସୁପକାର ॥ ୧୮ ॥
ବିଷଜୀର୍ଣ୍ଣ ହେବା ଜାଣି ଦୈତ୍ୟେଶ୍ୱର ଆଗେ ।
ସର୍ବେ ଯାଇ ଉଭା ଯେ ହୋଇଲେ ସେହି ଲାଗେ ॥ ୧୯ ॥
ସାଷ୍ଟାଙ୍ଗେ ପ୍ରଣାମ କରି ଉଠି ଯୋଡ଼ିପାଣି ।
ସର୍ବେ ଜଣାଇଲେ ଶୁଣ ଦୈତ୍ୟକୁଳମଣି ॥ ୨୦ ॥
ଯେଉଂ ହାଳାହଳ ବିଷ ଦେଲୁଂ ଭୋଜନରେ ।
ମହାଜଳ ସୁଖନ୍ତା ପଡ଼ିଲେ ସମୁଦ୍ରରେ ॥ ୨୧ ॥
ଗିରିବରେ ପଡ଼ନ୍ତେ ଜଳନ୍ତା ଶୀଳାମାନ ।
ପ୍ରହ୍ଲାଦ ଉଦରେ ତାହା ହୋଇଲା ଦହନ ॥ ୨୨ ॥
ଅନ୍ନ ସଙ୍ଗତରେ ମିଶି ଜୀର୍ଣ୍ଣ ହୋଇଗଲା ।
ଚକ୍ଷୁରେ ଦେଖିଲୁ ଏହା ଶୁଣିମା ନଥିଲା ॥ ୨୩ ॥
ସୁପକାରମାନଙ୍କ ଏମନ୍ତ କଥାଶୁଣି ।
ମହାକ୍ରୋଧେ ବୋଇଲେ ଯେ ଦୈତ୍ୟଙ୍କ ଅଗ୍ରଣୀ ॥ ୨୪ ॥
ଜୀର୍ଣ୍ଣ ହୋଇ ସେ ବିଷ ତହିଁକି ନାହିଁ ଚିନ୍ତା ।
ଗୁରୁ ପୁତ୍ରେ ଏଥେ ଅଛନ୍ତି ନିଶତ୍ରୁ ହନ୍ତା ॥ ୨୫ ॥
ଏହା ବୋଲି ଶୁକ୍ର ପୁତ୍ରମାନଙ୍କୁ ଅନାଇଂ ।
ମହାରାଗ ବହିଣ କହଇ ଦୈତ୍ୟ ସାଇଂ ॥ ୨୬ ॥
ଆହେ ଦୈତ୍ୟ ପୁରୋହିତମାନେ ସର୍ବେ ଶୁଣ ।
ପୂର୍ବେ ଯେଉଂ ପ୍ରତିଜ୍ଞା ଯେ କରି ଅଛ ପୁଣ ॥ ୨୭ ॥
ଏବେ ସେହି ବିଚାର କରିବା ତତ୍‌କାଳ ।
କୃତ୍ୟା ଜାତ କରିଣ ମାର ଏ ଦୁଷ୍ଟ ବାଳ ॥ ୨୮ ॥
କହୁଛନ୍ତି ପରାଶର ଶୁଣ ମୁନିମଣି ।
ଦୈତ୍ୟେଶ୍ୱର ମୁଖରୁଂ ଏମନ୍ତ ଆଜ୍ଞା ଶୁଣି ॥ ୨୯ ॥
ପୁରୋହିତମାନେ ପ୍ରହଲ୍ଲାଦ କର ଧରି ।
ଏକାନ୍ତେ ବସାଇ ସାମବାକ୍ୟେ ସ୍ତୁତିକରି ॥ ୩୦ ॥
ବିନୟରେ କହନ୍ତି ଶୁଣିମା ରାଜପୁତ୍ର ।
ତ୍ରୈଲୋକ୍ୟରେ ବିଖ୍ୟାତ ତୁମ୍ଭର ନାମଗୋତ୍ର ॥ ୩୧ ॥
ବ୍ରହ୍ମାଙ୍କ କୁଳରେ ତୁ ଯେ ହୋଇ ଅଛୁ ଜାତ ।
ଦୈତ୍ୟଇନ୍ଦ୍ର ହିରଣ୍ୟକଶିପୁ ରାଜାସୁତ ॥ ୩୨ ॥
ପରମଆୟୁଷବନ୍ତ ବୀରଙ୍କ ଅଗ୍ରଣି ।
କାହିଁପାଇଂ ନ ଶୁଣୁ କହିଲି ହିତବାଣି ॥ ୩୩ ॥

ଦେବତାମାନଙ୍କେ ତୋର କଉଁ କାର୍ଯ୍ୟ ହେବ ।
ଅନନ୍ତରେ କରି ପ୍ରୟୋଜନ କି ହୋଇବ ।। ୩୪ ।।
ଆନକୁ ଆଶ୍ରେ କରନ୍ତେ ଅବା କଉଁ ଫଳ ।
ଦେଖ ତୋ ପିତା ତ୍ରୈଲୋକ୍ୟ ଯାକେ ଆଖଣ୍ଡଳ ।। ୩୫ ।।
ତୁହି ପୁଣି ସେହି ରୂପେ ହୋଇବୁରେ ବାବୁ ।
ଯେବେ ପିତାର ଶ୍ରୀମୁଖ ବଚନ ପାଳିବୁ ।। ୩୬ ।।
ତତେ ତେଣୁ କହୁଛୁଁ ଯେ ସର୍ବ କଥା ତେଜ ।
ବିପକ୍ଷ ସ୍ତୁତି ନ କର ଶତ୍ରୁକୁ ନ ଭଜ ।। ୩୭ ।।
ପିତା ବାକ୍ୟ ସେ ପୁତ୍ରର ସୁପରମ ଇଷ୍ଟ ।
ପିତା ବାକ୍ୟ ନ କଲେ ସକଳ ଧର୍ମନଷ୍ଟ ।। ୩୮ ।।
ସର୍ବଗୁରୁମାନଙ୍କ ପରମ ଗୁରୁ ସେହି ।
ଏଣୁ ପିତାବାକ୍ୟ କରଗତିହି ଅଛଇ ।। ୩୯ ।।
ପୁରୋହିତ ମୁଖରୁଁ ଏ ବଚନ ଶୁଣି ।
କୋମଳ କରିଣ ପ୍ରହଲ୍ଲାଦ ଜେନାଭଣି ।। ୪୦ ।।
ଆହେ ମହାଭାଗ ମାନେ କହିଲଟି ଯେତେ ।
ଏ କଥା ଏ ରୂପରେ ଧର୍ମଶାସ୍ତ୍ର ମତେ ।। ୪୧ ।।
ମରୀଚିଙ୍କଠାରୁଁ ଏ ଅଟଇ ମହାକୁଳ ।
ସର୍ବଲୋକଙ୍କ ମଧରେ ସତ୍ୟ ଏ କେବଳ ।। ୪୨ ।।
ଏହା କଉଁ କାଳରେ ଯେ ଅନ୍ୟଥା ନୁହଇ ।
ପିତା ମୋର ସେହି ରୂପେ ତ୍ରୈଲୋକ୍ୟ ବିଜୟୀ ।। ୪୩ ।।
ଏ ସଂସାରେ ଉତ୍କୃଷ୍ଟ ଅଟଇ ତାଙ୍କ ଚେଷ୍ଟା ।
ପ୍ରତି ପ୍ରଜା ସୃଷ୍ଟି କରଣରେ ଯେହୁ ଶ୍ରେଷ୍ଠା ।। ୪୪ ।।
ଏ କଥା ଜାଣଇ ସତ୍ୟ ମିଥ୍ୟା ନୁହେ ପୁଣି ।
ପିତା ଗୁରୁଙ୍କ ପରମଗୁରୁ ଏହା ଜାଣି ।। ୪୫ ।।
ତୁମ୍ଭେ ଯାହା କହିଲଟି ଏକଥା ପ୍ରମାଣ ।
ଏଥିରେ ତିଳେ ସଂଶୟ ନାହିଁଟି ଏ ଜାଣ ।। ୪୬ ।।
ପିତାହିଁ ମୋହରି ଗୁରୁ ଆରାଧନା ଯୋଗ୍ୟ ।
ଏ ସତ୍ୟ ବିକଳ୍ପ କିଛି ନାହିଁ ମହାଭାଗ ।। ୪୭ ।।
ମୁହିଁ ପୁଣି ସେହିରୂପେ ହୃଦୟରେ ଘେନି ।
ମାତ୍ରକ ଆପଣ ଯାହା କହିଲ ବଖାଣି ।। ୪୮ ।।
ତୁମ୍ଭେ ଯା କହିଲ ଯେ ଏମନ୍ତ କଥାଏ ।
ଅନନ୍ତକୁ ଉପାସନା ନ କର କେବେହେଁ ।। ୪୯ ।।
ବୋଇଲ ଯେ ଅନନ୍ତରେ କଉଁ ପ୍ରୟୋଜନ ।
ଏ ବଚନ ତୁଣ୍ଡରେ କହିବ କଉଁ ଜନ ।। ୫୦ ।।

ଏହା ଯେ ବୋଲେଣ ବାକ୍ୟ ନୋହେ ଅର୍ଥବନ୍ତ ।
ଏହା ବୋଲି ଗୁରୁଙ୍କ ଗୌରବ ଘେନି ସୁତ ॥ ୫୧ ॥
ମୁହୂର୍ତ୍ତେ ମାତ୍ର ରହିଲା ହୋଇଣ ମଉନ ।
ପୁଣି ହସି ବୋଇଲା ଯେ ଏମନ୍ତ ବଚନ ॥ ୫୨ ॥
ଅନନ୍ତରେ କରି କଉଂ ପ୍ରୟୋଜନ ହେବ ।
ଏହା ଯା ବୋଇଲ ସାଧୁ ସାଧୁ ଗୁରୁଦେବ ॥ ୫୩ ॥
ସାଧୁ ହେ ମୋହର ଗୁରୁ ସାଧୁ ମହାଜନ ।
ଯାହା ବୋଇଲ ଅନନ୍ତେ କଉଂ ପ୍ରୟୋଜନ ॥ ୫୪ ॥
ଅନନ୍ତରେ କରି ଯେବେ ନ ପାଇବ ଖେଦ ।
ତେବେ ମୁଁ କହୁଛି ଶୁଣ ସମସ୍ତ କୋବିଦ ॥ ୫୫ ॥
ଧର୍ମ ଅର୍ଥ କାମ ମୋକ୍ଷ ଚାରି ପୁରୁଷାର୍ଥ ।
ଯେବଣ ଅନନ୍ତଠାରୁଁ ହୋଇଅଛି ଜାତ ॥ ୫୬ ॥
ତେଣେ କି କାର୍ଯ୍ୟ କି କାର୍ଯ୍ୟ ବୋଲ ଯା ଏମନ୍ତ ।
ଏ ମିଥ୍ୟା ବଚନ ସିନା ଶୁଣ ଭଗବନ୍ତ ॥ ୫୭ ॥
ଦକ୍ଷ ଆଦି ମରୀଚି ସମେତେ ଯେତେ ଯତି ।
ଯେବଣ ଅନନ୍ତଠାରୁଁ ଧର୍ମ ପାଇଛନ୍ତି ॥ ୫୮ ॥
ସେହି ରୂପେ ଆନମାନେ ପାଇଛନ୍ତି ଅର୍ଥ ।
କଉଂ କଉଂ ମାନଙ୍କ ପୁରିଛି ମନୋରଥ ॥ ୫୯ ॥
ଯାହା ହେତୁଁ ପୁଣି କଉଂ କଉଂ ତପୋବନ୍ତ ।
ଜ୍ଞାନ ଧ୍ୟାନମାନଙ୍କେ ସମସ୍ତେ ହୋଇ ଯୁକ୍ତ ॥ ୬୦ ॥
ତାହାଙ୍କର ତତ୍ତ୍ୱ ଜାଣି ବନ୍ଧୁଁ ମୁକ୍ତ ହୋଇ ।
ପରମ ମୁକ୍ତି ଲଭନ୍ତି ଏମନ୍ତଟି ସେହି ॥ ୬୧ ॥
ସକଳ ସମ୍ପତ୍ତି ଯଉଂ ଅଇଶ୍ୱର୍ଯ୍ୟମାନ ।
ଜ୍ଞାନ ପରଂପରା ଯେତେ କର୍ମର ବିଧାନ ॥ ୬୨ ॥
ସେମାନଙ୍କ ସାଧ୍ୟରେ ମୁକ୍ତି ହିଁ ଏକା ମୂଳ ।
ହରିଙ୍କର ଆରାଧନ କଲେଟି କେବଳ ॥ ୬୩ ॥
ହରି ଆରାଧନାରେ ଯେ ଅବା ମୁକ୍ତି ହୋଏ ।
ତାହାର ଅଲଭ୍ୟ ହୋଇ କଉଂ କଥା ଥାଏ ॥ ୬୪ ॥
ଯଉଂ ଅନନ୍ତ ତରୁର ଧର୍ମ ଅର୍ଥ କାମ ।
ମୋକ୍ଷକୁ ମିଶି ଏ ଚାରି ଫଳ ଅନୁପମ ॥ ୬୫ ॥
ତାହାଙ୍କୁ କି ପ୍ରୟୋଜନ ହୋଇଲେ କେମନ୍ତ ।
ଏ କଥା ଯେ ଆଶ୍ଚର୍ଯ୍ୟ ଘେନିଲି ଅନ୍ତର୍ଗତ ॥ ୬୬ ॥
ବହୁତ କହିଲେ କଉଂ ପ୍ରୟୋଜନ ହେବ ।
ଆପଣ ତ ସମସ୍ତେ ମୋହର ଗୁରୁଦେବ ॥ ୬୭ ॥

ସାର ଅବା ଅସାର ଅବା ଯାହା ଇଛା ବୋଲେ ।
ମୋହର ଅଳ୍ପ ବିବେକ କି ଜାଣିବି ଭଲେ ॥ ୬୮ ॥
ପରାଶର କହନ୍ତି ଶୁଣହେ ମଇତ୍ରେୟ ।
ଏମନ୍ତ ବୋଇଲା ଯହୁଁ ଦୈତ୍ୟେନ୍ଦ୍ର ତନୟ ॥ ୬୯ ॥
ଶୁଣି ଅତି କ୍ରୋଧବହି ରାଜପୁରୋହିତେ ।
ଅନଳ କୁଣ୍ଡରେ ହୋମ କଲେ ଗୁଆ ଘୃତେ ॥ ୭୦ ॥
ବ୍ରହ୍ମକର୍ମ ଦେଖାଇଣ କୃତ୍ୟା କଲେ ଜାତ ।
ଜ୍ୱାଳାମାଳାମାନଙ୍କେ ଯେ ଅତ୍ୟନ୍ତ ଦୀପିତ ॥ ୭୧ ॥
ଅତି ଭୟଙ୍କର ମୂର୍ତ୍ତି ଅଟେ ଭଗବତୀ ।
ଚାଲନ୍ତେ ଚରଣେ ଖଣ୍ଡ ଖଣ୍ଡ ହୁଏ କ୍ଷିତି ॥ ୭୨ ॥
ତାଳଦ୍ରୁମ ପ୍ରାୟେ ଯେ ଅଟଇ ଜଂଘ ବେନି ।
ଗିରିଦରୀ ଭାବକୁ ବଦନ ଅଛି ଘେନି ॥ ୭୩ ॥
କାଳଚକ୍ର ପ୍ରାୟେକ ଭ୍ରମଇ ବେନି ନେତ୍ର ।
ଲହଲହ ଜିହ୍ୱା କି ଅନଳ ଅସିପତ୍ର ॥ ୭୪ ॥
ରଟମଟ ଦଶନ ଚୋବାଇ ଶୂଳ ଧରି ।
ଧାଇଂଲାକ କୃତ୍ୟା ଯେ ଗର୍ଜନ ଘୋର କରି ॥ ୭୫ ॥
ଦେଖିଲାକ ପ୍ରହଲ୍ଲାଦ ନିଶ୍ଚିନ୍ତେ ଅଛି ବସି ।
ମୁଖେ ରାମ ଗୋବିନ୍ଦ ଗୋପାଳ ନାମ ଘୋଷି ॥ ୭୬ ॥
ପୁନଃପୁନଃ ବୋଲଇ ହେ ଦେବ ନାରାୟଣ ।
ହେ ଶିବ କେଶବ ରାମ ଆରତତାରଣ ॥ ୭୭ ॥
ହେ ବିଷ୍ଣୁ କୃଷ୍ଣ ମାଧବ ଅନନ୍ତ ଅଚ୍ୟୁତ ।
ହେ ଦୟାସାଗର ଦୀନବନ୍ଧୁ ଜଗନ୍ନାଥ ॥ ୭୮ ॥
ଏହା ବୋଲି ପୁନଃପୁନଃ ଲୁଆଁଇ ମୂର୍ଦ୍ଧନି ।
ସେ କାଳରେ ଦେଖିଲା ସେ ଦେବୀ ସେହିକ୍ଷଣି ॥ ୭୯ ॥
ଦୃଷ୍ଟି ପାତ ମାତ୍ରକେ କ୍ରୋଧରେ ବିକରାଳ ।
ବିଷ୍ଣୁଭକ୍ତ ବକ୍ଷସ୍ଥଳେ ମାଇଲାକ ଶୂଳ ॥ ୮୦ ॥
ଯଙ୍ହ ହୃଦେ ସଦାସ୍ଥିତ ଗୋବିନ୍ଦ ଚରଣ ।
ଚକ୍ର ଲକ୍ଷଣରେ କରି ହୋଇ ବିଭୂଷଣ ॥ ୮୧ ॥
ତହିଁ ପଡ଼ି କି କାର୍ଯ୍ୟ କରିବ ଶୂଳ ଛାର ।
ବାଜି ଚୂର୍ଣ୍ଣ ହୋଇଗଲା ଶତ ପରକାର ॥ ୮୨ ॥
ଖଣ୍ଡ ଖଣ୍ଡ ହୋଇଣ ପଡ଼ିଲା ମହୀତଳେ ।
ତିଳମାତ୍ର ଭାରା ଯେ ନୋହିଲା ବକ୍ଷସ୍ଥଳେ ॥ ୮୩ ॥
ପରମବିଷ୍ଣୁଙ୍କ ତେଜ ଯହିଁରେ ମଣ୍ଡନ ।
କୋଟି କୋଟି ବଜ୍ର ହେଲେ ହୋଇବ ଖଣ୍ଡନ ॥ ୮୪ ॥

ଶୂଳ ଏକମାତ୍ର ସିନା କେତେ ତାର ବଳ ।
ଏଣୁ ଶତଖଣ୍ଡ ଭାଜି ପଡ଼ିଲା କେବଳ ।। ୮୫ ।।
ଅପାପ ଜନକୁ ନାଶ କରିବା ନିମିତ୍ତେ ।
ମହାପାପୀମାନେ ଦୈତ୍ୟ ପୁରୋହିତ ଯେତେ ।। ୮୬ ।।
ଉପାୟରେ କୃତ୍ୟାକୁ ଯା ଦେଲେ ପଠିଆଇ ।
ତାହା ବଳରେ କି ବିଷ୍ଣୁ ଭକ୍ତ ନାଶ ଯାଇ ।। ୮୭ ।।
ସେ ସମୟେ ପ୍ରହଲ୍ଲାଦ ହେଲା ମୂର୍ତ୍ତି ଭିନ୍ନ ।
ଶ୍ରୀ ଅଙ୍ଗରେ ବିରାଜିଲା ଶଙ୍ଖଚକ୍ର ଚିହ୍ନ ।। ୮୮ ।।
ତାହା ଦେଖି ଭୟରେ ବାହୁଡ଼ି ଦେବୀ କୃତ୍ୟା ।
ସେ ବିପ୍ରଙ୍କୁ ଦହିଣ ଲଭିଲା ବ୍ରହ୍ମହତ୍ୟା ।। ୮୯ ।।
ତହୁଁ ସେ ବ୍ରହ୍ମହତ୍ୟାରେ ସେହୁ ନାଶ ଗଲା ।
ଏଥି ଉତ୍ତାରେଣ ଋଷି ପୁଣ ଯାହା ହେଲା ।। ୯୦ ।।
ଯେତେବେଳେ ଗୁରୁମାନେ ହୋଇଲେ ଦହନ ।
ତାହା ନେତ୍ରେ ଅନାଇଣ ଅସୁର ନନ୍ଦନ ।। ୯୧ ।।
ତ୍ରସ୍ତ ହୋଇଣ ମୁଖରେ ବୋଲଇ କୃଷ୍ଣ ତ୍ରାହି ।
ତ୍ରାହି ଅନନ୍ତ ପ୍ରଭୁ ତ୍ରାହି ହେ ଭାବଗ୍ରାହୀ ।। ୯୨ ।।
ହେ ସର୍ବ ବ୍ୟାପୀ ହେ ଜଗତ ସ୍ୱରୂପ ।
ହେ ପ୍ରଭୁ ଜଗତ ଶ୍ରେଷ୍ଠ ପରମସ୍ୱରୂପ ।। ୯୩ ।।
ଆହେ ଜନାର୍ଦ୍ଦନ ତ୍ରାହି ତ୍ରାହି ଜଗଦ୍ଗୁରୁ ।
ବିପ୍ରଙ୍କୁ ରଖ ଦୁଃସହ ମନ୍ତ୍ର ପାବକରୁଁ ।। ୯୪ ।।
ଯେଉଁ ରୂପେ ସର୍ବଭୂତେ ସର୍ବବ୍ୟାପୀ ତୁହି ।
ସବୁଠାରେ ରହିଅଛୁ ଜୀବ ରୂପ ହୋଇ ।। ୯୫ ।।
ସେ ରୂପେ ପୁରୋହିତଙ୍କ ହୃଦେ କର ବାସ ।
ସର୍ବେ ଜୀବ ପାଆନ୍ତୁ ଉଦ୍ଧର ଭୃଗୁବଂଶ ।। ୯୬ ।।
ହେ ପ୍ରଭୁ ତୁମ୍ଭଙ୍କୁ ମୁହିଁ ବିଷ୍ଣୁ ବୋଲି କରି ।
ଯେବେ ଅକସ୍ମାତେ ହୃଦ ପଦ୍ମେ ଅଛି ଧରି ।। ୯୭ ।।
ତେବେ ମୋହର ଗୁହାରି ଶୁଣିବାକ କର୍ଣ୍ଣେ ।
ଶତ୍ରୁପକ୍ଷ ହେଲେ ଜୀଅନ୍ତୁ ସେମାନେ ।। ୯୮ ।।
ଯେଉଁମାନେ ମତେ ମାରିବାକୁ ଆସିଥିଲେ ।
ଯେଉଁମାନେ ପୁଣି ଯେ ଭୋଜନେ ବିଷ ଦେଲେ ।। ୯୯ ।।
ଯେଉଁ ମାନେ ହୁତାଶନେ ପକାଇଲେ ମତେ ।
ଦିଗ୍‌ଜମାନଙ୍କେ ଚିରାଇଲେ ଯେଉଁ ଦୈତ୍ୟେ ।। ୧୦୦ ।।
ସର୍ପମାନଙ୍କେ ଦଂଷ୍ଟ୍ର କରାଇଲେ ଯେବା ।
ତାଙ୍କଠାରେ ମୋର ଯଦି ମାୟା ଥିବ ଅବା ।। ୧୦୧ ।।

ସେମାନଙ୍କେ ଶତ୍ରୁ ଭାବ ଯଦି ଥିବ ମୋର ।
ତେବେ ନ ଜିଅନ୍ତୁ ଏହୁ ବ୍ରାହ୍ମଣ କୁମର ।। ୧୦୨ ।।
ଶତ୍ରୁମିତ୍ରଠାରେ ଯେବେ ମୋ ଯୋ ମାନସ ଭାବ ।
ତେବେ ଜିଅନ୍ତୁ ଏ ସର୍ବ ବ୍ରାହ୍ମଣ ପୁଙ୍ଗବ ।। ୧୦୩ ।।
ଏହା ବୋଲି ସ୍ତୁତି ଯଉଂ କଲା ଦୈତ୍ୟ ସୁତ ।
ମନ୍ତ୍ର ପୂତ ଅନଳ ଯେ ଲିଭିଲା ତୁରିତ ।। ୧୦୪ ।।
ଆରୋଗ୍ୟ ହୋଇଣ ଜୀଇଂ ଉଠି ସର୍ବଯତି ।
ବିନୟେ ପୁତ୍ରକୁ କଲେ ପୁନଃପୁନସ୍ତୁତି ।। ୧୦୫ ।।
ଦୀର୍ଘାୟୁଷ ହୋଇଣ ଅପ୍ରତିହତ ହୁଅ ।
ବଳବୀର୍ଯ୍ୟମାନଙ୍କରେ ଯୁକ୍ତ ହୋଇଥାଅ ।। ୧୦୬ ।।
ପୁତ୍ର ନାତି ଧନ ଅଇଶ୍ୱର୍ଯ୍ୟମାନଙ୍କରେ ।
ସଦା ବୃଦ୍ଧି ହୁଅ ବତ୍ସ ଉତ୍ତମ ପ୍ରକାରେ ।। ୧୦୭ ।।
ଏମନ୍ତ କଲ୍ୟାଣ କରି ସର୍ବ ପୁରୋହିତେ ।
ସେଠାରୁ ଗମନ ପୁଣି କଲେକ ତୁରିତେ ।। ୧୦୮ ।।
ରାଜା ଆଗେ ସମସ୍ତ ଯେ କହିଲେ ମଣାଇ ।
ଶୁଣି ଦୈତ୍ୟେନ୍ଦ୍ର ହସିଲା ବଦନ ହଲାଇ ।। ୧୦୯ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
କୃତ୍ୟା ଉତ୍ପାଦନ ଅଷ୍ଟାଦଶ ଅଧ୍ୟା ଖ୍ୟାତ ।। ୧୧୦ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୧୧ ।।

# ଊନବିଂଶ ଅଧ୍ୟାୟ

ପରାଶର କହନ୍ତି ଶୁଣିମା ଏବେ ମୁନି ।
ପୁରୋହିତେ ଏମନ୍ତ କହନ୍ତେ ରାଜା ଶୁଣି ॥ ୧ ॥
ଜାଣିଲାକ କୃତ୍ୟା ନିଶ୍ଚେ ମିଥ୍ୟା ହୋଇଗଲା ।
ତହୁଁ ପୁଣି ପୁତ୍ରକୁ ଯେ ଡକାଇ ଆଣିଲା ॥ ୨ ॥
ତାହାର ପ୍ରଭାବ ମାନ ପଚାରିବା ଅର୍ଥେ ।
ବୋଇଲା କ କୁମରରେ କହ ଏବେ ମତେ ॥ ୩ ॥
ଏମନ୍ତ ପ୍ରଭାବବନ୍ତ ହେଲୁ କାହିଁପାଇଁ ।
କାହୁଁତୋ ଏଡ଼େ ଚେଷ୍ଟା ହୋଇଲା କହ ବାଇ ॥ ୪ ॥
କି କି ମନ୍ତ୍ର କାହାଠାରୁ ଶିଖିଅଛୁ କହ ।
ନୋହିଲେ କି ଏଡ଼େ ହେଲା ପ୍ରଭାବ ଦୁଃସହ ॥ ୫ ॥
ଏଡେକ ଆଶ୍ଚର୍ଯ୍ୟ କଥା ଦେଖି ନାହୁଁ କାହିଁ ।
କୃତ୍ୟା ପରା ମହାଚଣ୍ଡୀ ନାଶଗଲା ତହିଁ ॥ ୬ ॥
ବ୍ରାହ୍ମଣେ ନାଶ ଯାଇଣ ପୁଣି ହିଁ ଜିଇଁଲେ ।
ଏଡ଼େ କର୍ମମାନ ଯେ ନୁହଇ କାହା ବେଳେ ॥ ୭ ॥
ଏଣୁ କାହୁଁ କି ଉପାୟ ପାଇଅଛୁ କହ ।
ନୋହିଲେ ପ୍ରାଣ ଘେନିମି ନାହିଁରେ ସନ୍ଦେହ ॥ ୮ ॥
ହିରଣ୍ୟକଶିପୁ ମୁଖୁଁ ଏ ବଚନ ଶୁଣି ।
ପିତାପାଦେ ପ୍ରଣିପତ୍ୟ ହୋଇ ପୁତ୍ରମଣି ॥ ୯ ॥
କୋମଳ କରିଣ ପୁଣି କହଇ ବଚନ ।
ଭୋ ତାତ ଶୁଣିମା ହେଉ ଅସୁର ରାଜନ ॥ ୧୦ ॥
ମନ୍ତ୍ରାଦି କର୍ମ ମୁଁ କାହାଠାରୁ ଶିଖି ନାହିଁ ।
ମୋହର ସ୍ୱଭାବ ପୁଣି ଏମନ୍ତ ନୁହଇଂ ॥ ୧୧ ॥
ଯାହା ଯାହା ହୃଦୟରେ ଶ୍ରୀ ଅଚ୍ୟୁତ ସ୍ଥିତ ।
ସେହି ସେହି ଲୋକଙ୍କର ପ୍ରଭାବ ଏମନ୍ତ ॥ ୧୨ ॥
ଯେଉଁ ଲୋକ ପର ଦୁଃଖେ ଦୁଃଖୀ ହୋଇଥାଇ ।
ତାହା ଦୁଃଖ ଆଗମ ଯେ କେବେ ହେଁ ନୁହଇ ॥ ୧୩ ॥
ମନବଚନ କର୍ମରେ ଅବା ଯେଉଁ ଲୋକ ।
ପରପୀଡ଼ା କରିବାରେ ହୋଏ ଜାଗରୁକ ॥ ୧୪ ॥
ସେହି ପରପୀଡ଼ାଟି ହୁଅଇ ବୀଜଭୂତ ।
ତାହାଠାରୁ ଜନ୍ମଫଳ ହୁଅଇ ସମ୍ଭୂତ ॥ ୧୫ ॥
ସେ ପୁଣି ଅଶୁଭ କଥାମାନ ଜାତ କରେ ।
ତେଣେକରି ପ୍ରାଣୀ ଦୁଃଖୀ ହୁଅଇ ସଂସାରେ ॥ ୧୬ ॥

ମୋହର ମନରେ କେବେ ପାପ ଇଚ୍ଛା ନାହିଁ ।
ହସ୍ତରେ ନ କରଇ ବଚନେ ନ ବୋଲଇ ।। ୧୭ ।।
ସମସ୍ତ ଭୂତରେ ଯେହୁ କରିଛନ୍ତି ବାସ ।
ସେ ହରିଙ୍କି ହୃଦେ ମାତ୍ର ଚିନ୍ତଇ ଅବଶ୍ୟ ।। ୧୮ ।।
ସମସ୍ତଙ୍କ ଠାରେ ଯେଣୁ ଶୁଭ ଚିତ୍ତ ମୋର ।
ତେଣୁକରି ଦେହ ଦୁଃଖ ହୋଇଛି ଅନ୍ତର ।। ୧୯ ।।
ମନସ୍ତାପ ମୋହର ଅଇଲା ଅବା କାହିଁ ।
ଦଇବ ଦୁଃଖ ଯେବଣ ଶରୀରରେ ନାହିଁ ।। ୨୦ ।।
ପ୍ରାଣୀଦେବା ଦୁଃଖକି ପାରିବ ମତେବାଧି ।
ସର୍ବଭୂତରେ ନିର୍ମଳ ଭକ୍ତି ମୋର ଯଦି ।। ୨୧ ।।
ଏ ରୂପେ ହରିଙ୍କି ସେବା ଜାଣିଣ ପଣ୍ଡିତେ ।
ସର୍ବଭୂତେ କରିବେ ଏକାଙ୍ଗ ଭକ୍ତି ଚିତ୍ତେ ।। ୨୨ ।।
ପ୍ରହଲ୍ଲାଦ ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ଜଗତି ଉପରେ ଥାଇ ଦୈତ୍ୟ ବୀରମଣି ।। ୨୩ ।।
କ୍ରୋଧଭରେ ଅନ୍ଧକାର କରିଣ ଆନନ ।
ଦୈତ୍ୟ କିଂକରଙ୍କୁ ଚାହିଁ ବୋଲଇ ବଚନ ।। ୨୪ ।।
ଆରେ ମହାବଳୀମାନେ ଉପରକୁ ଆସ ।
ଗାଢ଼କରି ଧରିଣ ଏ ଦୁରାତ୍ମାର କେଶ ।। ୨୫ ।।
ଏ ଶତ ଯୋଜନ ଉଚ୍ଚ ପ୍ରାସାଦ ଉପରୁ ।
ଫିଙ୍ଗିଦିଅ ଅବନୀ ତଳରେ ପଡ଼ି ମରୁ ।। ୨୬ ।।
ପଥର ବାଜି ଭାଜୁ ଯେ ସର୍ବାଙ୍ଗର ହାଡ଼ ।
ସେ କାଳେ ଦେଖିବା ହରି ଭକ୍ତି କେଡ଼େ ଗାଢ଼ ।। ୨୭ ।।
ହିରଣ୍ୟକଶିପୁଠାରୁ ଏ ଆଜ୍ଞାକୁ ପାଇ ।
ବାଳ ଧରି ପୁତ୍ରକୁ ଯେ ଦେଲେ ଫୋପଡ଼ାଇ ।। ୨୮ ।।
ଯେତେବେଳେ ପୁତ୍ରକୁ ଯେ ଫିଙ୍ଗିଲେ ଦଇତେ ।
ବିଷ୍ଣୁ ଆସି ସେ କାଳେ ରହିଲେ ଅନ୍ତର୍ଗତେ ।। ୨୯ ।।
କୃପାସିନ୍ଧୁ ପୁରୁଷଙ୍କୁ ହୃଦେ ବହି କରି ।
ଅତିତଳେ ପଡ଼ନ୍ତେ ଦେଖିଲା ବସୁନ୍ଧରୀ ।। ୩୦ ।।
ମାୟାରେ ଜଗତି ଶିଖ ଯାଏ ବଢ଼ିଗଲା ।
କୁମରକୁ କୋଳେ ଘେନି ବାହୁଡ଼ି ଅଇଲା ।। ୩୧ ।।
ମାତା କୋଳେ ପୁତ୍ର ଥିଲା ପ୍ରାୟେ ପ୍ରହଲ୍ଲାଦ ।
ବସି ହରି ଭଜୁ ଅଛି କିଛି ନାହିଁ ଖେଦ ।। ୩୨ ।।
ସେ କାଳେ ତଳକୁ ରାଜା କଲା ଦୃଷ୍ଟିପାତ ।
ଶଏ ଯୋଜନୁ ପଡ଼ିଲା କିଛି ନାହିଁ ଘାତ ।। ୩୩ ।।

ନିଶ୍ଚନ୍ତେ ମହୀରେ ବସି ଅଛି ହରି ଭଜି ।
ସର୍ବାଙ୍ଗ ଅସ୍ଥି ପଞ୍ଜରା କିଛି ନାହିଁ ଭାଜି ।। ୩୪ ।।
ତହୁଁ ପୁଣି ଦୈତ୍ୟେନ୍ଦ୍ର ଶମ୍ବରାସୁର ଚାହିଁ ।
ବୋଇଲା ହୋ ମାୟାଧର ମଧ୍ୟେ ଶ୍ରେଷ୍ଠ ତୁହି ।। ୩୫ ।।
ଏ ଦୁର୍ବୃତ୍ତ ବାଳକକୁ ମାରିବାକୁ ଆମ୍ଭେ ।
ଉପାୟଶୂନ୍ୟ ହୋଇଲୁ ଏକା ଅଛ ତୁମ୍ଭେ ।। ୩୬ ।।
କି ରୂପେ ଉପାୟ କରି ମାୟାବଳେ ମାର ।
ସର୍ବ ମାୟାମାନଙ୍କର ତୁମ୍ଭେ ବେଦବର ।। ୩୭ ।।
ହିରଣ୍ୟକଶିପୁ ତହୁଁ ଶୁଣି ଏ ବଚନ ।
ଶମ୍ବରାସୁର କହଇ ହେ ଦୈତ୍ୟ ରାଜନ ।। ୩୮ ।।
ମାରିବି ନିଶ୍ଚେ ମୋହର ଦେଖ ମାୟାବଳ ।
ଲକ୍ଷେ ଉପାୟ ଏଥିକି କରିବି କେବଳ ।। ୩୯ ।।
ଶତକୋଟି ମାୟା ପୁଣି ଭିଆଇବି ଆଣି ।
ଶିଶୁ ହତ୍ୟାରେ ମାତ୍ରକ କେ ହେବ କାରେଣି ।। ୪୦ ।।
ଶୁଣି ରାଜା ବୋଲେ ମତେ ହତ୍ୟା ପଛେ ଲାଗୁ ।
ଏ ପାପୀର ଗେଲ ଯେ ଗରବ ଗୋଟି ଭାଗୁ ।। ୪୧ ।।
ଏହାଶୁଣି ଶମ୍ବର ରଚ୍ଚିଲା ମହାମାୟା ।
ଯେମନ୍ତେ ପ୍ରହଲ୍ଲାଦର ନାଶ ହେବ କାୟା ।। ୪୨ ।।
ସେ ରୂପେ ଉପାୟମାନ କଲାକ ଦୁର୍ବୁଦ୍ଧି ।
ପୁତ୍ରର ତ ସବୁଠାରେ ସମାନତା ବୁଦ୍ଧି ।। ୪୩ ।।
ଶମ୍ବରାସୁରରେ ବିମସ୍ମର ଭାବ ବହି ।
ସମାହିତ ଚିତ୍ତେ ମଧୁସୂଦନକୁ ଧ୍ୟାଇ ।। ୪୪ ।।
ଦୃଢ଼ାସନ ହୋଇ ଯହୁଁ ବସିଲାକ ବୀର ।
ଭକ୍ତ ସଂକଟ ଜାଣିଲେ ଦେବ ଚକ୍ରଧର ।। ୪୫ ।।
ତାହାକୁ ରକ୍ଷା କରିବା ଅର୍ଥେ ମନେ ଭାବି ।
ଯେବଣ ସୁଦରଶନ କୋଟି ସୂର୍ଯ୍ୟ ଛବି ।। ୪୬ ।।
ସେ ଚକ୍ରକୁ ପେଶିଲେ ଯେ ଦେବ ନାରାୟଣ ।
ଚଳିଲାକ ମହାଶସ୍ତ୍ର ଅତ୍ୟନ୍ତ ଭୀଷଣ ।। ୪୭ ।।
ଜ୍ୱଳାମାଳାମାନଙ୍କରେ ବିକରାଳ ମୂର୍ତ୍ତି ।
ଗତିମାତ୍ରେ ସବୁ ଆଡ଼େ ଅଗ୍ନି ବରଷନ୍ତି ।। ୪୮ ।।
ମାୟା ସ୍ଥାନେ ପ୍ରବେଶ ହୋଇଣ ବିଷ୍ଣୁବାଣ ।
ଭକ୍ତକୁ ନାଭିରେ ରକ୍ଷା କରି ତତକ୍ଷଣ ।। ୪୯ ।।
ଖଣ୍ଡ ଖଣ୍ଡ କରିଣ କାଟିଲେ ମାୟାମାନ ।
ବସିଛି କୁମର ଏହା ନ ଜାଣିଲେ ଆନ ।। ୫୦ ।।

୪୮.୪୯ (କ) ମୁହିଁ ପୁଣି ସେହିରୂପେ ହୃଦୟରେ ଘେନି/ପଦ୍ମପାଦେ ଅପରାଧ ନୋହିଥାଏ ମାନି/ମାତ୍ରକ ଆପଣ ଯାହା କହିଲ କଥାଏ/ ଅନନ୍ତକୁ ଉପାସନା ନ କର କେବେହେଁ ।

ତହୁଁ ପୁଣି ସଂଶୋଷକ ବାୟୁକୁ ତିଆରି ।
ଶୀଘ୍ର କରି ଏ ପାପୀକି ପକାଅତୁ ମାରି ॥ ୫୧ ॥
ରାଜା ତହୁଁ ଏ ବଚନ ଶୁଣିଣ ପବନ ॥
ବ୍ୟାଧି ରୂପେ ପ୍ରସରିଲା ହୋଇଣ ଗୋପ୍ୟାନ ॥ ୫୨॥
ଶୀତଜ୍ୱର ପରାୟେ ଅନେକ ପୀଡ଼ା କଲା ।
ପ୍ରହଲ୍ଲାଦ ଦେହକୁ ଦୁଃସହ ଭାରା ଦେଲା ॥ ୫୩ ॥
ଜାଣି ପୁତ୍ର ଧରଣୀଧରକୁ କରି ଚିନ୍ତା ।
ଯଇଂ ସେରୂପୀ ଦେବ ପବମାନ ହନ୍ତା ॥ ୫୪ ॥
ସ୍ମରଣ କଲାମାତ୍ରକେ ଦେବ ଜନାର୍ଦ୍ଦନ ।
ଭକ୍ତ ହୃଦୟ କମଳେ ଆସି କଲେ ସ୍ଥାନ ॥ ୫୫ ॥
ଶୋଷକ ବାୟୁକୁ ପିଇ ଦେଲେ କ୍ରୋଧ ହୋଇ ।
ଏମନ୍ତ ପ୍ରକାରେ ନାଶ ବାତ ଗଲା ତହିଁ ॥ ୫୬ ॥
ଏ ରୂପେ ଯହୁଁ ସକଳ କ୍ଳେଶ ନାଶ ଗଲା ।
ପୁଣି ଗୁରୁ ଗୃହେ ପୁତ୍ର ପ୍ରବେଶ ହୋଇଲା ॥ ୫୭ ॥
ତହୁଁ ପୁଣି ପ୍ରତି ଦିନ ଗୁରୁ ପୁତ୍ର ମାନେ ।
ରାଜନୀତି ଶିଖାଇଲେ ଅନେକ ବିଧାନେ ॥ ୫୮ ॥
ଯଇଂ ରାଜନୀତି ରାଜ୍ୟଫଳକୁ ଦିଅଇ ।
ରାଜା ଅର୍ଥେ ଶୁକ୍ର ଯାହା କରିଥିଲେ ତହିଁ ॥ ୫୯ ॥
ସେ ସର୍ବ ପ୍ରହଲ୍ଲାଦକୁ ପଢ଼ାଇଲେ ନିତି ।
ଶୁଣିବା ମାତ୍ରକେ ସବୁ ଜାଣିଲା ସୁମତି ॥ ୬୦ ॥
ଯେତେ ନୀତିଶାସ୍ତ୍ର ମାନ ସମସ୍ତ ଜାଣିଲା ।
ଗୁରୁଙ୍କର ଚରଣେ ବିନୟେ ସେବା କଲା ॥ ୬୧ ॥
ତାହାଜାଣି କରି ଗୁରୁ ଅତି ସନ୍ତୋଷରେ ।
ଜଣାଇଲେ ପ୍ରହଲ୍ଲାଦ ପିତାଙ୍କ ଛାମୁରେ ॥ ୬୨ ॥
ଭୋ ଦେବ ଅସୁର ଇନ୍ଦ୍ରରାଜ ରାଜେଶ୍ୱର ।
ନୀତିଶାସ୍ତ୍ର ଶିଖିଲା ଯେ ତୋହର କୁମର ॥ ୬୩ ॥
କହିବା ମାତ୍ରକେ ସବୁ ସତ୍ୱର ଜାଣିଲା ।
ଏତେ କାଳେ କୁମର ଯେ ଗୁଣବନ୍ତ ହେଲା ॥ ୬୪ ॥
ଗୁରୁ ତହୁଁ ଏହା ଶୁଣି ଦୈତ୍ୟ କୁଳପତି ।
ପୁତ୍ରକୁ ପାଶେ ବସାଇ ପୁଚ୍ଛେ ରାଜନୀତି ॥ ୬୫ ॥
କହ ବାବୁ ନୃପତି ଯେ ମିତ୍ରବର୍ଗଠାରେ ।
କେମନ୍ତ ରୂପେ ରହିବ କଇଂ ବିଚାରରେ ॥ ୬୬ ॥
ଅରି ବର୍ଗଠାରେ ପୁଣି କି ରୂପେ ରହିବ ।
ତିନିକାଳମାନଙ୍କେ କି ରୂପେ ଆଚରିବ ॥ ୬୭ ॥

ମନ୍ତ୍ରିମାନଙ୍କଠାରେ ଅମାତ୍ୟଙ୍କରଠାରେ ।
ନୃପତି ରହିବ ପୁଣି କେମନ୍ତ ପ୍ରକାରେ ।। ୬୮ ।।
ବାହାର ଭିତରେ କଉଂ ରୂପେ ଆଚରିବ ।
କାର୍ଯ୍ୟାକାର୍ଯ୍ୟମାନଙ୍କରେ କି ରୂପେ ବୁଝିବ ।। ୬୯ ।।
ଦୁର୍ଗର ଭିତରେ ଯେତେ ମହାଶତ୍ରୁ ଥିବ ।
ସେ ପୁଣି କଉଂ ରୂପରେ ସାଧ୍ୟ ଯେ ହୋଇବ ।। ୭୦ ।।
ମହାରଣ୍ୟମାନଙ୍କରେ ଥିଲେ ଦୁଷ୍ଟମାନେ ।
ସେମାନଙ୍କୁ ସାଧିବାକୁ କେମନ୍ତ ବିଧାନେ ।। ୭୧ ।।
ଚୌର ଆଦି କ୍ଷୁଦ୍ର ଶତ୍ରୁମାନେ ଯେତେ ଥିବେ ।
ସେମାନେ କଉଂ ପ୍ରକାରେ ସାଧ୍ୟ ଯେ ହୋଇବେ ।। ୭୨ ।।
ଏ ସର୍ବ ଉତ୍ତମ କରି କହ ବାବୁ ମତେ ।
ଏଥୁଁ ଆନ ରାଜନୀତି ପୁଣି ଅଛି ଯେତେ ।। ୭୩ ।।
ସେ ସର୍ବ କହ ପଢ଼ିଛୁ ଯଉଂ ରୂପେ ତୁହି ।
ତେବେ ତୋର ମନୋରଥ ପୁରାଇବି ମୁହିଁ ।। ୭୪ ।।
କହୁଛନ୍ତି ପରାଶର ଶୁଣ ବ୍ରହ୍ମବେତ୍ତା ।
ହିରଣ୍ୟକଶିପୁ ତହୁଁ ଶୁଣି ଏହୁ କଥା ।। ୭୫ ।।
ବିନୟରେ ଭୂଷିତ ହୋଇଣ ମହାବୀର ।
ପିତାପାଦେ ଓଳଗି ମସ୍ତକେ ଦେଲା କର ।। ୭୬ ।।
ଭୋ ତାତ ଗୁରୁ ଯେତେକ ଶିଖାଇଲେ ମତେ ।
ସର୍ବ ମୁହିଁ ଜାଣିଲି ସଂଶୟ ନାହିଁ ଏଥେ ।। ୭୭ ।।
ଜାଣିଲେ କି ମାତ୍ରକ କଥାଏ ଅଛି ତାତ ।
ଯେତେକ କହିଲେ ନୋହେ ଏ ଉତ୍ତମମତ ।। ୭୮ ।।
ସାମ ଦାନ ଭେଦ ଦଣ୍ଡ ଇତ୍ୟାଦି ଯେତେକ ।
ଏ ସର୍ବ ଉପାୟ ଯେ କହିଲେ ସୁବିବେକ ।। ୭୯ ।।
ମିତ୍ରାଦିମାନଙ୍କର ଯେ ସାଧନ ଯା ଭଣି ।
ଏମାନଙ୍କୁ ତାତ ମୁହିଁ କିଛି ନାହିଁ ଜାଣି ।। ୮୦ ।।
ଶତ୍ରୁମିତ୍ର ମାନଙ୍କୁ ହିଁ ନଜାଣଇ କିଛି ।
ଯେଣୁକରି କ୍ରୋଧମାନ ହୃଦରେ ନ ଗଛି ।। ୮୧ ।।
ଚିତ୍ତେ କ୍ରୋଧ ନ ଘେନ ଯେ ଜଣାଉଛି ଏବେ ।
ଏମାନେ ସାଧିଲେ ପ୍ରାଣୀ କି ଫଳ ପାଇବେ ।। ୮୨ ।।
ସର୍ବଭୂତ ଆତ୍ମକ ଯେବଣ ଜଗନ୍ନାଥ ।
ସମସ୍ତ ଜଗତ ବ୍ୟାପୀ ଯେବଣ ପଦାର୍ଥ ।। ୮୩ ।।
ପରମାତ୍ମା ଅଟନ୍ତି ଯେ ଯେବଣ ଗୋବିନ୍ଦ ।
ଯାହା ହୃଦୟରେ ଅଛି ତାଙ୍କ ପଦ୍ମପାଦ ।। ୮୪ ।।

ସେ ଲୋକର ମିତ୍ରାମିତ୍ର କଥା କଉଂଠାରେ ।
ଦେଖି ପ୍ରଭୁ ପୁରିଅଛି ସମସ୍ତ ଘଟରେ ॥ ୮୫ ॥
ତୋହଠାରେ ମୋହଠାରେ ସବୁଠାରେ ଅଛି ।
ଏହି ରୂପେ ବ୍ରହ୍ମାଣ୍ଡରେ ସମସ୍ତ ପୁରିଛି ॥ ୮୬ ॥
ଏଣୁକରି ଯେଣେ ତେଣେ ଅଛଇ ମୋ ମିତ୍ର ।
ଶତ୍ରୁ ହୋଇ କାହିଁ ଭିନ୍ନେ ଅଛି କହ ତାତ ॥ ୮୭ ॥
ତେଣୁ ସାମ ଦଣ୍ଡ ଆଦି ମାନଙ୍କରେ କରି ।
କଉଣସି ପ୍ରୟୋଜନ ନାହିଁ ଦଣ୍ଡଧାରୀ ॥ ୮୮ ॥
ଦୁଷ୍ଟ ବିଷୟେ ଆମ୍ଭର ଯଉଂ ବାକ୍ୟ ମାନେ ।
ତେଣେ କରି ବିସ୍ତାର ଅଟନ୍ତି ସବୁଦିନେ ॥ ୮୯ ॥
ନାନା ଅବିଦ୍ୟା ଅଛଇ ଯାହାଙ୍କ ଭିତରେ ।
କଉଂ ପ୍ରୟୋଜନ ଅବା ଏ ନୀତିଶାସ୍ତ୍ରରେ ॥ ୯୦ ॥
ଏଣୁଂ କରି ଯହିଁରେ ପରମ ମୁକ୍ତି ହେବ ।
ସେହି କଥାମାତ୍ର ଯତ୍ନପ୍ରକାରେ କରିବ ॥ ୯୧ ॥
ବିଦ୍ୟା ଶୁଦ୍ଧି ବୋଲି କରି ଯେବଣ ପଦାର୍ଥ ।
ଅଜ୍ଞାନ ସକାଶୁଂ ସେ ବିଦ୍ୟାଠାଗୁଂ ଜାତ ॥ ୯୨ ॥
ଅଧର୍ମ ସିନା ତାହାକୁ ବଡ଼ କରି ଘେନେ ।
ଜୁଳୁଜୁଳା ପୋକ ଦେଖି ବାଳକ ଯେସନେ ॥ ୯୩ ॥
ଅଗ୍ନି ପ୍ରାୟେ ମଣଇ ଯେ ସେହି ପରକାର ।
ଏହା ଅନ୍ତର୍ଗତେ ଘେନ ଦୈତ୍ୟଙ୍କ ଈଶ୍ୱର ॥ ୯୪ ॥
ଯେବଣ କର୍ମରେ କର୍ମ ବନ୍ଧୁଂ ମୁକ୍ତ ହୋଇ ।
ସେହି କଥାକୁଟି ତାତ ବିଦ୍ୟା ବୋଲି କହି ॥ ୯୫ ॥
ଅପର କର୍ମ ଯେ ହୁଏ ସେ ନିମିତ୍ତ ଅର୍ଥେ ।
ଆନ ବିଦ୍ୟା ଶିଳ୍ପିକର୍ମମାନଙ୍କ ନିମନ୍ତେ ॥ ୯୬ ॥
ତେଣୁ ରାଜ୍ୟ ବିଷୟ ଯେ ଅଟଇ ଅସାର ।
ତାହାକୁ ତୁଚ୍ଛ କରି ଘେନିଛି ହୃଦୟର ॥ ୯୭ ॥
ଯଉଂ କଥା ସାର ସାଧ୍ୟ ଅଟଇ ଉତ୍ତମ ।
ତାହାକୁ କହୁଛି ଶୁଣ ନୃପତି ସତ୍ତମ ॥ ୯୮ ॥
ପ୍ରଣମ୍ୟ କରି ଜଣାଉଛି ଶ୍ରୀଛାମୁରେ ।
ସାବଧାନ ହୁଅ ଏବେ ମୋର ବିଷୟରେ ॥ ୯୯ ॥
କଉଂ ଲୋକ ରାଜ୍ୟକୁ ମନରେ ନ ଚିନ୍ତଇ ।
କଉଂ ଲୋକ ଅବା ଧନ ବାଞ୍ଛା ନ କରଇ ॥ ୧୦୦ ॥
ଏ ରୂପେ ଅଛଇ ସମସ୍ତଙ୍କ ଅଭିଳାଷ ।
କେତେମାନେ ଏ ଦୁଇ କଥାରେ ପ୍ରତିଆଶ ॥ ୧୦୧ ॥

ଏ ସମସ୍ତ ଉଦ୍ୟମ ଯେ ମହତ୍ତ୍ୱ ନିମିତ୍ତେ ।
ତଥାପି ଭାଗ୍ୟହିଁ ମୂଳ ପୁରୁଷଙ୍କ ଏଥେ ॥ ୧୦୨ ॥
ଭାଗ୍ୟ ବିନା ବିଭୂତି ନୁହଇ ଉଦ୍ୟମରେ ।
ରାଜ୍ୟ ଧନ ଜନାଦି ଏ ଯେତେ ପରକାରେ ॥ ୧୦୩ ॥
ଯଉଂମାନେ ଯଉଂ ଯଉଂମାନେ ଅବିବେକ ।
ସ୍ଥିରଭାବ ନ ବହନ୍ତି ଯେତେ ଯେତେ ଲୋକ ॥ ୧୦୪ ॥
ଏମାନେ ଅତି ଅନୀତିବନ୍ତ ଯେ ଅଟନ୍ତି ।
ଏହାଙ୍କୁ ଯେତେ ମିଳଇ ରାଜ୍ୟର ସମ୍ପତ୍ତି ॥ ୧୦୫ ॥
ଭାଗ୍ୟରେ କରି କେବଳ ହୁଅଇ ସେ ଭୋଗ ।
ସେ କାରଣୁ କହଇ ଶୁଣିମା ମହାଭାଗ ॥ ୧୦୬ ॥
ଯେ ଅବା ମହାସମ୍ପତ୍ତି ଇଚ୍ଛା ଯେ କରିବ ।
ସେ ପୁଣି ଅନ୍ୟମାନଙ୍କେ ଯତ୍ନ ପୂର୍ବ ହେବ ॥ ୧୦୭ ॥
ମୁକ୍ତି ବିଷୟରେ ଯେ ଯାହାର ଦେହ ଇଚ୍ଛା ।
ସେ ସବୁଠାରେ କରିବ ସମଭାଗ୍ୟ ବାଞ୍ଛା ॥ ୧୦୮ ॥
ଅଧିକ ଉଣା ହୋଇଣ କେ ନଥିବ ତା'ର ।
ଏଥକୁ କହଇ ଶୁଣ ଦୈତ୍ୟକୁଳବୀର ॥ ୧୦୯ ॥
ତୁମ ଦେବାସୁର ନର ପଶୁ ପକ୍ଷୀ ସର୍ପ ।
ଏତେ ଭିନ୍ନ ହୋଇଅଛି ଏକା ବିଷ୍ଣୁ ରୂପ ॥ ୧୧୦ ॥
ଏମନ୍ତ କରି ସ୍ଥାବର ଜଙ୍ଗମ ଆତ୍ମଜ ।
ସଂସାରକୁ ଭାବନା କରିବ ଯଉଂ ଲୋକ ॥ ୧୧୧ ॥
ତେବେ ଏକା ଆତ୍ମା ପ୍ରାୟେ ଏ ସର୍ବ ଦେଖିବ ।
ବିଶ୍ୱରୂପ ଧରି ବିଷ୍ଣୁ ବୋଲି ବିଚାରିବ ॥ ୧୧୨ ॥
ଏମନ୍ତ ଜାଣନ୍ତେ ସେ ଯେ ଭଗବାନ ହରି ।
ତାହାଠାରେ ପ୍ରସନ୍ନ ହୁଅନ୍ତି ଦୟାକରି ॥ ୧୧୩ ॥
ସେ ଆଦି ପୁରୁଷୋତ୍ତମ ଅଚ୍ୟୁତ ପ୍ରସନ୍ନେ ।
ବିନାଶ ହୁଅନ୍ତି ତାର ମହାକ୍ଳେଶମାନେ ॥ ୧୧୪ ॥
କହୁଛନ୍ତି ପରାଶର ଶୁଣ ହୋ କୋବିଦ ।
ଏମନ୍ତ ତତ୍ତ୍ୱ କହନ୍ତେ ବୀର ପ୍ରହଲ୍ଲାଦ ॥ ୧୧୫ ॥
ତାହା ଶୁଣିବା ମାତ୍ରକେ କ୍ରୋଧରେ ପ୍ରଜ୍ୱଳି ।
ସିଂହାସନରୁଂ ଉଠି ବସିଲା ମହାବଳୀ ॥ ୧୧୬ ॥
ଦନ୍ତରେ ଅଧର ଚାପି ନେତ୍ର ରଙ୍ଗ କରି ।
ନିଜପୁତ୍ର ବକ୍ଷସ୍ଥଳେ ଚରଣ ପ୍ରହାରି ॥ ୧୧୭ ॥
ହସ୍ତରେ ହସ୍ତ ପିଟିଣ ମହାକୋପାନଳେ ।
ଜଳି ଉଠିଲା ପ୍ରାୟେକ ଅତି ବିକରାଳେ ॥ ୧୧୮ ॥

ଜଗତଦହନ ତେଜ ପ୍ରତାପ ଦେଖାଇ ।
ବୋଇଲାକ ବିପ୍ରଚିତ୍ତ ବଦନକୁ ଚାହିଁ ॥ ୧୧୯ ॥
ଆହେ ବିପ୍ରଚିତ୍ତ ଆହେ ରାହୁ ଆହେ ବଳି ।
ସତ୍ୱର ଉଠ ସଭାଙ୍କୁ ମୋହ ଆଜ୍ଞା ପାଳି ॥ ୧୨୦ ॥
ଏ ପାପୀକି ଦୃଢ଼ କରି ବାନ୍ଧି ନାଗପାଶେ ।
ଶୀଘ୍ରେ ପକାଅ ସମୁଦ୍ର ଗଭୀର ପ୍ରଦେଶେ ॥ ୧୨୧ ॥
ଏଡ଼େ ମୂଢ଼ ଦୁରାତ୍ମା ଅଟଇ ମହାପାପୀ ।
ଏହାର ମହତ୍ୱ ଯେ ଘେନିବ ଅଦ୍ୟାପି ॥ ୧୨୨ ॥
ତେଣୁ ଦୈତ୍ୟ ଦାନବ ଇତ୍ୟାଦି ସର୍ବଲୋକ ।
ନିଶ୍ଚେ ଅନ୍ୟଥା ହୋଇବେ ଏହା ସତ୍ୟ ଦେଖ ॥ ୧୨୩ ॥
ଯେତେ ନିବାରିଲେ ହେଁ ଶତ୍ରୁର ଯେ ସ୍ତୁତି ।
ଏହା କେତେବେଳେ ନଛାଡ଼ିଲାକ ଦୁର୍ମତି ॥ ୧୨୪ ॥
ତେଣୁକରି ଏହାକୁ ମାଇଲେ ଏକା ଭଲ ।
ଓପ୍ରୋଧ କିଛି ନ କର ଯାଉ କୁଳସଲ ॥ ୧୨୫ ॥
ତାହା ଶୁଣି ବିପ୍ରଚିତ୍ତ ଆଦି ଦୈତ୍ୟମାନେ ।
ନାଗପାଶରେ ପୁତ୍ରକୁ ବାନ୍ଧିଲେ ଯତନେ ॥ ୧୨୬ ॥
ରାଜା ଆଜ୍ଞା ଘେନିଣ ସମୁଦ୍ରେ ପକାଇଲେ ।
ଯେତେବେଳେ କୁମର ପଡ଼ିଲା ମହାଜଳେ ॥ ୧୨୭ ॥
ଜଳ ମଧ୍ୟେ ଥାଇଣ ଯେ ହୁଅନ୍ତେ ପ୍ରଚଳ ।
ଆନ୍ଦୋଳିତ ହୋଇଲା ତେଡ଼େକ ମହାଜଳ ॥ ୧୨୮ ॥
ତୀର ଲଙ୍ଘି ସକଳ ଦିଗରେ ପ୍ରସରିଲା ।
ଅବନୀ ନାଶ ଯିବାର ପରାୟେ ଦିଶିଲା ॥ ୧୨୯ ॥
ତାହା ଦେଖି ଦୈତ୍ୟେନ୍ଦ୍ର ଯେ ସର୍ବ ଦୈତ୍ୟ ରାଇ ।
ବୋଇଲା ଯାଅ ହୋ ତୁମ୍ଭେ ସର୍ବେ ବେଗ ହୋଇ ॥ ୧୩୦ ॥
ଅନେକ ପର୍ବତ ଆଣି ପକାଅ ସିନ୍ଧୁରେ ।
କଉଂ ଆଡ଼େ ଛିଦ୍ରଟି ନୋହିବ ଯେମନ୍ତରେ ॥ ୧୩୧ ॥
ସେହି ରୂପେ କର ଏ ଦୁର୍ବୁଦ୍ଧି ସୁତ ମରୁ ।
କୁଳର କଳଙ୍କ ମୋର ଏହିଠାରୁ ସରୁ ॥ ୧୩୨ ॥
ଅଗ୍ନିରେ ନ ପୋଡ଼ିଲା ଶସ୍ତ୍ରରେ ନ ଛିଡ଼ିଲା ।
ମହାକାଳ ସର୍ପ ଦଂଷ୍ଟ୍ରେ ନାଶ ହି ନୋହିଲା ॥ ୧୩୩ ॥
ବାତରେ କ୍ଷୟ ନୋହିଲା ନ ନାଶିଲା ବିଷ ।
କୃତ୍ୟାରେ କରି କେବେ ହେଁ ନୋହିଲା ବିନାଶ ॥ ୧୩୪ ॥
ମାୟାବାଧି ନ ପାରିଲା ଏହାର ଶରୀର ।
ଉଚ୍ଚସ୍ଥାନରୁ ପଡ଼ିଲେ ନୋହିଲା ଅପହାର ॥ ୧୩୫ ॥

ଦିଗ୍‌ଗଜମାନେ ଏହାକୁ ନ ପାରିଲେ ମାରି ।
ଏଡ଼େ ଦୁଷ୍ଟ ଚିତ୍ତ ଅଟେ ବାଳକ ମୋହରି ।। ୧୩୬ ।।
ଏ ସକାଶୁଁ ଏଣେ କରି କିଛି କାର୍ଯ୍ୟ ନାହିଁ ।
ଏବେ ସିନ୍ଧୁ ମଧ୍ୟେ ମାରି ପର୍ବତେ ପକାଇ ।। ୧୩୭ ।।
ସହସ୍ରେ ବରଷ ଯାଏ ଥାଉ ଏହି ମତି ।
ତଦୁତ୍ତାରେ ପ୍ରାଣତ୍ୟାଗ ହୋଇବ ଦୁର୍ମତି ।। ୧୩୮ ।।
ହିରଣ୍ୟକଶିପୁ ତହୁଁ ଏ ବଚନ ଶୁଣି ।
ସେହିଲାଗେ ଧାଇଁଲେ ସକଳ ବୀରମଣି ।। ୧୩୯ ।।
ଭୁଜବଳେ ଉପାଡ଼ି ଆଣିଲେ ଗିରିମାନେ ।
ମହାସିନ୍ଧୁ ପୋତିଲେ ଯେ ସହସ୍ର ଯୋଜନେ ।। ୧୪୦ ।।
ପର୍ବତମାନଙ୍କେ ସିନ୍ଧୁ ହେଲା ଯହୁଁ ପୂର୍ଣ୍ଣ ।
ପ୍ରହଲ୍ଲାଦ ଅଙ୍ଗରେ ବସିଲା ଗିରିମାନ ।। ୧୪୧ ।।
ସେ କାଳରେ କୁମର ବିପତ୍ତି କାଳ ଜାଣି ।
ଅନ୍ତର୍ଗତେ ସ୍ତୁତି କଲା ଶଙ୍ଖଚକ୍ରପାଣି ।। ୧୪୨ ।।
ନମସ୍ତେ ପୁଣ୍ଡରୀକାକ୍ଷ ନମସ୍ତେ ଗୋବିନ୍ଦ ।
ନମସ୍ତେ ପୁରୁଷୋତ୍ତମ ଶ୍ରୀପରମାନନ୍ଦ ।। ୧୪୩ ।।
ନମସ୍ତେ ସମସ୍ତ ଲୋକଙ୍କର ଆତ୍ମାରୂପୀ ।
ନମସ୍ତେ ପ୍ରଖରଚକ୍ରଧାରୀ ସର୍ବବ୍ୟାପୀ ।। ୧୪୪ ।।
ନମସ୍ତେ ବ୍ରହ୍ମଣ୍ୟଦେବ ଗୋବ୍ରାହ୍ମଣହିତ ।
ନମସ୍ତେ କୃଷ୍ଣ ଜଗତହିତ ଜଗନ୍ନାଥ ।। ୧୪୫ ।।
ବ୍ରହ୍ମା ରୂପେ ସୃଷ୍ଟି କରୁ ପାଳୁ ବିଷ୍ଣୁ ରୂପେ ।
କଳ୍ପାନ୍ତରେ ରୁଦ୍ର ରୂପ ଧରୁ ପ୍ରଭୁ ଆପେ ।। ୧୪୬ ।।
ଏଣୁକରି ନମସ୍ତେ ହେ ତ୍ରୟମୂର୍ତ୍ତି ଦେବ ।
ତୋହର ମହିମା ପ୍ରଭୁ ଅତି ଅସମ୍ଭବ ।। ୧୪୭ ।।
ଦେବାସୁର ନର ଯକ୍ଷ ରକ୍ଷ ସିଦ୍ଧନାଗ ।
ଗନ୍ଧର୍ବ କିନ୍ନର ପଶୁ ପତଙ୍ଗ ଉରଗ ।। ୧୪୮ ।।
ପକ୍ଷୀ ତରୁ ପିପିଲ୍ଲିକା କ୍ଷୁଦ୍ରକୀଟମାନ ।
ଏ ସମସ୍ତେ ତୋ ରୂପ ଅଟନ୍ତି ଭଗବାନ ।। ୧୪୯ ।।
ଭୂମି ଆପ ଅଗ୍ନି ନଭ ବାୟୁ ପଞ୍ଚଭୂତ ।
ଶବ୍ଦ ସ୍ପର୍ଶ ରୂପ ଗନ୍ଧ ରସ ଏ ତନ୍ମାତ୍ର ।। ୧୫୦ ।।
ମନବୁଦ୍ଧି ଆତ୍ମାଜ୍ଞାନ ନାନା ଗୁଣମାନେ ।
ଏମାନଙ୍କ ପରମାର୍ଥ ଅଟୁ ତୁ ବିଧାନେ ।। ୧୫୧ ।।
ତୁହି ପୁଣି ଏ ସମସ୍ତ ରୂପେ ଅଛୁ ରହି ।
ତୋହଠାରୁଁ ଆନ ଏ ସଂସାରେ କେହି ନାହିଁ ।। ୧୫୨ ।।

ତୁହି ବିଦ୍ୟା ତୁ ଅବିଦ୍ୟା ତୁ ସତ୍ୟ ଅସତ୍ୟ ।
ତୁହି ଏକା ବିଷ ପ୍ରଭୁ ତୁ ଏକା ଅମୃତ ॥ ୧୫୩ ॥
ପ୍ରବୃତ୍ତି ହିଁ ତୁହି ପ୍ରଭୁ ନିବୃତ୍ତି ହିଁ ତୁହି ।
ବେଦୋଦିତ କର୍ମ ଏକା ତୁହି ଭାବଗ୍ରାହୀ ॥ ୧୫୪ ॥
ସମସ୍ତ କର୍ମର ତୁମ୍ଭେ ଅଟ ବିପ୍ର ଭୋଗୀ ।
କର୍ମ ଉପକରଣ ତୁମ୍ଭେ ସେ ମହାଯୋଗୀ ॥ ୧୫୫ ॥
ତୁମ୍ଭେ ଏକା ସର୍ବ ସର୍ବ କର୍ମଫଳ ଦାହା ।
ମୋହଠାରେ ଯେଉଁ ରୂପେ ଅଛ ଲକ୍ଷ୍ମୀ ନାହା ॥ ୧୫୬ ॥
ଆନମାନଙ୍କଠାରେ ସେହି ରୂପେ ଅଛ ।
ସେହି ରୂପେ ସର୍ବଭୂତେ ତୁମ୍ଭେ ପ୍ରବର୍ତ୍ତିଛ ॥ ୧୫୭ ॥
ଅଇଶ୍ୱର୍ଯ୍ୟ ରୂପେ ଗୁଣ ସୂଚକ ପ୍ରକାରେ ।
ତୁମ୍ଭେ ଏକା ବ୍ୟାପୀ ଅଛ ଏହି ଚରାଚରେ ॥ ୧୫୮ ॥
ତୁମ୍ଭଙ୍କୁ ଏକା ଚିନ୍ତନ୍ତି ସର୍ବ ଯୋଗୀମାନେ ।
ତୁମ୍ଭ ଯାଗ କରନ୍ତି ଯେତେକ ଯଜ୍ୱାଜନେ ॥ ୧୫୯ ॥
ହବ୍ୟ କବ୍ୟ ଭୋଗ କରିବାରେ ତୁମ୍ଭେ ଏକ ।
ତୁମ୍ଭେ ଏକା ପିତୃ ଦେବଋଷି ଶ୍ରୀନାୟକ ॥ ୧୬୦ ॥
ତୁମ୍ଭର ଯେ ମହାରୂପ ହୋଇଛି ପ୍ରକାଶ ।
ସେ ମଧ୍ୟରେ ପୁଣି ଯେ ଅଛଇ ଏହୁ ବିଶ୍ୱ ॥ ୧୬୧ ॥
ତାହା ମଧେ ସୂକ୍ଷ୍ମ ରୂପେ ଜଗତ ଅଛଇ ।
ତହିଁ ସୂକ୍ଷ୍ମ ରୂପେ ଭୂତଗଣ ପ୍ରଚରଇ ॥ ୧୬୨ ॥
ସେମାନେ ଅନ୍ତର ଆତ୍ମା ଅସ୍ଥି ସୂକ୍ଷ୍ମ ରୂପେ ।
ଏ ସମସ୍ତ ବିଶେଷଣ ଅଟୁ ତୁହି ରୂପେ ॥ ୧୬୩ ॥
ଏଣୁ ତୋର କେଉଁ ରୂପେ ନ କରିବ ଚିନ୍ତା ।
ତୁହି ଏକା ଅଟୁ ସର୍ବରୂପକୁ ଧରନ୍ତା ॥ ୧୬୪ ॥
ଆହେ ସର୍ବଭୂତ ସ୍ୱାମୀ ଶ୍ରୀପୁରୁଷୋତ୍ତମ ॥
ଏଣୁ କରି ତୁମ୍ଭଙ୍କୁ ମୋହର ନମୋନମ ॥ ୧୬୫ ॥
ସର୍ବଭୂତମାନଙ୍କରେ ସର୍ବଆତ୍ମା ତୁହି ।
ତୋହର ଅପର ଯେଉଁ ଶକ୍ତି ଯେ ଅଛଇ ॥ ୧୬୬ ॥
ସର୍ବଗୁଣମାନଙ୍କ ଆଶ୍ରୟ ସେ ଅଟଇ ।
ସମସ୍ତ ପ୍ରାଣୀଙ୍କ ବୁଦ୍ଧିରୂପା ପୁଣି ତୁହି ॥ ୧୬୭ ॥
ନିତ୍ୟାସନାତନୀ ସେ ଅକ୍ଷୟ ସବୁକାଳେ ।
ମୋହ ନମସ୍କାର ତାଙ୍କ ଚରଣ କମଳେ ॥ ୧୬୮ ॥
ଯେଉଁ ଦେବୀ ବଚନ ମନରେ ଅଗୋଚର ।
ଜାତି ଗୁଣମାନଟି ନାହିଁଟି ଯାହାର ॥ ୧୬୯ ॥

ଯାହା ସକାଶରୁଁ ଜୀବବୁଦ୍ଧିର ପ୍ରକାଶ ।
ସେହି ପରମେଶ୍ୱରିଙ୍କି ମୁଁ ବନ୍ଦେ ଅବଶ୍ୟ ॥ ୧୭୦ ॥
ବାସୁଦେବ ସ୍ୱରୂପୀ ଯେବଣ ଭଗବାନ ।
ଯାହା ବିନାରେ ସଂସାର ନୁହଇ ଘଟନ ॥ ୧୭୧ ॥
ସଂସାରକୁ ବିନା କରି ଯେହୁ ରହି ନାହିଁ ।
ସେ ମହାତ୍ମାକୁ ଯେ ନମସ୍କାର ମୁଁ କରଇ ॥ ୧୭୨ ॥
ଯାହା ନାମ ରୂପ ନାହିଁ ଯେ ଅଟଇ ଏକ ।
ଯାହାଠାରେ ନାହିଁ ଅଛି ବୋଲିବା ବିବେକ ॥ ୧୭୩ ॥
ଯାହା ଅବତାର ରୂପମାନ ସବୁଠାରେ ।
ସନ୍ତତ ଅଚିହ୍ନା କରୁଛନ୍ତି ସର୍ବସୁରେ ॥ ୧୭୪ ॥
ପରମରୂପକୁ ପୁଣି ଯାର ନ ଦେଖନ୍ତି ।
ସେ ପରମଆତ୍ମାକୁ ମୋ ନମସ୍କାର ନିତି ॥ ୧୭୫ ॥
ଯଉଂ ପ୍ରଭୁ ସର୍ବପ୍ରାଣୀ ଅନ୍ତର୍ଗତେ ଥାଇ ।
ଶୁଭାଶୁଭ କର୍ମମାନେ ସନ୍ତତେ ଦେଖଇ ॥ ୧୭୬ ॥
ଏଣୁ କରି ଯଉଂ ବିଷ୍ଣୁ ସର୍ବସାକ୍ଷୀଭୂତ ।
ସେହି ପରମେଶ୍ୱରଙ୍କୁ ମୋର ଦଣ୍ଡବତ ॥ ୧୭୭ ॥
ଯଉଂ ମହାବିଷ୍ଣୁଙ୍କୁ ମୋହର ନମସ୍କାର ।
ଯାହାଠାରୁ ଭିନ୍ନ ଅଟେ ଏ ସଚରାଚର ॥ ୧୭୮ ॥
ଜଗତର ଆଦ୍ୟ ଯେ ସମସ୍ତ ଧ୍ୟାନ ପର ।
ସେ ଅବ୍ୟୟ ପ୍ରସନ୍ନ ହୁଅନ୍ତୁ ବାରମ୍ବାର ॥ ୧୭୯ ॥
ଯଉଂ ଅବ୍ୟୟ ପୁରୁଷଠାରେ ଏ ଜଗତ ।
ନିତ୍ୟ ହୋଇ କରିଣ ହୋଇଛି ବ୍ୟବସ୍ଥିତ ॥ ୧୮୦ ॥
ସର୍ବସଂସାର ଆଧାରଭୂତ ଯଉଂ ହରି ।
ମୋହଠାରେ ପ୍ରସନ୍ନ ହୁଅନ୍ତୁ ସେ ମୁରାରୀ ॥ ୧୮୧ ॥
ନମସ୍ତେ ବିଷ୍ଣୁ ନମସ୍ତେ ହେ ନମସ୍ତେ ।
ପୁନଃପୁନଃ ନମସ୍ତେ ବିଷ୍ଣୁ ହେ ନମସ୍ତେ ନମସ୍ତେ ॥ ୧୮୨ ॥
ଏ ସମସ୍ତ ଯାହାଠାରୁ ହୋଇ କରି ଜାତ ।
ଯାହାଠାରେ ପୁଣି ହୋଇ ଅଛି ବ୍ୟବସ୍ଥିତ ॥ ୧୮୩ ॥
ଏହି ସମସ୍ତ ଯେ ପୁଣି ସମସ୍ତ ଆଶ୍ରୟ ।
ସେ ପ୍ରଭୁଙ୍କୁ ମୋହର ପ୍ରଣମ୍ୟ ସବିନୟ ॥ ୧୮୪ ॥
ଏହା ବୋଲିକରି ଯେ ଆତ୍ମାକୁ କରି ଧ୍ୟାନ ।
ଅନ୍ତଃକରଣେ ଚିହ୍ନିଲା ମୁହିଁ ଭଗବାନ ॥ ୧୮୫ ॥
ଯେବଣ ଅନନ୍ତ ହୋଇବାରୁ ସର୍ବବ୍ୟାପୀ ।
ମୁହିଁ ପୁଣି ସେ ଅନନ୍ତ ଅଟଇ ଅଦ୍ୟାପୀ ॥ ୧୮୬ ॥

ମୋହଠାରୁ ସର୍ବ ହୋଇଛି ମୁହିଁ ଏକା ବିଶ୍ୱ ।
ମୋହଠାରେ ଏ ସମସ୍ତ ରହିଛି ଅବଶ୍ୟ ।। ୧୮୭ ।।
ମୁହିଁ ଏକା ସନାତନ ମୁହିଁଟି ଅକ୍ଷୟ ।
ମୁହିଁ ନିତ୍ୟ ପରମାତ୍ମା ଆତ୍ମାର ସଂଶ୍ରୟ ।। ୧୮୮ ।।
ମୁହିଁ ପରମପୁରୁଷ ବ୍ରହ୍ମ ଅଟେ ମୁହିଁ ।
ଆଦ୍ୟେପ୍ରାନ୍ତେ ମଧରେ ଯେ ମୁଁ ଏକା ଅଛଇ ।। ୧୮୯ ।।
ସୃଷ୍ଟି ସ୍ଥିତି ପ୍ରଳୟ କର୍ତ୍ତା ମୁହିଁ ସିନା ।
ଏ ରୂପେ କଲା ପ୍ରାନ୍ତରେ ଆତ୍ମାକୁ ଭାବନା ।। ୧୯୦ ।।
ଶ୍ରୀବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ପ୍ରହଲ୍ଲାଦସ୍ତୁତି ଉନବିଂଶ ଅଧ୍ୟା ଖ୍ୟାତ ।। ୧୯୧ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୯୨ ।।

## ବିଂଶୋଧ୍ୟାୟ

ଏଥୁ ଅନନ୍ତରେ ଯେ କହନ୍ତି ପରାଶର ।
ଶୁଣ ବାବୁ ମଇତ୍ରେୟ ତପସ୍ୱୀ କୁମର ॥ ୧ ॥
ଏ ରୂପେ ପ୍ରହଲ୍ଲାଦ ଆତ୍ମା ଅଭେଦରେ ।
ଯହୁଁ ସ୍ତୁତି କଲାକ ବିଷ୍ଣୁଙ୍କୁ ମାନସରେ ॥ ୨ ॥
ସେ କାଳେ ଆତ୍ମାକୁ ବିଷ୍ଣୁ କରିଣ ମଣିଲା ।
ବିଷ୍ଣୁମୟ କେବଳ ଆପଣା ପୁଣି ହେଲା ॥ ୩ ॥
ମୁହିଂ ପ୍ରହଲ୍ଲାଦ ବୋଲିବାର ଯଉଂ କଥା ।
ହୃଦୟରୁ ତାହା ପାଶୋରିଲାକ ସର୍ବଥା ॥ ୪ ॥
ଆନ କିଛି ପ୍ରସଙ୍ଗ ହିଂ ଜାଣିଲା ସେ ନାହିଂ ।
ବିଚାରିଲା ଅନନ୍ତ ଏକା ଅଟଇ ଯେ ମୁହିଂ ॥ ୫ ॥
ମୁହିଂ ଏକା ଅକ୍ଷୟ ପରମଆତ୍ମା ରୂପ ।
ଏହା ବୋଲି ହୃଦୟରେ ଚିନ୍ତାକଲା ଆପ ॥ ୬ ॥
ଏମନ୍ତ ଭାବନା ଯହୁଁ କଲା ପୁନଃପୁନଃ ।
ଅତ୍ୟନ୍ତ ହୋଇଲା ଯେ ନିଷ୍କଲ୍ମଷ ମନ ॥ ୭ ॥
ଅନ୍ତଃକରଣ ହୋଇଲା ପରମ ନିର୍ମଳ ।
ତାହା ଜାଣି ଦୟାଳୁ ଯେ ପରମ ମଙ୍ଗଳ ॥ ୮ ॥
ଜ୍ଞାନମୟ ଅଚ୍ୟୁତ ହୃଦରେ କଲେ ବିଜେ ।
ଭଗତ ବତ୍ସଳ ଯେ ଜାଜୁଲ୍ୟମାନ ତେଜେ ॥ ୯ ॥
ଯୋଗ ପ୍ରଭାବରୁ ଯେ ଅସୁର ପ୍ରହଲ୍ଲାଦ ।
ବିଷ୍ଣୁମୟ ସେ କାଳରେ ହୁଅନ୍ତେ କୋବିଦ ॥ ୧୦ ॥
ନାଗପାଶ ବନ୍ଧନ କ୍ଷଣକେ ତୁଟି ଗଲା ।
କୁମ୍ଭୀରାଦିମାନଙ୍କ ଅତ୍ୟନ୍ତ ଭୟ ହେଲା ॥ ୧୧ ॥
ଜଳ ମଧେ ଚଳନ୍ତେ ଯେ ଜଳଜନ୍ତୁ ଯେତେ ।
ସର୍ବେ ତ୍ରାସପାଇ ପଳାଇଲେ ଯେଝାମତେ ॥ ୧୨ ॥
ତାହାଙ୍କ ଗତିରେ ଆନ୍ଦୋଳିତ ମହାର୍ଣ୍ଣବ ।
ଅବନୀ କମ୍ପିଲା ତେଣୁ ଅତି ଅସମ୍ଭବ ॥ ୧୩ ॥
ସମସ୍ତ ପର୍ବତବନ କମ୍ପିଲେ ସେ କାଳେ ।
ଅଙ୍ଗଦେଶେ ବଧିଲେ ଯେତେ ଗିରିମାଳେ ॥ ୧୪ ॥
ମହାବଳୀ ଦୈତ୍ୟେ ଆଣିଥିଲେ ଯା ପକାଇ ।
ମହାସଲୀଳ ଲହରୀ ବାଜନ୍ତେଣ ତହିଂ ॥ ୧୫ ॥
ଛିନ୍ନଛତ୍ର ହୋଇଣ ପଡ଼ିଲେ ସର୍ବ ଦିଗେ ।
ତୃଣରାଶି ଯେହ୍ନେ ଜଳ ତରଙ୍ଗ ସଂଯୋଗେ ॥ ୧୬ ॥

ସେହି ରୂପେ ଗିରିବର ହେଲେ ଛିନ୍ନଭିନ୍ନ ।
ଦିଗନ୍ତରମାନଙ୍କରେ ହୋଇଲେ ପତନ ॥ ୧୭ ॥
ଏ ରୂପେ ସମସ୍ତ ଗିରି ଯହୁଁ ଗଲେ ନାଶ ।
ଶରୀରକୁ ଲାଗିଲା ଯେ ଅତ୍ୟନ୍ତ ଉଶ୍ୱାସ ॥ ୧୮ ॥
ସେ କାଳେ ଜଳ ମଧରୁ ବାହାରିଣ ବୀର ।
ଦେଖିଲା ଜଗତ ପଞ୍ଚଭୂତର ସଂଚାର ॥ ୧୯ ॥
ସେ ସମୟେ କଲା ନିଜ ଆତ୍ମାର ବିଚାର ।
ମୁହିଂ ଏକା ପ୍ରହଲ୍ଲାଦ ଅସୁର କୁମର ॥ ୨୦ ॥
ଏହା ପାଞ୍ଚିଣ ଅନାଦି ପୁରୁଷକୁ ପୁଣି ।
ଏକାଗ୍ର ମତିରେ ସ୍ତୁତି କଲା ବୀରମଣି ॥ ୨୧ ॥
ଶରୀର ମନବଚନ ଏକାଠାବ କରି ।
ଶ୍ରୀପୁରୁଷୋତ୍ତମ ଧ୍ୟାଇ ବୋଇଲା ଉଚ୍ଚାରି ॥ ୨୨ ॥
ନମସ୍ତେ ହେ ପରମାର୍ଥ ସ୍ଥୂଳ ସୂକ୍ଷ୍ମ ରୂପୀ ।
ନମସ୍ତେ ଅକ୍ଷୟ କ୍ଷର ଶୂନ୍ୟ ସର୍ବବ୍ୟାପୀ ॥ ୨୩ ॥
ନମସ୍ତେ ହେ ବ୍ୟକ୍ତ ଅବ୍ୟକ୍ତ ନମସ୍ତେ ଅରୂପ ।
ନମସ୍ତେ କମଳା ସହ ନିରଞ୍ଜନ ରୂପ ॥ ୨୪ ॥
ନମସ୍ତେ ହେ ପ୍ରଭୁ ଗୁଣାଞ୍ଜନ ଗୁଣାଧାର ।
ନମସ୍ତେ ନିର୍ଗୁଣାତ୍ମକ ପ୍ରଣବ ଅକ୍ଷର ॥ ୨୫ ॥
ନମସ୍ତେ ହେ ପରସ୍ଥିତି ନମୋ ମୂର୍ତ୍ତାମୂର୍ତ୍ତି ।
ନମସ୍ତେ ହେ ମହାମୂର୍ତ୍ତି ସୂକ୍ଷ୍ମମୂର୍ତ୍ତି ଭୂତି ॥ ୨୬ ॥
ନମସ୍ତେ ସ୍ଫୁଟ ଅସ୍ଫୁଟ କରାଳସ୍ୱରୂପ ।
ନମସ୍ତେ ହେ ସୌମ୍ୟାତ୍ମକ ନମସ୍ତେ ବିରୂପ ॥ ୨୭ ॥
ନମସ୍ତେ ବିଦ୍ୟା ଅବିଦ୍ୟାମୟ ହେ ଅଚ୍ୟୁତ ।
ନମସ୍ତେ ହେ ପ୍ରତ୍ୟେକ୍ଷ ପରୋକ୍ଷ ରୂପ ଭୂତ ॥ ୨୮ ॥
ନମସ୍ତେ ସଦଅସଦରୂପରସ ଭାବ ।
ନମଃ ସଦାତ୍ମଭାବ ଭାବନ ବାସୁଦେବ ॥ ୨୯ ॥
ନମସ୍ତେ ହେ ନିତ୍ୟା ନିତ୍ୟ ପ୍ରପଞ୍ଚଆତ୍ମକ ।
ନମସ୍ତେ ହେ ନିଷ୍ପଞ୍ଚ ନିର୍ମଳ କାୟକ ॥ ୩୦ ॥
ନମସ୍ତେ ସମସ୍ତ ଜନ ଆଶ୍ରିତ ମୁରାରି ।
ନମସ୍ତେ ଏକ ଅନେକରୂପ ରୂପ ଧାରୀ ॥ ୩୧ ॥
ନମସ୍ତେ ହେ ବାସୁଦେବ ଅନାଦି କାରଣ ।
ସ୍ଥୂଳ ସୂକ୍ଷ୍ମ ରୂପରେ ଯାହାର ଆଚରଣ ॥ ୩୨ ॥
ଅତ୍ୟନ୍ତ ପ୍ରକଟଭାବେ ଯାହାର ପ୍ରକାଶ ।
ଯେ ସର୍ବଭୂତ ଅସର୍ବଭୂତ ଶ୍ରୀନିବାସ ॥ ୩୩ ॥

ଯେହୁ ଏ ବିଶ୍ୱର ହେତୁ ଅହେତୁକ ପୁଣି ।
ଏମନ୍ତ ପ୍ରଭୁ ଆପଣ ଅଟ ଚକ୍ରପାଣି ।। ୩୪ ।।
ନମସ୍ତେ ହେ ଶ୍ରୀପୁରୁଷୋତ୍ତମ ତୁମ୍ଭ ପାଦେ ।
କିଞ୍ଚିତ କୃପା ରଖିବା ଦୀନ ପ୍ରହଲ୍ଲାଦେ ।। ୩୫ ।।
ଏମନ୍ତ ସ୍ତୁତି କରନ୍ତେ ପରମ ଭକତ ।
ଅନ୍ତର୍ଗତେ ଜାଣିଲେ ତା' ପ୍ରଭୁ ଜଗନ୍ନାଥ ।। ୩୬ ।।
ପ୍ରହଲ୍ଲାଦ ହୃଦରୁଂ ପ୍ରକାଶ ହେଲେ ହରି ।
କୋଟି କନ୍ଦର୍ପ ମୋହନ ଦିବ୍ୟରୂପ ଧରି ।। ୩୭ ।।
କଟିତଟେ ପୀତବାସ ରତ୍ନ ଆଭରଣ ।
ଇନ୍ଦ୍ରନୀଳମଣି ନିନ୍ଦେ ଶ୍ରୀଅଙ୍ଗ କିରଣ ।। ୩୮ ।।
ତାହାଙ୍କୁ ଦେଖିବା ମାତ୍ରେ ସଂଭ୍ରମ ହୋଇ ।
ଉଠି ଆକୁଳ ଅକ୍ଷରେ ସ୍ତୁତି ଆଚରଇ ।। ୩୯ ।।
ନମୋ ବିଷ୍ଣୁ ନମୋ ବିଷ୍ଣୁ ନମୋ ବିଷ୍ଣୁ ବୋଲି ।
ପୁନଃପୁନ ଉଚ୍ଚାରି ପଡ଼ିଲା ଗଡ଼ଘାଲି ।। ୪୦ ।।
ପୁଣି ଉଠି ଭକ୍ତିରେ ମସ୍ତକେ ଦେଇ କର ।
ବୋଲଇ ହେ ଦେବେଶ ପ୍ରସନ୍ନେ ଆର୍ତ୍ତିହର ।। ୪୧ ।।
ପ୍ରସନ୍ନ ହୁଅ କେଶବ ପ୍ରଭୁ ମୋହଠାରେ ।
ଦରଶନ ଦାନରେ ପବିତ୍ର କର ବାରେ ।। ୪୨ ।।
ଦୈତ୍ୟ ପୁତ୍ର ମୁଖୁଁ ଏ ପ୍ରାର୍ଥନାବାଣୀ ଶୁଣି ।
ପ୍ରସନ୍ନ ହୋଇ କହନ୍ତି ଶଙ୍ଖଚକ୍ରପାଣି ।। ୪୩ ।।
ହେ ପ୍ରହଲ୍ଲାଦ ଏ ତୋର ଏକାନ୍ତ ଭକ୍ତିରେ ।
ପ୍ରସନ୍ନ ହୋଇଲୁଂ ଆସି ଘେନ ଏକ ବରେ ।। ୪୪ ।।
ମନରେ ତୋ ଯଉଂ କଥା ଅଛି ଅଭିଳାଷ ।
ତାହା ମୋହଠାରୁ ଘେନ ଦେବି ମୁଁ ଅବଶ୍ୟ ।। ୪୫ ।।
ଦୟାନିଧି ଶ୍ରୀମୁଖୁ ଏମନ୍ତ ଆଜ୍ଞାପାଇ ।
ଜଣାଇଲା ପ୍ରହଲ୍ଲାଦ ଶିରେ କର ଦେଇ ।। ୪୬ ।।
ଏତିକି ମାଗୁଣି ମୋର ଶୁଣ ଜଗନ୍ନାଥ ।
ଯଉଂ ଯଉଂ ଯୋନିରେ ମୁଁ ହୋଇଥିବି ଜାତ ।। ୪୭ ।।
ତୋହ ଭକ୍ତି କେବଳ ମୋ ନ ଛାଡ଼ିବ ମନୁ ।
ଏହି ବର ଦେବା ମତେ ନୀଳଘନ ତନୁ ।। ୪୮ ।।
ଅବିବେକ ଜନମାନଙ୍କର ଯଉଂ ପ୍ରୀତି ।
ବିଷୟମାନଙ୍କେ ପ୍ରବର୍ତ୍ତଇ ଲକ୍ଷ୍ମୀପତି ।। ୪୯ ।।
ତୋର ସ୍ମରଣ ମାତ୍ରକେ ସେ ପ୍ରୀତି ମୋ ହୃଦେ ।
ତୋଠାରେ ସନ୍ତତ ହେବ ଏହା ଦେବ ମୋଦେ ।। ୫୦ ।।

ଭକ୍ତ ତହୁଁ ଏହା ଶୁଣି ଶ୍ରୀଭକ୍ତବତ୍ସଳ ।
ବୋଇଲେ ହୋ ଭକ୍ତ ହେଉ ସେହିକଥା ମୂଳ ।। ୫୧ ।।
ମୋହଠାରେ ତୋର ଭକ୍ତି ହେଉଛି ଯେମନ୍ତେ ।
ପୁନରପି ହୋଇବ ତହିଁରୁଁ ଗୁଣ ଶତେ ।। ୫୨ ।।
ଏହା ଏବେ ଦେଲି ଯେ ଆହୁରି ବର ମାଗ ।
ଯଉଂ କଥା ଅଭିଳାଷ ଦେବି ମହାଭାଗ ।। ୫୩ ।।
ଏହାଶୁଣି ପ୍ରହଲ୍ଲାଦ ପୁଣି ବୋଲେ ହରି ।
କଥାଏ ମାଗିବି ଦିଅ ଅନୁଗ୍ରହ କରି ।। ୫୪ ।।
ତତେ ସ୍ତୁତି କଲାମାତ୍ରେ ମୋହର ଜନକ ।
ମୋହଠାରେ କରିଛି ଯେ ଶତ୍ରୁତା ଅନେକ ।। ୫୫ ।।
ତେଣୁକରି ତାହାର ବଢ଼ିଛି ପାପଭାର ।
ତାହା କି ରୂପରେ ନାଶ ଯାଉ ଚକ୍ରଧର ।। ୫୬ ।।
ଅଜ୍ଞାନପଣରେ ନାନା ଶସ୍ତ୍ରମାନଙ୍କରେ ।
ମୋ ଅଙ୍ଗକୁ ଭେଦାଇଲା ଦାନବ ହସ୍ତରେ ।। ୫୭ ।।
ଅନଳକୁଣ୍ଡରେ ପୁଣି ପକାଇଲା ମୋତେ ।
କ୍ଷତମାନ କରାଇଲା ମହାସର୍ପ ଦନ୍ତେ ।। ୫୮ ।।
ଭୋଜନ କାଳରେ ବିଷ ଦିଆଇଲା ପୁଣି ।
ନାଗପାଶେ ବନ୍ଧାଇଲା ବିଚିତ୍ର ବାନ୍ଧେଣି ।। ୫୯ ।।
ମହାଜଳାର୍ଣ୍ଣବରେ ଯେ ପକାଇଲା ନେଇଂ ।
ସହସ୍ରସଂଖ୍ୟା ପର୍ବତ ଉପରେ ଲଦାଇଂ ।। ୬୦ ।।
ଏଥୁଁ ପୁଣି ଆନ ଯେ ଅସାର କଥା ଯେତେ ।
ସମସ୍ତ ହି ଆଚରିଲା ଶକ୍ତି ଅନୁମତେ ।। ୬୧ ।।
ତୋହଠାରେ ଶକ୍ତି ଭାବ ଅଛଇ ଯାହାରି ।
ତାହା ଦେଖି ଏମନ୍ତ କଲେ କି ଅଛି ପାରି ।। ୬୨ ।।
ଏଣୁକରି ଏ ଦଣ୍ଡ ସକାଶୁଁ ଯେତେ ପାପ ।
ଅଜ୍ଞାନ ଭାବରେ ଅର୍ଜିଅଛି ମୋର ବାପ ।। ୬୩ ।।
ଏବେ ତୋହର ସକାଶୁଁ ସେ ପାପ ମାନଙ୍କରୁଁ ।
କି ରୂପେ ମୁକ୍ତ ହେବ ମୋ ପିତା ଦୁସ୍ତରୁଁ ।। ୬୪ ।।
କରୁଣା ହୃଦରେ ତାହା ବିଚାରିବା ଏତେ ।
ମୋ ପିତା ମୁକତ ହେବ ମୋହର ଦେଖନ୍ତେ ।। ୬୫ ।।
ଭକ୍ତ ତହୁଁ ଏହା ଶୁଣି ବୋଲନ୍ତି ଗୋବିନ୍ଦ ।
ଯେତେକଥା ମାଗିଲୁ ତା ହେବ ପ୍ରହଲ୍ଲାଦ ।। ୬୬ ।।
ମୋହର ପ୍ରସାଦୁଁ ମୁକ୍ତି ହୋଇବ ତୋ ତାତ ।
ଆଉ ବର ଏକ ମାଗ ଦୈତ୍ୟ ରାଜସୁତ ।। ୬୭ ।।

୬୪. (କ) ତତ୍ୱର

ଏହାଶୁଣି ପ୍ରହଲ୍ଲାଦ ପୁଣି ହିଁ ଜଣାଇଂ ।
କୃତକାର୍ଯ୍ୟ ହୋଇଲି ମୁଁ ବ୍ରହ୍ମାଣ୍ଡଗୋସାଇଂ ॥ ୬୮ ॥
ଏ ଯେତେ ବର ମୋଠାରେ ପ୍ରସନ୍ନରେ ଦେଲ ।
ଏଣେ କରି ମୋର ମନୋରଥ ପୂର୍ଣ୍ଣ କଲ ॥ ୬୯ ॥
ଏଣିକି ମୋହର ମାଗିବାର କିଛି ନାହିଁ ।
ଏକାନ୍ତ ଭକ୍ତି ମାତ୍ରକ ତୋରେ ଥିବ ରହି ॥ ୭୦ ॥
ଧର୍ମ ଅର୍ଥ କାମ ମାନଙ୍କରେ ଯେତେ କାର୍ଯ୍ୟ ।
ମୁକ୍ତି ହେଲେ ତାହା ହସ୍ତେ ଥାଇ ଦେବରାଜ ॥ ୭୧ ॥
ସମସ୍ତ ଜଗତମୂଳ ଆଧାର ଯେ ତୁହି ।
ତୋଠାରେ ଏକାନ୍ତ ଭକ୍ତି ଯେ ଅବା କରଇ ॥ ୭୨ ॥
ଭକ୍ତ ତହୁଁ ଏହା ଶୁଣି ପୁଣି ଭଗବାନ ।
ବୋଲନ୍ତି ସେହି ରୂପରେ ହେଉ ତୋ ବଚନ ॥ ୭୩ ॥
ସେହିପରି ଭକ୍ତିରେ ହୋଇଣ ସମାଯୁକ୍ତ ।
ନିଶ୍ଚଳ ହୋଇ ତୋଠାରେ ରହୁ ମୋର ଚିତ୍ତ ॥ ୭୪ ॥
ସେହିରୂପେ ମୋହର ପ୍ରସାଦେ ତୁହି ପୁଣି ।
ନିର୍ବାଣକୁ ପାଇବୁ ହୋ ଭକ୍ତଙ୍କ ଅଗ୍ରଣୀ ॥ ୭୫ ॥
ପ୍ରହଲ୍ଲାଦକୁ ଏମନ୍ତ କହି ଭାବଗ୍ରାହୀ ।
ଦେଖୁଁ ଦେଖୁଁ ତହୁଁ ଗଲେ ଅନ୍ତର୍ଦ୍ଧାନ ହୋଇ ॥ ୭୬ ॥
ତଦନ୍ତରେ ସେ ହିରଣ୍ୟକଶିପୁ କୁମର ।
ବାହୁଡ଼ି ଆସି ନମିଲା ପିତାର ପୟର ॥ ୭୭ ॥
କରପତ୍ର ଯୋଡ଼ି କରି ଉଭା ହେଲା ଆଗେ ।
ପୁତ୍ରକୁ ଦେଖି ଅସୁର ଅତି ଅନୁରାଗେ ॥ ୭୮ ॥
କୋଳେ ଧରି ଶିର ଯେ ଆଘ୍ରାଣ କରି ବୀର ।
ଆଲିଙ୍ଗନ କଲାକ ଲଗାଇ ହୃଦୟର ॥ ୭୯ ॥
ପ୍ରାଣ ପାଇଲୁ କି ମୋର ବାବୁ ବୋଲି କରି ।
ଶୋକଭରେ ନୟନୁ ତେଜିଲା ଅଶ୍ରୁବାରି ॥ ୮୦ ॥
ପୁତ୍ରଠାରେ ପ୍ରୀତିମନ୍ତ ହୋଇ କରି ତାତ ।
ପୁଣି ହି ବୋଇଲା ଶୁଣିମାରେ  ମୋର ସୁତ ॥ ୮୧ ॥
ତୋହ ମୂର୍ଖପଣ ଦେଖି ଦେଲି ସିନା ଦୁଃଖ ।
ଏବେ ମୋ ବଚନ ଘେନ ହୋଇଣ ସୁମୁଖ ॥ ୮୨ ॥
ଆମ୍ଭର ଶତ୍ରୁ ଅଟଇ ବାବୁ ଦଇତାରି ।
ତାହାର ନାମମାତ୍ରକ କେବେ ହେ ନ ଧରି ॥ ୮୩ ॥
କୁଳଧର୍ମ ଆଚରଣ କରିବୁ ତୁ ଯେବେ ।
ସକଳ ବିଭୂତିମାନ ଭୁଞ୍ଜିବୁ ତୁ ତେବେ ॥ ୮୪ ॥

ହରି ବୋଲି ଯେଉଁ ନାମ ତାହା କଲେ ଦୂର ।
ଏହି ଲାଗେ ବସାଇବି ସିଂହାସନ ପର ।। ୮୫ ।।
ଅଭିଷେକ କରିଣ ବାନ୍ଧିବି ଶିରେ ପାଟ ।
ସୁରାସୁର ମାନଙ୍କ ଘେନିବୁ ତୁହି ଭେଟ ।। ୮୬ ।।
ତିନିପୁର ମଧରେ ହୋଇବୁ ମହାରାଜା ।
ସମସ୍ତେ ତୋହର ପାଦେ କରୁଥିବେ ପୂଜା ।। ୮୭ ।।
ଅଚଳ ବିଭୂତିମାନ ଭୁଞ୍ଜାଇବି ତୋତେ ।
ହରି କଥା ଛାଡ଼ିବାବୁ କହୁଅଛି ଏତେ ।। ୮୮ ।।
ପିତା ତହୁଁ ଏ ବଚନ ପ୍ରହଲ୍ଲାଦ ଶୁଣି ।
ନମସ୍କାର କରିଣ କୋମଳେ କହେ ବାଣୀ ।। ୮୯ ।।
ଭୋଦେବ ତୁମ୍ଭର କେଉଁ ଆଜ୍ଞା ନ ପାଳିଲି ।
ଶ୍ରୀପଦ୍ମପାଦରେ କେଉଁ ଦ୍ରୋହ ଅବା କଲି ।। ୯୦ ।।
ଆଜ୍ଞା ହେଲେ ଏହିଲାଗେ କାଟିଦେବି ଶିର ।
ପିତାଭକ୍ତି ମୂଳ ଏକା ଜାତ ଏ ଶରୀର ।। ୯୧ ।।
ନୋହିଲେ କି ଅନ୍ୟାୟ କା'ଠାରେ କିଛି କଲି ।
ଦୁର୍ଭାଷା କରିଣ କି କାହାକୁ ଗାଳି ଦେଲି ।। ୯୨ ।।
ମନ ବଚନ କର୍ତ୍ତବ୍ୟେ ନ ଜାଣଇ ମନ୍ଦ ।
ଏକାମାତ୍ର ବୋଲୁଥାଇ ଗୋବିନ୍ଦ ଗୋବିନ୍ଦ ।। ୯୩ ।।
ତହିଁ କି ବୋଇଲ ଆମ୍ଭ ଶତ୍ରୁ ହେବ ହରି ।
ସେହି ଏକା ଅଛି ତାତ ସର୍ବଘଟେ ପୁରି ।। ୯୪ ।।
ସ୍ଥାବର ଜଙ୍ଗମ କୀଟପତଙ୍ଗାଦି ଯେତେ ।
ସେହି ସର୍ବରୂପ ଧରି ପ୍ରକାଶ ଜଗତେ ।। ୯୫ ।।
ତୋହଠାରେ ମୋହଠାରେ ଆନଠାରେ ସେହି ।
ତାହା ବିନା ହୋଇ ତ ଜଗତେ କେ ତ ନାହିଁ ।। ୯୬ ।।
ତାହା ନାମ ଗୋଟି ଏକା ଅଟେ ମୁକ୍ତିଦ୍ୱାର ।
ତୁହି ଭଜ ଏ ସଂସାରୁ ଯେବେ ହେବୁ ପାର ।। ୯୭ ।।
ପୁତ୍ରମୁଖୁଁ ଏହା ଶୁଣି କଶ୍ୟପର ବାଳ ।
ଅତ୍ୟନ୍ତ କ୍ରୋଧ ଭରେ ହୋଇ ବିକରାଳ ।। ୯୮ ।।
ବୋଇଲା ତୋ ବୋଲେ ଏବେ ଭଜିବି ମୁଁ ହରି ।
କହୁଅଛୁ ସର୍ବଘଟେ ଅଛି ଯେବେ ପୂରି ।। ୯୯ ।।
ତେବେ ଏହି ସ୍ତମ୍ଭରେ ଦେଖାଅ ରୂପ ତା'ର ।
ନୋହିଂଲେ କରବାଳେ ଛେଦିବି ତୋର ଶିର ।। ୧୦୦ ।।
ପିତା ତହୁଁ ଏହା ଶୁଣି ବୋଲଇ କୁମର ।
କ୍ରୋଧ ନ କରିବା ତାତ ଶୁଣ ମୋ ଉତ୍ତର ।। ୧୦୧ ।।

ଏ ମଣିସ୍ତମ୍ଭେ ଦେଖାଅ ବୋଇଲଟି ଯାହା ।
ଧ୍ୟାନ କର ସେହିଠାରେ ଛନ୍ତି ଚଉବାହା ॥ ୧୦୨ ॥
ସମସ୍ତ ଗୁଣରୁଂ ତାତ ଭକ୍ତି ଏକା ମୂଳ ।
ଭକ୍ତିଭାବେ ପ୍ରସନ୍ନ ହୁଅନ୍ତି ଆଦିମୂଳ ॥ ୧୦୩ ॥
ତୋହ ଭକ୍ତିଭାବ ଯେବେ ହେଲା ଏହି ସ୍ତମ୍ଭେ ।
ଚିତ୍ତ ଦୃଢ଼ କରି ଦେଖ ଅଛନ୍ତି ଆରମ୍ଭେ ॥ ୧୦୪ ॥
ଭକ୍ତି ଅନୁରୂପରେ ଦିଅନ୍ତି ସେହୁ ଦୃଶ୍ୟ ।
ଏଥିରେ ସନ୍ଦେହ ନାହିଁ ଦୈତ୍ୟକୁଳଈଶ ॥ ୧୦୫ ॥
ପ୍ରହଲ୍ଲାଦ ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
ମହାକ୍ରୋଧେ ଅଧର କମ୍ପାଇ ବୀରମଣି ॥ ୧୦୬ ॥
ସିଂହାସନ ଉପରୁଂ ଉଠି ଦିତିସୁତ ।
ଜଗତିସ୍ତମ୍ଭରେ ନେଇଂ ପ୍ରହାରିଲା ଲାତ ॥ ୧୦୭ ॥
ବଜ୍ରସମ ଲାତ ଯହୁଂ ବାଜିଲା ସ୍ତମ୍ଭରେ ।
ବ୍ରହ୍ମାଣ୍ଡ ଖଣ୍ଡ କମ୍ପିଲା ଅତି ଥରହରେ ॥ ୧୦୮ ॥
ଅତ୍ୟନ୍ତ ଉତ୍ପାତମାନ ସର୍ବଦିଗେ ଘୋଟି ।
ବେନିଫାଳ ହୋଇଗଲା ମଣିସ୍ତମ୍ଭ ଫାଟି ॥ ୧୦୯ ॥
ସେ ଭିତରୁ ଆବିର୍ଭୂତ ଦେବଚକ୍ରଧର ।
କାଳାନଳ ତେଜ ଯେ ନୃସିଂହ ଅବତାର ॥ ୧୧୦ ॥
ମଧ୍ୟାହ୍ନ ସୂର୍ଯ୍ୟମଣ୍ଡଳ ପ୍ରାୟେ ନେତ୍ରବେନି ।
ଜିହ୍ୱାଅଗ୍ରରେ ଜଳଇ ବିକରାଳ ବହ୍ନି ॥ ୧୧୧ ॥
ନାଗରାଜ ପୁଚ୍ଛ ଯେ ଗଗନ ଅଛି ବ୍ୟାପି ।
ରଟମଟ ଦନ୍ତ ପାଟି ଅଧରରେ ଚାପି ॥ ୧୧୨ ॥
ଦୈତ୍ୟରାଜ ଉପରକୁ ବେଗେ ଦେଲେ ଝାମ୍ପ ।
ତାହା ଦେଖି କାତରେ ଅସୁରକୁଳ ଭୂପ ॥ ୧୧୩ ॥
ନାନାଶସ୍ତ୍ରମାନ ଯେ ମାଇଲା ମହାବଳୀ ।
ଦୃଷ୍ଟି ତେଜ ଅନଳେ ସମସ୍ତେ ଗଲେ ଜଳି ॥ ୧୧୪ ॥
ଆକର୍ଷଣ କରିଣ ଦୈତ୍ୟକୁ ବେନିକରେ ।
ପକାଇଲେ ଉତ୍ତାନ କରିଣ ଜାନୁ ପରେ ॥ ୧୧୫ ॥
ନଖଘେନି ବିଦାରିଲେ ତାହାର ହୃଦୟ ।
ରକ୍ତପାନ କରିଣ ଖଣ୍ଡିଲେ ଭବଭୟ ॥ ୧୧୬ ॥
ଏ ରୂପରେ ଧର୍ମବନ୍ତ ବୀର ପ୍ରହଲ୍ଲାଦ ।
ପିତୃ ସେବା କରିଣ ଦେଲାକ ମୁକ୍ତିପଦ ॥ ୧୧୭ ॥
ନରସିଂହ ସ୍ୱରୂପୀ ବିଷ୍ଣୁରେ ମହାଦୈତ୍ୟ ।
ଏମନ୍ତ ପ୍ରକାରେ ଯହୁଂ ହୋଇଲାକ ହତ ॥ ୧୧୮ ॥

୧୧୮. (ଖ) ମହାକୋପାନଳେ

ତଦନ୍ତରେ ରାଜ୍ୟରେ ହୋଇଣ ଅଭିଷେକ ।
ପ୍ରହଲ୍ଲାଦ ଦୈତ୍ୟକୁଳେ ହେଲାକ ନାୟକ ।। ୧୧୯ ।।
ଅଖଣ୍ଡିତ ରାଜଲକ୍ଷ୍ମୀ ଯହୁଁ ସେ ପାଇଲା ।
ନାନା ଭୋଗ ବିଳାସ ଉତ୍ତମ କରି କଲା ।। ୧୨୦ ।।
ବନ୍ଧୁମିତ୍ର ପୁତ୍ର ନାତି ଯେତେ ଅଇଶ୍ୱର୍ଯ୍ୟ ।
ସମସ୍ତ ପାଲା କର୍ମବଳେ ମହାରାଜ ।। ୧୨୧ ।।
ଏହି ଅନୁରୂପରେ କେତେହେ କାଳ ଗଲା ।
ଯେତେବେଳେ କୁମରକୁ ରାଜ୍ୟେ ରାଜା କଲା ।। ୧୨୨ ।।
ଅଧିକାର ସକଳ ଦେଇଣ ତାହା ମୂଳେ ।
ପାପପୁଣ୍ୟ ଦୁଇଛାଡ଼ି ରହିଲା ସେ କାଳେ ।। ୧୨୩ ।।
ଭଗବାନ ଧ୍ୟାନରେ ହୋଇଣ ତତପର ।
କାଳେ ନିର୍ବାଣ ଲଭିଲା ପ୍ରହଲ୍ଲାଦ ବୀର ।। ୧୨୪ ।।
ଏ ରୂପରେ ପ୍ରଭୁଭକ୍ତ ଦୈତ୍ୟରାଜ ସୁତ ।
ଅଲୋକିତ ତାହାର ପ୍ରଭାବ ସୁଚରିତ ।। ୧୨୫ ।।
ଯାହା ପଚାରିଲ ଋଷି କହିଲୁ ହେ ଶୁଣ ।
ଏ ପ୍ରହଲ୍ଲାଦ ଚରିତ ଯେ ଶୁଣଇ ପୁଣ ।। ୧୨୬ ।।
ତାହାର ସକଳ ପାପ ଅଙ୍ଗୁ ନାଶ ଯାଇ ।
ଦୁଇକୁଳ ଅତ୍ୟନ୍ତରେ ନିର୍ମଳ ହୁଅଇ ।। ୧୨୭ ।।
ଅହୋରାତ୍ରେ ଯଉଂ ଲୋକ କରିଥିବ ପାପ ।
ଏ ପ୍ରହଲ୍ଲାଦ ଚରିତ କରିଣ ସଂକ୍ଷେପ ।। ୧୨୮ ।।
ଶୁଣିମ ଅବା ପଢ଼ିବ ଯଦି ବଦନରେ ।
ନିଷ୍କଲୁଷ ହୋଇବ ଯେ ଆପଣା ଶରୀରେ ।। ୧୨୯ ।।
ପଉର୍ଣ୍ଣମୀ ଅମାବାସ୍ୟା ଅଷ୍ଟମୀରେ ଅବା ।
ଯେ ଏହା ପଢ଼ଇ ମୁନି ଦ୍ୱାଦଶୀରେ କିବା ।। ୧୩୦ ।।
ତାହାର ଗୋଦାନ ଫଳ ହୁଅଇ ଅବଶ୍ୟ ।
ସମସ୍ତ ସଂକଟୁ ସେ ଯେ ତରଇ ତାପସ ।। ୧୩୧ ।।
ପ୍ରହଲ୍ଲାଦକୁ ଯେମନ୍ତ ସର୍ବ ବିପତ୍ତିରୁ ।
ଇର୍ଷିତେ ତାରିଲେ ମୁକ୍ତିଫଳ କଳ୍ପତରୁ ।। ୧୩୨ ।।
ସେହି ରୂପେ ଏ ଚରିତ ତାକୁ ରକ୍ଷାକରେ ।
ଯେହୁ ଅବା ପଢ଼ଇ ଯେ ଶୁଣଇ କର୍ଣ୍ଣରେ ।। ୧୩୩ ।।
ଶ୍ରୀବିଷ୍ଣୁ ପୁରାଣ ଏ ପ୍ରଥମ ଅଂଶଗୀତ ।
ପ୍ରହ୍ଲାଦ ଉଦ୍ଧାର ବିଂଶ ଅଧ୍ୟା ସମାପତ ।। ୧୩୪ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୩୫ ।।

# ଏକବିଂଶୋଧ୍ୟାୟ

ଏଥୁ ଅନନ୍ତରେ ପୁଣି ମଇତ୍ରେୟ ଋଷି ।
ପରାଶର ଆଗେ କରପତ୍ର ଯୋଡ଼ି ଭାଷି ॥ ୧ ॥
ବୋଲନ୍ତି ଭୋ ଗୁରୁ ପ୍ରହଲ୍ଲାଦଙ୍କ ଚରିତ ।
ଶୁଣିବା ମାତ୍ରେ ହୋଇଲି ଜୀବନ ମୁକତ ॥ ୨ ॥
ଏବେ ହିରଣ୍ୟକଶିପୁ ବଂଶ ମତେ କହ ।
କାହାକାହାଠାରୁ କେକେ ହୋଇଲେ ଉଦୟ ॥ ୩ ॥
ଶିଷ୍ୟ ଏହା ପଚାରନ୍ତେ ପରାଶର ଭଣି ।
ଯାହା ପଚାରିଲ ଶୁଣ ଋଷିକୁଳମଣି ॥ ୪ ॥
ସଂହ୍ରାଦର ପୁତ୍ର ଯେ ହୋଇଲେ ତିନିବୀର ।
ଆୟୁଷ୍ମାନ ଶିବି ପୁଣି ବାସ୍କଳ କୁମର ॥ ୫ ॥
ପ୍ରହଲ୍ଲାଦ ତହୁଁ ବିରୋଚନ ହେଲା ଜାତ ।
ଅଭିଷେକ ହୋଇ କଲା ରାଜ୍ୟରେ ରାଜତ୍ୱ ॥ ୬ ॥
ତାହା ତହୁଁ ଜନମ ହୋଇଲା ବଳିବୀର ।
ସେ ପୁଣି ରାଜ୍ୟରେ କଲା ନୃପ ଅଧିକାର ॥ ୭ ॥
ଶଏ ପୁତ୍ର ଜନମ ତା'ର ହୋଇଲାକ ପୁଣ ।
ସେ ମଧ୍ୟେ ଜ୍ୟେଷ୍ଠନନ୍ଦନ ଅଟଇ ଯେ ବାଣ ॥ ୮ ॥
ହିରଣ୍ୟାକ୍ଷ ତହୁଁ ଜାତ ଯେତେକ କୁମର ।
ସେ ସମସ୍ତେ ମହାବଳବନ୍ତ ଦୁର୍ନିବାର ॥ ୯ ॥
ଝର୍ଝର ଏକ ଆରକ ନାମ ଯେ ଶକୁନି ।
ଭୂତସଂତାପନ ଯେ ତୃତୀୟ ନାମ ପୁଣି ॥ ୧୦ ॥
ମହାନାଭ ମହାବାହୁ ପୁଣି କାଳନାଭ ।
ଏ ରୂପରେ ଅନେକ ଯେ ହୋଇଲେ ସମ୍ଭବ ॥ ୧୧ ॥
ଏ ରୂପେ ଦିତି ଗର୍ଭରୁ ହୋଇଲେ ଦଇତେ ।
ଦାନବ ବଂଶ କହିବା ଶୁଣ ଏକ ଚିତ୍ତେ ॥ ୧୨ ॥
କଶ୍ୟପଙ୍କ ଭାର୍ଯ୍ୟା ଦନୁଗର୍ଭରୁ ସଂତତି ।
ଯେତେକ ଜନମ ହେଲେ ଶୁଣ ମହାଯତି ॥ ୧୩ ॥
ଦ୍ୱିମୂର୍ଦ୍ଧା ଏକର ନାମ ଦ୍ୱିତୀୟ ସଂକୁଚ ।
ତୃତୀୟ ଯେ ଅୟୋମୁଖ ରୂପରେ ପ୍ରପଞ୍ଚ ॥ ୧୪ ॥
ଶଂକୁଶିରା କପିଳ ଯେ ଶମ୍ବର ଆବର ।
ଏକ ଚକ୍ର ମହାବାହୁ ତାରକ ଅସୁର ॥ ୧୫ ॥

ସ୍ୱର୍ଭାନୁ ବୃଷପର୍ବା ଯେ ପୁଲୋମାଦନୁଜ ।
ବିପ୍ରଚିତ୍ତି ଆଦି ଦନୁପୁତ୍ର ମହାବୀର୍ଯ୍ୟ ॥ ୧୬ ॥
ଏମାନେ ସମସ୍ତେ ମୁନିଦାନବ ବୋଲାନ୍ତି ।
ଏଥୁ ଅନ୍ତେ ଶୁଣିମା ନିଶ୍ଚଳ କରି ମତି ॥ ୧୭ ॥
ସ୍ୱର୍ଭାନୁର ପ୍ରଭାନାମେ କନ୍ୟାଏ ହୋଇଲା ।
ନମୁଚି ଦାନବ ଯେ ତାହାକୁ ବିଭା ହେଲା ॥ ୧୮ ॥
ବୃଷପର୍ବା କନ୍ୟା ଯେ ଶର୍ମିଷ୍ଠା ନାମେ ଜାତ ।
ତାକୁ ବିଭା ହୋଇଲେ ଯଯାତି ନରନାଥ ॥ ୧୯ ॥
ବୈଶ୍ୱାନରଙ୍କର ଚାରି କନ୍ୟା ହେଲେ ଜାତ ।
ଉପଦାନବୀ ଯେ ହୟଶିରା ନାମେ ଖ୍ୟାତ ॥ ୨୦ ॥
ତୃତୀୟରେ ପୁଲୋମା ଯେ କାଳିକା ଚତୁର୍ଥେ ।
ସେମାନଙ୍କ ବିବାହ ଶୁଣ ହୋ ବିଧିମତେ ॥ ୨୧ ॥
ଉପଦାନବୀକି ହିରଣ୍ୟାକ୍ଷ ବିଭା ହେଲା ।
ହୟଶିରା କନ୍ୟା ପୁଣି କ୍ରତୁର ହୋଇଲା ॥ ୨୨ ॥
ପୁଲୋମାକାଳିକା କଶ୍ୟପଙ୍କ ଭାର୍ଯ୍ୟା ହେଲେ ।
ସେ ଦୁହିଁଙ୍କ ତହୁଁ ଯେ ଦାନବ ଜନମିଲେ ॥ ୨୩ ॥
ଉପଲୋମ କାଳକେୟ ନାମ ସବୁଙ୍କରି ।
ଷାଠିଏସହସ୍ର ସେ ଯେ ଦେବଙ୍କ ବଇରି ॥ ୨୪ ॥
ତହୁଁ ପୁଣି ବିପ୍ରଚିତ୍ତ ଭାରିଜା ସିଂହିକା ।
ହିରଣ୍ୟକଶ୍ୟପୁ ଭଗ୍ନୀ କଶ୍ୟପ କନ୍ୟକା ॥ ୨୫ ॥
ତାହା ଗର୍ଭୁଁ ଜନମିଲେ ବହୁତ କୁମରେ ।
ମହାବୀର୍ଯ୍ୟ ଦାନବେ ଯେ ନିର୍ଦ୍ଦୟା ବେଭାରେ ॥ ୨୬ ॥
ସେମାନଙ୍କ ନାମ କିଛି କିଛି ଶୁଣ ଯତି ।
ବଂଶ ଶଲ୍ୟ ବଳବାନ ନଭ ଯେ ଦୁର୍ମତି ॥ ୨୭ ॥
ବାତାପି ନମୁଚି ଆଦିଇଲ୍ଲ ଖଳ ସୃମ ।
ଅଞ୍ଜକ ନରକ କାଳନାଭ ବୋଲି ନାମ ॥ ୨୮ ॥
ବଳିଷ୍ଠ ସ୍ୱର୍ଭାନୁ ବକ୍ରଯୋଧି ମହାସୁର ।
ଏମାନେ ଦାନବ ଶ୍ରେଷ୍ଠ ମହାମହାବୀର ॥ ୨୯ ॥
ଦନୁବଂଶ ବିବର୍ଦ୍ଧନ ଅଟନ୍ତି ସକଳେ ।
ଏମାନଙ୍କ ପୁତ୍ର ନାତି ଅନେକ ହୋଇଲେ ॥ ୩୦ ॥
ଶତସହସ୍ର ସଂଖ୍ୟାରେ ହେଲେ ବର୍ଦ୍ଧମାନ ।
ଏଥୁଁ ଉତ୍ତାରେଣ ପୁଣି ଶୁଣ ତପୋଧନ ॥ ୩୧ ॥
ଯଉଂକାଳେ ପ୍ରହଲ୍ଲାଦ ମହାତପ କଲା ।
ତେଣୁ ସେ ମହାତ୍ମାଠାରୁ ସନ୍ତତି ହୋଇଲା ॥ ୩୨ ॥

ନିର୍ବାତକବଚ ନାମେ ଅନେକ କୁମରେ ।
ତପବଳେ ଜନ୍ମ ସେ ହୋଇଲେ ମହାସୁରେ ।। ୩୩ ।।
ତହୁଁ ପୁଣି କଶ୍ୟପଙ୍କ ତାମ୍ରା ଯଉଂ ନାରୀ ।
ତା ଗର୍ଭୁଁ ଜନ୍ମିଲେ ଷଡ଼ଗୋଟି ଯେ କୁମାରୀ ।। ୩୪ ।।
ମହାବଳ ପରାକ୍ରମବନ୍ତ ସେ ଅଟନ୍ତି ।
ତାହାଙ୍କ ନାମମାନଙ୍କୁ ଶୁଣ ଦେଇ ମତି ।। ୩୫ ।।
ସୁକୀଶ୍ୱେନୀ ଭାସି ଯେ ସୁଗ୍ରୀବିଶୁଚି ଗୃଧ୍ର ।
ଏ ରୂପେ ଜନ୍ମ ହୋଇଲେ ଶୁଣ ତପୋନିଧି ।। ୩୬ ।।
ତାହାଙ୍କ ଯେତେ ସନ୍ତତି କର ତା ଶ୍ରବଣ ।
ଶୁକୀଶୁକମାନଙ୍କୁ ଯେ ଜାତକଲା ପୁଣ ।। ୩୭ ।।
ଉଲୂକି ଗର୍ଭୁଁ ଉଲୁକେ କାକ ହେଲେ ଜାତ ।
ଶ୍ୱେନୀଗର୍ଭୁ ସଞ୍ଚାଣେ ଯେ ହୋଇଲେ ସମ୍ଭୂତ ।। ୩୮ ।।
ଭାସୀଠାରୁଂ ଭାଷପକ୍ଷୀମାନେ ଜାତ ହେଲେ ।
ଗୃଧ୍ରଠାରୁଂ ଗୃଧ୍ରମାନେ ଉତ୍ପନ୍ନ ହୋଇଲେ ।। ୩୯ ।।
ଶୁଚି ଜାତ କଲା ଜଳଚର ପକ୍ଷୀଗଣ ।
ସୁପ୍ରାଚୀଠାରୁଂ ଯେତେକ ଜନମିଲେ ଶୁଣ ।। ୪୦ ।।
ଅଶ୍ୱଉଷ୍ଟ୍ର ଗର୍ଦ୍ଦଭ ଇତ୍ୟାଦି ହେଲେ ଜାତ ।
ଏ ରୂପରେ ତାମ୍ରାବଂଶ ବଢ଼ିଲେ ସନ୍ତତ ।। ୪୧ ।।
ବିନତାର ବେନିପୁତ୍ର ହୋଇଲେକ ପୁଣ ।
କନିଷ୍ଠ ନାମେ ଗରୁଡ଼ ଜ୍ୟେଷ୍ଠ ଯେ ଅରୁଣ ।। ୪୨ ।।
ପକ୍ଷୀମାନଙ୍କର ଶ୍ରେଷ୍ଠ ଅଟଇ ସୁପର୍ଣ୍ଣ ।
ଯାହାର ପର୍ଣ୍ଣଗମାନ ଅଟଇ ଭୋଜନ ।। ୪୩ ।।
ସୁରସାଗର୍ଭରୁ ପୁଣି ସହସ୍ର ସଂଖ୍ୟାରେ ।
ସର୍ପମାନେ ଜନମିଲେ ସୁପରାକ୍ରମରେ ।। ୪୪ ।।
ଅନେକ ମସ୍ତକମାନ ଘେନି ଜାତ ହେଲେ ।
ଆକାଶରେ ସେ ପୁଣି ସଞ୍ଚାରମାନ କଲେ ।। ୪୫ ।।
କଦ୍ରୁଠାରୁଂ ଜନମ ହୋଇଲେ ଯେତେ ସର୍ପ ।
ମହାବଳ ପରାକ୍ରମ ଅନେକ ଯେ ରୂପ ।। ୪୬ ।।
ଅନେକ ମସ୍ତକ ପୁଣି ଅଟନ୍ତି ସମସ୍ତେ ।
ଗରୁଡ଼ର ବଂଶଘାତ ହୋଇଥାନ୍ତି ନିତ୍ୟେ ।। ୪୭ ।।
ସେମାନଙ୍କ ପ୍ରଧାନ ଅଟନ୍ତି ଯେତେ ଅହି ।
ଶେଷବାସୁକି ତକ୍ଷକ ଶଙ୍ଖ ଶ୍ୱେତ ଯେହି ।। ୪୮ ।।
ମହାପଦ୍ମକମ୍ବଳ ଆବର ଅଶ୍ୱତର ।
ଏଳପତ୍ର କର୍କୋଟକ ଧନଞ୍ଜୟସାର ।। ୪୯ ।।

ଏମାନଙ୍କୁ ଆଦି କରି ହୋଇଲେ ବହୁତ ।
ମହାଦଂଶନଶୀଳ ଯେ ବିଷପୂର୍ଣ୍ଣ ବକ୍ତ୍ର ॥ ୫୦ ॥
କ୍ରୋଧାଠାରୁଁ ଜନମ ହୋଇଲେ ଯେତେଗଣ ।
ସେସର୍ବେ ପକ୍ଷି ବିଶେଷ ଅତି ହି ଦାରୁଣ ॥ ୫୧ ॥
ସ୍ଥଳଚର କେତେକେତେ ଜଳଚର କେତେ ।
ଦନ୍ତମାନଙ୍କରେ ଯୁକ୍ତ ଅଟନ୍ତି ସମସ୍ତେ ॥ ୫୨ ॥
ରକ୍ଷମାନଙ୍କର ଗଣ ସମସ୍ତେ ଅଟନ୍ତି ।
ସମସ୍ତେ ମହାଦାରୁଣ ମାଂସ ପୁଣି ଖାନ୍ତି ॥ ୫୩ ॥
ସୁରଭିଠାରୁଁ ଗୋକୁଳ ମହିଷ ଜନ୍ମିଲେ ।
ଇରାବୃକ୍ଷ ଲତା ବଲ୍ଲୀ ତୃଣ ଜାତ କଲେ ॥ ୫୪ ॥
ଖସା ଗର୍ଭୁଁ ଯକ୍ଷରକ୍ଷ ଅପସରାମାନେ ।
ଏ ସର୍ବ ଜନମ ହେଲେ ଅନେକ ବିଧାନେ ॥ ୫୫ ॥
ଅରିଷ୍ଟା ଠାରୁଁ ଜନ୍ମିଲେ ସକଳ ଗନ୍ଧର୍ବେ ।
ମହାବଳ ପରାକ୍ରମ ଅଟନ୍ତି ସେ ସର୍ବେ ॥ ୫୬ ॥
ଏ ରୂପେ କଶ୍ୟପଙ୍କର ସନ୍ତତି ଅନେକ ।
ସ୍ଥାବର ଜଙ୍ଗମଆଦି ହୋଇଲେ ଯେତେକ ॥ ୫୭ ॥
ସେମାନଙ୍କ ପୁତ୍ର ନାତି ସହସ୍ର ସଂଖ୍ୟାରେ ।
ବଢ଼ିଲେ ବହୁତ ହୋଇ ଅନେକ ପ୍ରକାରେ ॥ ୫୮ ॥
ଏହି ସର୍ଗ ଏକା ସ୍ୱାରୋଚିଷ ମନ୍ୱନ୍ତରେ ।
କହିଥିଲୁ ମହାଋଷି ଆପଣା ଆଗରେ ॥ ୫୯ ॥
ଯଉଂ ମନ୍ୱନ୍ତରରେ ଏମାନ ସପ୍ତଋଷି ।
ବ୍ରହ୍ମାଙ୍କର ପୁତ୍ର ହୋଇଥିଲେ ଯେ ବିଶେଷି ॥ ୬୦ ॥
ଏବେ ଏହି ବୈବସ୍ୱତ ମନୁରେ ସେମାନେ ।
ବାରୁଣ ଯାଗରେ ବ୍ରହ୍ମାଠାରୁ ସବିଧାନେ ॥ ୬୧ ॥
ମାନସରୁ ଜନମି ସପତଋଷି ହେଲେ ।
ଦେବ ଗନ୍ଧର୍ବ ଉରଗା ଦାନବ ଯେ ଥିଲେ ॥ ୬୨ ॥
ସେହିମାନଙ୍କର ସର୍ଗ ହୋଇଅଛି ଏତେ ।
ଉତ୍ତମକରିଣ ଏହା ଘେନ ତୁ ସୁଚିତ୍ତେ ॥ ୬୩ ॥
ଏବେ ଅଣଞ୍ଚାସ ମୂର୍ତ୍ତି ପବନ ଜନମ ।
କହିବି ଶୁଣିବା ହେଉ ତପସ୍ୱୀ ଉତ୍ତମ ॥ ୬୪ ॥
ହିରଣ୍ୟକଶ୍ୟପୁ ହିରଣାକ୍ଷ ବେନିସୁତ ।
ନାରାୟଣଙ୍କ ଶ୍ରୀକରେ ଯହୁଁ ହେଲେ ହତ ॥ ୬୫ ॥
ଇନ୍ଦ୍ରର ଏ କୃତ୍ୟ ଏକା ବୋଲି ମନେ ଭାବି ।
ପୁତ୍ର ଦୁଃଖେ ଦୁଃଖୀ ହୋଇ କରି ଦିତୀଦେବୀ ॥ ୬୬ ॥

ଅନେକ ରୂପରେ କଶ୍ୟପଙ୍କୁ ସେବା କରି ।
ଭକ୍ତିଭାବ ଦେଖାଇଂ ବୋଇଲା ବରନାରୀ ॥ ୬୭ ॥
ଭୋ ସ୍ୱାମୀ ମତେ ଉତ୍ତମ ପୁତ୍ର ଏକ ଦେବ ।
ଭୁଜବଳେ ସେ ପୁଣି ଯେ ଇନ୍ଦ୍ରକୁ ଜିଣିବ ॥ ୬୮ ॥
ଏହା ଶୁଣି କଶ୍ୟପ ଯେ ତପସ୍ୱୀଙ୍କ ବର ।
ଛନ୍ଦ କରି କହିଲେ ଶୁଣରେ ରାମାବର ॥ ୬୯ ॥
ସେହିରୂପେ ତୋ ଗର୍ଭୁ ହୋଇବ ପୁତ୍ର ଜାତ ।
ସଂଗ୍ରାମରେ ତାହାକୁ ହାରିବ ପୁରୁହୂତ ॥ ୭୦ ॥
ମାତ୍ରକ କଥାଏ ଏକା ତୁହି ପାଳିଥିବୁ ।
ଯେଉଂ ସମୟରେ ପ୍ରିୟା ଗର୍ଭକୁ ଧରିବୁ ॥ ୭୧ ॥
ଏକାନ୍ତ ଚିତ୍ତରେ ଭଜୁ ଥିବୁ ନାରାୟଣ ।
ସବୁ ବିଷୟରେ ସୁଚିବନ୍ତ ହେବୁ ପୁଣ ॥ ୭୨ ॥
ଏ ରୂପେ ସଏ ବରଷ ଧଇଲେ ତୁ ଗର୍ଭ ।
ସେ ପୁତ୍ର ଜନ୍ମ ହୋଇଲେ ଇନ୍ଦ୍ରକୁ ନାଶିବ ॥ ୭୩ ॥
ଏମନ୍ତ ପ୍ରିୟାକୁ କହି କଶ୍ୟପ ସେ କାଳେ ।
ସଂଭୋଗ ଅନ୍ତରେ ଶୁଚିବନ୍ତ ଅର୍ଥେ ଗଲେ ॥ ୭୪ ॥
ତହୁଂ ପୁଣି ଗର୍ଭବତୀ ହୋଇକରି ଦିତି ।
ବିଷ୍ଣୁ ଧ୍ୟାନ କରି ଶୁଚିବନ୍ତେ ଥାଇ ନିତି ॥ ୭୫ ॥
ଜାଣିଲାକ ଇନ୍ଦ୍ରମତେ ମାରିବା ଅର୍ଥରେ ।
ଗର୍ଭ ଧରିଛନ୍ତି ଦିତୀ ପୁତ୍ରଙ୍କ ଦୁଃଖରେ ॥ ୭୬ ॥
ଏହା ପାଞ୍ଚି ଅମର ପୁରରୁ ବେଗେ ଆସି ।
ଦିତୀ ପାଦେ କପଟେ ସେବଇ ଅହର୍ନ୍ନିଶି ॥ ୭୭ ॥
ପ୍ରତି ଘଡ଼ିରେ ଯେ ଛିଦ୍ରଟାକୁ ଥାଇ ବୀର ।
ଏହି ରୂପେ ଗଲା ଅନେଶ୍ୱତ ସମ୍ବତ୍ସର ॥ ୭୮ ॥
ଏକଦିନ କରେ ଦିତି ଚରଣ ନ ଧୋଇ ।
ଅତର୍କିତେ ଶଯ୍ୟା ପରେ ନିଦ୍ରା କଲେ ଯାଇ ॥ ୭୯ ॥
ଏମନ୍ତ ଛିଦ୍ର ପାଇଣ ସେକାଳେ ବାସବ ।
ଉଦରେ ପଶି ବଜ୍ରରେ କାଟିଲାକ ଗର୍ଭ ॥ ୮୦ ॥
ସାତଖଣ୍ଡ କରିଣ କାଟିଲା ଯେତେବେଳେ ।
ଗର୍ଭବାଳକ ରୋଦନ କଲାକ ବିକଳେ ॥ ୮୧ ॥
ରୋଦନ ନ କର ବୋଲି ଶକ୍ର ତାକୁ କହି ।
ପୁନଃ ପୁନ କାଟିଲା ଯେ ମହାରୋଷ ବହି ॥ ୮୨ ॥
ଖଣ୍ଡକୁ ଯେ ସାତଖଣ୍ଡ ଲେଖାରେ କାଟିଲା ।
ଏ ରୂପରେ ସେହୁ ଅଣଞ୍ଚାଶ ମୂର୍ତ୍ତି ହେଲା ॥ ୮୩ ॥

ରୋଦନ ନ କର ବୋଇଲାକ ଇନ୍ଦ୍ର ଯେଣୁ ।
ମରୁତ ନାମ ତାହାର ହୋଇଲାକ ତେଣୁ ।। ୮୪ ।।
ଅଣଞ୍ଚାସମୂର୍ତ୍ତି ହୋଇ ଦେବତା ଗଣରେ ।
ଇନ୍ଦ୍ରର ସହାୟ ହୋଇ ରହିଲା ସ୍ୱର୍ଗରେ ।। ୮୫ ।।
ଏ ରୂପରେ ମରୁତ ଜନମ ଶୁଣ ଋଷି ।
ଏଥୁଁ ଯଉଂ ବିଷୟ ତା କହିବା ବିଶେଷି ।। ୮୬ ।।
ଶ୍ରୀ ବିଷ୍ଣୁପୁରାଣ ଏ ପ୍ରଥମ ଅଂଶ ଗୀତ ।
ପବନ ଉତ୍ପତ୍ତି ଏକବିଂଶ ଅଧ୍ୟା ଖ୍ୟାତ ।। ୮୭ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୮୮ ।।

# ଦ୍ୱାବିଂଶୋଧ୍ୟାୟ

ଏଥୁ ପୁଣି ପରାଶର ବୋଲନ୍ତି ହେ ଋଷି ।
ପୃଥୁ ଚରିତ ଏବେ କହିବା ହେ ବିଶେଷି ॥ ୧ ॥
ମହରଷିମାନେ ପୂର୍ବେ ଯେବଣ କାଳରେ ।
ପୃଥୁକୁ ଯେ ଅଭିଷେକ କଲେକ ରାଜ୍ୟରେ ॥ ୨ ॥
ତହୁଁ ପୁଣି କ୍ରମରେ ସକଳ ରାଜ୍ୟମାନ ।
ସମସ୍ତଙ୍କୁ କ୍ରମେ ଦେଲେ କର୍ମ ଆସନ ॥ ୩ ॥
ନକ୍ଷତ୍ର ଗ୍ରହାଦି ବିପ୍ର ଅଉଷଧିମାନ ।
ଯାଗ ତପସ୍ୟାକୁ ମିଶି ଯେତେକ ବିଧାନ ॥ ୪ ॥
ଏମାନଙ୍କ ରାଜ୍ୟମାନେ ଚନ୍ଦ୍ରମାକୁ ଦେଲେ ।
ତେଣୁ ଋକ୍ଷପତି ଗ୍ରହପତି ସେ ହୋଇଲେ ॥ ୫ ॥
ଔଷଧୀଶ ଦ୍ୱିଜରାଜ ବୋଲାଇଲେ ପୁଣି ।
ଯଜ୍ଞାପତି ବୋଲିଣ କହନ୍ତି ସର୍ବପ୍ରାଣୀ ॥ ୬ ॥
ରାଜାମାନଙ୍କ ରାଜ୍ୟ ଯେ କୁବେରଙ୍କୁ ଦେଲେ ।
ତେଣୁ ଧନପତି ରାଜରାଜ ବୋଲାଇଲେ ॥ ୭ ॥
ଜଳମଧେ ଅଧିକାର ଦେଲେ ବରୁଣକୁ ।
ଆଦିତ୍ୟଙ୍କ ମଧ୍ୟେ ପତି ଦେଲେ ଯେ ବିଷ୍ଣୁଙ୍କୁ ॥ ୮ ॥
ବସୁମାନଙ୍କର ନାଥ ହୋଇଲେ ପାବକ ।
ଦକ୍ଷ ପୁଣି ହେଲେ ପ୍ରଜାପତିଙ୍କ ନାୟକ ॥ ୯ ॥
ମରୁତଙ୍କୁ ଆଦିଦେବଗଣଙ୍କର ବର ।
ବ୍ରହ୍ମାଆଜ୍ଞାରେ ରାଜନ ହେଲେ ବଜ୍ରଧର ॥ ୧୦ ॥
ଦୈତ୍ୟଦାନବ ଯେତେକ ଏହାଙ୍କ ମଧରେ ।
ପ୍ରହଲ୍ଲାଦ ଅଧିକାର କଲେ ବ୍ରହ୍ମବରେ ॥ ୧୧ ॥
ପିତୃମାନଙ୍କର ମଧ୍ୟେ ଧର୍ମରାଜ ଯମ ।
ଅଧିକାର କଲେ ଶୁଣ ତପସ୍ୱୀ ଉତ୍ତମ ॥ ୧୨ ॥
ସର୍ବଗଜ ଇନ୍ଦ୍ରବର ହେଲେ ଐରାବତ ।
ପକ୍ଷୀ ମଧ୍ୟେ ରାଜନ ହୋଇଲେ ବିଷ୍ଣୁରଥ ॥ ୧୩ ॥
ଉଚ୍ଚଇଶ୍ରବା ହେଲେ ଯେ ସର୍ବ ଅଶ୍ୱବର ।
ବୃଷଭ ପତି ହୋଇଲେ ସର୍ବଗୋକୁଳର ॥ ୧୪ ॥
ନାଗମାନଙ୍କରେ ଯେ ଶେଷକୁ ରାଜା କଲେ ।
ମୃଗମାନଙ୍କ ପତିତ୍ୱ ସିଂହଠାରେ ଦେଲେ ॥ ୧୫ ॥

ବନସ୍ପତିମାନଙ୍କର ମଧ୍ୟେ ରାଜା ପଣ ।
ପ୍ଲକ୍ଷପାଦପକୁ ବ୍ରହ୍ମା ଦେଲେକ ଆପଣ ।। ୧୬ ।।
ଏ ରୂପରେ ରାଜ୍ୟମାନଙ୍କୁ ଭାଗ କରି ।
ସମସ୍ତଙ୍କୁ ବାଣ୍ଟିଣ ଦେଲେକ କୁଶଧାରୀ ।। ୧୭ ।।
ତହୁଁ ପୁଣି ପ୍ରଜାପତିଙ୍କର ପତି ବ୍ରହ୍ମା ।
ଦିଗପାଳ ବିଚାର କରିଣ ମହାତମା ।। ୧୮ ।।
ଏକ ଏକ ଦିଗ ଜଣ ଜଣକୁ ଯେ ଦେଲେ ।
ପୂର୍ବଦିଗେ ବୈରାଜ ପୁତ୍ରକୁ ରାଜା କଲେ ।। ୧୯ ।।
ତାହାର ନାମ ପୁଣି ଯେ ଅଟଇ ସୁଧନ୍ୱା ।
ପ୍ରଜାପତିକୁମର ଯେ ତେଜରେ ମଘବା ।। ୨୦ ।।
କର୍ଦମ ପ୍ରଜାପତିଙ୍କ ପୁତ୍ର ସଙ୍ଖପଦ ।
ଦକ୍ଷିଣେ ରାଜା ହେଲେ ସେ ଭୁଞ୍ଜିଣ ସମ୍ପଦ ।। ୨୧ ।।
ରାଜରକୁମର ଯେ ଅଚ୍ୟୁତ ନାମ ତା'ର ।
କେତୁ ମାନ ମହାତ୍ମା ବୀରାଧିବୀରବର ।। ୨୨ ।।
ପଶ୍ଚିମ ଦିଗର ଯେ ତାହାକୁ କଲେ ରାଜା ।
ସର୍ବଲୋକମାନେ ଯେ କଲେ କ ପାଦପୂଜା ।। ୨୩ ।।
ତହିଁ ଉତ୍ତାରେ ପର୍ଜନ୍ୟ ପ୍ରଜାପତିଙ୍କର ।
କୁମର ହିରଣ୍ୟରୋମା ନାମଟି ତାହାର ।। ୨୪ ।।
ଉତ୍ତର ଦିଗରେ ଯେ ତାହାକୁ ରାଜାପଣେ ।
ପିତାମହ ଅଭିଷେକ କଲେକ ଆପଣେ ।। ୨୫ ।।
ଏ ରୂପେ ଚାରିଦିଗରେ ଚାରିଗୋଟି ବୀର ।
ସପତ ଦ୍ୱୀପ ମହୀରେ ହେଲେ ନୃପବର ।। ୨୬ ।।
ଗ୍ରାମପୁର ପାଟଣାରେ କରିଣ ସହିତ ।
ଯେଝା ପ୍ରଦେଶ ଧର୍ମରେ ପାଳିଲେ କ ନିତ୍ୟ ।। ୨୭ ।।
ଏ ସମସ୍ତେ ମହାତ୍ମା ବିଷ୍ଣୁଙ୍କ ଅଂଶଭୂତ ।
ଯେବଣ ବିଷ୍ଣୁ ସଂସାରେ ହୋଇଛନ୍ତି ସ୍ଥିତ ।। ୨୮ ।।
ତାହାଙ୍କ ଶକ୍ତି ସମ୍ଭବ ଅଟନ୍ତି ଏମାନେ ।
ଏଥୁଁ ପୁଣି ଯେତେ ରାଜାଗଣଛନ୍ତି ଅନ୍ୟେ ।। ୨୯ ।।
ସମସ୍ତେ ବିଷ୍ଣୁଙ୍କ ଅଂଶଭୂତଟି ଅଟନ୍ତି ।
ନୋହିଲେ ମହିପାଳକେ ସମର୍ଥ ନୁହନ୍ତି ।। ୩୦ ।।
ଯେତେ ରାଜା ହୋଇଗଲେ ହେବେ ପୁଣି ଯେତେ ।
ବିଷ୍ଣୁଙ୍କର ଅଂଶଭୂତ ଅଟନ୍ତି ସମସ୍ତେ ।। ୩୧ ।।
ଦେବତାଙ୍କ ଅଧିପତି ଯେତେ ଯେତେମାନେ ।
ଦୈତ୍ୟମାନଙ୍କରେ ଅଧିକାରୀ ଯେ ବା ଆନେ ।। ୩୨ ।।

ଦାନବଙ୍କ ନାଥ ଯେ ଯେ ପିଶାଚଙ୍କ ପତି ।
ପଶୁପକ୍ଷୀମାନଙ୍କରେ ଯେ ଶ୍ରେଷ୍ଠ ଅଟନ୍ତି ।। ୩୩ ।।
ନରସର୍ପ ଗଜବୃକ୍ଷ ପର୍ବତମାନଙ୍କ ।
ଯତଂମାନେ ଅଟନ୍ତିଟି କୁଳର ନାୟକ ।। ୩୪ ।।
ସେ ସମସ୍ତ ବିଷ୍ଣୁ ଅଂଶ ବୋଲିକରି ଜାଣ ।
ଯତଂ କୁଳେ ଯତଂମାନଙ୍କର ରାଜାପଣ ।। ୩୫ ।।
ଭୂତକାଳେ ଭବିଷ୍ୟରେ ବର୍ତ୍ତମାନେ ଯେତେ ।
ସର୍ବେ ବିଷ୍ଣୁଙ୍କର ଅଂଶ ଅଟନ୍ତି ଜଗତେ ।। ୩୬ ।।
ସଂସାରର ଈଶ୍ୱର ଯେବଣ ଭାବଗ୍ରାହୀ ।
ତାଙ୍କ ବିନା ସଂସାର ପାଳନ୍ତା କେହି ନାହିଁ ।। ୩୭ ।।
ରଜ ସତ୍ତ୍ୱ ତମଗୁଣମାନ ଅଙ୍ଗେ ବହି ।
ସୃଷ୍ଟି ପାଳନ ସଂହାର କର୍ତ୍ତା ଅଟେ ସେହି ।। ୩୮ ।।
ସୃଷ୍ଟି ସମୟରେ ଯେ ଚତୁର୍ଦ୍ଧାରୂପ ଧରେ ।
ପୁଣି ସେ ଚତୁର୍ଦ୍ଧା ରୂପେ ପାଳନା ଯେ କରେ ।। ୩୯ ।।
ସେହି ଚତୁର୍ଭେଦ ହୋଇ ପୁଣି ଜନାର୍ଦ୍ଦନ ।
ପ୍ରଳୟ କରଇ ଏ ନୁହଇ କେବେ ଆନ ।। ୪୦ ।।
ଅବ୍ୟକ୍ତ ରୂପୀ ଯେବଣ ପରମପୁରୁଷ ।
ଏକ ଅଂଶେ ବ୍ରହ୍ମାରୁ ଯେ ହୁଅଇ ପ୍ରକାଶ ।। ୪୧ ।।
ମରୀଚିକି ଆଦି କରି ପ୍ରଜାପତି ଯେତେ ।
ଦ୍ୱିତୀୟ ଅଂଶେ ପ୍ରକାଶ ହୁଅଇ ଜଗତେ ।। ୪୨ ।।
ତୃତୀୟ ଅଂଶରେ ତାହା ଅଟେ କାଳରୂପି ।
ଚତୁର୍ଥ ଅଂଶେ ସମସ୍ତ ଭୂତଙ୍କ ସ୍ୱରୂପି ।। ୪୩ ।।
ଏ ରୂପେ ଚତୁର୍ଦ୍ଧା ରୂପ ଧରି ରଜ ଗୁଣେ ।
ସୃଷ୍ଟିରେ ସ୍ଥିତ ହୁଅଇ ସେ ବିଷ୍ଣୁ ଆପଣେ ।। ୪୪ ।।
ଏକ ଅଂଶ ବିଷ୍ଣୁ ହୋଇ ପାଳନା କରଇ ।
ଦ୍ୱିତୀୟ ଅଂଶରେ ମନୁ ହୋଇ ପ୍ରସରଇ ।। ୪୫ ।।
ତୃତୀୟ ଅଂଶରେ ପୁଣି କାଳରୂପ ଧରେ ।
ଚତୁର୍ଥାଂଶ ସର୍ବଭୂତ ଠାରେ ସ୍ଥିତି କରେ ।। ୪୬ ।।
ସତ୍ୱଗୁଣରେ ଏ ରୂପେ ଚତୁର୍ଦ୍ଧା ହୁଅଇ ।
ତମଗୁଣ କହିବା ଶୁଣ ତୁ ମନଦେଇ ।। ୪୭ ।।
ଅନ୍ତକାଳେ ସେହିରୂପେ ପ୍ରଥମ ଅଂଶରେ ।
ରୁଦ୍ରରୂପ ଧରନ୍ତି ଯେ ଏ ସର୍ବ ସଂସାରେ ।। ୪୮ ।।
ଦ୍ୱିତୀୟ ଅଂଶ ଅନ୍ତକ ଅଗ୍ନି ରୂପେ ସ୍ଥିତ ।
ତୃତୀୟ ଅଂଶଟି କାଳ ସ୍ୱରୂପରେ ଖ୍ୟାତ ।। ୪୯ ।।

ଚତୁର୍ଥ ଅଂଶେ ବିନାଶ କରେ ସର୍ବଭୂତ ।
ଏ ରୂପେ ଚତୁର୍ଦ୍ଧାରୂପ ତମଗୁଂ ସମ୍ଭୂତ ।। ୫୦ ।।
ସମସ୍ତ କାଳରେ ଏ ଯେ ବିଭାଗ କଳ୍ପନା ।
ତୋ ଆଗେ କହିଲୁଂ ଶୁଣ ହୋଇ ଏକମନା ।। ୫୧ ।।
ବ୍ରହ୍ମାଦକ୍ଷ ଆଦି କାଳ ସର୍ବ ଜନ୍ତୁମାନ ।
ହରିଙ୍କର ବିଭୂତି ଏ ସୃଷ୍ଟିର ବିଧାନ ।। ୫୨ ।।
ବିଷ୍ଣୁମନୁ ଆଦି କାଳସର୍ପ ଭୂତ ଯେତେ ।
ସ୍ଥିତି କର୍ତ୍ତାପ୍ରଭୁଙ୍କ ଏ ବିଭୂତି ଜଗତେ ।। ୫୩ ।।
ରୁଦ୍ରକାଳ ଅନ୍ତକାଦି ସର୍ବ ଜନ୍ତୁକୁଳ ।
ପ୍ରଳୟକର୍ତ୍ତାର ଏ ବିଭୂତିମାନ ମୂଳ ।। ୫୪ ।।
ବିଶ୍ୱ ଆଦିରେ ମଧରେ ପ୍ରଳୟ ପର୍ଯ୍ୟନ୍ତେ ।
ଧାତା ମରୀଚି ଆଦି ଯେ ଜନ୍ତୁମାନେ ଯେତେ ।। ୫୫ ।।
ଏ ସମସ୍ତେ ସୃଷ୍ଟିକି କରନ୍ତି ନିରନ୍ତର ।
ଆଦି କାଳ ପିତାମହ ସର୍ଜନ୍ତି ନିକର ।। ୫୬ ।।
ତଦୁତ୍ତାରେ ମରୀଚ୍ୟାଦି ଯେତେ ପ୍ରଜାପତି ।
ମଧରେ ସମସ୍ତ ଜନ୍ତୁ ସର୍ଜନା କରନ୍ତି ।। ୫୭ ।।
ଜନ୍ତୁମାନେ ସନ୍ତତିମାନଙ୍କୁ ସନ୍ତତରେ ।
ଜନମ କରୁଥାଆନ୍ତି ଅନେକ ପ୍ରକାରେ ।। ୫୮ ।।
କାଳେ ଯେବେ ନ ଥାଆନ୍ତା ବ୍ରହ୍ମ ହେଲେ ପୁଣି ।
ସର୍ଜନାରେ କ୍ଷମ ଯେ ନୁହନ୍ତି ମୁନିମଣି ।। ୫୯ ।।
ପ୍ରଜାପତିମାନେ ହେଲେ କି ରୂପେ କରନ୍ତେ ।
ଜନ୍ତୁମାନେ ହେଲେ ଜାତ କରି ନ ପାରନ୍ତେ ।। ୬୦ ।।
ବିଷ୍ଣୁଙ୍କର ଏମନ୍ତଟି କାଳରୂପୀ ଭାଗ ।
ସୃଷ୍ଟି ସ୍ଥିତି ପ୍ରଳୟରେ ହୁଅଇ ସଂଯୋଗ ।। ୬୧ ।।
ବିଷ୍ଣୁଙ୍କର ସତ୍ତ୍ୱରେ ହୁଅନ୍ତି ତେ ଜାତ ।
ମରୀଚିଙ୍କି ଆଦି କରି ସକଳ ବିଧାତ ।। ୬୨ ।।
ସେ ସମସ୍ତେ ବିଷ୍ଣୁଙ୍କର ଅଂଶଟି ଅଟନ୍ତି ।
ନୋହିଲେ ସର୍ଜନା ଆଦି କରି ନ ପାରନ୍ତି ।। ୬୩ ।।
ସେମାନେ ପୁଣି କରନ୍ତି ଯେତେ ସୃଷ୍ଟିମାନ ।
ସେ ସର୍ବେ ବିଷ୍ଣୁଙ୍କ ତନୁ ବୋଲି ମନେ ଘେନ ।। ୬୪ ।।
ଯେତେବେଳେ ଜନାର୍ଦ୍ଦନଙ୍କର ରୌଦ୍ରରୂପ ।
ସେହି ଏକା ସଂସାରରେ ଅନ୍ତକ ସ୍ୱରୂପ ।। ୬୫ ।।
ଯେ କିଛି ସ୍ଥାବର ଜଙ୍ଗମାଦି ଏକା ସେହି ।
ସବୁ ଆଡ଼େ ନାଶ କରେ ବାକି ନ ରହଇ ।। ୬୬ ।।

ଏ ରୂପେ ଜଗତ ସେ କରଇ ପୁଣ ପାଳେ ।
ଜନାର୍ଦ୍ଦନ ରୂପରେ ସଂହାର କରେ କାଳେ ॥ ୬୭ ॥
ସୃଷ୍ଟି ସ୍ଥିତି ପ୍ରଳୟରେ ତିନି ରୂପ ଧରେ ।
ନିର୍ଗୁଣ ପରମପଦ ପୂର୍ଣ୍ଣ ସେ ବେଭାରେ ॥ ୬୮ ॥
ତତ୍ୱ ଜ୍ଞାନମୟ ସେ ସକଳ ବ୍ୟାପୀ ସେହି ।
ତାହାର ମହିମା ମାତ୍ର ସେ ଏକା ଜାଣଇ ॥ ୬୯ ॥
ପରମାତ୍ମାର ଯେବଣ ଚାରି ପ୍ରତିରୂପ ।
ଅନୁପମ ପଦାର୍ଥ ସେ ଅବ୍ୟୟ ସ୍ୱରୂପ ॥ ୭୦ ॥
ପରାଶର ମୁଖରୁଂ ଏମନ୍ତ ବାକ୍ୟ ଶୁଣି ।
ପଚାରନ୍ତି ତପସ୍ୱୀ କି ମଇତ୍ରେୟ ମୁନି ॥ ୭୧ ॥
ଯେବଣ ପରଂବ୍ରହ୍ମର ଯେ ପରମପଦ ।
ଚାରିପ୍ରକାରେ କରିଣ କହିଲ ଯା ଭେଦ ॥ ୭୨ ॥
ସେ ଚାରିପ୍ରକାର ଭାବ ଯଥୋଚିତେ କହ ।
ଯଉଂରୂପେ ନ ରହିବ ମୋହର ସନ୍ଦେହ ॥ ୭୩ ॥
ଶିଷ୍ୟ ଏହା ପଚାରନ୍ତେ ଶକ୍ତିସୁତ ଭଣି ।
ଉତ୍ତମ କରି କହିବା ଶୁଣ ମୁନିମଣି ॥ ୭୪ ॥
ସର୍ବଦ୍ରବ୍ୟମାନଙ୍କରେ ଯେ ଅଟେ କାରଣ ।
ତାହାକୁ ସାଧନ ବୋଲି କରି ମୁନି ଜାଣ ॥ ୭୫ ॥
ଆତ୍ମାକୁ ସାଧିବା ଅର୍ଥେ ଯଉଂ ଅଭିମତ ।
ସାଧ୍ୟ ବସ୍ତୁ ତାହାକୁ ବୋଲିଟି ଏହା ତତ୍ୱ ॥ ୭୬ ॥
ମୁକ୍ତି ଇଛା କରନ୍ତି ଯେବଣ ଯୋଗୀଜନେ ।
ତାହାଙ୍କର ସାଧନଟି ପ୍ରାଣାୟମମାନେ ॥ ୭୭ ॥
ଯାହାକୁ ଜୀବ ବୋଲିଣ ଜ୍ଞାନରେ କହନ୍ତେ ।
ଏଥୁଁ ଉତ୍ତାରେଣ ସାଧ୍ୟ ଶୁଣ ହୋ ସୁମତି ॥ ୭୮ ॥
ପରମବ୍ରହ୍ମ ବୋଲିଣ ଯାହାକୁଟି କହି ।
ଯହିଂକି ଗଲେ ପୁନରାବୃତ୍ତି ଆଉ ନାହିଁ ॥ ୭୯ ॥
ସେହି ବ୍ରହ୍ମକୁ କେବଳ ବୋଲି ବାବୁ ସାଧ୍ୟ ।
ଇଥି ଉତ୍ତାରେ କହିବା ଶୁଣ ମହାସିଦ୍ଧ ॥ ୮୦ ॥
ଯୋଗୀମାନଙ୍କର ମୁକ୍ତି ନିମନ୍ତରେ ଯେହି ।
ସାଧନର ଆଲମ୍ବନ ହୋଇକରି ଥାଇ ॥ ୮୧ ॥
ସେହି କାଳେ କେବଳ ଅଟଇ ପ୍ରଥମାଂଶ ।
ଜ୍ଞାନଭୂତ ପରଂବ୍ରହ୍ମଙ୍କରଟି ତାପସ ॥ ୮୨ ॥
କ୍ଲେଶମୁକ୍ତି ଅର୍ଥରେ ଯେବଣ ଯୋଗୀମାନେ ।
ଯୋଗଅଭ୍ୟାସରେ ଯୁକ୍ତ ହେବେ ପ୍ରତିଦିନେ ॥ ୮୩ ॥

ତାହାଙ୍କର ସାଧ୍ୟ ଅଟେ ଯେବଣଟି ବ୍ରହ୍ମ ।
ତାହା ଆଲମ୍ବନ ଯଉଂ ବିଜ୍ଞାନ ଉତ୍ତମ ॥ ୮୪ ॥
ଚିଦାନନ୍ଦସ୍ୱରୂପ ବୋଲିଣ ଯାହା କହି ।
ଦ୍ୱିତୀୟ ଅଂଶ ତାହାକୁ ବୋଲି ତପୋଦେହି ॥ ୮୫ ॥
ସେ ପୁଣି ସାଧ୍ୟ ସାଧନ ଦୁହିଙ୍କ ମଧରେ ।
ଯେବଣ ଜ୍ଞାନ ବିଭାଗ ଭେଦଟି ନ କରେ ॥ ୮୬ ॥
ମୁହିଂ ବ୍ରହ୍ମବୋଲି ହୁଏ ଅଦ୍ୱଇତ ।
ସେହି ଜ୍ଞାନ ତୃତୀୟ ଅଂଶ ହୋ ମଇତ୍ରେୟ ॥ ୮୭ ॥
ଯେବଣ ଜ୍ଞାନର କିଛି ନଥାଇ ବ୍ୟାପାର ।
ନାମ ହିଂ ନାହିଂ କେବଳ ବ୍ୟାପ୍ତି ମାତ୍ର ସାର ॥ ୮୮ ॥
ନିରୂପମ ପଦାର୍ଥ ସେ ସମସ୍ତ ପ୍ରକାରେ ।
ଆତ୍ମା ସମ୍ବୋଧନ ବିଷୟ ସେ ଅତ୍ୟନ୍ତରେ ॥ ୮୯ ॥
ସତ୍ତାମାତ୍ର କେବଳ ସେ ଲକ୍ଷଣ ନାହିଂ ।
ଜ୍ଞାନତ୍ରୟ ବିଷ୍ଣୁର ବିଶେଷ ଏକା ସେହି ॥ ୯୦ ॥
ନିରାକରଣଦ୍ୱାରରେ ଦର୍ପିତ ଯେ ଆତ୍ମା ।
ଯାହାର ସ୍ୱରୂପ ପ୍ରାୟେ ସେ ଜ୍ଞାନ ମହାତ୍ମା ॥ ୯୧ ॥
ଅତ୍ୟନ୍ତ ଶାନ୍ତ ଅଟଇ ଭୟ ତା'ର ନାହିଂ ।
ଅତିଶୁଦ୍ଧ ଅବିଭାବ ପୁଣି ସେ ହୁଅଇ ॥ ୯୨ ॥
ଜ୍ଞାନମୟ ବିଷ୍ଣୁଙ୍କର ସେହୁ ଅଂଶତ୍ରୟ ।
ସେହି ଜ୍ଞାନ ପରମପଦଟି ମଇତ୍ରେୟ ॥ ୯୩ ॥
ତାହାକୁ ଚତୁର୍ଥ ଅଂଶ ବୋଲିଣ କହନ୍ତି ।
ତହିଂରେ ଯେବଣ ଯୋଗୀମାନେ ମହାଯତି ॥ ୯୪ ॥
ଅନ୍ୟଜ୍ଞାନ ରୋଧେ କରି ଲୟକୁ ଯେ ଯାନ୍ତି ।
ତେବେ ସଂସାର ବନ୍ଧରୁଂ ସେହୁ ମୁକ୍ତି ହୋନ୍ତି ॥ ୯୫ ॥
ଯଉଂ ରୂପେ ଚଷାଭୂମି ଚାଷ କରୁଥାଏ ।
ଶସ୍ୟ ଉପୁଜାଇ ଭୋଗ କରନ୍ତି ସଭିଏ ॥ ୯୬ ॥
ତେଣୁ କରି ନିସ୍ପୃହ ସେ ହୁଅଇ ସେ କାଳେ ।
ଏମନ୍ତ ପ୍ରକାରେ ଯୋଗୀ ହୁଅଇ ଅଖିଳେ ॥ ୯୭ ॥
ନିର୍ମଳ ନିତ୍ୟବ୍ୟାପକ ଅବ୍ୟୟ ଯେ ପଦ ।
ତାହାକୁ ପରମବ୍ରହ୍ମ ବୋଲନ୍ତି କୋବିଦ ॥ ୯୮ ॥
ସମସ୍ତ ଭେଦରହିତ ହୋଇ କରି ପୁଣି ।
ସେହି ବ୍ରହ୍ମ ହୁଅଇ ଯେ ଯୋଗବନ୍ତ ପ୍ରାଣୀ ॥ ୯୯ ॥
ପୁଣି ଯହିଂରୁ ବାହୁଡ଼ି ନ ଆସଇ କେବେ ।
ସେହି ପଦମାତ୍ରକ ନିଶ୍ଚିନ୍ତେ ଯୋଗୀ ଲଭେ ॥ ୧୦୦ ॥

କ୍ଷିଣ କ୍ଲେଶ ହୋଇ କରି ଅତ୍ୟନ୍ତ ନିର୍ମଳେ ।
ପରଂବ୍ରହ୍ମ ହୋଇଣ ରହଇ ସବୁକାଳେ ।। ୧୦୧ ।।
ସେ ପରମବ୍ରହ୍ମର ଯେ ଦୁଇଗୋଟି ରୂପ ।
ମୂର୍ତ୍ତାମୂର୍ତ୍ତି ପୁନ୍ୟ ପୁଣି ଅପୁଣ୍ୟ ସ୍ୱରୂପ ।। ୧୦୨ ।।
କ୍ଷରାକ୍ଷର ରୂପେ ଅଛି ସମସ୍ତ ଭୂତରେ ।
ଅକ୍ଷରକୁ ପରଂବ୍ରହ୍ମ ବୋଲିଟି ତତ୍ତ୍ୱରେ ।। ୧୦୩ ।।
ଅକ୍ଷର ଯଉଂ ସ୍ୱରୂପ ସମସ୍ତ ଜଗତ ।
ସେ ଦୁଇ ରୂପ ବ୍ୟବସ୍ଥା ଶୁଣ ତପୋବନ୍ତ ।। ୧୦୪ ।।
ଅଗ୍ନି ଯେମନ୍ତ ପ୍ରକାରେ ଏକ ଦେଶେ ଥାଇ ।
ଏକ ପ୍ରଦେଶରେ ଜ୍ୟୋସ୍ନା ପ୍ରକାଶ ହୁଅଇ ।। ୧୦୫ ।।
ସେହିରୂପେ ପରମବ୍ରହ୍ମର ଯଉଂ ଶକ୍ତି ।
ସେହି ଏକା ହୋଇଅଛି ଏ ସର୍ବ ଜଗତି ।। ୧୦୬ ।।
ଜ୍ୟୋସ୍ନା ଯେହ୍ନେ ଅଗ୍ନିପାଶେ ଦିଶଇ ବହୁତ ।
ଦୂରକୁ ସେ ପୁଣି ଅଳ୍ପ ରୂପରେ ପ୍ରଖ୍ୟାତ ।। ୧୦୭ ।।
ସେହିରୂପେ ଶକ୍ତି ବ୍ରହ୍ମପାଶରେ ବହୁତ ।
ଅଳ୍ପଆଚରଣ କରେ ହୋଇଲେ ଦୂରସ୍ଥ ।। ୧୦୮ ।।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏହୁ ଦେବତିନି ।
ପ୍ରଧାନ ବ୍ରହ୍ମଶକ୍ତିଟି ଶୁଣ ମହାମୁନି ।। ୧୦୯ ।।
ତହୁଁ ପୁଣି ଦେବତାମାନେ ଯେ ହେଲେ ଜାତ ।
ଲକ୍ଷକୁ ଆଦି କରି ଏ ନିୟୁତ ସମସ୍ତ ।। ୧୧୦ ।।
ତହୁଁ ପୁଣି ନିୟୁନତରରେ ନରମାନେ ।
ପଶୁ ମୃଗ ସରୀସୃପ ପକ୍ଷୀ ଯେ ବିଧାନେ ।। ୧୧୧ ।।
ତହିଁରୁ ନିୟୁନତର ବୃକ୍ଷ ଗୁଳ୍ମ ଆଦି ।
ତେଣୁ ଏ ସର୍ବ ଜଗତ ନିତ୍ୟଟି ପ୍ରସିଦ୍ଧି ।। ୧୧୨ ।।
ଅକ୍ଷୟ ହୋଇଣ ପୁଣି ସବୁକାଳେ ରହେ ।
ଅଧିକ ଉଣାରେ ଜନ୍ମନାଶଟି ବୋଲାଏ ।। ୧୧୩ ।।
ସର୍ବଶକ୍ତିମୟ ଯେ ଯେବଣ ବିଷ୍ଣୁ ରୂପ ।
ପରମବ୍ରହ୍ମର ସେଟି ଅପରସ୍ୱରୂପ ।। ୧୧୪ ।।
ଯୋଗାରମ୍ଭ କାଳେ ଆଦ୍ୟେ ଯୋଗୀ ଯା ଚିନ୍ତନ୍ତି ।
ସେହି ମୂର୍ତ୍ତି ଏକା ବିଷ୍ଣୁ ଶୁଣ ମହାଯତି ।। ୧୧୫ ।।
ଯଉଂ ବିଷ୍ଣୁ ମହାଯୋଗଧ୍ୟେୟରେ ସହିତ ।
ପ୍ରଣବାଦି ମନ୍ତ୍ର ଘେନି ହୃଦୟରେ ସ୍ଥିତ ।। ୧୧୬ ।।
ସର୍ବଶକ୍ତିମାନଙ୍କର ଶ୍ରେଷ୍ଠ ସେ ଅଟଇ ।
ବ୍ରହ୍ମର ନିକଟବର୍ତ୍ତୀ ହୋଇ କରିଥାଇ ।। ୧୧୭ ।।

ବ୍ରହ୍ମମୂର୍ତ୍ତି ବୋଲାଇ ସେ ସର୍ବବ୍ରହ୍ମମୟ ।
ତହିଁ ବୁଡ଼ିଅଛି ସର୍ବଜଗତ ନିଶ୍ଚୟ ॥ ୧୧୮ ॥
ତହୁଁ ଜଗତ ସମ୍ଭବି ତହିଁ କରେ ସ୍ଥିତି ।
ତେଣୁ ସକଳ ଜଗତେ ସେହି ଏକା ଯତି ॥ ୧୧୯ ॥
ପରାଶରମୟ ବିଷ୍ଣୁ ସେହିଟି ଅଖିଳ ।
ସମସ୍ତଙ୍କ ଈଶ୍ୱର ସେହିଟି ଆଦିମୂଳ ॥ ୧୨୦ ॥
ଭୂଷଣ ଶସ୍ତ୍ର ସ୍ୱରୂପ ପ୍ରାୟେ ପୁଣି କରି ।
ପୁରୁଷ ପ୍ରଧାନାତ୍ମକ ବିଶ୍ୱ ଅଛି ଧରି ॥ ୧୨୧ ॥
ଏମନ୍ତ ରୂପେ ଜଗତ କରି ଅଛି ପୂର୍ଣ୍ଣ ।
ତା ଶୁଣି ମଇତ୍ରେୟ ବୋଲନ୍ତି ଗୁରୁ ଶୁଣ ॥ ୧୨୨ ॥
ଭୂଷଣ ସମସ୍ତ ସ୍ୱରୂପେ ସ୍ଥିତ ଯେ ଜଗତ ।
କି ରୂପେ ତାହାକୁ ବହିଛନ୍ତି ଜଗନ୍ନାଥ ॥ ୧୨୩ ॥
ଏହା ମତେ ବିସ୍ତାରି କହିବା ତପୋବନ୍ତ ।
ଶୁଣି ତପସ୍ୱୀ ବୋଲନ୍ତି ଶୁଣ ଭଗବନ୍ତ ॥ ୧୨୪ ॥
ଅପ୍ରମେୟ ବିଷ୍ଣୁ ସର୍ବ ପ୍ରଭୁ ଯଉଂ ହରି ।
ତାହାଙ୍କ ଚରଣେ ନମସ୍କାର ଆଗ କରି ॥ ୧୨୫ ॥
ତହିଁ ଉତ୍ତାରୁ କହୁଛି ଶୁଣ ମୁନି ତାହା ।
ବଶିଷ୍ଠ ପୂର୍ବରେ ମତେ କହିଛନ୍ତି ଯାହା ॥ ୧୨୬ ॥
ଏହୁ ଜଗତର ଅଟେ ଯେ ଆତ୍ମାପୁରୁଷ ।
ନିର୍ଲେପ ନିର୍ଗୁଣ ପୁଣି ନିର୍ମଳ ବିଶେଷ ॥ ୧୨୭ ॥
ତାହାକୁ କଉସ୍ତୁଭମଣି ସ୍ୱରୂପରେ କରି ।
ଧରିଅଛନ୍ତି ସେ ଯେ ଭଗବାନ ହରି ॥ ୧୨୮ ॥
ଶ୍ରୀବତ୍ସ ଚିହ୍ନର ସ୍ଥିତି ହୋଇଛି ଯହିଁରେ ।
ଯେହୁ ଅଟେ ଆଶ୍ରିତ ସନ୍ତତ ଅନନ୍ତରେ ॥ ୧୨୯ ॥
ଏମନ୍ତ ପ୍ରଧାନ ଭୂତା ଅଟଇ ଏ ବୁଦ୍ଧି ।
ଗଦା ରୂପେ ତାହାକୁ ବହିଛନ୍ତି ଦୟାନିଧି ॥ ୧୩୦ ॥
ଭୂତାଦି ଇନ୍ଦ୍ରିୟାଦି ଏ ବେନି ଅହଂକାର ।
ଏହାଙ୍କୁ ଶଙ୍ଖସାରଙ୍ଗ ରୂପରେ ଈଶ୍ୱର ॥ ୧୩୧ ॥
ବେନିକର କମଳରେ ପ୍ରତିକ୍ଷଣ ବହି ।
ବିଜେ କରିଅଛନ୍ତି ଅଶେଷ ଭାବଗ୍ରାହୀ ॥ ୧୩୨ ॥
ସର୍ବସାମର୍ଥ ସ୍ୱରୂପ ଅଟଇ କେବଳ ।
ବେଗଗୁଣେ ଜିଣିଅଛି ପ୍ରଚଣ୍ଡ ଅନଳ ॥ ୧୩୩ ॥
ଏମନ୍ତ ମନକୁ ହସ୍ତପଦ୍ମେ ଚକ୍ରରୂପେ ।
ଧରିଛନ୍ତି ଜଗତଈଶ୍ୱର ପ୍ରଭୁ ଆପେ ॥ ୧୩୪ ॥

ପଞ୍ଚବର୍ଣ୍ଣ ବୈଜୟନ୍ତୀ ମାଳା ବୋଲି ଯାହା ।
ପଞ୍ଚଭୂତମୟ ଭୂତ ମାଳା ଅଟେ ତାହା ॥ ୧୩୫ ॥
କଣ୍ଠପ୍ରଦେଶରେ ତାକୁ ଘେନିଛନ୍ତି ହରି ।
ଏଥୁଁ ଉତ୍ତାରେଣ ଶୁଣିମା ହେଉ ତପୋଚାରି ॥ ୧୩୬ ॥
ବନ୍ଧକର୍ମ ଆତ୍ମକ ଇନ୍ଦ୍ରିୟମାନ ଯେତେ ।
ଶରବୟ ପରି ତାହା ବହିଛନ୍ତି ହସ୍ତେ ॥ ୧୩୭ ॥
ବିଦ୍ୟାମୟ ଜ୍ଞାନ ଯେ ଅବିଦ୍ୟାମୟ ଜ୍ଞାନ ।
ସବୁକାଳେ ସଂସାରରେ ଯେ ଅଟେ ପ୍ରଧାନ ॥ ୧୩୮ ॥
ଏ ଦୁହିଁଙ୍କି ନିର୍ମଳ ଖଡ଼ଗ ବର୍ମ ପରି ।
ସନ୍ତତ ଶ୍ରୀକରେ ଧରିଥାନ୍ତି ଦେବହରି ॥ ୧୩୯ ॥
ଏମନ୍ତ ପ୍ରକାରେ ବିପ୍ର ପୁରୁଷ ପ୍ରଧାନ ।
ବୁଦ୍ଧି ଅହଂକାର ଆଦି ପଞ୍ଚଭୂତ ମାନ ॥ ୧୪୦ ॥
ସମସ୍ତ ଇନ୍ଦ୍ରିୟ ବିଦ୍ୟା ଅବିଦ୍ୟା ଏ ଯେତେ ।
ତାଙ୍କୁ ଆଶ୍ରେ କରିଣ ଅଛନ୍ତି ଅନୁବ୍ରତେ ॥ ୧୪୧ ॥
ରୂପ ବର୍ଜିତ ପ୍ରଭୁ ଯେ ମାୟାରୂପ ଧରି ।
ସର୍ବପ୍ରାଣୀ ଶ୍ରେୟ ନିମିତ୍ତରେ ଦେବହରି ॥ ୧୪୨ ॥
ଧରିଅଛନ୍ତି ଭୂଷଣ ସଂସ୍ଥାନ ସ୍ୱରୂପ ।
ଏକଥା ନିଶ୍ଚୟ ଜାଣ ତପସ୍ୱୀଙ୍କ ଭୂପ ॥ ୧୪୩ ॥
ସର୍ବକାରଣ ପ୍ରଧାନ ପୁରୁଷ ସର୍ବବିଶ୍ୱ ।
ଏ ସର୍ବ ଧରିଅଛନ୍ତି ସେହି ପରମେଶ ॥ ୧୪୪ ॥
ବିଦ୍ୟା ଅବିଦ୍ୟା ଯେ ସଦ ଅସଦ ଅବ୍ୟୟ ।
ଏସର୍ବ ସେ ପ୍ରଭୁଠାରେ ଛନ୍ତି ମଇତ୍ରେୟ ॥ ୧୪୫ ॥
କଳାକାଷ୍ଠା ନିମେଷ ଦିବସ ପକ୍ଷ ମାସ ।
ଅୟନବତ୍ସର ଆଦି ଯେତେକ ବିଶେଷ ॥ ୧୪୬ ॥
ଏମାନଙ୍କ ସଙ୍ଗ ହୋଇ ସେ କାଳ ସ୍ୱରୂପୀ ।
ଅବ୍ୟୟ ହରି ଅଛନ୍ତି ସର୍ବଠାରେ ବ୍ୟାପୀ ॥ ୧୪୭ ॥
ଭୂର୍ଲୋକ ଭୁବର୍ଲୋକ ଯେ ସ୍ୱର୍ଗ ମହୋର୍ଲୋକ ।
ଜନତପସତ୍ୟ ଆଦି ଅଛଇ ଯେତେକ ॥ ୧୪୮ ॥
ଏ ସମସ୍ତ ସେହି ପ୍ରଭୁ ଏକାଟି ଅଟନ୍ତି ।
ସମସ୍ତଙ୍କ ଲୋକାତ୍ମକ ମୂର୍ତ୍ତି ହୋଇଛନ୍ତି ॥ ୧୪୯ ॥
ପୂର୍ବଲୋକମାନଙ୍କରେ ସେ ପୁଣି ପୂର୍ବଜ ।
ସର୍ବ ବିଦ୍ୟାମାନଙ୍କ ଆଧାର ଅଧୋକ୍ଷଜ ॥ ୧୫୦ ॥
ଦେବତା ମନୁଷ୍ୟ ପଶୁ ଆଦି ଯେତେ ରୂପ ।
ସେମାନଙ୍କେ ସହିତ ହୋଇଣ ସେ ଅରୂପ ॥ ୧୫୧ ॥

ରୂପବନ୍ତ ହୋଇଣ ଯେ ସବୁଠାରେ ସ୍ଥିତ ।
ଅନାଦି ପୁରୁଷ ନିତ୍ୟ ଅବ୍ୟୟ ଅନନ୍ତ ॥ ୧୫୨ ॥
ଋକ୍ ଯଜୁ ସାମ ଯେ ଅଥର୍ବ ଚାରିବେଦ ।
ଆୟୁର୍ବେଦ ଧନୁର୍ବେଦ ଗନ୍ଧର୍ବ ଯେ ବେଦ ॥ ୧୫୩ ॥
ସ୍ୱରଶାସ୍ତ୍ର ଆଦି ଏଯେ ଉପବେଦ ଚାରି ।
ଇତିହାସ ବେଦାନ୍ତ ବଚନ ଯେତେ ପରି ॥ ୧୫୪ ॥
ସମସ୍ତ ବେଦାଙ୍ଗମାନେ ମନ୍ୱାଦି ଯେତେକ ।
ସର୍ବସୂତ୍ର ଆଦିକରି କଳ୍ପସୂତ୍ରଯାକ ॥ ୧୫୫ ॥
ଯେତେକ କାବ୍ୟ ଆଳାପ ଯେତେ ଗୀତମାନ ।
ଶବ୍ଦମୂର୍ତ୍ତି ଧରି ବିଷ୍ଣୁଙ୍କର ଅଙ୍ଗଜାଣ ॥ ୧୫୬ ॥
ଯେତେ ମୂର୍ତ୍ତି ଅମୂର୍ତ୍ତି ଅଛନ୍ତି ଯେତେ ଠାରେ ।
ଏଠାରେ ସେଠାରେ ପୁଣି ଯହିଁରେ ତହିଁରେ ॥ ୧୫୭ ॥
ଦ୍ରବ୍ୟରୁଂ ଜାତ ହୋଇଣ ଯେତେ ଅବା ଛନ୍ତି ।
ସମସ୍ତେ ପରମାତ୍ମାର ଶରୀର ଅଟନ୍ତି ॥ ୧୫୮ ॥
ମୁହିଁ ଏକା ହରି ହେ ସଂସାରେ ଭଗବାନ ।
କାର୍ଯ୍ୟ କାରଣରୁଂ ଜାତ ଯେତେକ ବିଧାନ ॥ ୧୫୯ ॥
ତାହାଠାରୁଂ ଏକ ହୋଇ ପଦାର୍ଥେକ ନାହିଁ ।
ଏମନ୍ତ ମନ ଯାହାର ସନ୍ତତ ଅଟଇ ॥ ୧୬୦ ॥
ତାହାର ଦେହ ଜନିତ ରାଗାଦି ଯେ ଦୋଷ ।
ଶେଷ କିଛି ନ ରହି ସମସ୍ତ ହୁଏ ନାଶ ॥ ୧୬୧ ॥
ଏଯେ ବିଷ୍ଣୁ ପୁରାଣ ପ୍ରଥମ ଅଂଶଗୀତି ।
ତୋହ ଆଗେ ଯଥୋଚିତେ କହିଲୁ ହେ ଯତି ॥ ୧୬୨ ॥
ଯାହା ଶୁଣିଲେ ପାପୁଂ ପ୍ରାଣୀ ତରେ ।
ପୁନରପି ନ ପଡ଼ଇ ସଂସାର ସିନ୍ଧୁରେ ॥ ୧୬୩ ॥
ପୁଷ୍କର ଜଳରେ ସ୍ନାନ କାର୍ତ୍ତିକ ମାସରେ ।
ଯେ କରିବ ଦ୍ୱାଦଶ ବରଷ ପର୍ଯ୍ୟନ୍ତରେ ॥ ୧୬୪ ॥
ତାହାର ଯେତେକ ଫଳ ହୁଏ ଶାସ୍ତ୍ର ମତେ ।
ପ୍ରାଣୀ ତା ଲଭଇ ଏହା ଶୁଣିବାର ମାତ୍ରେ ॥ ୧୬୫ ॥
ଯେବଣ ପୁରୁଷ ଏହା ନିତ୍ୟେ ଶୁଣୁଥାଇ ।
ତା'ଠାରେ ଇଷ୍ଟ ଦେବତା ସନ୍ତୁଷ୍ଟ ହୁଅଇ ॥ ୧୬୬ ॥
ଦେବ ଋଷି ଯକ୍ଷ ପିତୃ ଗନ୍ଧର୍ବ ଯେ ଆଦି ।
ଏମାନେ ବର ଦିଅନ୍ତି ହୋଇଣ ପ୍ରମୋଦୀ ॥ ୧୬୭ ॥
ଏ ଚରିତ ମହାସୁଖେ ଶୁଣିମା ଅର୍ଥରେ ।
ଜନ୍ମ ପୁଣି ହୁଅନ୍ତି ଯେ ତାହାର କୁଳରେ ॥ ୧୬୮ ॥

ଶ୍ରୀ ବିଷ୍ଣୁ ପୁରାଣ ଯେ ପ୍ରଥମ ଅଂଶଗୀତ ।
ବିଷ୍ଣୁ ମହାତ୍ମ୍ୟ ବର୍ଣ୍ଣନା ଦ୍ୱାବିଂଶ ଅଧ୍ୟାଖ୍ୟାତ ।। ୧୬୯ ।।
ନନ୍ଦପୁର କ୍ଷିତିଶ ଶ୍ରୀକୃଷ୍ଣ ଦେବ ନାମ ।
ତାଙ୍କ ମନ୍ତ୍ରି ପପୟାପାତ୍ର ଯେ ଅନୁପମ ।। ୧୭୦ ।।
ତାହାଙ୍କ କୁଳମଣ୍ଡନ ଏକଇ ପଉତ୍ର ।
ଯା ନାମ ବଲ୍ଲଭନାରାୟଣ ମହାପାତ୍ର ।। ୧୭୧ ।।
ତାହାକୃତ ଗ୍ରନ୍ଥ ଏ ଯେ ଶ୍ରୀବିଷ୍ଣୁପୁରାଣ ।
ଭକ୍ତିପୂର୍ବ ହୋଇଣ ସକଳ ସାଧୁ ଶୁଣ ।। ୧୭୨ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୭୩ ।।

ଗୌରୀ ଶଙ୍କରାଭ୍ୟାଂ ନମଃ

# ଶ୍ରୀବିଷ୍ଣୁପୁରାଣ ଦ୍ୱିତୀୟ ଅଂଶ

## ପ୍ରଥମ ଅଧ୍ୟାୟ

ନମସ୍ତେ ଦିବାକର ପଙ୍କଜବନବନ୍ଧୁ ।
ଭକ୍ତଜନ ସୋଦର ଅଶେଷ କୃପାସିନ୍ଧୁ ॥ ୧ ॥
ନମସ୍ତେ ଦିବାକର ପ୍ରଫୁଲ୍ଲ ପଦ୍ମପାଣି ।
ଆରୋଗ୍ୟ ଇଚ୍ଛାକଲା ପ୍ରାଣୀଙ୍କ ଚିନ୍ତାମଣି ॥ ୨ ॥
ନମସ୍ତେ ଦିବାକର ଅନାଥଜନମିତ୍ର ।
ଭୃତ୍ୟର ଭାବଗ୍ରାହୀ କଶ୍ୟପ ମୁନିପୁତ୍ର ॥ ୩ ॥
ନମସ୍ତେ ଦିବାକର ଜଗତଜନପତି ।
ମନ୍ଦାରକୁସୁମ ସମ ସୁନ୍ଦର ଯାଦ୍ୟୁତି ॥ ୪ ॥
ପ୍ରାଚୀମୃଗଦୃଶାର ସିନ୍ଦୂର ବିନ୍ଦୁ ସମ ।
ପ୍ରତିଭାରେ ମଞ୍ଜୁଳ ଦିଶନ୍ତି ଯଉଂ ବ୍ରହ୍ମ ॥ ୫ ॥
ଯାହା ଯାନ ତୁରଙ୍ଗ ହୁଙ୍କାର ମାତ୍ର ଶୁଣି ।
ମେଘର ମଞ୍ଜୁ ଧ୍ୱନି ପରାୟେ ମନେ ମଣି ॥ ୬ ॥
ଆରୋହିଲା ବାହନ ତାଣ୍ଡବ କଲା ବେଳେ ।
କାର୍ତ୍ତିକେୟ ଶ୍ରୀଅଙ୍ଗ କମ୍ପଇ ଅବହେଳେ ॥ ୭ ॥
ଶ୍ରମେ ସେ ଷଡ଼ାନନ ମୁଞ୍ଚନ୍ତେ ଖରଶ୍ୱାସ ।
ପ୍ରଳୟବାତ ବୋଲି ଭାଳନ୍ତି ଚତୁର୍ଦ୍ଦଶ ॥ ୮ ॥
ସଂସାର ନାଶ ଯିବା ତ୍ରାସରେ ସୁରଗଣେ ।
ଆଦିତ୍ୟ ରଖବୋଲି ଡାକନ୍ତି ପ୍ରତିକ୍ଷଣେ ॥ ୯ ॥
ଅଖିଳଲୋକ ଗୁରୁ ନିର୍ଗୁଣ ନିରାକାର ।
ଛାୟାକୁଚକୁଙ୍କୁମ ପଙ୍କିଳ କଳେବର ॥ ୧୦ ॥
ତୁମ୍ଭର ଶ୍ରୀଚରଣ ପଙ୍କଜେ ଦେଇ ଚିତ ।
ପ୍ରାଣୀଙ୍କ ହିତେ ବିଷ୍ଣୁ ପୁରାଣ କଲି ଗୀତ ॥ ୧୧ ॥
ପଣ୍ଡିତଜନେ କ୍ଷମା କରିବେ ମୋର ଦୋଷ ।
ଦ୍ୱିତୀୟ ଅଂଶ ଏବେ କରୁଛି ପ୍ରକାଶ ॥ ୧୨ ॥
ପରାଶର ମୁନିଙ୍କ ବଦନ ଚାହିଁ କରି ।
ଆନନ୍ଦେ ପଚାରନ୍ତି ମୈତ୍ରେୟ ତପଚାରୀ ॥ ୧୩ ॥
ଶୁଣିମା ହୋଉ ଆହେ ତପସ୍ୱୀ ଚୂଡ଼ାମଣି ।
ଅମୃତରୁ ମଧୁର ଲାଗିଲା ତୁମ୍ଭ ବାଣୀ ॥ ୧୪ ॥

ସଂସାର ସର୍ଜନାକୁ ଉଚିତ ଯେତେ କଥା ।
ସମସ୍ତ କହି ମୋର ଫେଡ଼ିଲ ମନବ୍ୟଥା ।। ୧୫ ।।
ହୃଦୟରେ ଯେତେକ ସଂଶୟ ଥିଲା ମୋର ।
ଉତ୍ତମ କରି ସବୁ କହିଲ ମୁନିବର ।। ୧୬ ।।
ଜଗତର ସର୍ଜନା ପଢ଼ିବା ଅଂଶ ଶୁଣି ।
ପବିତ୍ର ହେଲି ଆଜ ମୋ ପରା ପାପୀ ପ୍ରାଣୀ ।। ୧୭ ।।
ପ୍ରଥମ ଅଂଶେ ଯାହା ପଚାରି ଥିଲି ମୁହିଁ ।
କଳ୍ପଦ୍ରୁମ ପରାଏ ସମସ୍ତ ଦେଲ କହି ।। ୧୮ ।।
ଏବେ ମଧ ସୁମରି ତୁମ୍ଭର ସେ ବଚନ ।
ଶୁଣିମାକୁ ଶରଧା କରିଛି ମୋର ମନ ।। ୧୯ ।।
ଆହେ ମୁନିତିଳକ ସଂଶୟ ଫେଡ଼ ମୋର ।
ତୁମ୍ଭେ ଯେ ଏ ଚରିତ ବିସ୍ତାରି କହିପାର ।। ୨୦ ।।
ଉତ୍ତାନପାଦ ଏକ ଆରକ ପ୍ରିୟବ୍ରତ ।
ଏ ରୂପେ ସ୍ୱାୟମ୍ଭୁବ ମନୁଙ୍କ ବେନିସୁତ ।। ୨୧ ।।
ଉତ୍ତାନପାଦଙ୍କର କୁମର ଧ୍ରୁବରାଜା ।
ଆପଣେ ରମାନାଥ ଘେନିଲେ ଯାର ପୂଜା ।। ୨୨ ।।
ଏକଥା ମୋତେ ଯାହା କହିଲ ତପୋଧନ ।
ତାହା ଶୁଣି ସନ୍ତୋଷ ହୋଇଲା ମୋର ମନ ।। ୨୩ ।।
ପ୍ରିୟବ୍ରତ ରାଜାଙ୍କ ସନ୍ତତି ଯେତଂମାନେ ।
ସେ କଥା ଯେ ପ୍ରକାଶ ନ କଲ ତୋଷମନେ ।। ୨୪ ।।
ସେ ଘେନି ପଚାରୁଛି ତପସ୍ୱିନିଶାକର ।
ଶୁଣିମାକୁ ବହୁତ ଶରଧା ଅଛି ମୋର ।। ୨୫ ।।
ପ୍ରିୟବ୍ରତ ରାଜାଙ୍କ ଅନ୍ୱୟ ଖ୍ୟାତ କରି ।
ସନ୍ଦେହ ତରୁ ମୋର ଛେଦ ହେ ତପଚାରି ।। ୨୬ ।।
ପ୍ରସନ୍ନ ହୋଇଣ ମୁନି କହିବାହୋଉ ମୋତେ ।
ତୁମ୍ଭ ବିନା କେ ଅବା କହିବ ଏ ଜଗତେ ।। ୨୭ ।।
ପ୍ରିୟବ୍ରତ ରାଜାଙ୍କ ଅନ୍ୱୟ କଥା କହି ।
ତୁମ୍ଭେ ଏକା ମୋହର ସନ୍ଦେହ ଦିଅ ଦହି ।। ୨୮ ।।
ମୈତ୍ରେୟଙ୍କ ବଦନୁ ଏମନ୍ତ କଥାଶୁଣି ।
କହନ୍ତି ପରାଶର ପୀୟୁଷତୁଲ୍ୟ ବାଣୀ ।। ୨୯ ।।
ଶୁଣ ହେ ମୁନିକୁଳକମଳଛାୟାକାନ୍ତ ।
ତୁମ୍ଭେ ଯାହା ପୁଛିଲ କହିବା ସେ ଚରିତ ।। ୩୦ ।।
କନ୍ୟା ବୋଲି କର୍ଦ୍ଦମ ଋଷିଙ୍କ ନିଜ ସୁତା ।
ପ୍ରିୟବ୍ରତ ରାଜାଙ୍କୁ ଦେଲେ ଯେ ସେ ଦୁହିତା ।। ୩୧ ।।

ସେ କନ୍ୟା ବିଭା ହେଲେ ନୃପତି ଅଳଙ୍କାର ।
ବେନି କନ୍ୟା ଉତ୍ପନ୍ନ ହୋଇଲେ ତାହାଙ୍କର ।। ୩୨ ।।
ସମ୍ରାଟ ମୁଖୀ ବୋଲି ଯେ ଯଉଂ ବେନିସୁତା ।
ଚାହିଁଲା ମାତ୍ରେ ଟଳି ପଡ଼ିବେ ଉର୍ଦ୍ଧ୍ୱରେତା ।। ୩୩ ।।
ସେ ବେନି କନ୍ୟା ଅନ୍ତେ ଜନ୍ମିଲେ ଦଶପୁତ୍ର ।
ରାଜାଙ୍କର ସେମାନେ ଅଟନ୍ତି ପୁଣ୍ୟମାତ୍ର ।। ୩୪ ।।
ସେ ଯଉଂ ପୁତ୍ରମାନେ ତାହାଙ୍କୁ ଚାହିଁକରି ।
ପ୍ରିୟବ୍ରତ ନୃପତି ମଣନ୍ତି ପ୍ରାଣପରି ।। ୩୫ ।।
ପ୍ରଜ୍ଞାବଳ ବିନୟ ଏମନ୍ତେ ଯେତେ ଗୁଣ ।
ସେ ପୁତ୍ରମାନଙ୍କର ଅଟନ୍ତି ଆଭରଣ ।। ୩୬ ।।
ଜଗତରେ ବିଖ୍ୟାତ ସେ ଯଉଂ ପୁତ୍ରମାନେ ।
ତାହାଙ୍କର ନାମ ଏବେ ଶୁଣ ସାବଧାନେ ।। ୩୭ ।।
ଅଗ୍ନିଧ୍ର ଅଗ୍ନିବାହୁ ସବନ ବପୁଷ୍ମାନ ।
ଭବ୍ୟ ମେଧାତିଥି ଯେ ତଦନ୍ତେ ଦ୍ୟୁତିମାନ ।। ୩୮ ।।
ବିଦ୍ୟମାନ ଏମନ୍ତେ ରାଜାର ନବସୁତ ।
ଜ୍ୟୋତିଷ୍ମାନ କୁମର ପ୍ରାନ୍ତରେ ହେଲା ଜାତ ।। ୩୯ ।।
ଜ୍ୟୋତିଷ୍ମାନ ବୋଲିବା ଏ ଯଉଂ ନାମ ଗୋଟି ।
ତେଜକୁ ଅନାଇଲେ ତାଙ୍କୁ ସେ ଅଛି ଘଟି ।। ୪୦ ।।
ଏମନ୍ତେ ପ୍ରିୟବ୍ରତ ରାଜାଙ୍କ ନିଜସୁତ ।
ବଳବୀର୍ଯ୍ୟମାନଙ୍କେ ସମସ୍ତେ ଅତିକ୍ଷାତ ।। ୪୧ ।।
ତହିଁରେ ପୁତ୍ର ମେଧା ଆବର ଅଗ୍ନିବାହୁ ।
ସଂସାରକୁ ସେ ତିନି ତେଜିଲେ ଚାହୁଁ ଚାହୁଁ ।। ୪୨ ।।
ଜାତିସ୍ମର ପଣରେ ସମସ୍ତ କଥା ହେଜି ।
କଳଙ୍କ ଗଲାପରି ରାଜ୍ୟକୁ ଦେଲେ ତେଜି ।। ୪୩ ।।
ନୃପତି ହେବା ଇଚ୍ଛା ନୋହିଲା ତାହାଙ୍କର ।
ଯୋଗରେ ଏକା ମାତ୍ର ମାତିଲେ ନିରନ୍ତର ।। ୪୪ ।।
ଏ ସଂସାର ମୋହର ବୋଲିବା ଯଉଂ କଥା ।
ଶୁଣିଲେ ସେମାନଙ୍କୁ ଲାଗଇ ମହାବ୍ୟଥା ।। ୪୫ ।।
ମନରେ ଅହଂକାର ନ ଥାଇ କେତେବେଳେ ।
ଯୋଗକୁ ପ୍ରାଣପରି ମଣନ୍ତି ସବୁକାଳେ ।। ୪୬ ।।
ଫଳକୁ ମନୋରଥ ନ ଥାଇ ତାହାଙ୍କର ।
ମିଥ୍ୟା ବୋଲି କେବଳ ବୋଲନ୍ତି ଏ ସଂସାର ।। ୪୭ ।।
ଏମନ୍ତେ ବୋଲି ମହାଯୋଗୀ ହେଲେ ଯେ ତିନିସୁତ ।
କ୍ଷତ୍ରିୟ ଧର୍ମେ ତହୁଁ ରହିଲେ ଆଉ ସାତ ।। ୪୮ ।।

ସେ ଯେଉଁ ସାତ ପୁତ୍ର ତାହାଙ୍କୁ ନରପତି ।
ସାତଭାଗ କରି ଯେ ସମର୍ପି ଦେଲେ କ୍ଷିତି ।। ୪୯ ।।
ସେ ଦିନୁ ବସୁନ୍ଧରା ହୋଇଲା ସାତଦ୍ୱୀପ ।
ଦ୍ୱୀପକରେ କୁମର ଗୋଟିଏ ହେଲେ ନୃପ ।। ୫୦ ।।
ଜମ୍ବୁଦ୍ୱୀପେ ଅଗ୍ନିଧ୍ର ସୁତଙ୍କୁ ରାଜା କଲେ ।
ପିତାଙ୍କ ଆଦେଶରେ ସେ ତହିଁ ପ୍ରଭୁ ହେଲେ ।। ୫୧ ।।
ମେଧାତିଥି ନାମରେ ରାଜାର ଯେଉଁ ସୁତ ।
ପ୍ଲକ୍ଷଦ୍ୱୀପେ ତାହାଙ୍କୁ ରଖିଲେ ପ୍ରିୟବ୍ରତ ।। ୫୨ ।।
ବପୁଷ୍ମାନ ସୁତକୁ ଶାଲ୍ମଳୀଦ୍ୱୀପ ଦେଲେ ।
ଅଭିଷେକ ହୋଇ ସେ ତହିଁରେ ବିଳସିଲେ ।। ୫୩ ।।
କୁଶଦ୍ୱୀପେ ନୃପତି ହୋଇଲେ ଜ୍ୟୋତିଷ୍ମାନ ।
କ୍ରୌଞ୍ଚଦ୍ୱୀପେ ପ୍ରଭୁତ୍ୱ ପାଇଲେ ଦ୍ୟୁତିମାନ ।। ୫୪ ।।
ଶାକଦ୍ୱୀପେ ଭବ୍ୟ ଯେ ହୋଇଲେ ଦଣ୍ଡଧାରୀ ।
ପୁଷ୍କରଦ୍ୱୀପେ ହୋଇଲେ ସର୍ବ ଅଧିକାରୀ ।। ୫୫ ।।
ଏମନ୍ତ ସାତଗୋଟି ପୁତ୍ରଙ୍କୁ ପ୍ରିୟବ୍ରତ ।
ଅବନୀ ବାଣ୍ଟିଦେଲେ ଶୁଣ ହେ ତପୋବନ୍ତ ।। ୫୬ ।।
ଅଗ୍ନିଧ୍ର ନାମେ ଯେଉଁ ଅବନୀ ଅଳଙ୍କାର ।
ଜମ୍ବୁଦ୍ୱୀପେ ଆନନ୍ଦେ ପାଳନ୍ତି ରାଜ୍ୟଭାର ।। ୫୭ ।।
ସେ ଯେଉଁ ନୃପ ତାଙ୍କ ବୀର୍ଯ୍ୟରୁଁ ହୋଇ ଜାତ ।
ନବଗୋଟି କୁମର ଜଗତେ ହେଲେ ଖ୍ୟାତ ।। ୫୮ ।।
ପିତାମହ ସମାନ ସେ ଯେଉଁ ନବପୁତ୍ର ।
ସେ ପୁତ୍ରମାନଙ୍କର ମହିମା ଅତିଚିତ୍ର ।। ୫୯ ।।
ପ୍ରଥମ ପୁତ୍ର ନାଭି ଦ୍ୱିତୀୟ କିଂପୁରୁଷ ।
ତୃତୀୟ ପୁତ୍ର ନାମ ଅଟଇ ହରିବର୍ଷ ।। ୬୦ ।।
ଚତୁର୍ଥ ନନ୍ଦନକୁ ବୋଲନ୍ତି ଇଳାବୃତ ।
ରମ୍ୟ ବୋଲି ବୋଲାଇ ପଞ୍ଚମ ଯେଉଁ ସୁତ ।। ୬୧ ।।
ଷଷ୍ଠପୁତ୍ର ନାମ ଯେ ଅଟଇ ହିରଣ୍ମାନ ।
କୁରୁନାମେ ସପ୍ତମ କୁମର ଶୋଭାବନ ।। ୬୨ ।।
ଅଷ୍ଟମରେ ଭଦ୍ରାଶ୍ୱନ ନବମେ କେତୁମାଳ ।
ଜମ୍ବୁଦ୍ୱୀପେ ଏମାନେ ହୋଇଲେ ମହୀପାଳ ।। ୬୩ ।।
ଉତ୍ତମ ଚରିତରେ ଏ ଯେଉଁ ନବସୁତ ।
ପିତାର ଆଜ୍ଞାପାଳି ବଞ୍ଚନ୍ତି ଅବିରତ ।। ୬୪ ।।
ଜମ୍ବୁଦ୍ୱୀପେ ସେ ଯେଉଁ ଅଗ୍ନିଧ୍ର ନରପତି ।
ନବଖଣ୍ଡ କରି ଯେ ପୁତ୍ରଙ୍କୁ ଦେଲେ କ୍ଷିତି ।। ୬୫ ।।

ସେଦିନୁ ନବଭାଗ ହୋଇଲା ଜମ୍ବୁଦ୍ୱୀପ ।
ଶୁଣହେ ମୈତ୍ରେୟ ଯେ ଯହିଁରେ ହେଲା ନୃପ ॥ ୬୬ ॥
ସମସ୍ତଙ୍କ ଦକ୍ଷିଣ ଯେବଣ ହିମବର୍ଷ ।
ନାଭିଙ୍କି ଦେଲେ ତାହା ନୃପତି ଅବତଂସ ॥ ୬୭ ॥
ହିମଗିରି ଥିବାରୁ ତାହାକୁ ହିମ ବୋଲି ।
ନାଭି ତହିଁ ବସିଲେ ପିତାଙ୍କ ଆଜ୍ଞାପାଳି ॥ ୬୮ ॥
ହେମକୁଟ ନାମକୁ ବହଇ ଯେଉଂ ବର୍ଷ ।
ତହିଁରେ ନରପତି ହୋଇଲେ କିଂପୁରୁଷ ॥ ୬୯ ॥
ସେ ବର୍ଷ ମଧେ ଶୋଭା ଦିଶଇ ହେମକୂଟ ।
କିଂପୁରୁଷ ପୁତ୍ରକୁ ବାନ୍ଧିଲେ ତହିଁ ପାଟ ॥ ୭୦ ॥
ନିଷଧବର୍ଷେ ହରିବର୍ଷଙ୍କୁ ରାଜା କଲେ ।
ନିଷଧଗିରି ତହିଁ ବସଇ ସବୁକାଳେ ॥ ୭୧ ॥
ତାହାର ମଧେ ଅଛି କନକ ପରବତ ।
ସେ ବର୍ଷରେ ନୃପତି ହୋଇଲେ ଇଳାବୃତ ॥ ୭୨ ॥
ନୀଳବର୍ଷେ ରମ୍ୟ ଯେ ହୋଇଲେ ଦଣ୍ଡଧାରୀ ।
ସେ ବର୍ଷ ମଧେ ଶୋଭା ଦିଶଇ ନୀଳଗିରି ॥ ୭୩ ॥
ଶ୍ୱେତବର୍ଷେ ନୃପତି ହୋଇଲେ ହିରଣ୍ୱାନ ।
ଶ୍ୱେତଗିରି ତହିଁ ଯେ ଦିଶଇ ଶୋଭାବନ ॥ ୭୪ ॥
କୁରୁ ଯେ ଶୃଙ୍ଗବାନ ବର୍ଷରେ ହେଲା ରାଜା ।
ସକଳ ନରନାଥ କରନ୍ତି ପାଦପୂଜା ॥ ୭୫ ॥
ଯେବଣ ବର୍ଷେ କୁରୁ ହୋଇଲେ ଦଣ୍ଡଧର ।
ଶୃଙ୍ଗବାନ ଅଚଳ ତହିଁରେ ମନୋହର ॥ ୭୬ ॥
ମାଲ୍ୟବାନ ବର୍ଷ ଯେ ମେରୁଙ୍କ ପୂର୍ବେସ୍ଥିତ ।
ସେ ବର୍ଷରେ ଭଦ୍ରାଶ୍ୱ ହୋଇଲେ ନରନାଥ ॥ ୭୭ ॥
ମାଲ୍ୟବାନ ନାମରେ ଯେବଣ ମହୀଧର ।
ସେ ବରଷ ସନ୍ତତେ ଦିଶଇ ମନୋହର ॥ ୭୮ ॥
ପଶ୍ଚିମେ ଯେଉଂ ଗନ୍ଧମାଦନ ବର୍ଷ ଅଛି ।
ଜରାବ୍ୟାଧି ସନ୍ତାପ ତହିଁରେ ନାହିଁ କିଛି ॥ ୭୯ ॥
ସେ ବର୍ଷରେ ନୃପତି ହୋଇଲେ କେତୁମାଳ ।
ତହିଁରେ ଅଛି ଗନ୍ଧମାଦନ ନାମେ ଶୈଳ ॥ ୮୦ ॥
ବୋଲନ୍ତି ପରାଶର ଶୁଣ ହେ ତପୋଚାରି ।
ଏମନ୍ତେ କୁମରଙ୍କୁ ଅବନୀ ବାଣ୍ଟିକରି ॥ ୮୧ ॥
ନବଖଣ୍ଡେ ନୃପତି କରାଇ ନବସୁତ ।
ତପସ୍ୟା କରିଗଲେ ଅଗ୍ନିଧ୍ର ନରନାଥ ॥ ୮୨ ॥

ଶାଳଗ୍ରାମ କ୍ଷେତ୍ରରେ ପ୍ରବେଶ ହୋଇ କରି ।
ଦାରୁଣ ତପ କଲେ ଆପଣେ ଦଣ୍ଡଧାରୀ ॥ ୮୩ ॥
ଶୁଣ ହେ ମୁନିକୁଳକୁମୁଦନିଶାପତି ।
ଅଗ୍ନିଧ୍ରନୃପତି ଯେ ପୁତ୍ରଙ୍କୁ ଦେଲେ କ୍ଷିତି ॥ ୮୪ ॥
ନାଭିଙ୍କି ଦେଲା ଖଣ୍ଡ ତହିଁରେ କର୍ମଭୂମି ।
ଏ ଘେନି ଜ୍ୟେଷ୍ଠପୁତ୍ର ହୋଇଲେ ତାର ସ୍ୱାମୀ ॥ ୮୫ ॥
ଯଉଂ ଲୋକ ଯେବଣ କର୍ମକୁ ଆଚରଇ ।
ନାଭିଖଣ୍ଡ ପ୍ରସାଦେ ସେ ତାହା ଅରଜଇ ॥ ୮୬ ॥
ମଘବା ପଦ ହେଲେ ଲଭଇ ସେ ଅବଶ୍ୟ ।
ଏଣୁ କରି ନାଭିଙ୍କି ମିଳିଲା ଜ୍ୟେଷ୍ଠ ଅଂଶ ॥ ୮୭ ॥
କିଂପୁରୁଷ ପାଇବା ଖଣ୍ଡକୁ ଆଦି କରି ।
ଆର ଯେ ଆଠଖଣ୍ଡ ରହିଲା ତପୋଚାରି ॥ ୮୮ ॥
ସେ ଖଣ୍ଡମାନଙ୍କର ସ୍ୱଭାବସିଦ୍ଧ ଏହି ।
ସୁଖ ବିନା ତହିଁରେ ଦୁଃଖର ଲେଶ ନାହିଁ ॥ ୮୯ ॥
ସେ ଯଉଂ ଖଣ୍ଡମାନେ ତହିଁରେ ଯେତେ ନର ।
ଅକାଳରେ ମରଣ ନୁହଇ ତାହାଙ୍କର ॥ ୯୦ ॥
ସମସ୍ତେ ନବଯୁବା ବୟସେ ବିରାଜନ୍ତି ।
ଜରାମୃତ୍ୟୁ ଦୁହିଁଙ୍କି ନୁହଇ କାର ଭୀତି ॥ ୯୧ ॥
ଅଧର୍ମ ଧର୍ମ ବେନି ତହିଁରେ ଆଉ ନାହିଁ ।
ଏ ଘେନି ଧର୍ମ ଏକା ସହଜ ଅଛି ହୋଇ ॥ ୯୨ ॥
ସମାନ ଆଚରଣ କରନ୍ତି ସର୍ବ ପ୍ରାଣୀ ।
ଉଣା ଅବା ଅଧିକ ଅଇଲା କାହୁଁ ପୁଣି ॥ ୯୩ ॥
ଉତ୍ତମ ଅଧମ ଯେ ମଧ୍ୟମ ମିଶି ତିନି ।
ଏମାନଙ୍କ ତହିଁ ନାହିଁ ଶୁଣ ହେ ମହାମୁନି ॥ ୯୪ ॥
ସତ୍ୟଆଦି ଯୁଗର ଅବସ୍ଥା ନାହିଁ ତହିଁ ।
ଏମନ୍ତେ ଅଷ୍ଟବର୍ଷ ନିରତେ ବିରାଜଇ ॥ ୯୫ ॥
ହିମବର୍ଷେ ନାଭି ଯେ ହୋଇଲେ ନରପତି ।
ସେ ଯଉଂ ମହାତ୍ମା ସେ ଜାଣନ୍ତି ସବୁନୀତି ॥ ୯୬ ॥
ମରୁ ନାମେ ଯେବଣ ତାହାଙ୍କ ପ୍ରିୟବତୀ ।
ତାଙ୍କ ଗର୍ଭୁଁ ଋଷଭ ହୋଇଲେ ଉତପତି ॥ ୯୭ ॥
ଅତ୍ୟନ୍ତ ତେଜବନ୍ତ ଋଷଭ ମହାରାଜା ।
ସକଳ ମହୀପତି କରନ୍ତି ପାଦପୂଜା ॥ ୯୮ ॥
ଋଷଭ ବୋଲି ଯଉଂ ନୃପତିନିଶାକାନ୍ତ ।
ଭରତ ନାମେ ଜନ୍ମ ହୋଇଲେ ତାଙ୍କ ସୁତ ॥ ୯୯ ॥

୯୬. (କ) ପୋଥିରେ ଏହାର ଦ୍ୱିତୀୟ ପାଦଟି ନାହିଁ ।

ଶତେଗୋଟି କୁମର ତଦନ୍ତେ ଜାତ ହେଲେ ।
ଭରତ ଏକା ସତହିଁ ନୃପତି ପଣ କଲେ ॥ ୧୦୦ ॥
ଶତେଗୋଟି ସୁତରେ ଜ୍ୟେଷ୍ଠ ଯେ ସେ ଭରତ ।
ସେ ଘେନି ନାଭି ଖଣ୍ଡେ ହୋଇଲେ ନରନାଥ ॥ ୧୦୧ ॥
ପୁତ୍ରଠାରୁଁ ଅଧିକେ ପ୍ରଜାଙ୍କୁ ପ୍ରତିପାଳି ।
ରାଜନୀତି ନତେଜି ବଞ୍ଚନ୍ତି ମହାବଳୀ ॥ ୧୦୨ ॥
ଯେତେବେଳେ ଭରତ ଅବନୀପତି ହେଲେ ।
ନିଜଧର୍ମ ପ୍ରମାଣେ ବିବିଧ ଯାଗ କଲେ ॥ ୧୦୩ ॥
ଏମନ୍ତେ ଭରତଙ୍କ ମସ୍ତକେ ଶାଢ଼ିବାନ୍ଧି ।
ତପସ୍ୟା କରିଗଲେ ନୃପତି କଳାନିଧି ॥ ୧୦୪ ॥
ପୁତ୍ରଙ୍କୁ ରାଜା କରି ଋଷଭ ନରନାଥ ।
ପୁଲସ୍ତ୍ୟଙ୍କ ଆଶ୍ରମେ ହୋଇଲେ ଉପଗତ ॥ ୧୦୫ ॥
ବାନପ୍ରସ୍ଥ ବିଧାନେ ବିନୟବ୍ରତ କରି ।
ବେଦମନ୍ତ୍ରେ ତପସ୍ୟା କଲେ ଯେ ଦଣ୍ଡଧାରୀ ॥ ୧୦୬ ॥
ଦାରୁଣ ତପ ବଳେ ଅତ୍ୟନ୍ତ ଖିନ୍ନ ହେଲେ ।
ପାଷାଣ ଖଣ୍ଡମାନ କେବଳ ଗ୍ରାସ କଲେ ॥ ୧୦୭ ॥
ଇନ୍ଦ୍ରିୟଗଣ ସଙ୍ଗେ ଶରୀର ଶୁଖିଗଲା ।
ତଥାପି ରାଜାଙ୍କର ସମାଧି ନ ଭାଜିଲା ॥ ୧୦୮ ॥
ସେହି ଯୋଗମାର୍ଗରେ ନୃପତିଅଳଙ୍କାର ।
ତନୁ ତେଜି ବ୍ରହ୍ମଙ୍କୁ ପାଇଲେ ତତପର ॥ ୧୦୯ ॥
ନାଭିଖଣ୍ଡେ ଭରତ ହେଲେ ଯେ ନରନାଥ ।
ଭାରତବର୍ଷ ବୋଲି ସେଦିନୁ ହେଲା ଖ୍ୟାତ ॥ ୧୧୦ ॥
ବନକୁ ଗଲାବେଳେ ପୁତ୍ରକୁ ରାଜ୍ୟ ଦେଇ ।
ଋଷଭ ନୃପତି ଯେ ତପସ୍ୟା କଲେ ଯାଇ ॥ ୧୧୧ ॥
ପିତାଙ୍କ ନୀତି ରଖି ଭରତ ମହାରାଜା ।
ପୁତ୍ର ପରିପାଳନା କରନ୍ତି ନିଜପ୍ରଜା ॥ ୧୧୨ ॥
ସେ ଯଉଂ ଭରତ ସେ ପରମ ଜ୍ଞାନବନ୍ତ ।
ସୁମତି ନାମେ ତାଙ୍କ ତନୟ ହେଲା ଜାତ ॥ ୧୧୩ ॥
ଅତ୍ୟନ୍ତ ଧର୍ମପ୍ରିୟ ସୁମତି ନିରନ୍ତର ।
ପିତାଙ୍କୁ ସେବାକରି ବଞ୍ଚନ୍ତି ନିରନ୍ତର ॥ ୧୧୪ ॥
କେତେଦିନେ ଭରତ ପୁତ୍ରଙ୍କୁ ରାଜ୍ୟ ଦେଇ ।
ଶାଳଗ୍ରାମ କ୍ଷେତ୍ରରେ ତପସ୍ୟା କଲେ ଯାଇଂ ॥ ୧୧୫ ॥
ରାଜତ୍ୱ କଲାବେଳେ ଭରତ ଦଣ୍ଡଧାରୀ ।
ନିଗମମତେ ଯାଗମାନଙ୍କୁ ଥିଲେ କରି ॥ ୧୧୬ ॥

ତେବେହେଲେ ସନ୍ତୋଷ ନୋହିଲା ତାହାଙ୍କର ।
ତପସ୍ୟା କରିବାକୁ ଚଳିଲେ ଦଣ୍ଡଧର ॥ ୧୧୭ ॥
ସୁମତିଙ୍କି ସକଳ ସମ୍ପତ୍ତି ସମର୍ପିଲେ ।
ଅନେକ ଦିନ ଯାଏ ଦାରୁଣ ତପ କଲେ ॥ ୧୧୮ ॥
ପରମଯୋଗ ସାଧି ନୃପତି କଳାକର ।
ବ୍ରହ୍ମ ଏକା ଭାବନା କରନ୍ତି ନିରନ୍ତର ॥ ୧୧୯ ॥
ତଦନ୍ତେ ଯୋଗବଳେ ତନୁକୁ ତ୍ୟାଗ କରି ।
ପରଲୋକ ହୋଇଲେ ଭରତ ଦଣ୍ଡଧାରୀ ॥ ୧୨୦ ॥
ଶାଳଗ୍ରାମ କ୍ଷେତ୍ରରେ କଲେ ଯେ ତନୁ ତ୍ୟାଗ ।
ସେ ଘେନି ଦ୍ୱିଜକୁଳେ ଜନ୍ମିଲେ ମହାଭାଗ ॥ ୧୨୧ ॥
ମହାଯୋଗୀମାନଙ୍କ ଅଗ୍ରଣୀ ଯଡଂମାନେ ।
ତାହାଙ୍କ ବଂଶେ ଯାଇଂ ଜନ୍ମିଲେ କେତେଦିନେ ॥ ୧୨୨ ॥
ବୋଲନ୍ତି ପରାଶର ଶୁଣ ହେ ତପୋଚାରି ।
ସୁମତିଙ୍କି ଭରତ କଲେ ଯେ ଦଣ୍ଡଧାରୀ ॥ ୧୨୩ ॥
ତେଜବନ୍ତ ସେ ଯଡଂ ସୁମତି ନରନାଥ ।
ଇନ୍ଦ୍ରଦ୍ୟୁମ୍ନ ନାମରେ ଜନ୍ମିଲେ ତାଙ୍କ ସୁତ ॥ ୧୨୪ ॥
ଇନ୍ଦ୍ରଦ୍ୟୁମ୍ନରାଜାଙ୍କ ତନୟ ହୋଇ କରି ।
ଜନ୍ମିଲେ ପରମେଷ୍ଠି ନାମରେ ଦଣ୍ଡଧାରୀ ॥ ୧୨୫ ॥
ପରମେଷ୍ଠି ନାମରେ ସେ ଯଡଂ ମହୀକାନ୍ତ ।
ପରିହାର ବୋଲି ଯେ ଜନ୍ମିଲେ ତାଙ୍କ ସୁତ ॥ ୧୨୬ ॥
ପରିହାର ନୃପତି ବୀର୍ଯ୍ୟରୁ ହୋଇ ଜାତ ।
ପ୍ରତିହର୍ତ୍ତା ହୋଇଲେ ଜଗତ ମଧ୍ୟେ ଖ୍ୟାତ ॥ ୧୨୭ ॥
ପ୍ରତିହର୍ତ୍ତା ରାଜାଙ୍କ ନନ୍ଦନ ହୋଇ କରି ।
ଭୁବ ନାମେ ବିଖ୍ୟାତ ହୋଇଲେ ଦଣ୍ଡଧାରୀ ॥ ୧୨୮ ॥
ଭୁବଙ୍କର ନନ୍ଦନ ଉଦ୍ଗୀଥ ନରନାଥ ।
ଉଦ୍ଗୀଥ ବୀର୍ଯେ ହେଲେ ପ୍ରସ୍ତାବୀ ନାମେ ସୁତ ॥ ୧୨୯ ॥
ପ୍ରସ୍ତାବ ନୃପତିଙ୍କ ତନୟ ପୃଥୁରାଜା ।
ସକଳ ମହୀପତି ମଧରେ ମହାତେଜା ॥ ୧୩୦ ॥
ପୃଥୁ ନୃପତିଳକ ବୀର୍ଯ୍ୟରେ ହୋଇ ଜାତ ।
ନକ୍ତ ନାମେ ନୃପତି ଜଗତେ ହେଲେ ଖ୍ୟାତ ॥ ୧୩୧ ॥
ନକ୍ତଙ୍କର ତନୟ ହୋଇଲେ ଗୟରାଜା ।
ନରପତି ମଣ୍ଡଳେ ପାଇଲେ ପାଦପୂଜା ॥ ୧୩୨ ॥
ନରନାମେ ତନୟ ଜନ୍ମିଲେ ଗୟଙ୍କର ।
ସେ ନର ନରନାଥ ଇନ୍ଦ୍ରଙ୍କୁ ପଟାନ୍ତର ॥ ୧୩୩ ॥

ନରନୃପ ଶାର୍ଦ୍ଦୁଳ ବୀର୍ଯ୍ୟରେ ହୋଇ ଜାତ ।
ବିରାଟ ମହୀପତି ଜଗତେ ହେଲେ ଖ୍ୟାତ ॥ ୧୩୪ ॥
ବିରାଟଙ୍କ ବୀର୍ଯ୍ୟରେ ଉତ୍ପନ୍ନ ହୋଇକରି ।
ମହାବୀର୍ଯ୍ୟ ନୃପତି ହୋଇଲେ ଦଣ୍ଡଧାରୀ ॥ ୧୩୫ ॥
ସେ ଯେଉଂ ମହାବୀର୍ଯ୍ୟ ତାଙ୍କ ନିଜପୁତ୍ର ।
ଧୀମାନ ବୋଲି ହେଲେ ଲୋକର ସ୍ତୁତିପାତ୍ର ॥ ୧୩୬ ॥
ଧୀମାନ ମହୀପତି ବୀର୍ଯ୍ୟରେ ଅବତରି
ମହାନ୍ତ ନାମେ ଖ୍ୟାତ ହୋଇଲେ ଦଣ୍ଡଧାରୀ ॥ ୧୩୭ ॥
ମହାନ୍ତଙ୍କ ତନୟ ମନସ୍ୱୀ ନରନାଥ ।
ତ୍ୱଷ୍ଟା ନାମେ ତାହାଙ୍କ ତନୟ ହେଲେ ଖ୍ୟାତ ॥ ୧୩୮ ॥
ତ୍ୱଷ୍ଟାଙ୍କର ତନୟ ବୀରଜ ମହୀପତି ।
ବସୁନ୍ଧରା ମଣ୍ଡଳରେ ବିଦିତ ଯା କୀର୍ତ୍ତି ॥ ୧୩୯ ॥
ବୀରଜ ନୃପତିଙ୍କ ନନ୍ଦନ ହେଲେ ରଜ ।
ସଚରାଚର ଯାକ ବ୍ୟାପିଲା ତାଙ୍କ ତେଜ ॥ ୧୪୦ ॥
ସେ ଯେହୁଁ ରଜନାମେ ନୃପତି ଅଳଙ୍କାର ।
ଶତେ ଗୋଟି ତନୟ ଜନ୍ମିଲେ ତାହାଙ୍କର ॥ ୧୪୧ ॥
ଯେବଣ ଶତପୁତ୍ର ହୋଇଲେ ଉତପତି ।
ସେମାନଙ୍କ ମଧରେ ପ୍ରଧାନ ବିଶ୍ୱଗ୍‌ଜ୍ୟୋତି ॥ ୧୪୨ ॥
ବିଶ୍ୱଗ୍‌ଜ୍ୟୋତି ସହିତେ ସେ ଯେଉଂ ଶତେ ସୁତ ।
ତାହାଙ୍କ ତହୁଁ ଏକା ପ୍ରଜାଏ ହେଲେ ଜାତ ॥ ୧୪୩ ॥
ସେମାନେ ଯେତେବେଳେ ହୋଇଲେ ଉତପତି ।
ଲୀଳାମାତ୍ର ମଣ୍ଡିଲେ ଭାରତବର୍ଷ କ୍ଷିତି ॥ ୧୪୪ ॥
ନବଖଣ୍ଡ ସେ ଯେଉଂ ଭାରତବର୍ଷ ମହୀ ।
ତହିଂରେ ବିହରିଲେ ଆନନ୍ଦମନେ ଯାଇଂ ॥ ୧୪୫ ॥
ବୋଲନ୍ତି ପରାଶର ଶୁଣ ହେ ତପୋବନ୍ତ ।
ପ୍ରିୟବ୍ରତ ରାଜାଙ୍କ ବଂଶରେ ଯେତେଜାତ ॥ ୧୪୬ ॥
ସେହିମାନେ ପୂର୍ବରେ ଅବନୀପତି ହେଲେ ।
ଭରତଖଣ୍ଡ ମହୀ ଆନନ୍ଦେ ଭୋଗ କଲେ ॥ ୧୪୭ ॥
ତଦନ୍ତରେ ଉତ୍ତାନପାଦଙ୍କ ବଂଶ ଯେତେ ।
ଭରତଖଣ୍ଡେ ରାଜା ହୋଇଲେ ସେ ସମସ୍ତେ ॥ ୧୪୮ ॥
ବୋଲନ୍ତି ପରାଶର ଶୁଣ ହେ ମହାଭାଗ ।
ସତ୍ୟ ତ୍ରେତା ଦ୍ୱାପର କଳି ଯେ ଚାରିଯୁଗ ॥ ୧୪୯ ॥
ଏ ଚାରିଯୁଗ ଯାକ ଗୋଟିଏ ହୋଇ କରି ।
ଯେତେବେଳେ ସମ୍ପୂର୍ଣ୍ଣ ହୋଇଲା ଏକସ୍ତୋରୀ ॥ ୧୫୦ ॥

ତେତିକି ଯୁଗଯାଏ ଅବନୀପତି ହୋଇ ।
ସେମାନେ ଭୋଗକଲେ ଭାରତବର୍ଷ ମହୀ ॥ ୧୫୧ ॥
ଶୁଣହେ ମୁନିକୁଳକମଳଦୀନମଣି ।
ତୁମ୍ଭର ପାଶେ ଏବେ କହିଲୁଂ ଯେତେ ବାଣୀ ॥ ୧୫୨ ॥
ଏସବୁ ସ୍ୱାୟମ୍ଭୁବମନୁଙ୍କ ନିଜ ବଂଶ ।
ଏହି ବଂଶ କେବଳ ଜଗତେ ପରକାଶ ॥ ୧୫୩ ॥
ବାରାହ କଳ୍ପେ ହେଲା ଯେବଣ ମନ୍ୱନ୍ତର ।
ତହିଁରେ ସ୍ୱାୟମ୍ଭୁବ କଲେ ଯେ ଅଧିକାର ॥ ୧୫୪ ॥
ସେହିଦିନୁ ଜଗତେ ପୂରିଛି ତାଙ୍କ ବଂଶ ।
ସର୍ବଶୁଭେ ପ୍ରଥମ ଅଧ୍ୟାୟ ହେଲା ଶେଷ ॥ ୧୫୫ ॥
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ପ୍ରିୟବ୍ରତ ନୃପତି ଅନ୍ୱୟ ହେଲା ଖ୍ୟାତ ॥ ୧୫୬ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୫୭ ॥

# ଦ୍ୱିତୀୟ ଅଧ୍ୟାୟ

ପରାଶର ବଚନେ ମୈତ୍ରେୟ ତପୋଧନ ।
ପଚାରନ୍ତି ଆନନ୍ଦେ ଉତ୍ଫୁଲ୍ଲ କରି ମନ ॥ ୧ ॥
ଶୁଣିମା ହେଉ ଆହେ ତପସ୍ୱୀ ନିଶାମଣି ।
ନିର୍ମଳ ସୁଧାପରି କହିଲ ଯେତେ ବାଣୀ ॥ ୨ ॥
ସେ କଥା ଶୁଣି ମୋର ସନ୍ତାପ ତୁଟିଗଲା ।
ତେବେ ହେଲେ କଦାପି ସନ୍ଦେହ ନ ଭାଗିଲା ॥ ୩ ॥
ସ୍ୱାୟମ୍ଭୁବମନୁଙ୍କ ଅନ୍ୱୟ ଖ୍ୟାତ କରି ।
ସନ୍ଦେହ ତରୁ ମୋର ଛେଦିଲ ତପୋଚାରି ॥ ୪ ॥
ଏବେ ମତେ ଅବନୀମଣ୍ଡଳ କଥା କହି ।
କଳୁଷ ତୁଳାରାଶି ତୁରିତେ ଦିଅ ଦହି ॥ ୫ ॥
ଏ ଯେତେ ବସୁମତୀ ଏଥିରେ ତପୋଧନ ।
ଦ୍ୱୀପ ବର୍ଷ ପର୍ବତ ସାଗର ନଦୀବନ ॥ ୬ ॥
ସୁରନର କିନ୍ନରମାନଙ୍କ ପୁର ଯେତେ ।
ଏ ସବୁ ମହାମୁନି କହିବା ହେଉ ମତେ ॥ ୭ ॥
ଅବନୀମଣ୍ଡଳର ପ୍ରମାଣ ଖ୍ୟାତକରି ।
ଆଜଠାରୁଂ ମୋର କୁଶଂକା ଦିଅସାରି ॥ ୮ ॥
ବସୁଧାର ଆଧାର ଅଟନ୍ତି ଯେତେମାନେ ।
କହିବା ହେଉ ମୁନି ଅତ୍ୟନ୍ତ ହୃଷ୍ଟ ମନେ ॥ ୯ ॥
କେମନ୍ତ ରୂପ ଧରି ଅଛି ଏ ବସୁମତୀ ।
କିପ୍ରକାରେ ଅବନୀ ଜଗତେ କଲା ସ୍ଥିତି ॥ ୧୦ ॥
ଏକଥାମାନ ସବୁ କହିବା ହେଉ ମତେ ।
ପବିତ୍ର ହେବି ମୁହିଁ ତୁମ୍ଭର ଉକତେ ॥ ୧୧ ॥
ମୈତ୍ରେୟଙ୍କ ବଦନୁ ଏମନ୍ତ କଥାଶୁଣି ।
ମନ୍ଦେ ହସି କହନ୍ତି ତପସ୍ୱୀ ଚୂଡ଼ାମଣି ॥ ୧୨ ॥
ଶୁଣିମା ହେଉ ଆହେ ମୈତ୍ରେୟ ତପୋଧନ ।
ଆଜ ମତେ ପୁଛିଲ ଯେତେକ କଥାମାନ ॥ ୧୩ ॥
ବିସ୍ତାର କରି ଯେବେ କହିବା ଏ ଚରିତ ।
ଶତେ ବର୍ଷ ବସିଲେ ପାଇବା ନାହିଁ ଅନ୍ତ ॥ ୧୪ ॥
ତଥାପି ହେଲେ କିଛି କହିବା ତୁମ୍ଭ ଆଗେ ।
ଶୁଣ ହେ ମହାଭାଗ ଅତ୍ୟନ୍ତ ଅନୁରାଗେ ॥ ୧୫ ॥
ଜମ୍ବୁପ୍ଲକ୍ଷଶାଲ୍ମଳୀ ତଦନ୍ତେ କୁଶକ୍ରୌଞ୍ଚ ।
ପୁଣି ଶାକ ପୁଷ୍କର ଦିଶନ୍ତି ଅତି ସଞ୍ଚ ॥ ୧୬ ॥

ଏ ଯେଉଁ ସାତ ଦ୍ୱୀପ କହିଲୁଁ ତପୋଚାରି ।
ସାତସିନ୍ଧୁ ଅଛନ୍ତି ପ୍ରତ୍ୟକ୍ଷେ ବେଢ଼ି କରି ॥ ୧୭ ॥
ଲବଣ ଇକ୍ଷୁ ସୁରା ଏ ତିନି ପାରାବାର ।
ଆବର ସର୍ପି ଦଧି ଏ ବେନି ମନୋହର ॥ ୧୮ ॥
ତଦନ୍ତେ ଦୁଗ୍ଧ ଜଳ ଅଟନ୍ତି ବେନି ସିନ୍ଧୁ ।
ସାବଧାନେ ଶୁଣ ହେ ମୁନୀନ୍ଦ୍ରକୁଳଇନ୍ଦୁ ॥ ୧୯ ॥
ଏ ସାତ ସିନ୍ଧୁ ସାତ ଦ୍ୱୀପକୁ ବେଢ଼ିକରି ।
ବିରାଜୁଛନ୍ତି ଦ୍ୱୀପମାନଙ୍କ ଜଳି ପରି ॥ ୨୦ ॥
ସମସ୍ତଙ୍କ ମଧ୍ୟରେ ଅଛି ଯେ ଜମ୍ବୁଦ୍ୱୀପ ।
ସେହି ଦ୍ୱୀପ କେବଳ ତାହାକୁ ଅନୁରୂପ ॥ ୨୧ ॥
ସେ ଯେଉଁ ଜମ୍ବୁଦ୍ୱୀପ କହିଲୁ ମୁନିବର ।
ପୂର୍ଣ୍ଣଚନ୍ଦ୍ର ଆକାରେ ଦିଶଇ ମନୋହର ॥ ୨୨ ॥
ସେହି ଜମ୍ବୁଦୀପକୁ ପରିଖା ପରକାରେ ।
ଲବଣ ପାରାବାର ବେଢ଼ିଛି ନିରନ୍ତରେ ॥ ୨୩ ॥
ସେ ଦ୍ୱୀପ ମଧ୍ୟେ ଅଛି କନକ ମହୀଧର ।
ସଂସାରେ ନାହିଁ ଆଉ ତାହାକୁ ପଟାନ୍ତର ॥ ୨୪ ॥
ଚଉରାଶୀ ସହସ୍ର ଯୋଜନ ଉଚ୍ଚ ହୋଇ ।
ଉପରକୁ ସେ ମେରୁ ସନ୍ତତେ ବିରାଜଇ ॥ ୨୫ ॥
ତଳେ ଷୋଳସହସ୍ର ଯୋଜନ ଥାଇକରି ।
ଏ ତାରକାରେ ଲକ୍ଷେଯୋଜନ ମେରୁଗିରି ॥ ୨୬ ॥
ମୂଳ ଷୋଳସହସ୍ର ଯୋଜନ ତା ବିସ୍ତାର ।
ମନୁଷ୍ୟ ହୋଇ ସଂଖ୍ୟା କରିବ କାହାଛାର ॥ ୨୭ ॥
ଉପରକୁ ବତିଶ ସହସ୍ର ଯୋଜନରେ ।
ମେରୁସ୍ଥଳି ବ୍ୟାପିଛି ମଣ୍ଡଳ ଆକାରରେ ॥ ୨୮ ॥
ଏଣୁ ମହୀପଦ୍ମର କର୍ଣ୍ଣିକା ଶୋଭା ବହି ।
ଧୁସ୍ତୁର ପୁଷ୍ପ ପରି ସେ ମେରୁ ବିରାଜଇ ॥ ୨୯ ॥
ନିଷଧ ହେମକୂଟ ହିମାଦ୍ରି ତିନି ଗିରି ।
ମେରୁଙ୍କର ଦକ୍ଷିଣେ ଅଛି ଯେ ତପଚାରି ॥ ୩୦ ॥
ଉତ୍ତରେ ନୀଳ ଶ୍ୱେତ ଆବର ଶୃଙ୍ଗବାନ ।
ଏ ତିନି ମହୀଧର ଦିଶନ୍ତି ଶୋଭାବନ ॥ ୩୧ ॥
ବର୍ଷ ଗିରି ସେମାନେ କନିଷ୍ଠ ମେରୁ ପରି ।
ଅଛନ୍ତି ବର୍ଷଙ୍କର ମର୍ଯ୍ୟାଦା ହୋଇ କରି ॥ ୩୨ ॥
ନାଭିଙ୍କି ପୁରୁଷଙ୍କ ସେ ଯେଉଁ ବେନିସ୍ଥାନ ।
ତାହାଙ୍କ ମଧେ ଶୋଭା ଦିଶଇ ହିମବାନ ॥ ୩୩ ॥

କିଂପୁରୁଷ ନୃପତି ଆବର ହରିବର୍ଷ ।
ଏମନ୍ତେ ବେନି ଗୋଟି ସେ ଯଙ୍ଗ ନରଈଶ ॥ ୩୪ ॥
ତାହାଙ୍କ ବେନିରାଜ୍ୟ ମଧରେ ଥାଇକରି ।
ହେମକୂଟ ନାମରେ ଶୋଭିତ ମହାଗିରି ॥ ୩୫ ॥
ହରିବର୍ଷ ନୃପତି ଆବର ଇଳାବୃତ ।
ଏ ବେନିଖଣ୍ଡ ମଧେ ନିଷଧ ପରବତ ॥ ୩୬ ॥
ଏହିପରି ମେରୁଙ୍କ ଉତ୍ତର ଭାଗେଥାଇ ।
ବେନି ଗୋଟି ପର୍ବତ ମହୀକି ଉଦ୍ଧରଇ ॥ ୩୭ ॥
ଇଳାବୃତ ରମ୍ୟ ଯେ ଏ ବେନି ଦଣ୍ଡଧାରୀ ।
ଏହାଙ୍କ ସୀମା ହେବା ପର୍ବତ ନୀଳଗିରି ॥ ୩୮ ॥
ରମ୍ୟ ହିରଣ୍ୟକ ଯେ ଏ ଦୁହେଂ ମହୀକାନ୍ତ ।
ଏ ଦୁହିଁଙ୍କ ସୀମାରେ ରହିବା ଗିରିଶ୍ୱେତ ॥ ୩୯ ॥
ହିରଣ୍ୱାନ କୁରୁ ଯେ ଏ ବେନି ଦଣ୍ଡଧାରୀ ।
ଶୃଙ୍ଗବାନ ପର୍ବତ ତାହାଙ୍କ ସୀମାକରି ॥ ୪୦ ॥
ଇଳାବୃତ ପୂର୍ବରେ ଭଦ୍ରାଶ୍ୱ ନାମେ ସ୍ଥାନ ।
ସେ ଦୁହିଙ୍କ ସୀମାରେ ରହିଛି ମାଲ୍ୟବାନ ॥ ୪୧ ॥
ସେହି ଇଳାବୃତଙ୍କ ପଶ୍ଚିମେ କେତୁମାଳ ।
ତାହାଙ୍କ ମଧେ ଗନ୍ଧମାଦନ ନାମେ ଶୈଳ ॥ ୪୨ ॥
ଅଲଂଘ୍ୟ ହେବା ଘେନି ସୀମାରେ ଥାଇକରି ।
ମର୍ଯ୍ୟାଦା ପର୍ବତ ଏ ଶୁଣ ହେ ତପୋଚାରି ॥ ୪୩ ॥
ମଣ୍ଡଳ ଆକୃତିରେ ଅଛି ଯେ ବସୁମତୀ ।
ମେରୁ ଗିରି କରିଛି ସେ ମହୀ ମଧେ ସ୍ଥିତି ॥ ୪୪ ॥
ସେ ମରୁଙ୍କ ଦକ୍ଷିଣେ ଉତ୍ତର ଭାଗେ ରହି ।
ନିଷଧ ନୀଳ ବେନି ଗିରି ଯେ ବିରାଜଇ ॥ ୪୫ ॥
ଅବନୀମଣ୍ଡଳର ମଧରେ ଥାଇ କରି ।
ଲକ୍ଷେ ଲକ୍ଷେ ଯୋଜନ ଲମ୍ବ ସେ ବେନିଗିରି ॥ ୪୬ ॥
ନିଷଧର ଦକ୍ଷିଣ ପାର୍ଶ୍ୱରେ ମୁନିବର ।
ହେମକୂଟ ନାମରେ ଯେବଣ ମହୀଧର ॥ ୪୭ ॥
ସେ ମହାଗିରି ନଉ ସହସ୍ର ଯୋଜନରେ ।
ଲମ୍ବ ହୋଇ କେବଳ ବ୍ୟାପିଛି ନିରନ୍ତରେ ॥ ୪୮ ॥
ହେମକୂଟ ଦକ୍ଷିଣ ପାର୍ଶ୍ୱରେ ହିମଗିରି ।
ଅଛି ଅଶିସହସ୍ର ଯୋଜନ ହୋଇ କରି ॥ ୪୯ ॥
ସେହିପରି ମେରୁଙ୍କ ଉତ୍ତରେ ଯଙ୍ଗ ନୀଳ ।
ତାହାର ଉତ୍ତରକୁ ଅଛି ଯେ ଶ୍ୱେତାଚଳ ॥ ୫୦ ॥

୩୯. (କ) ପୁତ୍ର ଏମନ୍ତେ ଯେ ରାଜାଙ୍କର ନବସୁତା

ସେ ଗିରି ମଧ୍ୟେ ନଉ ସହସ୍ର ଯୋଜନରେ ।
ହେମକୂଟ ପରାୟେ ବ୍ୟାପିଛି ବସୁଧାରେ ।। ୫୧ ।।
ଶ୍ୱେତର ଉତ୍ତରକୁ ଯେବଣ ଶୃଙ୍ଗବାନ ।
ସେହି ଅଶି ସହସ୍ର ଯୋଜନ ଶୋଭାବନ ।। ୫୨ ।।
ଶୁଣହେ ମୁନିକୂଳ ତାରକା ନିଶାପତି ।
ମଣ୍ଡଳ ଆକୃତିରେ ଅଛି ଯେ ବସୁମତୀ ।। ୫୩ ।।
ନିଷଧଠାରୁଁ ହିମପର୍ବତ ପରିଯନ୍ତେ ।
ନୀଳରୁଂ ଶୃଙ୍ଗବାନ ଅଚଳ ଯାଏ ଯେତେ ।। ୫୪ ।।
ଦଶଦଶ ସହସ୍ର ଯୋଜନ ଉଣା ହୋଇ ।
ସମସ୍ତ ଗିରିମାନ କ୍ରମରେ ଅଛି ରହି ।। ୫୫ ।।
ଏମନ୍ତେ ଜମ୍ବୁଦୀପ ଦିଶଇ ମନୋହର ।
ଚାରି ପାଶେ ବେଢ଼ିଛି ଲବଣ ପାରାବାର ।। ୫୬ ।।
ମଣ୍ଡଳ ଆକୃତିରେ ମହୀକି ବେଢ଼ିକରି ।
ଲବଣ ସାଗର ଯେ ରହିଛି ତପଚାରି ।। ୫୭ ।।
ଏ ଘେନି ସମୁଦ୍ରର ଉତ୍ତର ନାଭି ବର୍ଷ ।
ଅର୍ଦ୍ଧଚନ୍ଦ୍ର ଆକାର ହୋଇଛି ପରକାଶ ।। ୫୮ ।।
ସେହିପରି ମୈତ୍ରେୟ ଉତ୍ତରକୁରୁ ମହୀ ।
ଶରାସନ ଆକାରେ ସନ୍ତତେ ବିରାଜଇ ।। ୫୯ ।।
ସାବଧାନେ ଶୁଣ ହେ ତପସ୍ୱୀ ଅଳଙ୍କାର ।
ହିମବାନ ସହିତେ ଯେତେକ ମହୀଧର ।। ୬୦ ।।
ବେନି ବେନି ସହସ୍ର ଯୋଜନ ଉଚ୍ଚ ହୋଇ ।
ସବୁଗିରି ଅବନୀ ମଣ୍ଡଳେ ବିରାଜଇ ।। ୬୧ ।।
ଉଚ୍ଚ ଯେତେ ସେ ଗିରି ବିସ୍ତାର ପୁଣି ଯେତେ ।
ତାହାଙ୍କ ଶୋଭା ପୁଣି କହିବା ଆମ୍ଭେ କେତେ ।। ୬୨ ।।
ହିମବାନ ପର୍ବତ ଯହିଁରେ ମନୋହର ।
ସେ ବର୍ଷରେ ଭରତ ହେଲେ ଯେ ଦଣ୍ଡଧର ।। ୬୩ ।।
ଭାରତବର୍ଷ ତେଣୁ ସେଖଣ୍ଡ ବୋଲାଇଲା ।
କର୍ମଭୂମି ନାମରେ ଜଗତେ ଖ୍ୟାତ ହେଲା ।। ୬୪ ।।
ହେମକୂଟ ଥିବାର ସେ ଯେଉଁ ବସୁମତୀ ।
ତହିଁରେ କିଂପୁରୁଷ ହେଲେ ଯେ ନରପତି ।। ୬୫ ।।
କିଂପୁରୁଷ ବରଷ ନାମେ ସେ ହେଲା ଖ୍ୟାତ ।
ତଦନ୍ତେ ଯହିଁ ଥିଲା ନିଷଧ ପରବତ ।। ୬୬ ।।
ତହିଁରେ ହରିବର୍ଷ ହେବାରୁ ଦଣ୍ଡଧାରୀ ।
ହରିବର୍ଷ ଖଣ୍ଡ ସେ ଶୁଣ ହେ ତପଚାରି ।। ୬୭ ।।

ମେରୁଙ୍କର ଦକ୍ଷିଣରେ ଏ ଯେଉଂ ତିନିବର୍ଷ ।
ନୃପତିଙ୍କ ନାମରେ ହୋଇଲେ ପରକାଶ ।। ୬୮ ।।
ମେରୁଙ୍କର ଉତ୍ତର ଭାଗରେ ଯେଉଂ ମହୀ ।
ନୀଳ ନାମେ ମର୍ଯ୍ୟାଦା ପର୍ବତ ଅଛି ରହି ।। ୬୯ ।।
ତହିଂରେ ରମ୍ୟ ଯେଣୁ ହୋଇଲେ ଦଣ୍ଡଧାରୀ ।
ରମ୍ୟକ ବର୍ଷ ତାକୁ ବୋଇଲେ ତେଣୁକରି ।। ୭୦ ।।
ଶ୍ୱେତ ଗିରି ତହିଂରେ ଦିଶଇ ମନୋହର ।
ତହିଂରେ ହିରଣ୍ମୟ ହେଲେ ଯେ ଦଣ୍ଡଧର ।। ୭୧ ।।
ଏ ଘେନି ହିରଣ୍ମୟ ଖଣ୍ଡ ସେ ତପଚାରି ।
ଯହିଂରେ ଅଛି ଶୃଙ୍ଗୀ ନାମରେ ମହାଗିରି ।। ୭୨ ।।
ତହିଂରେ କୁରୁ ଯାଇ ହେଲେ ଯେ ନରପତି ।
କୁରୁଖଣ୍ଡ ନାମରେ ଖ୍ୟାତ ସେ ବସୁମତୀ ।। ୭୩ ।।
ଉତ୍ତର ଦିଗେ ଯେଣୁ ରହିଲା ସେ ବରଷ ।
ଉତ୍ତରକୁରୁ ତେଣୁ ବୋଲାନ୍ତି ଚତୁର୍ଦ୍ଦଶ ।। ୭୪ ।।
ଉତ୍ତରକୁରୁ ବୋଲି ବିଖ୍ୟାତ ଯେଉଂ ମହୀ ।
ଭୋଗ ଭୂମି ଏକା ସେ ତହିଂରେ ଦୁଃଖ ନାହିଂ ।। ୭୫ ।।
ମେରୁଙ୍କ ପୂର୍ବେ ମାଲ୍ୟବାନ ଯେ ବିରାଜଇ ।
ତାର ପୂର୍ବେ ଭଦ୍ରାଶ୍ୱ ରାଜତ୍ୱ କଲେ ଯାଇ ।। ୭୬ ।।
ଭଦ୍ରାଶ୍ୱଖଣ୍ଡ ବୋଲି ଏ ଘେନି ସେହୁ ଖ୍ୟାତ ।
ସେ ଖଣ୍ଡର ଚାତୁରି କହିଲେ ନୋହେ ଅନ୍ତ ।। ୭୭ ।।
ସେହିପରି ମେରୁଙ୍କ ପଶ୍ଚିମେ ତପଚାରି ।
ବିରାଜୁଅଛି ଗନ୍ଧମାଦନ ନାମେ ଗିରି ।। ୭୮ ।।
ସେ ଗିରି ପଶ୍ଚିମକୁ ତପସ୍ୱୀ ଅଳଙ୍କାର ।
କେତୁମାଳଖଣ୍ଡ ଯେ ଦିଶଇ ମନୋହର ।। ୭୯ ।।
ଇଳାବୃତ ଭଦ୍ରାଶ୍ୱ ଆବର କେତୁମାଳ ।
ଭରତଖଣ୍ଡ ପୁଣି ଉତ୍ତର କୁରୁସ୍ଥଳ ।। ୮୦ ।।
ଏହାଙ୍କ ବିନା ଆଉ ଯେତେକ ବର୍ଷମାନେ ।
ନଉକା ଆକାରେ ସେ ଅଛନ୍ତି ପ୍ରତିଦିନେ ।। ୮୧ ।।
ଭଦ୍ରାଶ୍ୱ କେତୁମାଳ ଏ ଯେଉଂ ବେନିବର୍ଷ ।
କେତକୀ ପୁଷ୍ପ ପରି ହୋଇଛି ପରକାଶ ।। ୮୨ ।।
ଯେବଣ ବେନି ଗନ୍ଧମାଦନ ମାଲ୍ୟବାନ ।
ତାଙ୍କଠାରୁ ସମୁଦ୍ର ଯାଏ ସେ ବେନିସ୍ଥାନ ।। ୮୩ ।।
ବେନି ବେନି ସହସ୍ର ଯୋଜନ ଦୀର୍ଘ ହୋଇ ।
ନିରନ୍ତରେ ଅତ୍ୟନ୍ତ ଶୋଭାକୁ ପ୍ରକାଶଇ ।। ୮୪ ।।

ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ନବଖଣ୍ଡ ମଧ୍ୟରେ ସେ ଯେଉଁ ଇଳାବୃତ ॥ ୮୫ ॥
କନକ ମହୀଧର ତାହାର ମଧ୍ୟେ ଥାଇ ।
କି କହିବି ସେ କଥା ଯେମନ୍ତ ବିରାଜଇ ॥ ୮୬ ॥
ମେରୁଖଣ୍ଡେ ନୃପତି ହେଲେ ଯେ ଇଳାବୃତ ।
ଇଳାବୃତ ବରଷ ନାମେ ସେ ହେଲେ ଖ୍ୟାତ ॥ ୮୭ ॥
ପୂର୍ବରେ ମାଲ୍ୟବାନ ନାମରେ ଗିରିବର ।
ପଶ୍ଚିମ ଦିଗେ ଗନ୍ଧମାଦନ ମହୀଧର ॥ ୮୮ ॥
ଦକ୍ଷିଣରେ ନିଷଧ ଉତ୍ତରେ ନୀଳଗିରି ।
ମଧ୍ୟରେ ମେରୁହେମ ଜଗତି ଥିଲା ପରି ॥ ୮୯ ॥
ଏ ମଧ୍ୟେ ଇଳାବୃତ ଖଣ୍ଡ ହେ ତପୋଧନ ।
ଚତୁରସ୍ର ଆକାରେ ଦିଶଇ ଶୋଭାବନ ॥ ୯୦ ॥
ପୁଣି ଚଉତିରିଶି ଯୋଜନ ସହସ୍ରରେ ।
ବିସ୍ତାର ହୋଇ ବ୍ୟାପୀ ରହିଛି ଅବନୀରେ ॥ ୯୧ ॥
ଇଳାବୃତ ଦକ୍ଷିଣ ଉତ୍ତରେ ଯେଉଁ ବର୍ଷେ ।
ସେମାନଙ୍କ ଚରିତ କହିଲେ ନୋହେ ଶେଷ ॥ ୯୨ ॥
ନବନବ ସହସ୍ର ଯୋଜନ ହୋଇ କରି ।
ସେହୁ ଅତି ବିସ୍ତାର ହୋଇଛି ତପୋଚାରି ॥ ୯୩ ॥
ଇଳାବୃତ ନାମରେ ସେ ଯେଉଁ ଦିବ୍ୟସ୍ଥାନ ।
ଚାରିଗୋଟି ପର୍ବତ ତହିଁରେ ଶୋଭାବନ ॥ ୯୪ ॥
ଉପରକୁ ଅୟୁତେ ଯୋଜନ ଉଚ୍ଚ ହୋଇ ।
ସେ ଯେଉଁ ଚାରି ଗୋଟି ପର୍ବତ ଅଛି ତହିଁ ॥ ୯୫ ॥
ସେ ଚାରିପର୍ବତଙ୍କ ସହାୟ ପାଇକରି ।
ନିଶ୍ଚଳେ ରହିଅଛନ୍ତି କନକ ମୟଗିରି ॥ ୯୬ ॥
ମନ୍ଦର ନାମେ ଅଛି ଯେବଣ ପରବତ ।
ସହାୟ ରୂପରେ ସେ ମେରୁଙ୍କ ପୂର୍ବେସ୍ଥିତ ॥ ୯୭ ॥
ତାହାରି ପରି ଗନ୍ଧମାଦନ ମହୀଧର ।
ଦକ୍ଷିଣକୁ ସହାୟ ହୋଇଛି ମେରୁଙ୍କର ॥ ୯୮ ॥
ପଶ୍ଚିମ ଦିଗେ ଅଛି ବିପୁଳ ମହାଗିରି ।
ସୁପାର୍ଶ୍ୱ ପରବତ ଉତ୍ତରେ ସେହିପରି ॥ ୯୯ ॥
ଏ ଯେଉଁ ଚାରିଗିରି କହିଲୁଁ ତପୋଧନ ।
ମେରୁଙ୍କର ଆଧାର ପର୍ବତ ଏହିମାନ ॥ ୧୦୦ ॥
ମନ୍ଦର ବୋଲି ଯେଉଁ ପର୍ବତ ପୂର୍ବ ଦିଗେ ।
କଦମ୍ବ ତରୁ ଅଛି ତାହାର ପୂର୍ବ ଭାଗେ ॥ ୧୦୧ ॥

ଦକ୍ଷିଣ ଦିଗେ ଗନ୍ଧମାଦନ ଯେଉଁ ଶୈଳ ।
ଜମ୍ବୁତରୁ ତହିଁରେ ଅଛି ହେ ସାଧୁଶୀଳ ॥ ୧୦୨ ॥
ବିପୁଳ ନାମେ ଅଛି ପଶ୍ଚିମେ ଯେଉଁ ଗିରି ।
ତାହା ଶିଖେ ଅଶ୍ୱସ୍ଥ ପାଦପ ସେହିପରି ॥ ୧୦୩ ॥
ଉତ୍ତରପାର୍ଶ୍ୱେ ଯେଉଁ ସୁପାର୍ଶ୍ୱ ମହୀଧର ।
ବଟତରୁ ତହିଁରେ ଦିଶଇ ମନୋହର ॥ ୧୦୪ ॥
ପର୍ବତର ପତାକା ପରାୟେ ତରୁମାନେ ।
ଅତ୍ୟନ୍ତ ଶୋଭାବନ ଦିଶନ୍ତି ପ୍ରତିଦିନେ ॥ ୧୦୫ ॥
ଏଗାରଶ ଯୋଜନ ପ୍ରମାଣେ ଉଚ୍ଚ ହୋଇ ।
ଏ ଚାରି ତରୁବର ଗିରିଙ୍କି ଉଦ୍ଧରଇ ॥ ୧୦୬ ॥
ସେ ଯେଉଁ ଜମ୍ବୁତରୁ ତାହାର ନାମ ଘେନି ।
ଜମ୍ବୁଦ୍ୱୀପ ବିଖ୍ୟାତ ହୋଇଛି ମହାମୁନି ॥ ୧୦୭ ॥
ସେ ଜମ୍ବୁପାଦପରୁଂ ଝଡ଼ଇ ଯେଉଁ ଫଳ ।
ମହାଗଜ ପ୍ରମାଣେ ସେମାନେ ଅତିସ୍ଥୁଳ ॥ ୧୦୮ ॥
ବୃକ୍ଷରୁଂ ଜମ୍ବୁମାନେ ଝଡ଼ନ୍ତି ଯେତେବେଳେ ।
ପଡ଼ନ୍ତି ଆସି ଗନ୍ଧମାଦନ ମହାଶୈଳେ ॥ ୧୦୯ ॥
ପଡ଼ିବା ମାତ୍ରକରେ ସେ ଯେଉଁ ଜମ୍ବୁଫଳ ।
ମହୀଧର ଶୃଙ୍ଗରେ ହୁଅନ୍ତି ଫାଳଫାଳ ॥ ୧୧୦ ॥
ସେ ଯେଉଁ ପକ୍ୱ ଜମ୍ବୁ ତାହାଙ୍କ ରସ ବହି ।
ସେଠାରୁ ଜମ୍ବୁନଦୀ ସର୍ବଦା ସଞ୍ଚରଇ ॥ ୧୧୧ ॥
ସେହି ଜମ୍ବୁ ନଦୀଙ୍କ ତଟରେ ଯାର ବାସ ।
ସେମାନେ ମାତ୍ର ପାନ କରନ୍ତି ଜମ୍ବୁରସ ॥ ୧୧୨ ॥
ସେ ଯେଉଁ ଜମ୍ବୁରସ ତାହାକୁ ପାନ କଲେ ।
ଅଙ୍ଗରେ ସ୍ୱେଦ ଜାତ ନୁହଇ କେତେବେଳେ ॥ ୧୧୩ ॥
ଦେହ ମଧ ଦୁର୍ଗନ୍ଧ ହୁଅଇ ନାହିଁ କେବେ ।
ଜରାବ୍ୟାଧି ଏମାନେ ରହନ୍ତି ନାହିଁ ଲବେ ॥ ୧୧୪ ॥
ଇନ୍ଦ୍ରିୟମାନେ ଅକ୍ଷ ହୁଅନ୍ତି ପ୍ରାଣୀଙ୍କର ।
କନ୍ଦର୍ପରୁଂ ସୁନ୍ଦର ଦିଶଇ କଳେବର ॥ ୧୧୫ ॥
ଏମନ୍ତେ ଜମ୍ବୁନଦୀ ସଲୀଳ କଲେ ପାନ ।
ସାକ୍ଷାତେ ସୁର ପରି ବିରାଜୁଥାନ୍ତି ଜନ ॥ ୧୧୬ ॥
ଜମ୍ବୁନଦୀ ତଟରେ ମୃତ୍ତିକାମାନ ଯେତେ ।
ସେମାନେ ଯେତେବେଳେ ଶୁଖଇ ମନ୍ଦବାତେ ॥ ୧୧୭ ॥
ତ କ୍ଷଣେ ସ୍ୱର୍ଣ୍ଣକୁ କୁରଙ୍ଗ ଦୃଶାମାନେ ।
ଅଙ୍ଗରେ ଅଳଙ୍କାର କରନ୍ତି ତୋଷମନେ ॥ ୧୧୮ ॥

ସେ ଯେଉଁ ଜମ୍ବୁନଦୀ ତାହାର ତୀର ପଙ୍କ ।
ଉଦୟ ବାଳଇନ୍ଦୁ ପରାୟେ ଅକଳଙ୍କ ।। ୧୧୯ ।।
ସେ ପଙ୍କ ଜମ୍ବୁନଦ ନାମରେ ହେମ ହୋଇ ।
ବିବୁଧବଧୂଙ୍କର ଅଙ୍ଗରେ ବିଳସଇ ।। ୧୨୦ ।।
ଶୁଣ ହେ ମୁନିକୁଳକୁମୁଦନିଶାକର ।
ମନ୍ଦର ଆଦି ଚାରି ଯେବଣ ମହୀଧର ।। ୧୨୧ ।।
ମନ୍ଦର ବୋଲି ଯେଉଁ ପର୍ବତ ପୂର୍ବ ଦିଗେ ।
ଚୈତ୍ର ରଥକାନନ ତହିଁରେ ଶୋଭା ଦିଶେ ।। ୧୨୨ ।।
ଦକ୍ଷିଣ ଦିଗେ ଗନ୍ଧମାଦନ ନାମେ ଶୈଳ ।
ତାହାରି ନାମେ ବନ ତହିଁରେ ସୁମଞ୍ଜୁଳ ।। ୧୨୩ ।।
ପଶ୍ଚିମ ଦିଗେ ଯେଉଁ ବିପୁଳ ନାମେ ଗିରି ।
ବୈଭ୍ରାଜବନ ତହିଁ ଅଛି ହେ ତପୋଚାରି ।। ୧୨୪ ।।
ଉତ୍ତରଦିଗେ ଯେଉଁ ସୁପାର୍ଶ୍ୱ ମହୀଧର ।
ନନ୍ଦନବନ ତହିଁ ଦିଶଇ ମନୋହର ।। ୧୨୫ ।।
ସେ ଯେଉଁ ବନମାନେ କହିଲୁଁ ତପୋଧନ ।
ସରସୀମାନେ ତହି ଦିଶନ୍ତି ଶୋଭାବନ ।। ୧୨୬ ।।
ଅରୁଣୋଦ ନାମରେ ଯେବଣ ସରୋବର ।
ଚୈତ୍ରରଥ କାନନେ ଦିଶଇ ମନୋହର ।। ୧୨୭ ।।
ତଦନ୍ତେ ଯେଉଁ ଗନ୍ଧମାଦନ ନାମେ ବନ ।
ମହାରୁଦ୍ର ସରସୀ ତହିଁରେ ଶୋଭାବନ ।। ୧୨୮ ।।
ବୈଭ୍ରାଜକାନନର ମଧରେ ମୁନିବର ।
ଅଛି ଯେଉଁ ଶୀତୋଦ ନାମରେ ସରୋବର ।। ୧୨୯ ।।
ସେହିପରି ନନ୍ଦନକାନନ ମଧେ ରହି ।
ମାନସ ନାମେ ସର ସର୍ବଦା ବିରାଜଇ ।। ୧୩୦ ।।
କନକ ପର୍ବତକୁ ବେଢ଼ି ହେ ତପୋଧନ ।
ଏମନ୍ତେ ଚାରିଗୋଟି ସରସୀ ଶୋଭାବନ ।। ୧୩୧ ।।
ମନ୍ଦର ଆଦି କରି ସେ ଯେଉଁ ଚାରିଗିରି ।
ସେମାନଙ୍କ ଉପରସ୍ଥଳିରେ ଥାଇକରି ।। ୧୩୨ ।।
ଏ ଯେଉଁ ଚାରି ଚାରି କାନନ ସରୋବର ।
ନିରନ୍ତରେ ଦିଶନ୍ତି ଅତ୍ୟନ୍ତ ମନୋହର ।। ୧୩୩ ।।
ଅବନୀ କମଳରେ କର୍ଣ୍ଣିକା ଥିଲାପରି ।
ଇଳାବୃତ ମଧରେ ଅଛି ଯେ ମେରୁଗିରି ।। ୧୩୪ ।।
ସେ ଗିରି ଚାରିପାଶେ କେଶର ଗିରିମାନେ ।
ଅତ୍ୟନ୍ତ ମନୋହର ଦିଶନ୍ତି ପ୍ରତିଦିନେ ।।। ୧୩୫ ।।

ସୀତାନ୍ତଚକ୍ର ମୁଖ କୁରରି ମାଲ୍ୟବାନ ।
ବୈକଙ୍କ ଆଦି କରି ପୂର୍ବରେ ଶୋଭାବନ ।। ୧୩୬ ।।
ତ୍ରିକୁଟ ଗିରି ପୁଣି ପତଙ୍ଗ ମହୀଧର ।
ଶିଶିର ପରବତ ରୁଚକ ଗିରିବର ।। ୧୩୭ ।।
ନିଷଧ ଆଦି ଯେତେ କେଶର ଗିରିମାନେ ।
ଦକ୍ଷିଣ ଦିଗେ ଶୋଭା ଦିଶନ୍ତି ପ୍ରତିଦିନେ ।। ୧୩୮ ।।
ଶିଖିବାସ ବୈଡୁର୍ଯ୍ୟ କପିଳ ଗିରିବର ।
ତଦନ୍ତେ ପୁଣି ଗନ୍ଧମାଦନ ମହୀଧର ।। ୧୩୯ ।।
ଜାରୁଧି ଆଦି କରି ଏ ଯେତେ ପରବତ ।
କନକ ଗିରିଙ୍କର ପଶ୍ଚିମଭାଗେ ସ୍ଥିତ ।। ୧୪୦ ।।
ଶଙ୍ଖକୂଟ ଋଷଭ ଶୋନାଗ କାଳାଞ୍ଜର ।
ହଂସ ଆଦି ଏ ଗିରି ଉତ୍ତରେ ମନୋହର ।। ୧୪୧ ।।
ଏମନ୍ତେ ମେରୁଙ୍କର କେଶର ଚଳମାନେ ।
ଚାରିପାଶେ ସୁନ୍ଦର ଦିଶନ୍ତି ପ୍ରତିଦିନେ ।। ୧୪୨ ।।
ସେ ଯଉଂ ରତ୍ନସାନୁ ତାହାରି ପାରୁସରେ ।
ଜଠର ଆଦି ଗିରି ଅଛନ୍ତି ଯଉଂଠାରେ ।। ୧୪୩ ।।
ସେହିଠାରେ କେଶର ପର୍ବତେ ବିରାଜନ୍ତି ।
ସାବଧାନେ ଶୁଣ ହେ ତପସ୍ୱୀ ନିଶାପତି ।। ୧୪୪ ।।
ମେରୁଙ୍କ ଉପରେ ଯେ ବ୍ରହ୍ମାଙ୍କ ନିଜପୁର ।
ଚତୁର୍ଦ୍ଦଶ ସହସ୍ର ଯୋଜନ ତା ବିସ୍ତାର ।। ୧୪୫ ।।
ସେ ଯଉଂ ବ୍ରହ୍ମାପୁର ତାହାର ଅଷ୍ଟଦିଶେ ।
ଲୋକପାଳମାନଙ୍କ ଭୁବନ ଶୋଭା ଦିଶେ ।। ୧୪୬ ।।
ଇନ୍ଦ୍ରଙ୍କୁ ଆଦିକରି ସେ ଅଷ୍ଟ ଲୋକପାଳ ।
ବ୍ରହ୍ମାଙ୍କ ପୁର ବେଢ଼ି ବଞ୍ଚନ୍ତି ସଦାକାଳ ।। ୧୪୭ ।।
ଦିଗବିଦିଗେ ସେ ଯଉଂ ପୁରମାନେ ଥାଇ ।
ମେରୁ ଚାରି ପାଶକୁ ସର୍ବଦା ଉଦ୍ଧରଇ ।। ୧୪୮ ।।
ବୋଲନ୍ତି ପରାଶର ଶୁଣ ହେ ମହାଋଷି ।
ବିଷ୍ଣୁଙ୍କର ଚରଣ କମଳୁଂ ଗଙ୍ଗା ଆସି ।। ୧୪୯ ।।
ଶଶାଙ୍କ ମଣ୍ଡଳକୁ ଧଉତ କରି ଦେଇ ।
ବ୍ରହ୍ମାଙ୍କ ଭୁବନରେ ସର୍ବଦା ବିରାଜଇ ।। ୧୫୦ ।।
ଯେତେବେଳେ ଚନ୍ଦ୍ରମା ମଣ୍ଡଳ ଧୋଇକରି ।
ବ୍ରହ୍ମାଙ୍କ ଭୁବନରେ ପଡ଼ଇ ଗଙ୍ଗାବାରି ।। ୧୫୧ ।।
ତତକ୍ଷଣେ ସେ ପୁର ପରିଖ ପରକାରେ ।
ଚାରିଦିଗେ ସେ ଗଙ୍ଗା ବହଇ ମେରୁଶିରେ ।। ୧୫୨ ।।

ସେ ଯେଉଁ ମେରୁଶିଖ ତହିଁରୁ ବେଗେ ଖସି ।
ଚତୁର୍ଦ୍ଧା ହୋଇ ଗଙ୍ଗା ପଡ଼ଇ ତଳେ ଆସି ॥ ୧୫୩ ॥
ସୀତା ଗଙ୍ଗା ଆବର ଅଳକନନ୍ଦା ଗଙ୍ଗା ।
ବଂକ୍ଷୁଭଦ୍ରା ଏମନ୍ତେ ଚାରି ସେ ତୀର୍ଥ ଗଙ୍ଗା ॥ ୧୫୪ ॥
ସୀତା ନାମେ ଗଙ୍ଗା ଯେ ଆସଇ ବେଗ୍ର ହୋଇ ।
ଜଠର ପର୍ବତର ଶିଖରେ ସେ ପଡ଼ଇ ॥ ୧୫୫ ॥
ଜଠର ଗିରି ଶିଖ ଉପରୁଁ ଆସିକରି ।
ଦେବକୂଟ ପର୍ବତେ ପଡ଼ଇ ସେହି ବାରି ॥ ୧୫୬ ॥
ତଦନ୍ତରେ ଭଦ୍ରାଶ୍ୱ ଖଣ୍ଡରେ ପଡ଼ି ପୁଣି ।
ପୁରୁବ ସମୁଦ୍ରକୁ ଚଳଇ ତରଙ୍ଗିଣୀ ॥ ୧୫୭ ॥
ଅଳକନନ୍ଦା ନାମ ଜାହ୍ନବୀ ସେହିପରି ।
ମେରୁ ଶିଖୁଁ ହିମାଦ୍ରି ଉପରେ ପଡ଼ିକରି ॥ ୧୫୮ ॥
ଭରତଖଣ୍ଡେ ସୀତ ପ୍ରକାରେ ତୀର୍ଥ ହୋଇ
ଦକ୍ଷିଣ ସମୁଦ୍ରରେ ମିଶଇ ବେଗେ ଯାଇ ॥ ୧୫୯ ॥
ପ୍ରଥମରେ ନଳିନୀ ହ୍ରାଦିନୀ ଦ୍ୱିତୀୟରେ ।
ତୃତୀୟରେ ପ୍ଲାବିନୀ ପ୍ରାଚୀତା ଚତୁର୍ଥରେ ॥ ୧୬୦ ॥
ପଞ୍ଚମରେ ସୀତା ଯେ ଷଷ୍ଠରେ ବଂକ୍ଷୁ ପୁଣି ।
ସପ୍ତମରେ ସିନ୍ଧୁ ସେ ଅମର ତରଙ୍ଗିଣୀ ॥ ୧୬୧ ॥
ଏହିପରି ସପତ ପ୍ରକାରେ ନାମ ବହି ।
ସିନ୍ଧୁ ଜଳେ ଜାହ୍ନବୀ ମିଶନ୍ତି ବେଗ୍ର ହୋଇ ॥ ୧୬୨ ॥
ବଂକ୍ଷୁ ଗଙ୍ଗା ମେରୁଙ୍କ ଶିଖରୁଁ ଖସି କରି ।
ନିଷଧ ପର୍ବତରେ ପଡ଼ଇ ସେହିପରି ॥ ୧୬୩ ॥
ନିଷଧ ମହୀଧର ଶିଖରୁଁ ବେଗେ ଖସି ।
ପାରିପାତ୍ର ପର୍ବତେ ପଡ଼ଇ ପୁଣି ଆସି ॥ ୧୬୪ ॥
ତଦନ୍ତେ କେତୁମାଳଖଣ୍ଡରେ ପଡ଼ିକରି ।
ପଶ୍ଚିମ ସିନ୍ଧୁ ଜଳେ ମିଶନ୍ତି ସୁରେଶ୍ୱରି ॥ ୧୬୫ ॥
ସେହିପରି ଭଦ୍ରାଗଙ୍ଗା ମେରୁଙ୍କ ଠାରୁ ଖସି ।
ଶୃଙ୍ଗବାନ ପର୍ବତେ ପଡ଼ନ୍ତି ବେଗେ ଆସି ॥ ୧୬୬ ॥
ତଦନ୍ତରେ ଉତ୍ତର କୁରୁକୁ ମାଡ଼ିକରି ।
ଉତ୍ତର ସିନ୍ଧୁ ଜଳେ ମିଶଇ ତାଙ୍କ ବାରୀ ॥ ୧୬୭ ॥
ବୋଲନ୍ତି ପରାଶର ଶୁଣ ହେ ତପଚାରି ।
ନିଷଧ ନୀଳ ବୋଲି ସେ ଯେଉଁ ବେନିଗିରି ॥ ୧୬୮ ॥
ସେ ଦୁଇ ପର୍ବତକୁ ଲମ୍ବରେ ହୋଇ ଲଗ୍ନ ।
ଯେବଣ ବେନି ଗନ୍ଧମାଦନ ମାଲ୍ୟବାନ ॥ ୧୬୯ ॥

ସେ ବେନି ପର୍ବତର ମଧରେ ହେମଗିରି ।
ଅବନୀ ପଙ୍କଜର କର୍ଣ୍ଣିକା ଥିଲାପରି ।। ୧୭୦ ।।
ଭଦ୍ରାଶ୍ୱ ନାଭିଖଣ୍ଡ ଆବର କେତୁମାଳ ।
ଉତ୍ତର କୁରୁଆଦି ଏମାନେ ତା'ର ଦଳ ।। ୧୭୧ ।।
କନକପର୍ବତର ପୂର୍ବକୁ ରହିକରି ।
ଜଠର ଦେବକୂଟ ଏ ଯଉଂ ବେନିଗିରି ।। ୧୭୨ ।।
ମର୍ଯ୍ୟାଦା ଅଚଳ ସେ କନକ ପର୍ବତର ।
ଉତ୍ତର ଦକ୍ଷିଣକୁ ଦୀର୍ଘରେ ମନୋହର ।। ୧୭୩ ।।
ପଶ୍ଚିମ ପୂର୍ବ ବେନି ଦିଗକୁ ଲମ୍ବହୋଇ ।
ଦକ୍ଷିଣ ଦିଗେ ଯଉଂ ମର୍ଯ୍ୟାଦା ଗିରି ଦୁଇ ।। ୧୭୪ ।।
ଏକ ଗନ୍ଧମାଦନ ଉଲ୍ଲାସ ଆର ଗିରି ।
ରହିଛି ମେରୁଙ୍କର ମର୍ଯ୍ୟାଦା ହୋଇକରି ।। ୧୭୫ ।।
ମେରୁଙ୍କର ପଶ୍ଚିମ ଦିଗକୁ ଥାଇକରି ।
ନିଷଧ ପାରିପାତ୍ର ଏ ଯଉଂ ବେନିଗିରି ।। ୧୭୬ ।।
ଉତ୍ତର ଦକ୍ଷିଣକୁ ଅତ୍ୟନ୍ତ ଲମ୍ବହୋଇ ।
ମେରୁଙ୍କର ମର୍ଯ୍ୟାଦା ପବର୍ତ ପୁଣି ସେହି ।। ୧୭୭ ।।
ତ୍ରିଶୃଙ୍ଗ ଜାରୁଧ ଏ ଦ୍ୱିଗୋଟି ପରବତ ।
ପୂର୍ବ ପଶ୍ଚିମକୁ ସେ ଦୀର୍ଘରେ ଉପସ୍ଥିତ ।। ୧୭୮ ।।
ମେରୁଙ୍କର ଉତ୍ତର ଦିଗରେ ଥାଇକରି ।
ଲମ୍ବରେ ଶୋଭାବନ ଦିଶଇ ବେନିଗିରି ।। ୧୭୯ ।।
ଏ ଯଉଂ ବେନି ବେନି ସଂଖ୍ୟାରେ ମହୀଧର ।
ପୂର୍ବକୁ ଆଦି କରି ଦିଗରେ ମନୋହର ।। ୧୮୦ ।।
ମେରୁଙ୍କ ଚାରିପାର୍ଶ୍ୱେ ଏ ଯଉଂ ଆଠଗିରି ।
ବିରାଜଇ ମର୍ଯ୍ୟାଦା ପର୍ବତ ହୋଇକରି ।। ୧୮୧।।
ହୋମ କୁଣ୍ଡେ ଜଳିବା ଅନଳ ପରକାରେ ।
କନକ ମହୀଧର ଦିଶଇ ନିରନ୍ତରେ ।। ୧୮୨।।
ତା'ର ପରିସ୍ତରଣକୁ ଶରଶୋଭା ବହି ।
ସେ ଯଉଂ ଅଷ୍ଟଗିରି ସନ୍ତତେ ବିରାଜଇ ।। ୧୮୩ ।।
ଶୁଣ ହେ ତପୋଚାରି କୁଳର କଳାକର ।
ସୀତାନ୍ତ ଗିରି ଆଦି ଯେତେକ ମହୀଧର ।। ୧୮୪ ।।
ମେରୁଙ୍କର କେଶର ପର୍ବତ ସେ ସମସ୍ତେ ।
ସେମାନଙ୍କ ମହିମା କହିବି ଅବା କେତେ ।। ୧୮୫ ।।
ଚାରିପାଶେ ସେ ଯଉଂ କେଶର ଗିରିମାନେ ।
ମେରୁଙ୍କୁ ବେଢ଼ିକରି ଅଛନ୍ତି ପ୍ରତିଦିନେ ।। ୧୮୬ ।।

ସେ ଗିରିମାନଙ୍କର କନ୍ଦରମାନଙ୍କରେ ।
ବିହରୁଥାନ୍ତି ସିଦ୍ଧ ଗନ୍ଧର୍ବ ନିରନ୍ତରେ ।। ୧୮୭ ।।
ସେ ପର୍ବତ କନ୍ଦରମାନଙ୍କେ ତପୋଧନ ।
ବିବିଧତରୁ ମାନେ ଦିଶନ୍ତି ଶୋଭାବନ ।। ୧୮୮ ।।
କାନନମାନଙ୍କରେ ବିବିଧତରୁମାନେ ।
ଫଳପୁଷ୍ପମାନଙ୍କୁ ବହନ୍ତି ପ୍ରତିଦିନେ ।। ୧୮୯ ।।
ଲକ୍ଷ୍ମୀବିଷ୍ଣୁ ଅନଳ ଆଦିତ୍ୟ ଆଦି ଯେତେ ।
ସେମାନଙ୍କ ଭୁବନ ତହିଁରେ ଅଛି ନିତ୍ୟେ ।। ୧୯୦ ।।
ଏ ରୂପରେ ସେ ଯେଉଁ କେଶର ଗିରିମାନେ ।
ତାହାଙ୍କର କନ୍ଦରମାନଙ୍କେ ସ୍ଥାନେ ସ୍ଥାନେ ।। ୧୯୧ ।।
ଗନ୍ଧର୍ବ ସିଦ୍ଧ ମୁନିଚାରଣ ବିଦ୍ୟାଧର ।
ଦାନବ ଦୈତ୍ୟ ଯକ୍ଷ ରାକ୍ଷସ ଆଦି ସୁର ।। ୧୯୨ ।।
ଏମନ୍ତେ ଆଉ ଯେତେ ଶୁଣ ହେ ତପଚାରି ।
ରାତ୍ରି ଦିବା ବଞ୍ଚନ୍ତି ବିବିଧ କ୍ରୀଡ଼ାକରି ।। ୧୯୩ ।।
ସେ ଯେଉଁ ସ୍ଥାନମାନେ ଅବନୀ ସ୍ୱର୍ଗ ସେହି ।
ସୁକୃତ କଲା ପ୍ରାଣୀ ତହିଁରେ ବିହରଇ ।। ୧୯୪ ।।
ଶତେଗୋଟି ଜନ୍ମର ପାତକି ଜନ ଯେତେ ।
ସେ ସ୍ଥାନରେ ପ୍ରବେଶ ନୁହନ୍ତି କଦାଚିତେ ।। ୧୯୫ ।।
ମେରୁଙ୍କର ପୂର୍ବକୁ ଭଦ୍ରାଶ୍ୱ ଯେଉଁ ବର୍ଷ ।
ସେ ସ୍ଥାନେ ବିଜେ କରିଅଛନ୍ତି ହୟଶୀର୍ଷ ।। ୧୯୬ ।।
କେତୁମାଳଖଣ୍ଡରେ ବରାହ ରୂପ ଧରି ।
ବିଜେ କରିଅଛନ୍ତି ଆପଣେ ନରହରି ।। ୧୯୭ ।।
କୂର୍ମରୂପେ ଗୋବିନ୍ଦ ଭରତଖଣ୍ଡ ଠାରେ ।
ସର୍ବଦା ବିଜେ କରିଅଛନ୍ତି ସନ୍ତୋଷରେ ।। ୧୯୮ ।।
ଉତ୍ତରକୁରୁ ନାମେ ବର୍ଷରେ ଭଗବାନ ।
ମତ୍ସ୍ୟ ରୂପେ ସର୍ବଦା ଦିଶନ୍ତି ଶୋଭାବନ ।। ୧୯୯ ।।
ସମସ୍ତଙ୍କ ଆଧାର ସକଳ ଜଗନ୍ନାଥ ।
ଆତ୍ମା ରୂପେ ଅଖିଳ ପ୍ରାଣୀଙ୍କ ହୃଦେ ସ୍ଥିତ ।। ୨୦୦ ।।
ଏମନ୍ତ ଯେଉଁ ବିଷ୍ଣୁ ସେ ପ୍ରଭୁ ବିଶ୍ୱରୂପେ ।
ଅନ୍ୟବର୍ଗମାନଙ୍କେ ବିହରୁଛନ୍ତି ଆପେ ।। ୨୦୧ ।।
ନାଭିଙ୍କ ବିନା କରି ଆଉ ଯେ ଅଷ୍ଟବର୍ଷ ।
ସେ ବର୍ଷମାନଙ୍କରେ ଦୁଃଖର ନାହିଁ ଲେଶ ।। ୨୦୨ ।।
କ୍ଷୁଧା ତୃଷା ଆୟାସ ଉଦ୍‌ବେଗ ଭୟ ଶୋକ ।
ଏମାନେ ଆଉ ତହିଁ ଲଭନ୍ତି ନାହିଁ ଲୋକ ।। ୨୦୩ ।।

ସେ ଖଣ୍ଡମାନଙ୍କରେ ଅଛନ୍ତି ଯେତେ ଜନ ।
କେତେବେଳେ ଆତଙ୍କ ନୁହଇ ତାଙ୍କ ମନ ।। ୨୦୪ ।।
ସକଳ ଦୁଃଖମାନ ମନରୁଂ ଦୂର କରି ।
ମହାସୁଖେ ଅଛନ୍ତି ସକଳ ନର ପରୀ ।। ୨୦୫ ।।
ଦଶ ଦଶ ସହସ୍ର ବରଷ ପର୍ଯ୍ୟନ୍ତରେ ।
ଆୟୁ ପାଇ ସେମାନେ ଅଛନ୍ତି ନିଶ୍ଚିନ୍ତରେ ।। ୨୦୬ ।।
ଇଳାବୃତ ନାମରେ ସେ ଯେଉଁ ଦିବ୍ୟସ୍ଥଳ ।
ଏଥିରେ ଯେତେ ପ୍ରାଣୀ ଅଛନ୍ତି ସାଧୁଶୀଳ ।। ୨୦୭ ।।
ସେ ସମସ୍ତେ ଦ୍ୱାଦଶ ସହସ୍ର ବର୍ଷ ଯାଏ ।
ଆୟୁଷ ପାଇ ଶୋଭା ଦିଶନ୍ତି କାମ ପ୍ରାୟେ ।। ୨୦୮ ।।
ସେ ଯେଉଁ ଆଠଖଣ୍ଡ ତହିଁରେ ଶଚୀସାଇଁ ।
ଭ୍ରମରେ ହେଲେ ଦିନେ ବରଷା ନ କରଇ ।। ୨୦୯ ।।
ଅବନୀରୁ ଝରିବା ସଲିଳମାନ ଯେତେ ।
ନଦୀରୂପେ ସେମାନେ ଅଛନ୍ତି ଅବିରତେ ।। ୨୧୦ ।।
କିଂପୁରୁଷ ସହିତେ ସେ ଯେଉଁ ବର୍ଷ ତହିଁ ।
ସତ୍ୟ ଆଦି ଯୁଗର କଳ୍ପନା କିଛି ନାହିଁ ।। ୨୧୧ ।।
ସେ ବର୍ଷମାନଙ୍କରେ ଶୁଣ ହେ ସତ୍ୟଶୀଳ ।
ସାତ ସାତ ପ୍ରମାଣେ ଅଛନ୍ତି କୁଳାଚଳ ।। ୨୧୨ ।।
ଶତଶତ ସଂଖ୍ୟାରେ ଅଛନ୍ତି ନଦୀମାନେ ।
ସେମାନଙ୍କ ସଲିଳ ଝରଇ ସବୁଦିନେ ।। ୨୧୩ ।।
ଏମନ୍ତେ ଅତି ଶୋଭା ଦିଶନ୍ତି ଆଠବର୍ଷ ।
ସର୍ବଶୁଭେ ଦ୍ୱିତୀୟ ଅଧ୍ୟାୟ ହେଲା ଶେଷ ।। ୨୧୪ ।।
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ଅବନୀମଣ୍ଡଳରେ ପ୍ରମାଣ ହେଲା ଖ୍ୟାତ ।। ୨୧୫ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭନାରାୟଣ ମହାପାତ୍ର ।। ୨୧୬ ।।

# ତୃତୀୟ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣ ହେ ତପୋଧନ ।
ସମୁଦ୍ରର ଉତ୍ତରତୀରକୁ ଯେଉଁ ସ୍ଥାନ ॥ ୧ ॥
ହିମବାନ ପର୍ବତ ଦକ୍ଷିଣ ଦିଗେ ରହି ।
ଭରତଖଣ୍ଡ ନାମେ ସେ ସ୍ଥାନ ବିରାଜଇ ॥ ୨ ॥
ଭାରତବର୍ଷେ ଏକା ଜନ୍ମିଲେ ସେ ସମସ୍ତେ ।
ଭରତ ନୃପତିଙ୍କ ଅନ୍ୱୟମାନ ଯେତେ ॥ ୩ ॥
ସେ ଯେଉଁ ଖଣ୍ଡ ନବ ସହସ୍ର ଯୋଜନରେ ।
ତହିଁରେ ନାନା କର୍ମ କରନ୍ତି ସାଧୁ ନରେ ॥ ୪ ॥
ସ୍ୱର୍ଗ ଅପବର୍ଗକୁ ବାଞ୍ଛିବା ପ୍ରାଣୀଙ୍କର ।
ସେହି ସେ କର୍ମଭୂମି ଶୁଣ ହେ ମୁନିବର ॥ ୫ ॥
ମଳୟ ସହ ଋକ୍ଷ ମହେନ୍ଦ୍ର ଶୁକ୍ତିମାନ ।
ବିନ୍ଧ୍ୟ ପାରିପାତ୍ର ଏ ତହିଁରେ ଶୋଭାବନ ॥ ୬ ॥
ସେ ବର୍ଷରେ ଏ ଯେଉଁ ସପତ କୁଳାଚଳ ।
ଅତ୍ୟନ୍ତ ମନୋହର ଦିଶନ୍ତି ସଦାକାଳ ॥ ୭ ॥
ଭାରତଖଣ୍ଡ ବୋଲି ସେ ଯେଉଁ ପୁଣ୍ୟ ସ୍ଥାନ ।
ତହିଁରେ କର୍ମ କଲେ ତରଇ ପାପିଜନ ॥ ୮ ॥
ସ୍ୱର୍ଗ ହେଲେ ଅଳ୍ପକେ ହୁଅଇ ପରାପତ ।
ମୁକ୍ତି ମଧ ତହିଁରେ ହୁଅଇ କରଗତ ॥ ୯ ॥
ଭରତଖଣ୍ଡ ମଧେ କୁତ୍ସିତ କର୍ମ କଲେ ।
ନରକେ ଯାଇ ପ୍ରାଣୀ ପଡ଼ନ୍ତି ଅନ୍ତକାଳେ ॥ ୧୦ ॥
ତିର୍ଯ୍ୟକ ଯୋନି ମଧ୍ୟେ ଲଭଇ ଲୋକ ତହିଁ ।
ଏ ଘେନି ସେ ଖଣ୍ଡକୁ ଉପମା ଆଉ ନାହିଁ ॥ ୧୧ ॥
ସ୍ୱର୍ଗ ମୋକ୍ଷ ନରକ ଭୂଲୋକ ଆଦି ଯେତେ ।
ଭରତଖଣ୍ଡେ ଏକା ମିଳନ୍ତି ସେ ସମସ୍ତେ ॥ ୧୨ ॥
ଭରତଖଣ୍ଡଙ୍କର ଉତ୍ତାରୁ ଯେତେ ସ୍ଥାନ ।
ତହିଁରେ ଭୋଗ ଏକା ଲଭନ୍ତି ସର୍ବଜନ ॥ ୧୩ ॥
ଭାରତବର୍ଷେ କଲା କର୍ମର ଅନୁରୂପେ ।
ସେମାନଙ୍କେ ଭୋଗକୁ ଭୁଞ୍ଜନ୍ତି ଯାଇ ଆପେ ॥ ୧୪ ॥
ଶୁଣ ଆହେ ମୈତ୍ରେୟ ଅତ୍ୟନ୍ତ ପ୍ରେମ ଭୋଳେ ।
ସେମାନେ କର୍ମଭୂମି ନୁହନ୍ତି କେତେବେଳେ ॥ ୧୫ ॥
ଭାରତବର୍ଷ ଭୂମି ହେଲା ଯେ ନବଖଣ୍ଡ ।
ସେ ଚରିତ ଶୁଣିଲେ ନୁହଇ ଯମଦଣ୍ଡ ॥ ୧୬ ॥

ଇନ୍ଦ୍ରଦ୍ୱୀପ ଆବର କସେରୁମାନ ଦ୍ୱୀପ ।
ତାମ୍ରବର୍ଣ୍ଣ ଦ୍ୱୀପ ଯେ ତାହାକୁ ଅନୁରୂପ ॥ ୧୭ ॥
ଗଭସ୍ତିମାନ ଦ୍ୱୀପ ତଦନ୍ତେ ଶୋଭାବନ ।
ନାଗଦ୍ୱୀପ ନାମରେ ଆବର ଏକ ସ୍ଥାନ ॥ ୧୮ ॥
ତଦନ୍ତେ ସୌମ୍ୟ ଦ୍ୱୀପ ଦିଶଇ ମନୋହର ।
ଦାରୁଣ ଦ୍ୱୀପ ଖଣ୍ଡ ଶୋହଇ ନିରନ୍ତର ॥ ୧୯ ॥
ଏମନ୍ତେ ଆଠଦ୍ୱୀପ ନାମରେ ଆସ୍ଥାନ ।
ଭାରତ ଦ୍ୱୀପ ତାଙ୍କ ନବମ ବୋଲି ଘେନ ॥ ୨୦ ॥
ସଗର ସୁତମାନେ ଆପଣା ଭୁଜବଳେ ।
ସାଗରକୁ ଲଗାଇ ଅବନୀ ଖୋଳିନେଲେ ॥ ୨୧ ॥
ଉତ୍ତର ଦକ୍ଷିଣକୁ ଦୀର୍ଘରେ ବେନିଧାର ।
ସେ ଯେଣୁ ଖୋଳି ନେଲେ ତପସ୍ୱୀ ଅଳଙ୍କାର ॥ ୨୨ ॥
ସେହି ମାର୍ଗେ ବ୍ୟାପିଲା ଲବଣ ସିନ୍ଧୁ ଯାଇ ।
ପୁରୁବ ପଶ୍ଚିମକୁ ଖୋଳିଲେ ତାହା ଚାହିଁ ॥ ୨୩ ॥
ଏମନ୍ତେ ନବଖଣ୍ଡ ହେଲା ଯେ ତପଚାରି ।
ତହିଁରେ ଛଖଣ୍ଡକୁ ବେଢ଼ିଛି ସିନ୍ଧୁବାରି ॥ ୨୪ ॥
ସାବଧାନେ ଶୁଣ ହେ ତପସ୍ୱୀ କୁଳ ନୃପ ।
ହିମବାନ ପାର୍ଶ୍ୱରେ ଯେବଣ ତିନି ଦ୍ୱୀପ ॥ ୨୫ ॥
ସେ ଦ୍ୱୀପର ଦକ୍ଷିଣ ପୁରୁବ ପଶ୍ଚିମରେ ।
ଲବଣସିନ୍ଧୁ ବେଢ଼ି ରହିଛି ନିରନ୍ତରେ ॥ ୨୬ ॥
ଯଉଂ ମହୀଖଣ୍ଡରୁ ସେ ଆଠ ଦ୍ୱୀପ ହେଲା ।
ତାହାର ଅବଶେଷ ଯେତେକ ରହିଲା ॥ ୨୭ ॥
ଅତିଖ୍ୟାତ ହେଲା ସେ ଭାରତ ଦ୍ୱୀପ ହୋଇ ।
ଆଠଦ୍ୱୀପମାନଙ୍କ ମଧରେ ମୁଖ୍ୟ ହୋଇ ॥ ୨୮ ॥
ଦୀର୍ଘ ପ୍ରତି ଦୁଇରେ ବିସ୍ତାର ହୋଇ କରି ।
ସହସ୍ରେ ଯୋଜନ ସେ ଶୁଣ ହେ ତପଚାରି ॥ ୨୯ ॥
ସେ ଭାରତଦ୍ୱୀପର ପୂର୍ବରେ ତପୋଧନ ।
କିରାତମାନେ କ୍ରୀଡ଼ା କରନ୍ତି ପ୍ରତିଦିନ ॥ ୩୦ ॥
ସେହିପରି ଭାରତଦ୍ୱୀପର ପଶ୍ଚିମରେ ।
ଯବନମାନେ କ୍ରୀଡ଼ା କରନ୍ତି ନିରନ୍ତରେ ॥ ୩୧ ॥
ସେ ଭାରତ ଦ୍ୱୀପର ମଧରେ ଯେତେ ସ୍ଥାନ ।
ତହିଁରେ ବିହରନ୍ତି ବିବିଧ ମତେ ଜନ ॥ ୩୨ ॥
ବ୍ରାହ୍ମଣ ବୈଶ୍ୟ ଶୂଦ୍ର କ୍ଷତ୍ରିୟ ଜାତିମାନେ ।
ସେସ୍ଥାନେ ବାସ କରି ଅଛନ୍ତି ହୃଷ୍ଟମନେ ॥ ୩୩ ॥

ତହିଁରେ ବାସ କରି ଅଛନ୍ତି ଯେତେ ଦ୍ୱିଜ ।
ଯାଗରେ ସୂର୍ଯ୍ୟ ପରି ଦିଶଇ ତାଙ୍କ ତେଜ ॥ ୩୪ ॥
କ୍ଷତ୍ରିୟମାନେ ସବୁ ଯୁଦ୍ଧରେ ଧୁରନ୍ଧର ।
ବୈଶ୍ୟମାନେ ବାଣିଜ୍ୟ କରନ୍ତି ନିରନ୍ତର ॥ ୩୫ ॥
ବୋଲନ୍ତି ପରାଶର ଶୁଣ ହେ ସାଧୁଶୀଳ ।
ଭାରତଦ୍ୱୀପେ ଯଉଂ ସପତ କୁଳାଚଳ ॥ ୩୬ ॥
ତହିଁରେ ପାରିପାତ୍ର ନାମରେ ମହାଗିରି ।
ଚାହିଁ ଦେଲେ ଦିଶଇ ଦ୍ୱିତୀୟ ମେରୁ ପରି ॥ ୩୭ ॥
ବେଦ ମୂର୍ତ୍ତି ସହିତେ ଯେତେକ ନଦୀମାନେ ।
ସେହି ଗିରିକନ୍ଦରୁଂ ଝରନ୍ତି ପ୍ରତିଦିନେ ॥ ୩୮ ॥
ନର୍ମଦା ସୁରସା ଏହି ଦୁହିଁଙ୍କି ଆଦି କରି ।
ଆଉ ଯେତେ ସରିତ ଅଛନ୍ତି ତପଚାରି ॥ ୩୯ ॥
ବିନ୍ଧ୍ୟଗିରି କନ୍ଦରୁଂ ଝରନ୍ତି ସବୁ କାଳେ ।
ଅତ୍ୟନ୍ତ ସ୍ୱଚ୍ଛ ହୋଇ ବହନ୍ତି ମହୀତଳେ ॥ ୪୦ ॥
ପୟୋଷ୍ଣୀ ଆଦିତାପିନୀ ବିନ୍ଧ୍ୟା ତିନି ନଦୀ ।
ନିରନ୍ତରେ ବହନ୍ତି ପାତାଳ ଯାଏ ଭେଦି ॥ ୪୧ ॥
ଋକ୍ଷଗିରି କନ୍ଦରୁଂ ସେ ତିନି ତରଙ୍ଗିଣୀ ।
ମହିଁରେ ବିହରନ୍ତି ତପସ୍ୱୀ ଚୂଡ଼ାମଣି ॥ ୪୨ ॥
ଗୋଦାବରୀ ନଦୀ ଯେ ଆବର କୃଷ୍ଣବେଣୀ ।
ଭୀମରଥା ନାମରେ ତଟିନୀ ଏକ ପୁଣି ॥ ୪୩ ॥
ଏ ଯଉଂ ତିନି ନଦୀ ଏମାନେ ସବୁକାଳେ ।
ସହ୍ୟଗିରି ପାରୁସରୁଂ ବହନ୍ତି ମହୀତଳେ ॥ ୪୪ ॥
ସହ୍ୟନାମ ବହଇ ଯେବଣ ଗିରିବର ।
ତାହାର ପାରୁସରେ ଅଛି ଯେ ମହୀଧର ॥ ୪୫ ॥
ସେ ମହାମହୀଧର କନ୍ଦରୁଂ ଆହେ ଯତି ।
ତିନିଗୋଟି ତଟିନୀ ମଞ୍ଚରେ ସଞ୍ଚରନ୍ତି ॥ ୪୬ ॥
ସେ ଯଉଂ ତିନି ନଦୀ ତହିଁରେ ସ୍ନାନ କଲେ ।
କଲୁଷମାନେ କ୍ଷୟ ହୁଅନ୍ତି ଅବହେଳେ ॥ ୪୭ ॥
ତାମ୍ରପର୍ଣ୍ଣି ନଦୀ ଯେ ଆବର କୃତମାଳା ।
ଆଉ ଯେତେ କରନ୍ତି ଅବନୀ ମଧେ ଲୀଳା ॥ ୪୮ ॥
ମଳୟ ମହୀଧର କନ୍ଦରୁ ଝରି ଆସି ।
ସେ ସବୁ ସଞ୍ଚରନ୍ତି ଶୁଣ ହେ ମହାଋଷି ॥ ୪୯ ॥
ତ୍ରିଶାମା ଋଷିକୁଲ୍ୟା ସହିତେ ନଦୀ ମାନେ ।
ମହେନ୍ଦ୍ର ପର୍ବତରୁ ଝରନ୍ତି ପ୍ରତିଦିନେ ॥ ୫୦ ॥

ଋଷି କନ୍ୟାକୁମାରୀ ଏମନ୍ତେ ଆଉ ଯେତେ ।
ସେ ନଦୀଙ୍କ ମହିମା କହିବି ଅବା କେତେ ॥ ୫୧ ॥
ଶରଦ ଶଶାଙ୍କର କିରଣ ପରା ହୋଇ ।
ଶୀତଳ ଗୁଣ ପୂରି ରହିଛି ତାଙ୍କ ତହିଁ ॥ ୫୨ ॥
ଶୁକ୍ତିମାନ ଗିରିଙ୍କ ନିକଟେ ଯେଉଁ ଗିରି ।
ତାହାର କନ୍ଦରଙ୍ଗୁ ସେ ଆସଇ ସ୍ରବିକରି ॥ ୫୩ ॥
ଶତଦ୍ରୁ ଚନ୍ଦ୍ରଭାଗା ସହିତେ ଯେତେ ନଦୀ ।
ନିରନ୍ତରେ ବହନ୍ତି ପାତାଳପୁର ଭେଦି ॥ ୫୪ ॥
ହିମବାନ ପାଶର ପର୍ବତୁଁ ସର୍ବ ହୋଇ ।
ସନ୍ତତେ ବିହରନ୍ତି ଅବନୀ ତଳେ ଯାଇ ॥ ୫୫ ॥
ଏ ଯେଉଁ ନଦୀମାନେ କହିଲୁଁ ତପଚାରି ।
ଏହାଙ୍କ ଉପନଦୀ ମହୀରେ ଅଛି ପୁରି ॥ ୫୬ ॥
ଶତ ଶତ ସହସ୍ର ସହସ୍ର ସଂଖ୍ୟା ହୋଇ ।
ଉପନଦୀ ଅଛି ଯେ ଭାରତ ଦ୍ୱୀପ ତହିଁ ॥ ୫୭ ॥
ସେ ନଦୀମାନଙ୍କର ତଟରେ ତପୋଧନ ।
ସନ୍ତତେ ବସିଅଛି ବିବିଧ ଦେଶମାନ ॥ ୫୮ ॥
ପାଞ୍ଚାଳ କୁରୁ ଦେଶ ଆବର ମଘ ଦେଶ ।
ଏମନ୍ତେ ଆଉ ଯେତେ କହିଲେ ନୋହେ ଶେଷ ॥ ୫୯ ॥
ପୂର୍ବ ଦେଶ ମଗଧ କଳିଙ୍ଗ କାମ ରୂପ ।
ସେ ଯେଉଁ ଦେଶ ତାହାଙ୍କୁ ନାହିଁ ଯେ ଅନୁରୂପ ॥ ୬୦ ॥
ଓଡ୍ର ଅପରାନ୍ତ ଯେ ସୌରାଷ୍ଟ୍ର ଗୌଡ଼ ଦେଶ ।
ଦାକ୍ଷିଣାତ୍ୟ ମାଳବ ଏମାନେ ପରଶଂସ ॥ ୬୧ ॥
ଶୁଦ୍ର ଦେଶ ଆବର ମାଳୁକ ପାରୁ ପାରିପାତ୍ର ।
ସୌବୀର ଆଦି ଏତେ ଲୋକର ସ୍ତୁତିପାତ୍ର ॥ ୬୨ ॥
ସୈନ୍ଧବ ହୂଣଶାଲ୍ୟ ଶକଳ ମଦ୍ରଦେଶ ।
ଏମାନଙ୍କ ମହିମା କହିଲେ ନୋହେ ଶେଷ ॥ ୬୩ ॥
ଅମ୍ବଷ୍ଟ ଆରାମ ଯେ ତଦନ୍ତେ ପାରଶୀକ ।
ଏ ଦେଶମାନଙ୍କରେ ବସନ୍ତି ନାନା ଲୋକ ॥ ୬୪ ॥
ଏମନ୍ତେ ଯେତେ ଦେଶ କହିଲୁଁ ମୁନିବର ।
ନଦୀଙ୍କ ତଟକୁ ସେ ଦିଶନ୍ତି ମନୋହର ॥ ୬୫ ॥
ସେ ଦେଶମାନଙ୍କରେ ଯେତେକ ନରନାରୀ ।
ବଞ୍ଚନ୍ତି ନଦୀ ଜଳମାନଙ୍କୁ ପାନ କରି ॥ ୬୬ ॥
ସୁଗନ୍ଧ ସୁଶୀତଳ ସୁସ୍ୱାଦୁ ସୁନିର୍ମଳ ।
ଏମନ୍ତ ବିରାଜଇ ସେ ଯେଉଁ ନଦୀଜଳ ॥ ୬୭ ॥

ସେ ଜଳପାନ କଲା ମାତ୍ରକେ ଜନମାନେ ।
ସ୍ୱର୍ଗକୁ ହେଲେ ଇଚ୍ଛା କରନ୍ତି ନାହିଁ ମନେ ॥ ୬୮ ॥
ସେ ଯେଉଁ ନଦୀମାନେ ତାହାଙ୍କ ତଟେ ରହି ।
ସକଳପ୍ରାଣୀଙ୍କର କିଛିତେ ଚିନ୍ତା ନାହିଁ ॥ ୬୯ ॥
ଅତ୍ୟନ୍ତ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ କରି ।
ଉତ୍ତମ ଚରିତରେ ବଞ୍ଚନ୍ତି ନରନାରୀ ॥ ୭୦ ॥
ମନକୁ ସ୍ଥିର କରି ଶୁଣ ହେ ମହାଭାଗ ।
ସତ୍ୟ ତ୍ରେତା ଦ୍ୱାପର କଳି ଏ ଚାରିଯୁଗ ॥ ୭୧ ॥
ଏ ଯେଉଁ ଚାରିଯୁଗ କହିଲୁ ତୁମ୍ଭ ତହିଁ ।
ଭରତଖଣ୍ଡେ ଏକା ଏ ଯୁଗ ସଞ୍ଚରଇ ॥ ୭୨ ॥
ଭାରତ ବର୍ଷ ବିନା ଆଉ ଯେ ଆଠବର୍ଷ ।
ସେମାନଙ୍କ ଏ ଚାରିଯୁଗରୁ ନାହିଁ ଲେଶ ॥ ୭୩ ॥
ଭରତଖଣ୍ଡ ନାମେ ଯେଉଁ ପୁଣ୍ୟ ମହୀ ।
ସୁକୃତ ବଳେ ପ୍ରାଣୀ ତହିଁରେ ଜନମଇଂ ॥ ୭୪ ॥
ପ୍ରାଣୀମାନେ ସହସ୍ରେ ସହସ୍ରେ ଜନ୍ମ ଗଲେ ।
ଭରତଖଣ୍ଡେ ଯାଇ ଜନ୍ମନ୍ତି ଭାଗ୍ୟ ବଳେ ॥ ୭୫ ॥
ଭାରତବର୍ଷ ମଧ୍ୟେ ମାନବ ତନୁ ବହି ।
ଯେଉଁ ପ୍ରାଣୀ ପୁରୁବ ପୁଣ୍ୟେରୁଂ ଜନମଇଂ ॥ ୭୬ ॥
ଏ ସଂସାରେ ତାହାକୁ ସେହି ସେ ପଟାନ୍ତର ।
ଏ ଘେନି ନିଃସ୍ୱାର୍ଥ ଏକା ମାନବ କଳେବର ॥ ୭୭ ॥
ଭରତଖଣ୍ଡେ ଜନ୍ମ ଲଭନ୍ତି ଯେଉଁ ଜନେ ।
ତାହାଙ୍କୁ ସ୍ତୁତି କରି ଦେବତା ଗଣମାନେ ॥ ୭୮ ॥
ନିରନ୍ତରେ ବୋଲନ୍ତି ଆମ୍ଭର ଜନ୍ମଧିକ ।
ଧନ୍ୟ ଏକା ଭରତଖଣ୍ଡରେ ଥିବା ଲୋକ ॥ ୭୯ ॥
ସ୍ୱର୍ଗ ଅପବର୍ଗର କାରଣ ଯେଉଁ ଥାନ ।
ତହିଁରେ କ୍ରୀଡ଼ା କରି ବଞ୍ଚନ୍ତି ପ୍ରତିଦିନ ॥ ୮୦ ॥
ଦେବତା ହୋଇ ଆମ୍ଭେ ସ୍ୱର୍ଗରେ ଯେତେ ଲୋକ ।
ଆମ୍ଭ ତହୁଁ ସେମାନେ ବଳନ୍ତି ଏକୁଁ ଏକ ॥ ୮୧ ॥
କାମନାମାନ ମନେ କିଛିତେ ନ ପାଉନ୍ତି ।
ବିଷ୍ଣୁଙ୍କ ଶ୍ରୀଚରଣ ଆରାଧି ବଞ୍ଚୁଥାନ୍ତି ॥ ୮୨ ॥
ଯେତେ କର୍ମ କରନ୍ତି ନିଷ୍କାମ ଯୋଗିଗଣେ ।
ସେମାନେ ସମର୍ପନ୍ତି ବିଷ୍ଣୁଙ୍କ ଶ୍ରୀଚରଣେ ॥ ୮୩ ॥
ଦାରୁଣ ତପମାନ କରନ୍ତି ଯେତେ ଯତି ।
ଯେତେକ ଯାଗ କର୍ତ୍ତା ହୋମକୁ ଆଚରନ୍ତି ॥ ୮୪ ॥

ପରଂଧାମ ପାଇବା କାମନା କରି ମନେ ।
ଯେତେ ଦାନ ଦିଅନ୍ତି ଧନାଢ଼୍ୟ ଜନମାନେ ॥ ୮୫ ॥
ଯେତେ ପ୍ରାଣୀ ଯାଗରେ ପୂଜନ୍ତି ଜନାର୍ଦ୍ଦନ ।
ଆନଠାରେ କେ ହେବ ସେ ଯଉଂ କଥାମାନ ॥ ୮୬ ॥
ଯଜ୍ଞମୟ ସେ ଯଉଂ ଶାରଙ୍ଗଚାପଧର ।
ଆପଣେ ବହି ଯଜ୍ଞପୁରୁଷ ଅବତାର ॥ ୮୭ ॥
ଯଜ୍ଞ ଭାଗ ଭୁଞ୍ଜନ୍ତି ଭରତଖଣ୍ଡେ ଯାଇ ।
ଏଣୁ କରି ଭରତଖଣ୍ଡକୁ ସମ ନାହିଁ ॥ ୮୮ ॥
ବିଷ୍ଣୁଙ୍କ ଶ୍ରୀଚରଣ କମଳ ଚିନ୍ତାକରି ।
ରସନାରେ ସର୍ବଦା ବିଷ୍ଣୁଙ୍କ ନାମ ଧରି ॥ ୮୯ ॥
ଯଉଂ ପ୍ରାଣୀ ଜୀବନ ତେଜଇ ସେ ସ୍ଥାନରେ ।
ସାଯୁଜ୍ୟ ଲଭଇ ସେ ବିଷ୍ଣୁଙ୍କ ଶ୍ରୀଅଙ୍ଗରେ ॥ ୯୦ ॥
ସେ ଯଉଂ ପରମାତ୍ମା ଅନନ୍ତ ଆଦିକନ୍ଦ ।
ନିର୍ବିକାର ପୁରୁଷ ଅନାଦି ସଦାନନ୍ଦ ॥ ୯୧ ॥
ଭରତଖଣ୍ଡ ମଧେ ଜନମ ହେଲାମାତ୍ରେ ।
ସେ ପ୍ରଭୁଙ୍କୁ ପ୍ରାଣିଏ ଦେଖନ୍ତି ବେନି ନେତ୍ରେ ॥ ୯୨ ॥
ଭରତଖଣ୍ଡେ ଭଜି ଭଗତ ଭାବଗ୍ରାହୀ ।
ସଂସାରୁଂ ତରନ୍ତି ସେ ଅତ୍ୟନ୍ତ ଶୁଦ୍ଧ ହୋଇ ॥ ୯୩ ॥
ଜଣାଗଲା ଭରତ ଖଣ୍ଡରେ ଯେତେ ନର ।
ତାହାଙ୍କୁ ଆମ୍ଭେମାନେ ନୋହିବା ପଟାନ୍ତର ॥ ୯୪ ॥
ଯଉଂ କର୍ମ ଆମ୍ଭଙ୍କୁ ଦେଇଛି ସ୍ୱର୍ଗ ଭୋଗ ।
ସେ କର୍ମ ଥିବା ଯାଏ ଆମ୍ଭର ଏକା ସ୍ୱର୍ଗ ॥ ୯୫ ॥
ସେ କର୍ମ ନାଶଗଲେ ମର୍ତ୍ତ୍ୟରେ ଅବତରି ।
ସଂସାର ଜାଲେ ଯାଇ ପଡ଼ିବା ମୀନ ପରି ॥ ୯୬ ॥
ଭରତଖଣ୍ଡେ ଜାତ ଯେତେକ ପ୍ରାଣୀମାନେ ।
ଧନ୍ୟ ବୋଲି କେବଳ ତାହାକୁ ଘେନ ମନେ ॥ ୯୭ ॥
ଜିତେନ୍ଦ୍ରିୟ ଅଟନ୍ତି ଯେତେକ ତପଚାରୀ ।
ସେମାନଙ୍କ ସଙ୍ଗତେ ନୁହନ୍ତି କେହି ସରି ॥ ୯୮ ॥
ଇନ୍ଦ୍ରିୟ ସକାଶରୁଂ ଭରତଖଣ୍ଡ ଲୋକେ ।
ଶ୍ରୀବିଷ୍ଣୁଙ୍କୁ ମୋହନ୍ତି ଅତ୍ୟନ୍ତ କଉତୁକେ ॥ ୯୯ ॥
ଇନ୍ଦ୍ରିୟଙ୍କ ଈଶ୍ୱର ସେ ଯଉଂ ଜନାର୍ଦ୍ଦନ ।
ଇନ୍ଦ୍ରିୟରେ ତାହାଙ୍କୁ ସେବନ୍ତି ପ୍ରତିଦିନ ॥ ୧୦୦ ॥
ଏ ଘେନି ତାହାଙ୍କର ଇନ୍ଦ୍ରିୟମାନେ ସାର୍ଥ ।
ଯହିଁରେ ବଶୀଭୂତ ଅଟନ୍ତି ରମାନାଥ ॥ ୧୦୧ ॥

୯୩. (କ) ସେ ଷଡ଼ଖଣ୍ଡ ଅତି

ଏମନ୍ତ ବୋଲି ସ୍ୱର୍ଗେ ସକଳ ସୁରଗଣେ ।
ଭରତଖଣ୍ଡ ସ୍ତୁତି ପଢ଼ନ୍ତି ପ୍ରତିକ୍ଷଣେ ।। ୧୦୨ ।।
ବୋଲନ୍ତି ପରାଶର ଶୁଣ ହେ ତପୋଧନ ।
ଭାରତ ବର୍ଷ ବୋଲି ସେ ଯେଉଁ ଦିବ୍ୟସ୍ଥାନ ।। ୧୦୩ ।।
ତାହାକୁ ଆଦି କରି ସେ ଯେଉଁ ଆଠବର୍ଷ ।
ଜମ୍ବୁଦ୍ୱୀପ ନାମରେ ସମସ୍ତେ ପରକାଶ ।। ୧୦୪ ।।
ସେ ଯେଉଁ ଜମ୍ବୁଦୀପ ତପସ୍ୱୀ ଅଲଙ୍କାର ।
ସମସ୍ତ ମିଶି ଲକ୍ଷେ ଯୋଜନ ତା ବିସ୍ତାର ।। ୧୦୫ ।।
ସେ ଦ୍ୱୀପକୁ ବେଢ଼ି ଯେ ରହିଛି ପାରାବାର ।
ତେଣୁ କରି ଦିଶଇ ଅତ୍ୟନ୍ତ ମନୋହର ।। ୧୦୬ ।।
ସେ ପାରାବାର ଲକ୍ଷେ ଯୋଜନ ହୋଇକରି ।
ବିସ୍ତାର ଗୁଣେ ଜମ୍ବୁଦ୍ୱୀପର ସଙ୍ଗେ ସରି ।। ୧୦୭ ।।
ତଦନ୍ତେ ପ୍ଲକ୍ଷଦ୍ୱୀପ ହୋଇଛି ପରକାଶ ।
ସର୍ବଶୁଭେ ଦ୍ବିତୀୟ ଅଧ୍ୟାୟ ହେଲା ଶେଷ ।। ୧୦୮ ।।
ଶ୍ରୀବିଷ୍ଣୁ ପୁରାଣ ଯେ ଦ୍ବିତୀୟ ଅଂଶଗୀତ ।
ଅବନୀ ମଣ୍ଡଳରେ ପ୍ରମାଣ ହେଲା ଖ୍ୟାତ ।। ୧୦୯ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୧୦ ।।

# ଚତୁର୍ଥ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ସାଧୁଶୀଳ ।
ଜମ୍ବୁଦ୍ୱୀପ ନାମରେ ବିଦିତ ଯେଉଁ ସ୍ଥଳ ।। ୧ ।।
ତାହାଙ୍କୁ ପାରାବାର ବେଢ଼ିଛି ଯେଉଁପରି ।
ତେମନ୍ତ ସେହି ପାରାବାରକୁ ବେଢ଼ି କରି ।। ୨ ।।
ପ୍ଲକ୍ଷନାମ ଦ୍ୱୀପ ଯେ ଦିଶଇ ମନୋହର ।
ବେନି ଲକ୍ଷଯୋଜନ ଅଟଇ ତା ବିସ୍ତାର ।। ୩ ।।
ପ୍ରିୟବ୍ରତ ନାମରେ ଯେବଣ ନରସାଇଁ ।
ସପତପୁତ୍ରକୁ ସେ ସପତ ଦ୍ୱୀପ ଦେଇ ।। ୪ ।।
ତପସ୍ୟା ଅର୍ଥେ ପୁଣ୍ୟକ୍ଷେତ୍ରକୁ ଚଳିଗଲେ ।
ସେ ଯେଉଁ ସାତସୁତ ଅବନୀପତି ହେଲେ ।। ୫ ।।
ତହିଁରେ ମେଧାତିଥି ନାମରେ ଯେଉଁ ସୁତ ।
ପ୍ଲକ୍ଷଦ୍ୱୀପ ମଣ୍ଡଳେ ହୋଇଲେ ନରନାଥ ।। ୬ ।।
ସେ ମେଧାତିଥିଙ୍କର ବୀର୍ଯ୍ୟରୁ ହୋଇ ଜାତ ।
ରବି ତଳେ ବିଖ୍ୟାତ ହୋଇଲେ ସାତସୁତ ।। ୭ ।।
ସେ ଯେଉଁ ସାତପୁତ୍ର ହୋଇଲେ ଉତପନ ।
ଶୁଣ ଆହେ ମୈତ୍ରେୟ ତାହାଙ୍କ ନାମମାନ ।। ୮ ।।
ପ୍ରଥମେ ଶାନ୍ତଭୟ ଶିଶିର ଦ୍ୱିତୀୟରେ ।
ସୁଖୋଦୟ କୁମର ଜନ୍ମିଲେ ତୃତୀୟରେ ।। ୯ ।।
ଚତୁର୍ଥରେ ଆନନ୍ଦ ପଞ୍ଚମେ ହେଲେ ଶିବ ।
କ୍ଷେମକ ସୁତ ଷଷ୍ଠେ ସପ୍ତମ ସୁତ ଧ୍ରୁବ ।। ୧୦ ।।
ମେଧାତିଥି ରାଜାଙ୍କ ଏ ଯେଉଁ ସାତ ସୁତ ।
ପ୍ଲକ୍ଷଦ୍ୱୀପେ ଏମାନେ ହୋଇଲେ ନରନାଥ ।। ୧୧ ।।
ସପତଖଣ୍ଡ କରି ବାଣ୍ଟିଲେ ବସୁମତୀ ।
ଏକେ ଏକେ ହୋଇଲେ ତହିଁରେ ନରପତି ।। ୧୨ ।।
ପ୍ରଥମ ଖଣ୍ଡେ ରାଜା ହୋଇଲେ ଶାନ୍ତଭୟ ।
ସେ ଯେଉଁ ମହୀପତି ଅତ୍ୟନ୍ତ ପୁଣ୍ୟମୟ ।। ୧୩ ।।
ଦ୍ୱିତୀୟରେ ଶିଶିର ହୋଇଲେ ମହୀପାଳ ।
ରବି ତଳେ ସେ ରାଜା ଅତ୍ୟନ୍ତ ଶାନ୍ତଶୀଳ ।। ୧୪ ।।
ତୃତୀୟରେ ଆନନ୍ଦ ହେଲେ ଯେ ନରପତି ।
ଶରଦ ଚନ୍ଦ୍ରପରି ବିଦିତ ତାର କୀର୍ତ୍ତି ।। ୧୫ ।।
ଚତୁର୍ଥ ଖଣ୍ଡେ ଶିବ ହୋଇଲେ ନରବର ।
ଧର୍ମଶାସ୍ତ୍ର ପ୍ରମାଣେ ପାଳିଲେ ରାଜ୍ୟଭାର ।। ୧୬ ।।

ପଞ୍ଚମରେ କ୍ଷେମକ ଅବନୀପତି ହେଲେ ।
ଷଷ୍ଠରେ ସୁଖୋଦୟ ଆନନ୍ଦେ ବିହରିଲେ ।। ୧୭ ।।
ସପ୍ତମ ଖଣ୍ଡେ ଧ୍ରୁବ ଅବନୀପତି ହେଲେ ।
ରିପୁକାନ୍ତାମାନଙ୍କର ଅଞ୍ଜନ ଧୋଇଲେ ।। ୧୮ ।।
ଏମନ୍ତେ ମେଧାତିଥି ରାଜାଙ୍କ ସାତ ସୁତ ।
ପ୍ଳକ୍ଷ ଦ୍ୱୀପମଣ୍ଡଳେ ହୋଇଲେ ନରନାଥ ।। ୧୯ ।।
ଯେଉଁ ପୁତ୍ର ଯହିଁରେ ହୋଇଲେ ନୃପମଣି ।
ତାହାରି ନାମେ ଖ୍ୟାତ ହୋଇଲା ସେ ଧରଣୀ ।। ୨୦ ।।
ଶାନ୍ତଭୟ ବର୍ଷ ଯେ ପ୍ରଥମ ଖଣ୍ଡ ହେଲା ।
ଦ୍ୱିତୀୟ ଖଣ୍ଡ ମଧ ଶିଶିର ବୋଲାଇଲା ।। ୨୧ ।।
ସୁଖୋଦୟ ନାମରେ ତୃତୀୟ ଖଣ୍ଡ ଖ୍ୟାତ ।
ସେ ବର୍ଷର ମହିମା କହିଲେ ନ ନୋହେଁ ଅନ୍ତ ।। ୨୨ ।।
ଆନନ୍ଦଖଣ୍ଡନାମେ ଚତୁର୍ଥ ଯେଉଁ ବର୍ଷ ।
ସାତଦ୍ୱୀପମାନଙ୍କେ ହୋଇଲେ ପରକାଶ ।। ୨୩ ।।
ସେ ଯେଉଁ ସାତବର୍ଷ ତହିଁରେ ମୁନିବର ।
ସାତଗୋଟି ପର୍ବତ ଦିଶଇ ମନୋହର ।। ୨୪ ।।
ବରଷମାନଙ୍କର ମର୍ଯ୍ୟାଦା ହୋଇକରି ।
ପ୍ଳକ୍ଷଦ୍ୱୀପେ ଅଛନ୍ତି ସେ ଯେଉଁ ସାତଗିରି ।। ୨୫ ।।
ସେ ଗିରିମାନଙ୍କର କହିବା ନାମ ମାନ ।
ମନକୁ ସ୍ଥିର କରି ଶୁଣ ହେ ତପୋଧନ ।। ୨୬ ।।
ଗୋମେଦ ନାମେ ଗିରି ପ୍ରଥମେ ମନୋହର ।
ତଦନ୍ତେ ଚନ୍ଦ୍ରନାମେ ଅମୂଲ୍ୟ ମହୀଧର ।। ୨୭ ।।
ନାରଦ ନାମେ ଗିରି ତଦନ୍ତେ ଶୋଭାବନ ।
ଦୁନ୍ଦୁଭି ନାମେ ଗିରି ତେମନ୍ତ ବୋଲି ଘେନ ।। ୨୮ ।।
ସୋମନାମେ ପର୍ବତ ଅଛି ଯେ ତଦନ୍ତରେ ।
ଚିତ୍ତ ହରି ନିଅଇଁ ଚାହିଁଲା ମାତ୍ର କରେ ।। ୨୯ ।।
ସୁମନା ବୋଲି ଆଉ ଅଛି ଯେ ଏକ ଗିରି ।
ବିରାଜଇ କାଞ୍ଚନ ଗିରିଙ୍କ ମିତ୍ର ପରି ।। ୩୦ ।।
ତଦନ୍ତରେ ବୈଭ୍ରାଜ ନାମରେ ଗିରିବର ।
ପ୍ଳକ୍ଷଦ୍ୱୀପ ମହିକି ଦିଶଇ ଶୋଭାକର ।। ୩୧ ।।
ସାତଦ୍ୱୀପେ ଅଛନ୍ତି ଏ ଯେଉଁ ସାତଗିରି ।
ସେହିମାନେ କେବଳ ତାହାଙ୍କ ତୁଲେ ସରି ।। ୩୨ ।।
ମୁନି ସିଦ୍ଧ ଗନ୍ଧର୍ବ ଚାରଣ ସୁର ଗଣେ ।
ସେ ଗିରିମାନଙ୍କରେ କ୍ରୀଡ଼ନ୍ତି ଅନୁକ୍ଷଣେ ।। ୩୩ ।।

ଅପୂର୍ବ ପର୍ବତ ସେ ତହିଁରେ କ୍ରୀଡ଼ା କରି ।
ଆନନ୍ଦରେ ବଞ୍ଚନ୍ତି ଅନେକ ନରନାରୀ ॥ ୩୪ ॥
ସେ ପର୍ବତମାନଙ୍କେ ଯେତେକ ପ୍ରାଣୀମାନେ ।
ସମସ୍ତେ ପୁଣ୍ୟବନ୍ତ ଅଟନ୍ତି ପ୍ରତିଦିନେ ॥ ୩୫ ॥
ଅଶେଷ କାଳ ଯାଏ ଆୟୁଷ ପାଇ କରି ।
ନାନା ଭୋଗ କରନ୍ତି ଅମରଗଣ ପରି ॥ ୩୬ ॥
ପାଞ୍ଚ ପାଞ୍ଚ ସହସ୍ର ବରଷ ଆୟୁ ପାଇ ।
ତଦନ୍ତରେ ପଡ଼ନ୍ତି ଜନନୀ ଗର୍ଭେ ଯାଇ ॥ ୩୭ ॥
ତାହାଙ୍କ ମନ ତାପ ନୁହଇ କେତେବେଳେ ।
ସନ୍ତତେ ଭାସୁଥାନ୍ତି ଆନନ୍ଦ ସିନ୍ଧୁ ଜଳେ ॥ ୩୮ ॥
ଜରାବ୍ୟାଧି ଏମାନ ସ୍ୱପ୍ନରେ ନଜାଣନ୍ତି ।
ଏମନ୍ତେ ପ୍ରାଣୀମାନେ ତହିଁରେ ବିହରନ୍ତି ॥ ୩୯ ॥
ସେ ଯେଉଁ ଗିରିମାନେ ତହିଁରୁ ସ୍ରବ ହୋଇ ।
ନଦୀମାନେ ମିଶନ୍ତି ସମୁଦ୍ର ଜଳେ ଯାଇ ॥ ୪୦ ॥
ସେ ନଦୀମାନଙ୍କର ନାମକୁ ଥରେ ଶୁଣି ।
କଳୁଷ ଜଳଧିରୁ ତରନ୍ତି ସର୍ବପ୍ରାଣୀ ॥ ୪୧ ॥
ଅନୁତପ୍ତା ନାମରେ ଯେବଣ ମହାନଦୀ ।
ସେ ନଦୀ ସ୍ରବୁ ଅଛି ଗୋମେଦଗିରି ଭେଦି ॥ ୪୨ ॥
ଗୋମେଦ ମହୀଧର କନ୍ଦରୁ ଝରିକରି ।
ଶାନ୍ତଭୟ ବର୍ଷରେ ପଡ଼ଇ ତାର ବାରି ॥ ୪୩ ॥
ତଦନ୍ତରେ ସେ ନଦୀ ପବନୁ ବ୍ୟଗ୍ର ହୋଇ ।
ଇକ୍ଷୁ ପାରାବାରଙ୍କେ ସଙ୍ଗମ ଆଚରଇ ॥ ୪୪ ॥
ଶିଖୀ ନାମ ବହଇ ଯେବଣ ତରଙ୍ଗିଣୀ ।
ଚନ୍ଦ୍ରଗିରି କନ୍ଦରୁ ଝରଇ ତା'ର ପାଣି ॥ ୪୫ ॥
ଶିଶିର ବର୍ଷେ ପଡ଼ି ସେ ଯେଉଁ ନଦୀଜଳ ।
ଇକ୍ଷୁପାରାବାରକୁ ଚଳଇ ତତକାଳ ॥ ୪୬ ॥
ପିପାସା ନାମେ ଯେଉଁ ନଦୀ ତପଚାରି ।
ନାରଦ ପର୍ବତରୁ ଝରଇ ତାର ବାରି ॥ ୪୭ ॥
ଶୁକୋଦୟ ବର୍ଷର ଅବନୀ ତଳେ ବହି ।
ସାଗରେ ମିସଇ ସେ ଅତ୍ୟନ୍ତ ବ୍ୟଗ୍ର ହୋଇ ॥ ୪୮ ॥
ଦୁନ୍ଦୁଭି ଗିରିଠାରୁ ତ୍ରିଦିବାନାମେ ନଦୀ ।
ବହଇ ଯେ ଆନନ୍ଦ ବର୍ଷର ମହୀଭେଦି ॥ ୪୯ ॥
ଇକ୍ଷୁ ବୋଲି ସେ ଯେଉଁ ସାଗର ତପୋଧନ ।
ତାକୁ ସେ ତରଙ୍ଗିଣୀ କରଇ ଆଲିଙ୍ଗନ ॥ ୫୦ ॥

କ୍ରସୁନାମେ ତଟିନୀ ଅଛି ଯେ ତପଚାରି ।
ସୋମକ ପର୍ବତରୁ ଝରଇ ତାର ବାରି ॥ ୫୧ ॥
ଶିବଖଣ୍ଡେ ପଡ଼ି ସେ ମିସଇ ସିନ୍ଧୁଜଳେ ।
ସେ ନଦୀକି ଉପମା କେ ଦେବ ରବି ତଳେ ॥ ୫୨ ॥
ସୁମନା ପର୍ବତରୁ ଅମୃତା ନଦୀ ବହି ।
କ୍ଷେମକ ବର୍ଷେ ପଡ଼ି ସାଗରେ ସମ୍ଭବଇ ॥ ୫୩ ॥
ବୈଭ୍ରାଜ ଅଚଳରୁ ସୁକୃତା ନଦୀ ଆସି ।
ଧ୍ରୁବଖଣ୍ଡେ ପଡ଼ଇ ଶୁଣ ହେ ମହାଋଷି ॥ ୫୪ ॥
ଏ ସମସ୍ତେ ମିଶନ୍ତି ସମୁଦ୍ର ଜଳେ ଯାଇ ।
ଇକ୍ଷୁ ସିନ୍ଧୁ କେବଳ ତାହାକୁ ଉଦ୍ଧରଇ ॥ ୫୫ ॥
ଅନୁତପ୍ତା ପିପାସା ତ୍ରିଦିବା କ୍ରସୁ ଶିଖୀ ।
ଅମୃତା ସୁକୃତା ଯେ ସାତ ଯେ ଦେଲୁ ଯୋଖି ॥ ୫୬ ॥
ଏ ସାତ ନାମ କର୍ଣ୍ଣେ ପ୍ରବେଶ ହେଲା ମାତ୍ରେ ।
ପୁଣ୍ୟମାନେ ପ୍ରବେଶ ହୁଅନ୍ତି ପ୍ରାଣୀ ଗାତ୍ରେ ॥ ୫୭ ॥
ଏହାଙ୍କ ଉପନଦୀ ଅଛନ୍ତି ନାନା ମତେ ।
ଆମୂଳ କରି ଅବା କହିବି ତାହା କେତେ ॥ ୫୮ ॥
ଏ ନଦୀମାନେ ଯେଉଁ ପର୍ବତୁଁ ସ୍ରବି ହୋଇ ।
ମଣ୍ଡି ଦେଇଅଛନ୍ତି ସପତ ଦ୍ୱୀପା ମହୀ ॥ ୫୯ ॥
ସେ ମହୀମଣ୍ଡଳକୁ ପ୍ରଧାନ ସେ ଗିରି ।
ଆଉ ଯେତେ ଅଛନ୍ତି ନୁହନ୍ତି ତାଙ୍କ ପରି ॥ ୬୦ ॥
ଏମନ୍ତେ କେତେକେତେ ଅଛନ୍ତି ମହୀଧର ।
ସାବଧାନେ ଶୁଣହେ ତପସ୍ୱୀ ଅଳଙ୍କାର ॥ ୬୧ ॥
ସେ ଯେଉଁ ନଦୀମାନେ କହିଲୁ ସାଧୁଶୀଳ ।
ସୁଧାଠାରୁ ମଧୁର ଅଟଇ ତାଙ୍କ ଜଳ ॥ ୬୨ ॥
ସେ ଜଳପାନ କରି ସକଳ ପ୍ରାଣୀମାନେ ।
ନିରନ୍ତରେ ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟମନେ ॥ ୬୩ ॥
ସେ ନଦୀମାନେ ଆଉ ବଢ଼ନ୍ତି ନାହିଁ କେବେ ।
ଜଳ ଅବା କାହିଁକି ତୁଟିବ ଅର୍ଦ୍ଧେଲବେ ॥ ୬୪ ॥
ସେ ଯେଉଁ ପ୍ଲକ୍ଷଦ୍ୱୀପ ତହିଁରେ ମୁନିବର ।
କଦାପି ନାହିଁ ଯୁଗମାନଙ୍କ ବ୍ୟବହାର ॥ ୬୫ ॥
ସେହି ପ୍ଲକ୍ଷଦ୍ୱୀପରେ ଅଛନ୍ତି ଚାରିବର୍ଣ୍ଣ ।
ଶୁଣିଲାମାତ୍ରେ ତାହା କୃତାର୍ଥ ହେବ କର୍ଣ୍ଣ ॥ ୬୬ ॥
ଆର୍ଯ୍ୟକ ନାମେ ତହିଁ ଅଛନ୍ତି ଯେତେ ଜାତି ।
ବ୍ରାହ୍ମଣ ବୋଲଇ ସେ ତହିଁରେ ସଞ୍ଚରନ୍ତି ॥ ୬୭ ॥

କୁରର ନାମେ ତହିଁ ଅଛନ୍ତି ଯଉଁମାନେ ।
ସେହିମାତ୍ର କ୍ଷତ୍ରିୟ ବୋଲନ୍ତି ପ୍ରତିଦିନେ ॥ ୬୮ ॥
ବିବିଂଶ ନାମ ବହି ଅଛନ୍ତି ଯେତେ ପ୍ରାଣୀ ।
ବୈଶ୍ୟବୋଲି ତହିଁରେ ଅଟନ୍ତି ସେହି ପୁଣି ॥ ୬୯ ॥
ଭାବି ବୋଲି ବୋଲାଉ ଅଛନ୍ତି ଯେତେ ଜାତି ।
ଶୂଦ୍ର ତହିଁ ସେମାନେ ଶୁଣ ହେ ମହାମତି ॥ ୭୦ ॥
ପଞ୍ଚଧର୍ମ ସେମାନେ ସର୍ବଦା ଆଚରନ୍ତି ।
ସେ ପ୍ରାଣୀମାନଙ୍କର କାହାକୁ ନାହିଁ ଭୀତି ॥ ୭୧ ॥
ସେ ଯଉଁ ପଞ୍ଚ ଧର୍ମ ଶୁଣ ହେ ମୁନିବର ।
ପ୍ରଥମେ ବ୍ରହ୍ମଚର୍ଯ୍ୟ କରନ୍ତି ନିରନ୍ତର ॥ ୭୨ ॥
ଅହିଂସା ବୋଲି ଯାହା ଦ୍ୱିତୀୟ ଧର୍ମ ସେହି ।
ତୃତୀୟେ ମିଥ୍ୟାବାଣୀ ମୁଖରୁ ନସ୍ଫୁରଇ ॥ ୭୩ ॥
ଚତୁର୍ଥ ଧର୍ମ ଶୁଣ ତପସ୍ୱୀ ନିଶାପତି ।
ଚୌର୍ଯ ବୋଲି କେମନ୍ତ ସେ କଥା ନ ଜାଣନ୍ତି ॥ ୭୪ ॥
ପଞ୍ଚମେ ପରିଗ୍ରହ କରନ୍ତି ନାହିଁ କେବେ ।
ନିରନ୍ତରେ ବଞ୍ଚନ୍ତି ଅତ୍ୟନ୍ତ ସ୍ୱଚ୍ଛ ଭାବେ ॥ ୭୫ ॥
ଜମ୍ବୁଦ୍ୱୀପ ମଧରେ ଯେମନ୍ତ ଜମ୍ବୁଦ୍ରୁମ ।
ସେ ସ୍ଥାନେ ପ୍ଲକ୍ଷ ଦ୍ରୁମ ତେମନ୍ତ ମନୋରମ ॥ ୭୬ ॥
ପ୍ଲକ୍ଷ ତରୁ ନାମରେ ସେ ଯେଣୁ ଖ୍ୟାତ ହେଲା ।
ସେ ଘେନି ପ୍ଲକ୍ଷଦ୍ୱୀପ ବୋଲାଇ ବିରାଜିଲା ॥ ୭୭ ॥
ସେ ଯଉଁ ପ୍ଲକ୍ଷ ଦ୍ୱୀପ ତହିଁରେ ପ୍ରାଣୀମାନେ ।
ବିଷ୍ଣୁଙ୍କୁ ପୂଜା କରି ବଞ୍ଚନ୍ତି ପ୍ରତିଦିନେ ॥ ୭୮ ॥
ସେ ପ୍ଲକ୍ଷଦ୍ୱୀପ ମଧେ ସାକ୍ଷାତେ ନରହରି ।
ସୋମରୂପେ ଆପଣେ ଅଛନ୍ତି ବିଜେ କରି ॥ ୭୯ ॥
ଆର୍ଯ୍ୟକୁ ଆଦି କରି ସେ ଯଉଁ ଚାରିଜାତି ।
ସନ୍ତୋଷରେ ସନ୍ତତେ ବିଷ୍ଣୁଙ୍କୁ ଆରାଧନ୍ତି ॥ ୮୦ ॥
ଜଗତର ସର୍ଜନା କାରକ ରମାକାନ୍ତ ।
ପରମାତ୍ମା ସ୍ୱରୂପେ ପ୍ରାଣୀଙ୍କ ହୃଦେସ୍ଥିତ ॥ ୮୧ ॥
ସକଳ ଜନନାଥ ଅଖିଳ ଚିନ୍ତାମଣି ।
ଅନାଦି ଆଦିକନ୍ଦ କୌମୁଦୀଗଦାପାଣି ॥ ୮୨ ॥
ଏମନ୍ତ ଯଉଁ ବିଷ୍ଣୁ ତାହାଙ୍କୁ ସେବା କରି ।
ଆନନ୍ଦରେ ବଞ୍ଚନ୍ତି ଦିବସ ବିଭାବରୀ ॥ ୮୩ ॥
ବୋଲନ୍ତି ପରାଶର ଶୁଣ ହେ ତପିବର ।
ପ୍ଲକ୍ଷ ଦ୍ୱୀପ ସମୀପେ ଅଛି ଯେ ପାରାବାର ॥ ୮୪ ॥

ବେନିଲକ୍ଷ ଯୋଜନ ବିସ୍ତାର ହୋଇ କରି ।
ସେ ଇକ୍ଷୁ ରତ୍ନାକର ବେଢ଼ିଛି ତପଚାରି ॥ ୮୫ ॥
ପ୍ଳକ୍ଷଦ୍ୱୀପ ଚରିତ କହିଲୁ ତୁମ୍ଭ ଆଗେ ।
ଶାଲ୍ମଳୀ ଦ୍ୱୀପ କଥା ଶୁଣ ହେ ଅନୁରାଗେ ॥ ୮୬ ॥
ପ୍ରିୟବ୍ରତ ବୀର୍ଯ୍ୟରୁ ହୋଇଲା ସୁତ ଜାତ ।
ବପୁଷ୍ମାନ ବୋଲାଇବ ହୋଇ ବୀର୍ଯ୍ୟବନ୍ତ ॥ ୮୭ ॥
ଶାଲ୍ମଳୀ ଦ୍ୱୀପେ ସେ ଯେ ହୋଇଲେ ନରନାଥ ।
ତାହାଙ୍କ ତହୁଁ ଜାତ ହୋଇଲେ ସାତ ସୁତ ॥ ୮୮ ॥
ପ୍ରିୟ ନାମେ କୁମର ହୋଇଲେ ପ୍ରଥମରେ ।
ହରିତ ସୁତ ଜାତ ହୋଇଲେ ଦ୍ୱିତୀୟରେ ॥ ୮୯ ॥
ଜୀମୂତ ଉତପତି ହେଲେ ଯେ ତୃତୀୟରେ ।
ରୋହିତ ବୋଲି ସୁତ ଜନ୍ମିଲେ ଚତୁର୍ଥରେ ॥ ୯୦ ॥
ପଞ୍ଚମରେ ବୈଦ୍ୟୁତ ହୋଇଲେ ଉତପନ ।
କୀର୍ତ୍ତିରତ୍ନ ବିହ୍ନି ସେ ମଣ୍ଡିଲେ ତ୍ରିଭୁବନ ॥ ୯୧ ॥
ମାନସ ନାମେ ଷଷ୍ଠେ ଜନ୍ମିଲେ ଯେଉଁ ସୁତ ।
ପ୍ରତାପ କି ସାକ୍ଷାତେ ହୋଇଲା ମୂର୍ତ୍ତିମନ୍ତ ॥ ୯୨ ॥
ସପ୍ତମରେ ଋଷଭ ନୃପତି ହେଲେ ଜନ୍ମ ।
କହିଲେ ନସରଇ ତାହାଙ୍କ ପରାକ୍ରମ ॥ ୯୩ ॥
ଏମନ୍ତେ ସାତ ସୁତ ଅବନୀପତି ହୋଇ ।
ଆନନ୍ଦେ ଭୋଗ କଲେ ଶାଲ୍ମଳୀ ଦ୍ୱୀପ ମହୀ ॥ ୯୪ ॥
ସପତ ଭାଗ କରି ଶାଲ୍ମଳୀ ଦ୍ୱୀପ କ୍ଷିତି ।
ସାତ ଗୋଟି ସୁତ ଯେ ହୋଇଲେ ନରପତି ॥ ୯୫ ॥
ସେହି ଦିନୁ ସେ ଦ୍ୱୀପ ସପତ ଖଣ୍ଡ ହେଲା ।
ସେ ଖଣ୍ଡମାନ ନୃପ ନାମରେ ବିରାଜିଲା ॥ ୯୬ ॥
ଶୁଣିମା ହେଉ ଆହେ ତପସ୍ୱୀକୁଳନୃପ ।
ଶାଲ୍ମଳୀ ନାମେ ଶୋଭା ପାଉଛି ଯେଉଁ ଦ୍ୱୀପ ॥ ୯୭ ॥
ଚାରିଲକ୍ଷ ଯୋଜନ ବିସ୍ତାର ତାର ସ୍ଥଳୀ ।
ମନୁଷ୍ୟ ଅବା ତାହା ପାରିବ କେହି କଳି ॥ ୯୮ ॥
ସେ ଯେଉଁ ଦ୍ୱୀପ ଗୋଟି ତହିଁରେ ତପୋଧନ ।
ସାତଗୋଟି ପର୍ବତ ତହିଁରେ ଶୋଭାବନ ॥ ୯୯ ॥
ଦ୍ୱୀପକେ ଏକ ଏକ ସଂଖ୍ୟାରେ ମଇତ୍ରେୟ ।
ସେ ଯେଉଁ ସାତ ଗିରି ସମସ୍ତେ ରତ୍ନମୟ ॥ ୧୦୦ ॥
ବରଷମାନଙ୍କର ସୀମାରେ ସ୍ଥିତ ହୋଇ ।
ସେ ସାତ ମହୀଧର ମହୀକି ଉଦ୍ଧରଇ ॥ ୧୦୧ ॥

୧୦୧. (ଖ) ବିରାଜି ଅଛଇ ।

ପ୍ରଥମରେ କୁମୁଦ ଉନ୍ନତ ଦ୍ୱିତୀୟରେ ।
ବଳାହକ ବୋଲି ଯା ଅଚଳ ତୃତୀୟରେ ॥ ୧୦୨ ॥
ଚତୁର୍ଥରେ ଦ୍ରୋଣ ଗିରି ଦିଶେ ଶୋଭାବନ ।
ସକଳ ମହୋଦଧିମାନଙ୍କ ତହିଁ ସ୍ଥାନ ॥ ୧୦୩ ॥
ପଞ୍ଚମେ କଙ୍କ ଷଷ୍ଠେ ମହୀଶ ମହୀଧର ।
କୁମୁଦ୍ୱାନ ପର୍ବତ ସପ୍ତମେ ମନୋହର ॥ ୧୦୪ ॥
ସେ ଗିରିମାନଙ୍କର କନ୍ଦରୁ ଝରିପୁଣି ।
ସାତଗୋଟି ଅଛନ୍ତି ଅପୂର୍ବ ତରଙ୍ଗିଣୀ ॥ ୧୦୫ ॥
ଯୋନୀ ନାମ ବହଇଂ ଯେବଣ ମହାନଦୀ ।
ସେ ନଦୀ ସ୍ରବୁଅଛି କୁମୁଦ ଗିରିଭେଦି ॥ ୧୦୬ ॥
ଶ୍ୱେତ ନାମ ବର୍ଷର ମଧ୍ୟରେ ପଡ଼ି କରି ।
ସୁରାସିନ୍ଧୁ ଜଳରେ ମିଶଇ ତାର ବାରି ॥ ୧୦୭ ॥
ତାପାନଦୀ ଉନ୍ନତ ପର୍ବତ ଠାରୁଂ ବହି ।
ହରିତବର୍ଷେ ପଡ଼ି ସାଗରେ ସମ୍ଭବଇ ॥ ୧୦୮ ॥
ବଳାହକ ପର୍ବତ କନ୍ଦରୁଂ ଝରିପୁଣି ।
ବିତୃ ନାମେ ଯଉଂ ଅପୂର୍ବ ତରଙ୍ଗିଣୀ ॥ ୧୦୯ ॥
ଜିମୂତନାମ ବର୍ଷ ମଧରେ ପଡ଼ି କରି ।
ସମୁଦ୍ର ଜଳେ ଯାଇ ମିଶଇ ତାର ବାରି ॥ ୧୧୦ ॥
ଚନ୍ଦ୍ରା ନାମେ ଯେବଣ ତଟିନୀ ତପଚାରି ।
ଦ୍ରୋଣ ଗିରି କନ୍ଦରୁଂ ଝରଇ ତାର ବାରି ॥ ୧୧୧ ॥
ରୌହିତ ନାମ ବର୍ଷ ମଧରେ ପଡ଼ି ପୁଣି ।
ସିନ୍ଧୁ ଜଳେ ମିଶଇ ପୁଣ୍ୟ ତରଙ୍ଗିଣି ॥ ୧୧୨ ॥
ବୋଲନ୍ତି ପରାଶର ଶୁଣ ହେ ସତ୍ୟବାଦି ।
କଙ୍କ ଗିରିକନ୍ଦରୁଂ ଝରଇ ଶୁଭ୍ରାନଦୀ ॥ ୧୧୩ ॥
ବୈଦ୍ୟୁତ ନାମ ବର୍ଷ ମଧରେ ପଡ଼ି କରି ।
ସାଗର ଜଳେ ଯାଇ ମିଶଇ ତାର ବାରି ॥ ୧୧୪ ॥
ମହିଷ ମହୀଧର କନ୍ଦରୁଂ ସ୍ରବ ହୋଇ ।
ବିମୋଚନୀ ନଦୀ ଯେ ମହୀରେ ସଞ୍ଚରଇ ॥ ୧୧୫ ॥
ମାନସ ବର୍ଷ ମଧେ ସଞ୍ଚରି ତାର ଜଳ ।
ସମୁଦ୍ର ସଙ୍ଗେ ସଙ୍ଗ ହୁଅଇ ତତକାଳ ॥ ୧୧୬ ॥
କୁମୁଦ୍ୱାନ ପର୍ବତ କନ୍ଦରୁଂ ନଦୀ ଝରି ।
ସୁପ୍ରଭ ଖଣ୍ଡରେ ଯାଇ ପଡ଼ଇ ତାର ବାରି ॥ ୧୧୭ ॥
ଏ ସବୁ ନଦୀ ମାନେ ମନରୁ ବ୍ୟଗ୍ର ହୋଇ ।
ହୁଅନ୍ତି ସଙ୍ଗ ସୁରା ସମୁଦ୍ର ଜଳେ ଯାଇ ॥ ୧୧୮ ॥

ଯୋନୀ ତାପା ବିତୃଷ୍ଣା ନିବୃତ୍ତି ବିମୋଚନୀ ।
ଚନ୍ଦ୍ରା ଶୁଭ୍ରା ଏମନ୍ତେ ସାତ ଯେ ତରଙ୍ଗିଣୀ ॥ ୧୧୯ ॥
ଏ ସାତନଦୀ ନାମ ସ୍ମରଣ କଲାମାତ୍ରେ ।
ପାତକ ନରହଇ ପାତକିଜନ ଗାତ୍ରେ ॥ ୧୨୦ ॥
ଶୁଣ ହେ ମୁନିକୁଳପଙ୍କଜ ପ୍ରଭାକର ।
ଶାଲ୍ମଳୀ ଦ୍ୱୀପେ ଯଉଂ ସପତ ନରବର ॥ ୧୨୧ ॥
ସେମାନଙ୍କ ନାମରେ ଅତ୍ୟନ୍ତ ଖ୍ୟାତ ହୋଇ ।
ସାତଖଣ୍ଡ ହେଲା ଯେ ଶାଲ୍ମଳୀଦ୍ୱୀପ ମହୀ ॥ ୧୨୨ ॥
ପ୍ରଥମ ଶ୍ୱେତଖଣ୍ଡ ହରିତ ଦ୍ୱିତୀୟରେ ।
ତୃତୀୟରେ ଜିମୂତ ଲୋହିତ ଚତୁର୍ଥରେ ॥ ୧୨୩ ॥
ପଞ୍ଚମରେ ବୈଦ୍ୟୁତ ମାନସଖଣ୍ଡ ଷଷ୍ଠେ ।
ସପ୍ତମରେ ସୁପ୍ରଭ ଶୁଣିମା ହୋଉ ହୃଷ୍ଟେ ॥ ୧୨୪ ॥
ଏମାନଙ୍କେ ଅଛନ୍ତି ଯେତେକ ପ୍ରାଣୀମାନେ ।
ଅତ୍ୟନ୍ତ ସନ୍ତୋଷରେ ବଞ୍ଚନ୍ତି ସର୍ବଦିନେ ॥ ୧୨୫ ॥
କପିଳ ନାମେ ତହିଁ ଅଛନ୍ତି ଯେତେ ଜାତି ।
ବ୍ରାହ୍ମଣ ବୋଲାଇ ସେ ଆନନ୍ଦେ ସଞ୍ଚରନ୍ତି ॥ ୧୨୬ ॥
ଅରୁଣ ନାମ ବହି ଅଛନ୍ତି ଯେତେ ପ୍ରାଣୀ ।
ସେହିମାନେ କେବଳ କ୍ଷତ୍ରିୟ ଶିରୋମଣି ॥ ୧୨୭ ॥
ପୀତ ନାମେ ବସନ୍ତି ସକଳ ବୈଶ୍ୟମାନେ ।
କୃଷ୍ଣ ବୋଲି ବୋଲନ୍ତି ସକଳ ଶୂଦ୍ରଜନେ ॥ ୧୨୮ ॥
ପ୍ରାଣୀଙ୍କ ପରମାତ୍ମା ଅବ୍ୟୟ ଭଗବାନ ।
ଯଜ୍ଞମୟ ପୁରୁଷ ଅନାଦି ନିରଞ୍ଜନ ॥ ୧୨୯ ॥
ଏମନ୍ତ ଯଉଂ ବିଷ୍ଣୁ ତାହାଙ୍କୁ ପ୍ରାଣୀମାନେ ।
ଯାଗ କରି ତହିଁରେ ପୂଜନ୍ତି ପ୍ରତିଦିନେ ॥ ୧୩୦ ॥
ବାୟୁ ରୂପେ ତହିଁରେ କମଳା ପ୍ରାଣପତି ।
ଭକ୍ତଙ୍କ ଭାବ ଭୋଳେ ବିଶ୍ରାମ କରିଛନ୍ତି ॥ ୧୩୧ ॥
ସେ ଯଉଂ ଦ୍ୱୀପ ଗୋଟି ଅତ୍ୟନ୍ତ ମନୋହର ।
ଦେବତାମାନେ ତହିଁ କ୍ରୀଡ଼ନ୍ତି ନିରନ୍ତର ॥ ୧୩୨ ॥
ଶାଲ୍ମଳୀନାମେ ତରୁ ତହିଁରେ ଥିବା ଘେନି ।
ଶାଲ୍ମଳୀ ନାମେ ଦ୍ୱୀପ ବିଖ୍ୟାତ ସେ ମେଦିନୀ ॥ ୧୩୩ ॥
ସେ ଯଉଂ ଦ୍ୱୀପ ଗୋଟି ତାହାର ଚାରି ପାଶେ ।
ସୁରା ନାମେ ସମୁଦ୍ର ଅତ୍ୟନ୍ତ ଶୋଭା ଦିଶେ ॥ ୧୩୪ ॥
ଚାରିଲକ୍ଷ ଯୋଜନ ବିସ୍ତାର ହୋଇ କରି ।
ସେ ପାରାବାର ବେଢ଼ି ରହିଛି ତପଚାରି ॥ ୧୩୫ ॥

ଶାଲ୍ମଳୀ ଦ୍ୱୀପ କଥା କହିଲୁଂ ତୋଷମନେ ।
କୁଶଦ୍ୱୀପ ଚରିତ ଶୁଣିମା ହୋଉ କର୍ଣ୍ଣେ ॥ ୧୩୬ ॥
ସୁରାନାମେ ସିନ୍ଧୁକୁ ବେଢ଼ିଛି ତପୋଧନ ।
କୁଶଦ୍ୱୀପ ଦିଶଇ ଅତ୍ୟନ୍ତ ଶୋଭାବନ ॥ ୧୩୭ ॥
ଆଠଲକ୍ଷ ଯୋଜନ ବିସ୍ତାର ତାର ସ୍ଥଳୀ ।
ମନୁଷ୍ୟ ଅବା କାହୁଁ ପାରିବ ତାହା କଳି ॥ ୧୩୮ ॥
ଜ୍ୟୋତିଷ୍ମାନ ନାମରେ ଜଗତେ ହୋଇ ଖ୍ୟାତ ।
ପ୍ରିୟବ୍ରତ ନୃପତି ବୀର୍ଯ୍ୟରେ ଯେଉଂ ସୁତ ॥ ୧୩୯ ॥
ସେ ଜ୍ୟୋତିଷ୍ମାନ ତହିଁ ହୋଇଲେ ନରନାଥ ।
ତାହାଙ୍କ ଠାରୁ ଜନ୍ମହେଲେ ଯେ ସାତ ସୁତ ॥ ୧୪୦ ॥
ଉଦ୍ଭିଦ ବେଣୁ ମାନସରଥ ଏ ଯେ ତିନି ।
ତଦନ୍ତରେ ଜନ୍ମିଲେ ଲମ୍ବନ ଧୃତି ବେନି ॥ ୧୪୧ ॥
ପ୍ରଭାକର କପିଳ ଏମନ୍ତେ ବେନି ସୁତ ।
ଏମାନେ ସେ ଦ୍ୱୀପରେ ହୋଇଲେ ନରନାଥ ॥ ୧୪୨ ॥
ସାତ ଭାଗ ପ୍ରମାଣେ ଅବନୀ ବାଣ୍ଟି କରି ।
ଏ ସାତ ସୁତେ ଯେଣୁ ହୋଇଲେ ଦଣ୍ଡଧାରୀ ॥ ୧୪୩ ॥
ସେଦିନୁ ସାତଖଣ୍ଡ ହୋଇଲା କୁଶଦ୍ୱୀପ ।
ଶୁଣିମା ହେଉ ଆହେ ତପସ୍ୱୀକୁଳନୃପ ॥ ୧୪୪ ॥
ଯେଉଂ ଯହିଁ ରାଜା ହେଲା ତାର ନାମ ଘେନି ।
ଜଗତ ମଧ୍ୟେ ଖ୍ୟାତ ହୋଇଲା ସେ ଅବନୀ ॥ ୧୪୫ ॥
ସୁରନର କିନ୍ନର ଚାରଣ ସିଦ୍ଧ ମୁନି ।
ଗନ୍ଧର୍ବ ଯକ୍ଷ ଆଉ ଯେତେକ ଦେବଯୋନି ॥ ୧୪୬ ॥
ଏ ସମସ୍ତେ ତହିଁରେ କ୍ରୀଡ଼ନ୍ତି ନିରନ୍ତର ।
ଏଣୁ କରି ସେ ଦ୍ୱୀପ ଅତ୍ୟନ୍ତ ମନୋହର ॥ ୧୪୭ ॥
ଯେବଣ ଚାରିଜାତି ସେ ସ୍ଥାନେ ବିହରନ୍ତି ।
ଯେ ଯାହା ନିଜ ଧର୍ମେ ଆନନ୍ଦେ ଆଚରନ୍ତି ॥ ୧୪୮ ॥
ଦମି ବୋଲି ତହିଁରେ ଅଛନ୍ତି ଯେତେ ଜନ ।
ଷଟ୍‌କର୍ମ ଆଚରି ବଞ୍ଚନ୍ତି ପ୍ରତିଦିନ ॥ ୧୪୯ ॥
ସୁଷ୍ମିମାନେ ତହିଁରେ ଯୁଦ୍ଧରେ ଧୁରନ୍ଧର ।
ସେହିମାନେ ବାଣିଜ୍ୟ କରନ୍ତି ନିରନ୍ତର ॥ ୧୫୦ ॥
ଦମି ସୁଷ୍ମି ଏ ଦୁଇ ବର୍ଣ୍ଣକୁ ସେବା କରି ।
ମନ୍ଦେହ ଜାତିମାନେ ଅଛନ୍ତି ତପଚାରି ॥ ୧୫୧ ॥
ଦମିମାନେ ବ୍ରାହ୍ମଣ କ୍ଷତ୍ରିୟ ସୁଷ୍ମିମାନେ ।
ସ୍ନେହ ନାମେ ବିଖ୍ୟାତ ଅଟନ୍ତି ଯେଉଂ ଜନେ ॥ ୧୫୨ ॥

ସେହିମାନେ କେବଳ ବୋଲାଉଛନ୍ତି ବୈଶ୍ୟ ।
ସାବଧାନେ ଶୁଣ ହେ ତପସ୍ୱୀ ଅବତଂସ ।। ୧୫୩ ।।
ମନ୍ଦେହ ନାମ ବହି ଅଛନ୍ତି ଯେଉଁ ଜନେ ।
ସେ କୁଶଦ୍ୱୀପେ ଶୂଦ୍ର ଅଟନ୍ତି ସେହିମାନେ ।। ୧୫୪ ।।
ବ୍ରହ୍ମରୂପେ କେବଳ କମଳାଦେବୀ ପତି ।
କୁଶଦ୍ୱୀପେ ସର୍ବଦା ବିହାର କରୁଛନ୍ତି ।। ୧୫୫ ।।
ନିବୃତ୍ତିମାର୍ଗକୁ ଯେ ଅଭୀଷ୍ଟ କରି ମନେ ।
ଯାଗରେ ସେ ପ୍ରଭୁଙ୍କୁ ପୂଜନ୍ତି ପ୍ରାଣୀମାନେ ।। ୧୫୬ ।।
ସାତଖଣ୍ଡ ହେଲା ଯେ କୁଶଦ୍ୱୀପ ସ୍ଥାନ ।
ସାତଗିରି ତହିଁରେ ଦିଶନ୍ତି ଶୋଭାବନ ।। ୧୫୭ ।।
ବିଦ୍ରୁମ ହେମବେନି ତଦନ୍ତେ ସୁକ୍ତିମାନ ।
ଆବର ପୁଷ୍ପବାନ ଗିରି ହେ ତପୋଧନ ।। ୧୫୮ ।।
ତଦନ୍ତେ କୁଶେଶୟୁ ନାମରେ ମହୀଧର ।
ହରିନାମେ ପର୍ବତ ଦିଶନ୍ତି ମନୋହର ।। ୧୫୯ ।।
ମନ୍ଦର ନାମେ ପୁଣି ଆବର ଏକ ଗିରି ।
ଏମନ୍ତେ ସାତ ଗିରି ଅଛି ଯେ ତପଚାରି ।। ୧୬୦ ।।
ଖଣ୍ଡକେ ଏକ ଏକ ପର୍ବତମାନ ରହି ।
ସାତଗୋଟି ଅଚଳ ସର୍ବଦା ବିରାଜଇ ।। ୧୬୧ ।।
ସେ ଯହୁଁ ଗିରିମାନେ ତାହାଙ୍କ ତହୁଁ ଝରି ।
ସାତଗୋଟି ତଟିନୀ ବହଇ ତପଚାରୀ ।। ୧୬୨ ।।
ଧୂତପାପାଣିବାତ ପବିତ୍ରା ମିଶି ତିନି ।
ସମ୍ମତି ନାମେ ପୁଣି ଅପୂର୍ବ ତରଙ୍ଗିଣୀ ।। ୧୬୩ ।।
ତଦନ୍ତେ ବିଦ୍ୟୁଜମ୍ଭା ଆବର ମହାନଦୀ ।
ପାପହରା ସହିତେ ସଞ୍ଚରୁଛନ୍ତି ସଦା ।। ୧୬୪ ।।
ଖଣ୍ଡକେ ଏକ ଏକ ତଟିନୀମାନେ ବହି ।
ହୁଅନ୍ତି ସଙ୍ଗସର୍ପି ସମୁଦ୍ର ଜଳେ ଯାଇ ।। ୧୬୫ ।।
ଏ ଯେଉଁ ଗିରି ନଦୀ କହିଲୁଁ ତପୋବନ୍ତ ।
ଏମନ୍ତେ ଆଉମାନେ ଅଛନ୍ତି ଶତଶତ ।। ୧୬୬ ।।
ଗିରିଙ୍କ ଉପଗିରି ନଦୀଙ୍କ ଉପନଦୀ ।
ଯେତେକ ଅଛନ୍ତି ହେ ମୁନୀନ୍ଦ୍ର କଳାନିଧି ।। ୧୬୭ ।।
ସେମାନଙ୍କୁ ସମାନ ସଂସାରେ ଆଉ ନାହିଁ ।
ଏମନ୍ତେ କୁଶଦ୍ୱୀପ ମହୀ କି ଉଦ୍ଧରଇ ।। ୧୬୮ ।।
କୁଶ ନାମେ ସ୍ତମ୍ଭ ଯେ ତହିଁରେ ଥିବା ଘେନି ।
କୁଶଦ୍ୱୀପ ବୋଲାଇ ବିଖ୍ୟାତ ସେ ମେଦିନୀ ।। ୧୬୯ ।।

କୁଶସ୍ତମ୍ବ ଥିବାରୁ ସେ ଯେଉଂ କୁଶଦ୍ୱୀପ ।
ସେହି ସେ ଏ ସଂସାରେ ତାହାଙ୍କୁ ଅନୁରୂପ ।। ୧୭୦ ।।
ଆଠଲକ୍ଷ ଯୋଜନ ବିସ୍ତାର ହୋଇକରି ।
ସର୍ପିନାମେ ସିନ୍ଧୁ ଯେ ବେଢ଼ିଛି ତପଚାରି ।। ୧୭୧ ।।
ସେ ଦ୍ୱୀପକୁ ସେ ସିନ୍ଧୁ ହୋଇଛି ଅନୁରୂପ ।
ତାର ଚାରିପାଶକୁ ବେଢ଼ିଛି କ୍ରୌଞ୍ଚଦ୍ୱୀପ ।। ୧୭୨ ।।
ସର୍ପିନାମେ ସଲିଳ ରାଶିକି ବେଢ଼ିକରି ।
କ୍ରୌଞ୍ଚନାମେ ଦ୍ୱୀପ ଯେ ରହିଛି ତପଚାରି ।। ୧୭୩ ।।
ଷୋଳଲକ୍ଷ ଯୋଜନ ବିସ୍ତାର ତାର ମହୀ ।
ପ୍ରିୟବ୍ରତ ନନ୍ଦନ ରାଜତ୍ୱ କଲେ ଯାଇ ।। ୧୭୪ ।।
ଦ୍ୟୁତିମାନ ନାମରେ ଜଗତେ ହୋଇ ଖ୍ୟାତ ।
ପ୍ରିୟବ୍ରତ ସୁତ ଯେ ହୋଇଲେ ନରନାଥ ।। ୧୭୫ ।।
ତାହାଙ୍କ ତହୁଁ ସାତ କୁମର ଜନମିଲେ ।
ସେହିମାନେ ତହିଁରେ ଅବନୀପତି ହେଲେ ।। ୧୭୬ ।।
କୁଶଳନ୍ଦଗ ମଖ ତଦନ୍ତେ ଉଷ୍ଣ ପୁଣି ।
ପୀବର ଅନ୍ଧକାର ଏହାଙ୍କ ଅନ୍ତେ ମୁନି ।। ୧୭୭ ।।
ଦୁନ୍ଦୁଭି ଆଦି କରି ଯେଉଂ ଏ ସାତସୁତ ।
ଏହାଙ୍କୁ ଦ୍ୟୁତିମାନ କଲେ ଯେ ନରନାଥ ।। ୧୭୮ ।।
କ୍ରୌଞ୍ଚଦ୍ୱୀପ ମହୀକି ସପତ ଭାଗ କରି ।
ସେ ଯେଉଂ ସାତଭାଇ ହୋଇଲେ ଦଣ୍ଡଧାରୀ ।। ୧୭୯ ।।
ଯେ ଯହିଁ ରାଜା ହେଲା ତାହାର ନାମ ଘେନି ।
ଜଗତ ମଧେ ଖ୍ୟାତ ହୋଇଲା ସେ ମେଦିନୀ ।। ୧୮୦ ।।
ସେ ଯେଉଂ ଦ୍ୱୀପ ଅଛି ତହିଁରେ ଅନ୍ଧକାର ।
ସୁରସିଦ୍ଧ ଗନ୍ଧର୍ବ କ୍ରୀଡ଼ନ୍ତି ନିରନ୍ତର ।। ୧୮୧ ।।
ସାତଖଣ୍ଡ ହେଲା ଯେ ସେ କ୍ରୌଞ୍ଚଦ୍ୱୀପ କ୍ଷିତି ।
ଖଣ୍ଡକେ ଏକ ଏକ ପର୍ବତ ବିରାଜନ୍ତି ।। ୧୮୨ ।।
ଏମନ୍ତେ ସାତଖଣ୍ଡେ ଅଛି ଯେ ସାତଗିରି ।
ତାହାଙ୍କ ନାମମାନ ଶୁଣହେ ତପଚାରି ।। ୧୮୩ ।।
ପ୍ରଥମେ କ୍ରୌଞ୍ଚଗିରି ବାମ ନ ଦ୍ୱିତୀୟରେ ।
ଅନ୍ଧକାର ବୋଲିବା ଅଚଳ ତୃତୀୟରେ ।। ୧୮୪ ।।
ଯେ ଯେଉଂ ରତ୍ନଶୈଳ ନାମରେ ମହାଗିରି ।
ଗଗନମାର୍ଗେ ତାର ପ୍ରତିଭା ଅଛି ପୁରି ।। ୧୮୫ ।।
ପଞ୍ଚମେ ଦେବାବୃତ ନାମରେ ମହୀଧର ।
ପୁଣ୍ଡରୀକ ବାମନ ଷଷ୍ଠରେ ମନୋହର ।। ୧୮୬ ।।

ସପ୍ତମରେ ଦୁନ୍ଦୁଭି ନାମରେ ପରବତ ।
ଏମନ୍ତେ ସାତଗିରି ଅଛି ହେ ତପୋବନ୍ତ ॥ ୧୮୭ ॥
ବରଷମାନଙ୍କର ମର୍ଯ୍ୟାଦା ହୋଇକରି ।
ମଣ୍ଡିଦେଲାପରାୟେ ଅଛନ୍ତି ସାତଗିରି ॥ ୧୮୮ ॥
ବର୍ଷମାନେ ଯେମନ୍ତ ଉତ୍ତରୋତ୍ତର ହୋଇ ।
କ୍ରମରେ ବେନି ଗୁଣ ବିସ୍ତାରେ ଅଛି ରହି ॥ ୧୮୯ ॥
ସେହିପରି ମୈତ୍ରୀୟ ଗିରିରେ ଗିରିମାନେ ।
ଉତ୍ତରୋତ୍ତର ତୁଙ୍ଗ ଦିଶନ୍ତି ବେନି ଗୁଣେ ॥ ୧୯୦ ॥
ବିସ୍ତାରେ ସେହିପରି ସେ ଗିରିମାନଙ୍କର ।
ସାବଧାନେ ଶୁଣ ହେ ମୁନୀନ୍ଦ୍ର ଅଳଙ୍କାର ॥ ୧୯୧ ॥
ସାତଖଣ୍ଡ ହୋଇଛି ସେ ଯେଉଂ କ୍ରୌଞ୍ଚଦ୍ୱୀପ ।
ସେ ଖଣ୍ଡମାନେ ଏକା ତାହାକୁ ଅନୁରୂପ ॥ ୧୯୨ ॥
ତହିଂରେ ଅଛି ଯେଉଂ ସପତ ମହୀଧର ।
ସେହିମାନେ ମାତ୍ରକ ତାହାକୁ ପଟାନ୍ତର ॥ ୧୯୩ ॥
ସେ ଗିରିମାନଙ୍କର କନ୍ଦରେ ପ୍ରତିଦିନ ।
ଦେବତାଙ୍କ ସଙ୍ଗତେ କ୍ରୀଡ଼ନ୍ତି ସର୍ବଜନ ॥ ୧୯୪ ॥
ବ୍ରାହ୍ମଣମାନେ ତହିଂ ପୁଷ୍କର ନାମେ ଖ୍ୟାତ ।
ଷଟ୍‌କର୍ମ ଆଚରି ବଞ୍ଚନ୍ତି ଅବିରତ ॥ ୧୯୫ ॥
ପୁଷ୍କଳ ନାମେ ତହିଂ କ୍ଷତ୍ରିୟ ଯେତେ ଜନ ।
ରଣଯାଗ ମାତ୍ରକ ମଣନ୍ତି କୋଟୀ ଧନ ॥ ୧୯୬ ॥
ଧନ୍ୟ ନାମ ବହନ୍ତି ଯେତେକ ବୈଶ୍ୟମାନେ ।
ବେଦମତେ ବାଣିଜ୍ୟ କରନ୍ତି ପ୍ରତିଦିନେ ॥ ୧୯୭ ॥
ତିଷ୍ୟା ବୋଲି ତହିଂରେ ଅଛନ୍ତି ଯେତେ ଶୂଦ୍ର ।
ସେ ମଧ ସ୍ୱଧର୍ମରେ ବଞ୍ଚନ୍ତି ମୁନିଚନ୍ଦ୍ର ॥ ୧୯୮ ॥
ସାତଖଣ୍ଡେ ସେ ଯେଉଂ ସପତ ମହୀଧର ।
ସାତନଦୀ ତହିଂରୁ ଝରନ୍ତି ନିରନ୍ତର ॥ ୧୯୯ ॥
ପର୍ବତ ଗୋଟିକରୁଂ ଗୋଟିଏ ନଦୀ ବହି ।
ମିଶନ୍ତି ସବୁ ଦଧି ସମୁଦ୍ର ଜଳେ ଯାଇ ॥ ୨୦୦ ॥
ଗଉରୀ କୁମୁଦବତୀ ଏ ବେନି ତରଙ୍ଗିଣୀ ।
ସନ୍ଧ୍ୟାରାତ୍ରି ନାମରେ ଆହୁରି ବେନି ପୁଣି ॥ ୨୦୧ ॥
ମନୋଜବା ଖ୍ୟାତି ଯେ ଆବର ପୁଣ୍ଡରୀକା ।
ଏମାନଙ୍କୁ ଉପମା ଅମରଗଙ୍ଗା ଏକା ॥ ୨୦୨ ॥
ଏ ଯେଉଂ ସାତନଦୀ କହିଲୁଂ ତପୋଧନ ।
ସେ ଜଳ ପାନକରି ବଞ୍ଚନ୍ତି ଯେତେ ଜନ ॥ ୨୦୩ ॥

ସମସ୍ତେ କାମପରି ଦିଶନ୍ତି ମନୋହର ।
ସାବଧାନେ ଶୁଣହେ ତପସ୍ୱୀ ପୁରନ୍ଦର ।। ୨୦୪ ।।
ଯୋଗୀ ରୁଦ୍ର ସ୍ୱରୂପେ ଶାରଙ୍ଗଚାପଧର ।
ସେ ସ୍ଥାନେ ବିଜେ କରି ଅଛନ୍ତି ନିରନ୍ତର ।। ୨୦୫ ।।
ଯାଗରେ ପୂଜି ତାଙ୍କୁ ସକଳ ପ୍ରାଣୀମାନେ ।
ନିରନ୍ତରେ ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟମନେ ।। ୨୦୬ ।।
ଏ ଯେଉଂ ଗିରି ନଦୀ କହିଲୁଂ ତପଚାରି ।
ଆଉମାନେ ଅନେକ ଅଛନ୍ତି ଏହିପରି ।। ୨୦୭ ।।
ଏ ଗିରି ଏ ନଦୀକି ନୁହନ୍ତି ପଟାନ୍ତର ।
କ୍ଷୁଦ୍ର ରୂପେ ସେମାନେ ଅଛନ୍ତି ନିରନ୍ତର ।। ୨୦୮ ।।
ସେ ଯେଉଂ କ୍ରୌଞ୍ଚଦ୍ୱୀପ ତାହାର ଚାରିପାଶେ ।
ଦଧି ନାମେ ଉଦଧି ଅତ୍ୟନ୍ତ ଶୋଭା ଦିଶେ ।। ୨୦୯ ।।
ଷୋଳଲକ୍ଷ ଯୋଜନ ବିସ୍ତାର ହୋଇ କରି ।
ସେ ଦିଗକୁ ବଢ଼ି ଯେ ରହିଛି ତପଚାରି ।। ୨୧୦ ।।
ସେ ଯେଉଂ ଦଧି ସିନ୍ଧୁ ତାହାର ପାଶେ ପୁଣି ।
ଶାକ ଦ୍ୱୀପ ରହିଛି ମୁନୀନ୍ଦ୍ର ଶିରୋମଣି ।। ୨୧୧ ।।
ସେ ଦଧି ଉଦଧିକି ବେଢ଼ି ହେ ତପୋଧନ ।
ଶାକଦ୍ୱୀପ ଦିଶଇ ଅତ୍ୟନ୍ତ ଶୋଭାବନ ।। ୨୧୨ ।।
ବତିଶ ଲକ୍ଷ ସଂଖ୍ୟା ଯୋଜନ ତା ବିସ୍ତାର ।
ମଣ୍ଡଳ ଆକାରେ ସେ ଦିଶଇ ମନୋହର ।। ୨୧୩ ।।
ପ୍ରିୟବ୍ରତ ରାଜାଙ୍କ ବୀର୍ଯ୍ୟରୁ ହୋଇ ଜାତ ।
ଭବ୍ୟ ନାମେ ପ୍ରକଟ ଅଟନ୍ତି ଯେଉଂ ସୁତ ।। ୨୧୪ ।।
ଶାକଦ୍ୱୀପେ ସେ ପୁତ୍ର ହୋଇଲେ ନରପତି ।
ତାହାଙ୍କ ସାତ ସୁତ ହୋଇଲେ ଉତପତି ।। ୨୧୫ ।।
ଭବ୍ୟନାମେ ବିଦିତ ସେ ଯେଉଂ ଦଣ୍ଡଧାରୀ ।
ଶାକଦ୍ୱୀପ ଅବନୀ ସପତ ଭାଗ କରି ।। ୨୧୬ ।।
ସାତଗୋଟି ପୁତ୍ରଙ୍କୁ କଲେ ଯେ ନରନାଥ ।
ସେ ଖଣ୍ଡମାନ ତାଙ୍କ ନାମରେ ହେଲା ଖ୍ୟାତ ।। ୨୧୭ ।।
ଜଳଦକୁମାର ଯେ ତଦନ୍ତେସୁ କୁମାର ।
ମନୀଚକ ନାମରେ ଆବର ନରବର ।। ୨୧୮ ।।
କୁସୁମୋଦ ନୃପତି ତଦନ୍ତେ ସେମୌଦାର୍କ ।
ମହାଦ୍ରୁମ ରାଜାଙ୍କ ସହିତେ ଏ ଯେତେକ ।। ୨୧୯ ।।
ସାତଖଣ୍ଡ ହେଲା ଯେ ସେ ଶାକଦ୍ୱୀପ ମହୀ ।
ଖଣ୍ଡକେ ଏକେ ଏକେ ରାଜତ୍ୱ କଲେ ତହିଁ ।। ୨୨୦ ।।

୨୧୮,୨୧୯ : ମୂଳ ସଂସ୍କୃତରେ ପୁତ୍ରମାନଙ୍କ ନାମ ମଧରେ ମନୀଚଳ କୁସୁମୋଦ ମୌନୋକି ନାମ ଉପଲବ୍ଧ ।

ସେ ଯେତେ ସାତଖଣ୍ଡ ତହିଁରେ ମୁନିବର ।
ସାତଗୋଟି ଅଛି ଯେ ମର୍ଯ୍ୟାଦା ମହୀଧର ॥ ୨୨୧ ॥
ପ୍ରଥମରେ ଉଦୟ ଦ୍ୱିତୀୟେ ଜଳାଧର ।
ରୈବତ ନାମେ ଗିରି ତୃତୀୟେ ମନୋହର ॥ ୨୨୨ ॥
ଚତୁର୍ଥେ ଶ୍ୟାମ ନାମ ବହଇଂ ଏକ ଗିରି ।
ପଞ୍ଚମେ ଆମ୍ବିକେୟ ଗିରି ହେ ତପଚାରି ॥ ୨୨୩ ॥
ରମ୍ୟ ନାମେ ପର୍ବତ ଷଷ୍ଠରେ ମନୋହର ।
ସପ୍ତମରେ କେଶରୀ ନାମରେ ମହୀଧର ॥ ୨୨୪ ॥
ଏମନ୍ତେ ସାତଖଣ୍ଡେ ସପତ ପରବତ ।
ଅତ୍ୟନ୍ତ ଶୋଭାବନ ଦିଶଇ ତପୋବନ୍ତ ॥ ୨୨୫ ॥
ସେ ଯେତେ ସାତଗିରି ତହିଁରୁ ଝରି ପୁଣି ।
ସାତଗୋଟି ଅଛନ୍ତି ଅମୂଲ୍ୟ ତରଙ୍ଗିଣୀ ॥ ୨୨୬ ॥
ସୁକୁମାରୀ କୁମାରୀ ନଳିନୀ ତିନି ନଦୀ ।
ନିରନ୍ତରେ ବହନ୍ତି ପାତାଳ ଯାଏ ଭେଦି ॥ ୨୨୭ ॥
ବେଣୁଳା ଇକ୍ଷୁ ପୁଣି ଧେନୁକା ତଦନ୍ତରେ ।
ଗଭସ୍ତି ଆଦି ସାତ ଅଛନ୍ତି ନିରନ୍ତରେ ॥ ୨୨୮ ॥
ଏ ଯେତେ ସାତନଦୀ କହିଲୁଂ ତପଚାରି ।
ଦୁଗ୍ଧନାମ ସିନ୍ଧୁରେ ମିଶନ୍ତି ଯାଇ କରି ॥ ୨୨୯ ॥
ଏ ଯେତେ ସାତ ନଦୀ ଏହାଙ୍କ ଜଳପାନେ ।
ଅତ୍ୟନ୍ତ ସନ୍ତୋଷରେ ଅଛନ୍ତି ପ୍ରାଣୀମାନେ ॥ ୨୩୦ ॥
ସେହିପରି ମୈତ୍ରେୟ ଅଛି ଯେ ଶାକଦ୍ରୁମ ।
କଳ୍ପଦ୍ରୁମ ପରାୟେ ଦିଶଇ ମନୋରମ ॥ ୨୩୧ ॥
ସେ ଯେତେ ଶାକ ତରୁ ତାହାର ନାମ ଘେନି ।
ଶାକଦ୍ୱୀପ ନାମରେ ବିଖ୍ୟାତ ସେ ମେଦିନୀ ॥ ୨୩୨ ॥
ସେହି ଶାକଦ୍ରୁମର କୋମଳ ପତ୍ରବାତେ ।
ମାନବମାନେ ମୋଦ ଲଭନ୍ତି ଅତି ଶ୍ରାନ୍ତେ ॥ ୨୩୩ ॥
ଏମନ୍ତେ ଶାକଦ୍ୱୀପ ମଧ୍ୟରେ ଯେତେ ନର ।
ଅତ୍ୟନ୍ତ ସନ୍ତୋଷରେ ବଞ୍ଚନ୍ତି ନିରନ୍ତର ॥ ୨୩୪ ॥
ଉତ୍ତମ ଆଚରଣ ଆଚରି ପ୍ରତିଦିନ ।
ଚାରିବର୍ଣ୍ଣେ ତହିଁରେ ଅଛନ୍ତି ଯେତେ ଜନ ॥ ୨୩୫ ॥
ସମସ୍ତେ ନିଜ ଧର୍ମ ପାଳନ୍ତି ଶୁଦ୍ଧଚିତ୍ତେ ।
କୁମାର୍ଗରେ ପଥିକ ନୁହନ୍ତି କଦାଚିତେ ॥ ୨୩୬ ॥
ମଗଧ ଜାତି ଯେତେ ବ୍ରାହ୍ମଣ ସେହିମାନେ ।
ଷଟ୍‌କର୍ମ ଆଚରି ବଞ୍ଚନ୍ତି ହୃଷ୍ଟମନେ ॥ ୨୩୭ ॥

ମାଗଧ ନାମେ ଖ୍ୟାତ ଅଟନ୍ତି ଯେତେ ଜାତି ।
ସେହିମାନେ କ୍ଷତ୍ରିୟ ଶୁଣ ହେ ମହାଯତି ॥ ୨୩୮ ॥
ମାନସମାନେ ବୈଶ୍ୟ ମନ୍ଦଗମାନେ ଶୂଦ୍ର ।
ଏମନ୍ତେ ଚାରିଜାତି ଅଛି ହେ ମୁନିଚନ୍ଦ୍ର ॥ ୨୩୯ ॥
ଶାକଦ୍ୱୀପ ନାମରେ ଯେ ଯଉଂ ବସୁମତୀ ।
ସ୍ୱର୍ଗ ହେଲେ ନିଉନ ଦିଶିବ ତାକୁ ପ୍ରତି ॥ ୨୪୦ ॥
ଧର୍ମର ହାନି କଥା କଦାପି ଆଉ ନାହିଁ ।
ଅମର୍ଯ୍ୟାଦା ବିଷୟ କେ ଦେବ ଅବା କହି ॥ ୨୪୧ ॥
କ୍ଷୁଦ୍ରରୂପେ ପର୍ବତ ସରିତମାନେ ଯେତେ ।
ଶତ ଶତ ସଂଖ୍ୟାରେ ଅଛନ୍ତି ସେ ସମସ୍ତେ ॥ ୨୪୨ ॥
ଏମନ୍ତେ ଶାକଦ୍ୱୀପ ଅଛି ଯେ ତପୋବନ୍ତ ।
ସୂର୍ଯ୍ୟ ରୂପେ ତହିଁରେ ଅଛନ୍ତି ରମାକାନ୍ତ ॥ ୨୪୩ ॥
ସେ ଯଉଂ ସୂର୍ଯ୍ୟ ରୂପୀ ନିର୍ଗୁଣ ନିରଞ୍ଜନ ।
ଯାଗକରି ତାହାଙ୍କୁ ପୂଜନ୍ତି ସର୍ବଜନ ॥ ୨୪୪ ॥
ବେଦରେ ଅବରୁଦ୍ଧ ଯେବଣ କର୍ମମାନ ।
ସେହିକର୍ମ କେବଳ ଆଚରି ପ୍ରତିଦିନ ॥ ୨୪୫ ॥
ଅତି ଯତ୍ନେ ଆରାଧି କୌମୁଦି ଗଦାପାଣି ।
ନିଶ୍ଚିନ୍ତରେ ବିହାର କରନ୍ତି ସର୍ବପ୍ରାଣୀ ॥ ୨୪୬ ॥
ବୋଲନ୍ତି ପରାଶର ଶୁଣହେ ମୁନିଭୂପ ।
ପ୍ଲକ୍ଷକୁ ଆଦି କରି ଏ ଯଉଂ ପାଞ୍ଚଦ୍ୱୀପ ॥ ୨୪୭ ॥
ଏଥିରେ ଯେତେ ଯେତେ ମାନବ ସଞ୍ଚରନ୍ତି ।
ପାଞ୍ଚପାଞ୍ଚ ସହସ୍ର ବରଷ ସେ ଜିଅନ୍ତି ॥ ୨୪୮ ॥
ଶୁଣ ହେ ତପଚାରି ତାରକା ବୃନ୍ଦଇନ୍ଦୁ ।
ଶାକଦ୍ୱୀପ ବେଢ଼ି ଯେ ରହିଛି କ୍ଷୀରସିନ୍ଧୁ ॥ ୨୪୯ ॥
ସେ ଯଉଂ କ୍ଷୀର ନାମେ ନିର୍ମଳ ପାରାବାର ।
ବତିଶଲକ୍ଷ ସଂଖ୍ୟା ଯୋଜନ ତା ବିସ୍ତାର ॥ ୨୫୦ ॥
ସେହି କ୍ଷୀରସିନ୍ଧୁକୁ ବେଢ଼ି ହେ ତପୋଧନ ।
ପୁଷ୍କରଦ୍ୱୀପ ଗୋଟି ଦିଶଇ ଶୋଭାବନ ॥ ୨୫୧ ॥
ପୁଷ୍କରନାମେ ଖ୍ୟାତ ସେ ଯଉଂ ମହାଦ୍ୱୀପ ।
ସେହିମାତ୍ର କେବଳ ତାହାକୁ ଅନୁରୂପ ॥ ୨୫୨ ॥
ବଳୟ ଆକୃତିରେ ସେ ଦ୍ୱୀପ ମନୋହର ।
ଚୌଷଠି ଲକ୍ଷ ସଂଖ୍ୟା ଯୋଜନ ତା' ବିସ୍ତାର ॥ ୨୫୩ ॥
ପ୍ରିୟବ୍ରତ ନୃପତି ବୀର୍ଯ୍ୟରୁ ହୋଇ ଜାତ ।
ସବଳ ନାମ ବହି ବିଖ୍ୟାତ ଯଉଂ ସୁତ ॥ ୨୫୪ ॥

୨୫୪. ମୂଳ ସଂସ୍କୃତରେ ସବଳ

ପୁଷ୍କର ଦ୍ୱୀପରେ ସେ ପାଇଲେ ଶ୍ୱେତଛତ୍ର ।
ତାହାଙ୍କ ବୀର୍ଯ୍ୟରେ ଜନ୍ମିଲେ ବେନି ପୁତ୍ର ॥ ୨୫୫ ॥
ମହାବିତ୍ତ ଧାତକି ଏମନ୍ତେ ତାଙ୍କ ନାମ ।
ସେ ଯଉଂ ବେନି ସୁତ ଅତ୍ୟନ୍ତ ମନୋରମ ॥ ୨୫୬ ॥
ତାଙ୍କୁ ସମ କରି ଯେ ପୁଷ୍କର ଦ୍ୱୀପ ମହୀ ।
ପୁତ୍ରଙ୍କୁ ସମର୍ପିଲେ ସବଳ ନର ସାଇଁ ॥ ୨୫୭ ॥
ମହାବୀତ ଧାତକୀ ଏ ଯଉଂ ବେନିସୁତ ।
ପୁଷ୍କର ଦ୍ୱୀପ ବାଣ୍ଟି ହୋଇଲେ ନରନାଥ ॥ ୨୫୮ ॥
ତେଣୁ କରି ସେ ଦ୍ୱୀପ ହୋଇଲା ବେନି ଭାଗ ।
ଦିବ୍ୟଜ୍ଞାନେ ଶୁଣିମା ହୋଉ ହେ ମହାଭାଗ ॥ ୨୫୯ ॥
ବେନି ଖଣ୍ଡ ମଧରେ ମର୍ଯ୍ୟାଦା ହୋଇ କରି ।
ମାନସୋତ୍ତରନାମେ ଅଛି ଯେ ଏକ ଗିରି ॥ ୨୬୦ ॥
ବଳୟ ଆକୃତିରେ ସେ ମହାମହୀଧର ।
ପୁଷ୍କରଦ୍ୱୀପ ମଧେ ଦିଶଇ ମନୋହର ॥ ୨୬୧ ॥
ଉନ୍ନତିରେ ପଞ୍ଚାଶ ସହସ୍ର ଯୋଜନ ସେ ।
ଚାହିଁ ଦେଲେ ମେରୁଙ୍କ ଅନୁଜ ପରି ଦିଶେ ॥ ୨୬୨ ॥
ଉଚ୍ଚ ଯେତେ ବିସ୍ତାର ତେତିକି ସେ ପର୍ବତ ।
ମନକୁ ସ୍ଥିର କରି ଶୁଣ ହେ ତପୋବନ୍ତ ॥ ୨୬୩ ॥
ମହାବିତ୍ତ ଧାତକି ଏ ଯଉଂ ବେନି ରାଜା ।
ପୁତ୍ରପରି ପାଳନା କରନ୍ତି ଜନପ୍ରଜା ॥ ୨୬୪ ॥
ସେ ଅବା ଯଉଂ ଖଣ୍ଡେ ହୋଇଲେ ନରନାଥ ।
ତାଙ୍କ ନାମେ ସେ ଖଣ୍ଡ ହୋଇଲା ଅତିଖ୍ୟାତ ॥ ୨୬୫ ॥
ସେ ଯଉଂ ବେନି ଖଣ୍ଡ ତାହାଙ୍କ ମଧେ ଥାଇ ।
ମାନସୋତ୍ତରଗିରି ମହି କି ଉଦ୍ଧରଇ ॥ ୨୬୬ ॥
ସେ ଖଣ୍ଡମାନଙ୍କରେ ଅଛନ୍ତି ଯେତେ ଜନ ।
କେତେବେଳେ ଆତଙ୍କ ନୁହଇ ତାଙ୍କ ମନ ॥ ୨୬୭ ॥
ରୋଗ ବୋଲି କେମନ୍ତ ସେ କଥା ନ ଜାଣନ୍ତି ।
ନିରନ୍ତରେ ଆନନ୍ଦ ସିନ୍ଧୁରେ ମଜ୍ଜିଥାନ୍ତି ॥ ୨୬୮ ॥
ଦଶଦଶ ସହସ୍ର ବରଷ ଆୟୁପାଇ ।
କାହାରି କାହାଠାରେ କିଞ୍ଚିତେ ଶଙ୍କା ନାହିଁ ॥ ୨୬୯ ॥
ରାଗଦ୍ୱେଷ ଏକଥା ସ୍ୱପନ ସେ ସ୍ଥାନରେ ।
ସମସ୍ତେ ଆଚରଣ କରନ୍ତି ସମାନରେ ॥ ୨୭୦ ॥
ପାଦପ ବୋଲି ଶୁଣି ଥିଲାଇ ସିନା କର୍ଣ୍ଣେ ।
ଜଙ୍ଗମରେ ଅଶୋକ ଅଟନ୍ତି ସେହୁମାନେ ॥ ୨୭୧ ॥

୨୫୬. ମହାବିର ମୂଳ ସଂସ୍କୃତରେ ମହାବୀର

କେହି ଆଉ କାହାକୁ ନୁହନ୍ତି ବଡ଼ ସାନ ।
ଅହିଂସା ଧର୍ମପାଳି ବଞ୍ଚନ୍ତି ପ୍ରତିଦିନ ।। ୨୭୨ ।।
ବଧ ହେବା କଥାକୁ ନୁହନ୍ତି କେହି ପାତ୍ର ।
ବଧିବା ବିଷୟ ତ ସେ ସ୍ଥାନେ ଅତିଚିତ୍ର ।। ୨୭୩ ।।
ଈର୍ଷା ଭୟ ଅସୂୟା ଏ ମାନ କିଛି ନାହିଁ ।
ଲୋଭ ମୋହ ଏ କଥା କେ ଦେବ ଅବା ତହିଁ ।। ୨୭୪ ।।
ମହାବିତ ବର୍ଷର ବାହାରେ ତପୋଧନ ।
ଧାତକି ନାମେ ବର୍ଷ ଦିଶଇ ଶୋଭାବନ ।। ୨୭୫ ।।
ଏ ମଧରେ ସେ ଯେଉଁ ମାନସୋତ୍ତରଗିରି ।
ଦେବଦୈତ୍ୟ ତାହାକୁ ଅଛନ୍ତି ଅନୁସରି ।। ୨୭୬ ।।
ମାନସୋତ୍ତରଗିରି କନ୍ଦରେ ତପଚାରି ।
ଅସୁର ସୁର ଯେତେ ଅଛନ୍ତି ବାସ କରି ।। ୨୭୭ ।।
କାହାରି କାହାଠାରେ କିଞ୍ଚିତେ ନାହିଁ ହିଂସା ।
ପରସ୍ପରେ କୀର୍ତ୍ତନ କରନ୍ତି ପରଶଂସା ।। ୨୭୮ ।।
ପୁଷ୍କର ଦ୍ୱୀପ ମଧେ ଅଛନ୍ତି ଯେତେ ଯେତେ ।
ସତ୍ୟବାଣୀ ମାତ୍ରକ ଭାଷନ୍ତି ଅବିରତେ ।। ୨୭୯ ।।
ଅମର ରାଜା ସଙ୍ଗେ ବିବିଧ କ୍ରୀଡ଼ା କରି ।
ଆନନ୍ଦରେ ବଞ୍ଚନ୍ତି ଦିବସ ବିଭାବରୀ ।। ୨୮୦ ।।
ଦେବତାଙ୍କ ପରାୟେ ଦିଶନ୍ତି ମନୋହର ।
ବେଶ ମଧ ସମାନ ସମସ୍ତ ପ୍ରାଣୀଙ୍କର ।। ୨୮୧ ।।
ବର୍ଣ୍ଣାଶ୍ରମ ଆଚାର ତହିଁରେ କିଛି ନାହିଁ ।
କାମନା କର୍ମମାନ କେ ଦେଲା ଅବା ତହିଁ ।। ୨୮୨ ।।
ଦଣ୍ଡ ସେବା ବାଣିଜ୍ୟ ନିଗମ ଆଦିକରି ।
ତହିଁରେ ନାହିଁ ଆଉ ଶୁଣହେ ତପଚାରି ।। ୨୮୩ ।।
ସେ ଯେଉଁ ବେନିବର୍ଷ ଅବନୀସ୍ୱର୍ଗ ସେହି ।
ଜରା ବ୍ୟାଧି ଏମାନ ତହିଁରେ କିଛି ନାହିଁ ।। ୨୮୪ ।।
ଅତ୍ୟନ୍ତ ସୁଖେ ତହିଁ ଅଛନ୍ତି ପ୍ରାଣୀମାନେ ।
କୁତର୍କ ଯେଉଁ କଥା କାହାରି ନାହିଁ ମନେ ।। ୨୮୫ ।।
ମଣ୍ଡଳ ଆକାରେ ଯେ ପୁଷ୍କର ଦ୍ୱୀପ ଗୋଟି ।
ତହିଁରେ ବାସ କରି ଅଛନ୍ତି ପରମେଷ୍ଠୀ ।। ୨୮୬ ।।
ଜଳିବା ଅନଳରୁ ଅଧିକ ଶୋଭା ବହି ।
ଚାମୀକର ପଙ୍କଜପତ୍ର ଯେ ଅଛି ତହିଁ ।। ୨୮୭ ।।
ଅୟୁତେ ଯୋଜନ ଯେ ବିସ୍ତାର ପଦ୍ମଫୁଲ ।
ତହିଁରେ ବ୍ରହ୍ମାବସି ଅଛନ୍ତି ସଦାକାଳ ।। ୨୮୮ ।।

ଦେବଦୈତ୍ୟ ସହିତେ ଅଛନ୍ତି ଯେତେ ନର ।
ସମସ୍ତେ ଧାତା ପାଦେ ପୂଜନ୍ତି ନିରନ୍ତର ।। ୨୮୯ ।।
ପୁଷ୍କର ଲତା ଯେଣୁ ସେ ସ୍ଥାନେ ଅଛି ରହି ।
ପୁଷ୍କର ନାମେ ତେଣୁ ସେ ଦ୍ୱୀପ ବିରାଜଇ ।। ୨୯୦ ।।
ସେ ଯଉଂ ମହାଦ୍ୱୀପ ତାହାକୁ ବେଢ଼ିକରି ।
ସପତ ପାରାବାର ରହିଛି ଜଳିପରି ।। ୨୯୧ ।।
ଲବଣ ଇକ୍ଷୁ ସୁରା ସର୍ପି ଯେ ଦଧି ଦୁଗ୍ଧ ।
ଜଳ ମିଶି ଏ ସାତ ସମୁଦ୍ର ଅତି ସିଦ୍ଧ ।। ୨୯୨ ।।
ଏ ସାତ ସିନ୍ଧୁ ମଧେ ଅଛନ୍ତି ସାତଦ୍ୱୀପ ।
ଯାହା ଘେନି ପ୍ରାଣୀଏ ନାଶନ୍ତି ସର୍ବ ତାପ ।। ୨୯୩ ।।
ଜମ୍ବୁପ୍ଲକ୍ଷ ଶାଲ୍ମଳୀ ତଦନ୍ତେ କୁଶକ୍ରୌଞ୍ଚ ।
ଶାକଦ୍ୱୀପ ଆବର ପୁଷ୍କର ଅତି ସଞ୍ଚ ।। ୨୯୪ ।।
ଏ ଯଉଂ ସାତ ଦ୍ୱୀପ କହିଲୁଂ ମୁନିବର ।
ଏହିମାନେ କେବଳ ଏହାଙ୍କୁ ପଟାନ୍ତର ।। ୨୯୫ ।।
ଯଉଂ ଦ୍ୱୀପ ବେଢ଼ିଛି ଯେବଣ ପାରାବାର ।
ସେ ଦ୍ୱୀପ ଗୋଟିକର ସମାନ ତା ବିସ୍ତାର ।। ୨୯୬ ।।
ସେ ଦ୍ୱୀପ ସେ ସାଗର ସମାନ ହୋଇ କରି ।
ଆରକ ଦ୍ୱୀପ ଶୋଭା ଦିଶଇ ତପଚାରି ।। ୨୯୭ ।।
ଏହି ପରିକ୍ରମରେ ଉତ୍ତରୋତ୍ତର ହୋଇ ।
ସମସ୍ତ ଦ୍ୱୀପମାନ ସର୍ବଦା ବିରାଜଇ ।। ୨୯୮ ।।
ସେ ଯଉଂ ସିନ୍ଧୁମାନ କହିଲୁ ସାଧୁଶୀଳ ।
ସବୁଦିନେ ସମାନ ଅଟଇ ତାଙ୍କ ଜଳ ।। ୨୯୯ ।।
ସେ ଯଉଂ ସିନ୍ଧୁଜଳ ତୁଟଇ ନାହିଁ କେବେ ।
ଅତିରିକ୍ତ ମଧ ସେ ନୁହଇ ଅର୍ଦ୍ଧଲବେ ।। ୩୦୦ ।।
ଅନଳ ସଂଯୋଗରୁ ସଲୀଳ ଘଟପରି ।
ଚନ୍ଦ୍ରମା ବୃଦ୍ଧି ହେଲେ ବଢ଼ଇ ତାର ବାରି ।। ୩୦୧ ।।
ବୃଦ୍ଧି ହୋଇ ସେ ଦଳ ରହଇ ସମଭାଗେ ।
ଊଣା ଅଧିକ ଅବା କାହିଁକି ହେବ କେବେ ।। ୩୦୨ ।।
ଧବଳ ପକ୍ଷେ ଯେବେ ଦେଖଇ କଳାକର ।
ପନ୍ଦରସ ଅଙ୍ଗୁଳି ବଢ଼ଇ ପାରାବାର ।। ୩୦୩ ।।
କୃଷ୍ଣପକ୍ଷ ହୋଇଲେ ଅନାଙ୍ଗ କ୍ଷୀଣ ଇନ୍ଦୁ ।
ବୃଦ୍ଧି ହେଲା ପ୍ରମାଣେ ତୁଟଇ ସେହି ସିନ୍ଧୁ ।। ୩୦୪ ।।
ଶୁଣ ଆହେ ତପସ୍ୱୀ ଅନ୍ୟ ରତ୍ନ ଦୀପ ।
ପୁଷ୍କର ନାମେ ଖ୍ୟାତ ହୋଇଛି ଯଉଂ ଦ୍ୱୀପ ।। ୩୦୫ ।।

ସେ ପୁଷ୍କର ଦ୍ୱୀପର ପାରୁଷେ ତପଚାରି ।
ସ୍ୱାଦୁ ଜଳ ସିନ୍ଧୁ ଯେ ରହିଛି ବେଢ଼ିକରି ।। ୩୦୬ ।।
ସେ ଯଉଂ ଜଳସିନ୍ଧୁ ତାହାର ବହିର୍ଭାଗେ ।
କାଞ୍ଚନମୟ ଭୂମି ଅଛି ଯେ ସେହି ଲାଗେ ।। ୩୦୭ ।।
ତଦନ୍ତରେ ଅଯୁତେ ଯୋଜନ ଉଚ୍ଚ ହୋଇ ।
ଲୋକାଲୋକ ନାମରେ ପର୍ବତ ବିରାଜଇ ।। ୩୦୮ ।।
ମଣ୍ଡଳ ଆକୃତିରେ ଅଛି ସେ ମହୀଧର ।
ଉଚ୍ଚ ଯେତେ ବିସ୍ତାର ତେତିକି ମଧ ତାର ।। ୩୦୯ ।।
ତଦନ୍ତେ ଅନ୍ଧକାର ଭୂମିହେ ତପୋଧନ ।
ସେ ଅନ୍ଧକାର ଘେନି ଦିଶଇ ସବୁ ଶୂନ୍ୟ ।। ୩୧୦ ।।
ସେ ଯଉଂ ଅନ୍ଧକାର ଅବନୀ ଅଛି ତହିଁ ।
ସଜଳ ଘନପୁଞ୍ଜ ପରାୟେ ଆଭାସଇ ।। ୩୧୧ ।।
ତାହାକୁ ବେଢ଼ି କରି ତପସ୍ୱି ନିଶାକର ।
ବ୍ରହ୍ମାଣ୍ଡ ଭାଣ୍ଡ ଗୋଟି ଦିଶଇ ମନୋହର ।। ୩୧୨ ।।
ଏମନ୍ତେ ମଇତ୍ରେୟ କହିଲୁ ଯେତେ ମହୀ ।
ପଞ୍ଚାଶକୋଟୀ ସଂଖ୍ୟା ଯୋଜନେ ଅଛି ବହି ।। ୩୧୩ ।।
ପରାଶର ମୁଖରୁଂ ଏମନ୍ତ କଥା ଶୁଣି ।
ପଚାରନ୍ତି ମୈତ୍ରେୟ ଅଞ୍ଜଳି କରି ପାଣି ।। ୩୧୪ ।।
ଧରଣୀ ପ୍ରମାଣ ଯେ କହିଲ ତପଚାରି ।
ପଞ୍ଚାଶ କୋଟୀ ସଂଖ୍ୟା ଯୋଜନ ବୋଲି କରି ।। ୩୧୫ ।।
କି ପ୍ରକାରେ କଳନା ହୋଇବ ବସୁମତୀ ।
ବିଚାରି କହ ମୋତେ ମୁନୀନ୍ଦ୍ର ନିଶାପତି ।। ୩୧୬ ।।
ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ତୁମ୍ଭ ଆଗେ କହିବା ଅବନୀ ସଂଖ୍ୟା ତତ୍ତ୍ୱ ।। ୩୧୭ ।।
ମେରୁଙ୍କ ମଧଠାରୁ ସଲୀଳ ସିନ୍ଧୁ ଯାଏ ।
ଅବନୀ ସ୍ଥଳ ସଂଖ୍ୟା ଶୁଣହେ ଏକଲୟେ ।। ୩୧୮ ।।
ଦୁଇ କୋଟୀ ଉତ୍ତାରୁଂ ତେପନ ଲକ୍ଷ ପୁଣି ।
ତଦନ୍ତରେ ପଞ୍ଚାଶ ସହସ୍ର ଯେତେ ଗଣି ।। ୩୧୯ ।।
ତେତିକି ଯୋଜନରେ ଅଛି ସେ ବସୁମତୀ ।
ସାବଧାନେ ଶୁଣିମା ହୋଉ ହେ ମହାଯତି ।। ୩୨୦ ।।
ସଲିଳ ସିନ୍ଧୁଠାରୁଂ ଯେତେ ସ୍ୱର୍ଣ୍ଣମହୀ ।
ଲୋକାଲୋକ ପର୍ବତ ପର୍ଯ୍ୟନ୍ତେ ଅଛି ରହି ।। ୩୨୧ ।।
ଦଶକୋଟୀ ଉତ୍ତାରୁଂ ଚଉଦ ଲକ୍ଷ ପୁଣି ।
ଏ ତିନି ଯୋଜନରେ ଶୋଭଇ ସେ ଧରଣୀ ।। ୩୨୨ ।।

ଲୋକାଲୋକ ଅଚଳ ଥିବାର ଯେଉଁ ମହୀ ।
ସେହି ଦଶ ସହସ୍ର ଯୋଜନେ ଅଛି ରହି ॥ ୩୨୩ ॥
ଲୋକାଲୋକ ପର୍ବତ ଉତ୍ତାରୁ ତପୋଧନ ।
ବ୍ରହ୍ମାଣ୍ଡକଟାହର ପର୍ଯ୍ୟନ୍ତେ ଯେତେ ସ୍ଥାନ ॥ ୩୨୪ ॥
ବାରକୋଟୀ ଉତ୍ତାରୁ ବତିଶ ଲକ୍ଷ ପୁଣି ।
ତଦନ୍ତରେ ଚାଳିଶ ସହସ୍ର ଯେତେ ଗଣି ॥ ୩୨୫ ॥
ତେତିକି ଯୋଜନରେ ଅଛି ସେ ବସୁମତୀ ।
ମନକୁ ସ୍ଥିର କରି ଶୁଣହେ ମହାଯତି ॥ ୩୨୬ ॥
ମେରୁଙ୍କ ମଧଠାରୁଁ ଏ ଯେଉଁ ଦିବ୍ୟସ୍ଥାନ ।
ବ୍ରହ୍ମାଣ୍ଡଭାଣ୍ଡଯାଏ କହିଲୁ ତପୋଧନ ॥ ୩୨୭ ॥
ଯୋଜନରେ ପଞ୍ଚଶକୋଟୀ ଯେ ହେଲା ସବୁ ।
ମେରୁଙ୍କ ଉତ୍ତରକୁ ଏତିକି ଅଛି ବାବୁ ॥ ୩୨୮ ॥
ମେରୁଙ୍କ ମଧଠାରୁଁ ବ୍ରହ୍ମାଣ୍ଡଭାଣ୍ଡଯାଏ ।
ଦକ୍ଷିଣକୁ ଏତିକି ଶୁଣହେ ଏକଲୟେ ॥ ୩୨୯ ॥
ଏ ସମସ୍ତ ମିଶାଇଂ ଜାଣହେ ମହାଯତି ।
ପଞ୍ଚାଶ କୋଟୀ ସଂଖ୍ୟା ଯୋଜନେ ଅଛି କ୍ଷିତି ॥ ୩୩୦ ॥
ଏ ଯେଉଁ ବସୁମତୀ କହିଲୁଂ ତପୋଧନ ।
ବ୍ରହ୍ମାଣ୍ଡଭାଣ୍ଡ ଗର୍ଭେ ଅଛି ସେ ପ୍ରତିଦିନ ॥ ୩୩୧ ॥
ବିଧାତ୍ରୀ ଧାତ୍ରୀ ବେନି ବୋଲାଉଅଛି ସେହି ।
ଜଗତ ବହିବାକୁ ତହିଁରୁ ବଡ଼ ନାହିଁ ॥ ୩୩୨ ॥
ସାତ ଦ୍ୱୀପ ଚରିତ କଲୁଂ ଯେ ପରକାଶ ।
ସର୍ବଶୁଭେ ଚତୁର୍ଥ ଅଧାୟ ହେଲା ଶେଷ ॥ ୩୩୩ ॥
ଶ୍ରୀବିଷ୍ଣୁପୁରାଣ ଏ ଦ୍ୱିତୀୟ ଅଂଶଗୀତ ।
ଅବନୀମଣ୍ଡଳର ପ୍ରମାଣ ହେଲା ଖ୍ୟାତ ॥ ୩୩୪ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୩୩୫ ॥

# ପଞ୍ଚମ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ତପୋଧନ ।
ତୁମ୍ଭ ଆଗେ କହିଲୁଂ ଏ ଯେତେ କଥାମାନ ॥ ୧ ॥
ଏ ଚରିତ ପଢ଼ଇ ଯାହାର କର୍ଣ୍ଣ ବିଳେ ।
ପାତକମାନଙ୍କୁ ସେ ଦହଇ ଅବହେଳେ ॥ ୨ ॥
ପଞ୍ଚାଶକୋଟୀ ସଂଖ୍ୟା ଯୋଜନେ ଅଛି କ୍ଷିତି ।
ଏତେବୋଲି ଆମ୍ଭେ ଯେ କହିଲୁଂ ମହାଯତି ॥ ୩ ॥
ସେ କଥା ଆପଣ ତ ଶୁଣିଲ ଅନୁରାଗେ ।
ପାତାଳ କଥା ଏବେ କହିବା ତୁମ୍ଭ ଆଗେ ॥ ୪ ॥
ପ୍ରଥମରେ ଅତଳ ବିତଳ ଦ୍ୱିତୀୟରେ ।
ନିତଳ ନାମେ ଏକ ଭୁବନ ତୃତୀୟରେ ॥ ୫ ॥
ଗଭସ୍ତିମତ ନାମେ ଚତୁର୍ଥେ ଏକ ପୁର ।
ମହାତଳ ଭୁବନ ପଞ୍ଚମେ ମନୋହର ॥ ୬ ॥
ଷଷ୍ଠରେ ସୁତଳ ଯେ ପାତାଳ ସପ୍ତମରେ ।
ଏମନ୍ତେ ସାତପୁର ଅଛନ୍ତି ନିରନ୍ତରେ ॥ ୭ ॥
ଭରତଖଣ୍ଡ ମଧେ ଭାରତ ଦ୍ୱୀପ କ୍ଷିତି ।
ତାହାର ତଳେ ସାତପାତାଳ ବିରାଜନ୍ତି ॥ ୮ ॥
ଅତଳ ନାମେ ଖ୍ୟାତ ଅଟଇ ଯଙ୍ଗପୁର ।
ସହସ୍ରେ ଯୋଜନର ପ୍ରମାଣେ ତା ବିସ୍ତାର ॥ ୯ ॥
ଯେବଣ ଭୁବନରେ ବସିଛି ସେ ଭୁବନ ।
ସ୍ଫଟିକମଣି ପ୍ରାୟେ ଦିଶଇ ଶୋଭାବନ ॥ ୧୦ ॥
ଅତଳରୁଂ ଆଧାର ସେ ଯଙ୍ଗ ଦିବ୍ୟ ମହୀ ।
ସହସ୍ରେ ଯୋଜନର ବହଳେ ଅଛି ରହି ॥ ୧୧ ॥
ତାହାଠାରୁଂ ଭାରତ ଦ୍ୱୀପର ମହୀ ଯାଏ ।
ନ ସହସ୍ର ଯୋଜନେ ଆକାଶ ଶୋଭାପାଏ ॥ ୧୨ ॥
ଆକାଶ ବସୁମତୀ କହିଲୁ ଯଙ୍ଗ ବେନି ।
ସବୁ ଦଶ ସହସ୍ର ଯୋଜନ ସେ ଅବନୀ ॥ ୧୩ ॥
ଅତଳର ତଳରେ ବିତଳ ନାମେ ପୁର ।
ସହସ୍ରେ ଯୋଜନର ପ୍ରମାଣେ ତା ବିସ୍ତାର ॥ ୧୪ ॥
ଯେବଣ ବସୁଧାରେ ବସିଛି ସେ ଭୁବନ ।
ଅଞ୍ଜନପୁଞ୍ଜ ପ୍ରାୟେ ସେ ମହୀ ଶୋଭାବନ ॥ ୧୫ ॥
ବିତଳର ଆଧାର ସେ ଯଙ୍ଗ ଦିବ୍ୟ ମହୀ ।
ସହସ୍ରେ ଯୋଜନର ବହଳେ ଅଛି ରହି ॥ ୧୬ ॥

ତାହାଠାରୁଂ ଅତଳ ବସିବା କ୍ଷିତି ଯାଏ ।
ନସହସ୍ର ଯୋଜନ ଗଗନ ଶୋଭାପାଏ ।। ୧୭ ।।
ଗଗନ ବସୁମତୀ କହିଲୁଂ ଯଉଂ ବେନି ।
ସବୁ ଦଶସହସ୍ର ଅଟଇ ସେ ମେଦିନୀ ।। ୧୮ ।।
ବିତଳର ତଳରେ ନିତଳ ନାମେ ପୁର ।
ସହସ୍ରେ ଯୋଜନର ପ୍ରମାଣେ ତା ବିସ୍ତାର ।। ୧୯ ।।
ଯେବଣ ଧରଣୀରେ ବସିଛି ସେ ଭୁବନ ।
ବାଳସୂର୍ଯ୍ୟ ପରାୟେ ସେ ମହୀ ଶୋଭାବନ ।। ୨୦ ।।
ନିତଳ ବିତଳରେ ଗଭସ୍ତିମତ ପୁର ।
ସହସ୍ରେ ଯୋଜନର ପ୍ରମାଣେ ତା ବିସ୍ତାର ।। ୨୧ ।।
ଯେବଣ ଅବନୀରେ ବସିଛି ସେ ଭୁବନ ।
କୁଙ୍କୁମ ପଙ୍କ ପରି ସେ ମହୀ ଶୋଭାବନ ।। ୨୨ ।।
ଗଭସ୍ତୀମତର ଯେ ଆଧାର ସେ ଧରଣୀ ।
ସହସ୍ରେ ଯୋଜନର ବହଳ ସେହିପୁଣି ।। ୨୩ ।।
ତାହାଠାରୁଂ ନିତଳର ରହିବା ମହୀ ଯାଏ ।
ନସହସ୍ର ଯୋଜନ ଆକାଶ ଶୋଭାପାଏ ।। ୨୪ ।।
ଆକାଶ ବସୁମତୀ କହିଲୁ ଯଉଂ ବେନି ।
ସବୁ ଦଶସହସ୍ର ଯୋଜନ ସେ ଅବନୀ ।। ୨୫ ।।
ଗଭସ୍ତିମତ ପୁର ତଳରେ ମହାତଳ ।
ସହସ୍ରେ ଯୋଜନର ବିସ୍ତାରେ ସୁମଞ୍ଜୁଳ ।। ୨୬ ।।
ଯେବଣ ବସୁଧାରେ ବସିଛି ସେ ଭୁବନ ।
ସ୍ଥୁଳବାଲି ମାନଙ୍କେ ସେ ମହୀ ଶୋଭାବନ ।। ୨୭ ।।
ମହୀତଳ ବହିଛି ସେ ଯଉଂ ଦିବ୍ୟମହୀ ।
ସହସ୍ରେ ଯୋଜନର ବହଳେ ଅଛି ରହି ।। ୨୮ ।।
ତାହାଠାରୁଂ ଗଭସ୍ତିମତର ପୃଥ୍ୱୀ ଯାଏ ।
ନସହସ୍ର ଯୋଜନ ଗଗନ ଶୋଭାପାଏ ।। ୨୯ ।।
ଗଗନ ବସୁମତୀ କହିଲୁ ଯଉଂ ବେନି ।
ସବୁ ଦଶ ସହସ୍ର ଯୋଜନ ସେ ଅବନୀ ।। ୩୦ ।।
ମହାତଳ ତଳରେ ସୁତଳ ନାମେ ପୁର ।
ସହସ୍ରେ ଯୋଜନର ପ୍ରମାଣେ ତା' ବିସ୍ତାର ।। ୩୧ ।।
ଯେବଣ ଅବନୀରେ ବସିଛି ସେ ଭୁବନ ।
ରତ୍ନମୟ ମେଦିନୀ ତହିଁରେ ଶୋଭାବନ ।। ୩୨ ।।
ସୁତଳର ଆଧାର ସେ ଯଉଂ ଦିବ୍ୟ ମହୀ ।
ସହସ୍ରେ ଯୋଜନର ବହଳେ ଅଛି ରହି ।। ୩୩ ।।

ତା'ଠାରୁଁ ମହାତଳ ବସିବା ପୃଥ୍ୱୀ ଯାଏ ।
ନସହସ୍ର ଯୋଜନ ଆକାଶ ଶୋଭାପାଏ ॥ ୩୪ ॥
ଆକାଶ ବସୁମତୀ କହିଲୁଁ ଯେଉଁ ବେନି ।
ସବୁ ଦଶସହସ୍ର ଯୋଜନ ସେ ଅବନୀ ॥ ୩୫ ॥
ସୁତଳର ତଳରେ ପାତାଳ ନାମେ ପୁର ।
ସହସ୍ରେ ଯୋଜନର ପ୍ରମାଣ ତା' ବିସ୍ତାର ॥ ୩୬ ॥
ଯେବଣ ଅବନୀରେ ବସିଛି ସେ ଭୁବନ ।
କନକମୟ ହୋଇ ସେ ମହୀ ଶୋଭାବନ ॥ ୩୭ ॥
ପାତାଳର ଆଧାର ସେ ଯେଉଁ ଦିବ୍ୟ ମହୀ ।
ସହସ୍ରେ ଯୋଜନର ବହଳେ ଅଛି ରହି ॥ ୩୮ ॥
ତାହାଠାରୁଁ ସୁତଳ ରହିବା ମହୀ ଯାଏ ।
ନସହସ୍ର ଯୋଜନେ ଆକାଶ ଶୋଭାପାଏ ॥ ୩୯ ॥
ଆକାଶ ବସୁମତୀ କହିଲୁ ଯେଉଁ ବେନି ।
ସବୁ ଦଶ ସହସ୍ର ଯୋଜନ ସେ ଅବନୀ ॥ ୪୦ ॥
ଏହିପରି ସତୁରୀ ସହସ୍ର ଯୋଜନରେ ।
ବହଳ ହୋଇ ପୃଥ୍ୱୀ ରହିଛି ନିରନ୍ତରେ ॥ ୪୧ ॥
ସେ ଯେଉଁ ସାତପୁର ତହିଁରେ ମୁନିବର ।
ପ୍ରାସାଦ ଅଟ୍ଟାଳିକା ଦିଶଇ ମନୋହର ॥ ୪୨ ॥
ସେ ପୁରମାନଙ୍କରେ ଦାନବ ଦୈତ୍ୟ ଯେତେ ।
ବିବିଧରଙ୍ଗେ କ୍ରୀଡ଼ା କରନ୍ତି ତୋଷ ଚିତ୍ତେ ॥ ୪୩ ॥
ମହାନାଗ ନାମରେ ଅଛନ୍ତି ଯେତେ ଜାତି ।
ସେମାନେ ମଧ ତହିଁ ଆନନ୍ଦେ ବିହରନ୍ତି ॥ ୪୪ ॥
ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ପାତାଳ ଭୁବନକୁ ଗଲେ ଯେ ଧାତାସୁତ ॥ ୪୫ ॥
ସେ ନାରଦ ସପତ ପାତାଳ ଦେଖି ଆସି ।
ଅମର ସଭା ମଧ୍ୟେ କହିଲେ ପରଶଂସି ॥ ୪୬ ॥
ପିତାମହ ନନ୍ଦନ କହିଲେ ଯେଉଁ ବାଣୀ ।
ସେ କଥା ଶୁଣ ଆହେ ତପସ୍ୱୀ ଚୂଡ଼ାମଣି ॥ ୪୭ ॥
ଅତଳ ଆଦି କରି ସେ ଯେଉଁ ସାତପୁର ।
ଅମର ଭୁବନରୁଁ ଅତ୍ୟନ୍ତ ମନୋହର ॥ ୪୮ ॥
ସେ ପୁରମାନଙ୍କରେ ଅଛନ୍ତି ଯେତେ ମଣି ।
ପ୍ରତିଭାରେ ନିନ୍ଦନ୍ତି ଚନ୍ଦ୍ରମା କରଶ୍ରେଣୀ ॥ ୪୯ ॥
ସେ ମଣିମାନଙ୍କର ଆହ୍ଲାଦ ପ୍ରଭା ଘେନି ।
ଚନ୍ଦ୍ରମାରାତି ପରି ଦିଶଇ ସେ ଅବନୀ ॥ ୫୦ ॥

ନାଗ ଲୋକମାନଙ୍କ ଅଙ୍ଗର ଅଳଙ୍କାର ।
ଠାବେ ଠାବେ ତହିଁରେ ଦିଶଇ ମନୋହର ।। ୫୧ ।।
ଦାନବ ଦୈତ୍ୟ କନ୍ୟା ଅତ୍ୟନ୍ତ ହୃଷ୍ଟମନେ ।
ବିବିଧ ରଙ୍ଗେ କ୍ରୀଡ଼ା କରନ୍ତି ସେ ଭୁବନେ ।। ୫୨ ।।
ରାଗ ଶୂନ୍ୟ ଅଟନ୍ତି ଯେତେକ ପ୍ରାଣିମାନେ ।
କେ ଅବା ସେ ପୁରକୁ ରସଇ ନାହିଁ ମନେ ।। ୫୩ ।।
ତହିଁରେ ଚନ୍ଦ୍ରସୂର୍ଯ୍ୟ ଉଦୟ ନୋହି କରି ।
ଆଲୋକମାନଙ୍କରେ ନିଅନ୍ତି ଚିତ୍ତ ହରି ।। ୫୪ ।।
ରବିଙ୍କର ଆତପ ଚନ୍ଦ୍ରଙ୍କ ଶୀତ କର ।
ଏମାନ ତହିଁ ନାହିଁ ଶୁଣହେ ମୁନିବର ।। ୫୫ ।।
ଲଡୁକୁ ଆଦି କରି ଯେତେକ ଭକ୍ଷ୍ୟ ଦ୍ରବ୍ୟ ।
ଏମାନ ତହିଁ ଆଉ ନୁହଇ ଅପୂରୁବ ।। ୫୬ ।।
ଭକ୍ତ ଆଦି ଭୋଜନ କରିବା ଦ୍ରବ୍ୟ ଯେତେ ।
ଏହି ମଧ ଅପୂର୍ବ ନୁହଇ କଦାଚିତେ ।। ୫୭ ।।
ମଦିରା ଆଦି କରି ଯେତେକ ମହାପାନ ।
ସେହି ମଧ ତହିଁରେ ମିଳଇ ତପୋଧନ ।। ୫୮ ।।
ଭକ୍ଷ୍ୟ ଆଦି ଏ ଯେତେ କହିଲୁଁ ତୁମ୍ଭ ଆଗେ ।
ଏମାନ ଭୋଗ କରି ଅତ୍ୟନ୍ତ ଅନୁରାଗେ ।। ୫୯ ।।
ଅନେକ ଭୋଗୀମାନେ ଅଛନ୍ତି ସେ ଭୁବନେ ।
ରାତ୍ରି ଦିବା ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟମନେ ।। ୬୦ ।।
ଦନୁଜ ଆଦି କରି ଯେତେକ ପ୍ରାଣୀ ତହିଁ ।
ଭୋଗ କଲା କାଳକୁ କାହାରି ସଂଖ୍ୟା ନାହିଁ ।। ୬୧ ।।
ଯେତେକ ନଦୀ ତହିଁ ଅଛି ହେ ତପଚାରି ।
ଗଙ୍ଗାଙ୍କ ପ୍ରତିଦ୍ୱନ୍ଦ୍ୱି ଅଟଇ ତାଙ୍କ ବାରି ।। ୬୨ ।।
ସେ ଯଉଂ ତରଙ୍ଗିଣୀ ତାହାଙ୍କ ଜଳପାନେ ।
ଅମୃତ ହେଲେ ଆଉ ପଡ଼ଇ ନାହିଁ ମନେ ।। ୬୩ ।।
ସେ ନଦୀମାନଙ୍କର ତଟରେ ତପୋଧନ ।
ଅତିଶୋଭା ଦିଶଇ କୁସୁମ ଉପବନ ।। ୬୪ ।।
ସେ ବନ ମାନଙ୍କର ଚନ୍ଦନ ଦ୍ରୁମ ଶିଖେ ।
କୋକିଳମାନେ ବସି କୂଜନ୍ତି ଅତି ସୁଖେ ।। ୬୫ ।।
ଅତ୍ୟନ୍ତ ସ୍ୱଚ୍ଛ ହୋଇ ସରସୀମାନେ ଯେତେ ।
ଫୁଟିଲା ପଙ୍କଜକୁ ବହନ୍ତି ଅବିରତେ ।। ୬୬ ।।
ବସନ ଅଳଙ୍କାର ଚନ୍ଦନ ସୁମନସ ।
ଏମାନଙ୍କୁ ତହିଁରେ ବର୍ଣ୍ଣିବି ଅବା କିସ ।। ୬୭ ।।

ବୀଣା ବେଣୁ ମୃଦଙ୍ଗ ନାଦରେ ମୁନିବର ।
ନାନାରଙ୍ଗେ ସଙ୍ଗୀତ ହୁଅଇ ନିରନ୍ତର ।। ୬୮ ।।
ନାଗଲୋକ ନାଗରୀମାନଙ୍କ ଗୀତ ଶୁଣି ।
ବିପଞ୍ଚୀ ହେଲେ କରୁଂ ପକାଇ ଦେବେ ବାଣୀ ।। ୬୯ ।।
ପାତାଳ ନଟୀଙ୍କର ତାଣ୍ଡବ ଦେଖିଲେ ଚାହିଁ ।
ରମ୍ଭାକୁ ସମ୍ଭାବନା କଦାପି ହେବ ନାହିଁ ।। ୭୦ ।।
ଏମନ୍ତେ ସାତପୁର ଦିଶଇ ମନୋରମ ।
ସଂସାର ମଧ୍ୟେ ଆଉ ତାହାକୁ ନାହିଁ ସମ ।। ୭୧ ।।
ଦାନବମାନେ ତହିଁ ତେଡ଼ିକି ଭାଗ୍ୟବଳେ ।
ବିବିଧରଙ୍ଗେ କ୍ରୀଡ଼ା କରନ୍ତି ଅତି ଭୋଳେ ।। ୭୨ ।।
ପାତାଳ ମଧ୍ୟେ କରି ବିବିଧ ଅଧିକାର ।
ଉରଗମାନେ ମଧ କ୍ରୀଡ଼ନ୍ତି ନିରନ୍ତର ।। ୭୩ ।।
ବୋଲନ୍ତି ପରାଶର ଶୁଣହେ ମୁନିବର ।
ପାତାଳ ନାମେ ଖ୍ୟାତ ହୋଇଛି ଯେଉଁ ପୁର ।। ୭୪ ।।
ସେହି ପୁର ତଳରେ ଯେ ଅଛନ୍ତି ଶେଷ ଦେବ ।
ତାହାଙ୍କର ମହିମା ବଚନେ କେ କହିବ ।। ୭୫ ।।
ବିଷ୍ଣୁଙ୍କର ତାମସ ତନୁ ସେ ନାଗରାଜ ।
ମଧ୍ୟାହ୍ନ ମାର୍ତ୍ତଣ୍ଡଙ୍କୁ ନିନ୍ଦଇ ତାଙ୍କ ତେଜ ।। ୭୬ ।।
ଅନନ୍ତ ବୋଲି ତାଙ୍କୁ ବୋଲନ୍ତି ସିଦ୍ଧମାନେ ।
ଦେବଋଷି ଯାହାଙ୍କୁ ପୂଜନ୍ତି ପ୍ରତିଦିନେ ।। ୭୭ ।।
ସହସ୍ରେ ଫଣାରେ ସେ ଅତ୍ୟନ୍ତ ମନୋହର ।
ଫଣାରେ ଥିବା ରେଖା ଯାହାର ଅଳଙ୍କାର ।। ୭୮ ।।
ସହସ୍ରେ ଫଣାରେ ଯେ ସହସ୍ରେ ମଣିମାନ ।
ସୂର୍ଯ୍ୟପରି ଉଜ୍ଜ୍ୱଳ ଦିଶନ୍ତି ପ୍ରତିଦିନ ।। ୭୯ ।।
ସେ ମଣିମାନଙ୍କର କିରଣ ପ୍ରବାହରେ ।
ଦଶଦିଶ ଆଲୋକ ଦିଶଇ ନିରନ୍ତରେ ।। ୮୦ ।।
ସେ ଯେଉଁ ନାଗରାଜ ତାହାଙ୍କ ତେଜ ବାଜି ।
ଅସୁରମାନଙ୍କର ଯାଉଛି ଓଜ ଭାଜି ।। ୮୧ ।।
ଲୋକର ଉପକାର କାରଣେ ସେ ଅନନ୍ତ ।
ଅସୁରମାନଙ୍କର ବିନାଶୁଛନ୍ତି ସତ୍ତ୍ୱ ।। ୮୨ ।।
ମଦରେ ଆଘୂର୍ଣ୍ଣିତ ହୁଅଇ ନେତ୍ରଯୁଗ ।
ଏକ କର୍ଣ୍ଣେ କୁଣ୍ଡଳ ବହନ୍ତି ମହାଭାଗ ।। ୮୩ ।।
ମସ୍ତକରେ କିରୀଟମୁକୁଟ ଝଟକଇ ।
ହୃଦୟତଟେ ହାର ପଦକ ବିରାଜଇ ।। ୮୪ ।।

ଅନନ୍ତ ଅଙ୍ଗେ ଯଉଂ ସେ ହାର ସେ କିରୀଟ ।
ରତ୍ନମାନେ ତହିଁରେ ଦିଶନ୍ତି ଝଟଝଟ ॥ ୮୫ ॥
ରଜତପର୍ବତରେ ଜଳିବା ଅଗ୍ନି ସମ ।
ଅନନ୍ତ ଅଙ୍ଗକୁ ସେ ଦିଶଇ ମନୋରମ ॥ ୮୬ ॥
କଟିତଟେ ମଞ୍ଜୁଳ ଦିଶଇ ନୀଳବାସ ।
ଅଧରକୁ ଉଦ୍ଧରି ଧରଇ ମନ୍ଦହାସ ॥ ୮୭ ॥
କୈଳାସ ପର୍ବତରେ ଜଳଦଗଙ୍ଗା ପରି ।
ମନ୍ଦହାସେ ବସନ ଦିଶଇ କି ଚାତୁରୀ ॥ ୮୮ ॥
କରକରେ ଲାଙ୍ଗଳ ମୂଷଳ ଆରକରେ ।
ମଦରେ ମହାମତ୍ତ ଦିଶନ୍ତି ନିରନ୍ତରେ ॥ ୮୯ ॥
ବାରୁଣୀ କାନ୍ତି ନାମେ ସେ ଯଉଂ ବେନି ପ୍ରିୟା ।
ଆଚରନ୍ତି ଶେଷଙ୍କ ଚରଣ ସେବା କ୍ରିୟା ॥ ୯୦ ॥
କଳ୍ପାନ୍ତରେ ଯାହାର ବଦନୁ ଜାତ ହୋଇ ।
କାଳାନଳ ପରାୟେ ଗରଳ ବିରାଜଇ ॥ ୯୧ ॥
ସଙ୍କର୍ଷଣ ସ୍ୱରୂପୀ ସେ ଯଉଂ ନାଗରାଜ ।
ଶ୍ରୀ ଅଙ୍ଗରେ ପ୍ରକାଶି ଅତ୍ୟନ୍ତ ଉଗ୍ରତେଜ ॥ ୯୨ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସହିତେ ବସୁମତୀ ।
ଅନାୟାସେ ଆପଣ ମସ୍ତକେ ଟେକିଛନ୍ତି ॥ ୯୩ ॥
ତାଙ୍କ ଫଣା ପ୍ରାଙ୍ଗଣେ ଗୋଟିଏ ରେଣୁପରି ।
ଅଶେଷ ବସୁନ୍ଧରା ଅଛି ହେ ତପଚାରି ॥ ୯୪ ॥
ପାତାଳ ତଳରେ ଯେ ଅଛନ୍ତି ସେ ଅନନ୍ତ ।
ସୁରଗଣେ ତାହାଙ୍କୁ ସେବନ୍ତି ଅବିରତ ॥ ୯୫ ॥
ତାଙ୍କ ବୀର୍ଯ୍ୟ ସ୍ୱଭାବ ସ୍ୱରୂପ ରୂପ ଯେତେ ।
ସେମାନ ବର୍ଣ୍ଣିବାକୁ ଅଛି କେ ତ୍ରିଜଗତେ ॥ ୯୬ ॥
ତ୍ରିଦଶଗଣମାନେ ବର୍ଣ୍ଣିଲେ ତାଙ୍କ ଗୁଣ ।
କେମନ୍ତେ ଅବାକରି ପାରିବେ ବିବରଣ ॥ ୯୭ ॥
ଫଣାମଣି କିରଣେ ଅରୁଣ ବର୍ଣ୍ଣବହି ।
ମନ୍ଦାର ମାଳାପରି ଅବନୀ ଯାହା ତହିଁ ॥ ୯୮ ॥
ସେ ଯଉଂ ଶେଷଦେବ ଅଶେଷ ବୀର୍ଯ୍ୟଧାରୀ ।
ଅଛନ୍ତି ଅନାୟାସେ ଅବନୀ ଶିରେ ଧରି ॥ ୯୯ ॥
ମଦରେ ନେତ୍ରକଞ୍ଜ ଘୂର୍ଣ୍ଣାୟମାନ କରି ।
ଜୃମ୍ଭାକୁ ଆରମ୍ଭିଲେ ଲାଙ୍ଗଳ ଶସ୍ତ୍ରଧାରୀ ॥ ୧୦୦ ॥
ସାଗର ଗିରିବନ ସହିତେ ବସୁମତୀ ।
ଲୀଳାମାତ୍ରେ କମ୍ପଇ ତପସ୍ୱୀ ନିଶାପତି ॥ ୧୦୧ ॥

ଅପ୍ସରା ସିଦ୍ଧ ମୁନି ଗନ୍ଧର୍ବ ବିଦ୍ୟାଧର ।
ମହୋରଗ ଚାରଣ କିନ୍ନର ସୁରନର ।। ୧୦୨ ।।
ଏମାନେ ତାଙ୍କ ଗୁଣ ନ କଲା ଘେନି ଅନ୍ତ ।
ଅନନ୍ତ ନାମରେ ସେ ଅଟନ୍ତି ଅତିଖ୍ୟାତ ।। ୧୦୩ ।।
ଭୁଜଙ୍ଗ ଅଙ୍ଗନାଏ ଯାହାର ଅଙ୍ଗଦେଶେ ।
ଦ୍ରବ ହରିଚନ୍ଦନ ବୋଳନ୍ତି ଅତି ତୋଷେ ।। ୧୦୪ ।।
ଫଣା ଶ୍ୱାସ ପବନେ ଉଡ଼ନ୍ତେ ସେ ଚନ୍ଦନ ।
ପ୍ରତିଦିଗେ ବିଚିତ୍ର ମଣନ୍ତି ସର୍ବଜନ ।। ୧୦୫ ।।
ଶୁଷ୍କ ହେବା ସକାଶୁଁ ସକଳ ପ୍ରାଣୀମାନେ ।
କର୍ପୂର ଚୂର୍ଣ୍ଣ ବୋଲି ବୋଲନ୍ତି ଅନୁମାନେ ।। ୧୦୬ ।।
ତାହାଙ୍କ ଶ୍ରୀଚରଣେ ଅର୍ଚ୍ଚନା କଲା ଘେନି ।
ଦୈବଜ୍ଞ ହେଲେ ଗର୍ଗ ନାମରେ ମହାମୁନି ।। ୧୦୭ ।।
ନକ୍ଷତ୍ର ଗ୍ରହ ଶୁଭ ଅଶୁଭ ଆଦି ଯେତେ ।
କାହାର କି ଫଳ ସେ ଜାଣନ୍ତି ହୃଷ୍ଟ ଚିତ୍ତେ ।। ୧୦୮ ।।
ଶୁଣହେ ତପଚାରୀ କୁଳର କଳାକର ।
ଶେଷ ଏକା ବହନ୍ତି ସକଳ ଚରାଚର ।। ୧୦୯ ।।
ଅସୁରସୁର ନରମାନଙ୍କୁ ଆଦି କରି ।
ଜଗତେ ଯେତେ ଲୋକ ଅଛନ୍ତି ତପଚାରି ।। ୧୧୦ ।।
ଏମାନେ ଯଉଂ ଯଉଂ ଭୁବନେ ବିହରନ୍ତି ।
ସେ ସବୁ ଶେଷଙ୍କର ମାଳିକା ହୋଇଛନ୍ତି ।। ୧୧୧ ।।
ଅଶେଷ ଚରିତ ଏ ଶୁଣହେ ମୁନିହଂସ ।
ସର୍ବ ଶୁଭେ ପଞ୍ଚମ ଅଧ୍ୟାୟ ହେଲା ଶେଷ ।। ୧୧୨ ।।
ଶ୍ରୀବିଷ୍ଣୁ ପୁରାଣ ଯେ ଦ୍ୱିତୀୟ ଅଂଶଗୀତ ।
ପାତାଳମାନଙ୍କର ବର୍ଣ୍ଣନା ସମାପତ ।। ୧୧୩ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୧୧୪ ।।

# ଷଷ୍ଠ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ସାଧୁଶୀଳ ।
ପାତାଳ ତଳରେ ଯେ ରହିଛି ଗର୍ଭଜଳ ॥ ୧ ॥
ସାତସିନ୍ଧୁ ପ୍ରମାଣେ ଅଛି ସେ ଗର୍ଭୋଦକ ।
ତାହାର ତଳେ ଅଛି ବିବିଧ ମତେ ନର୍କ ॥ ୨ ॥
ପାତକୀଜନମାନେ କରନ୍ତି ଯହିଁ ବାସ ।
ସେ ନର୍କର ମହିମା ଶୁଣହେ ମୁନିହଂସ ॥ ୩ ॥
ପ୍ରଥମେ ରଉରବ ଶୂକର ଦ୍ୱିତୀୟରେ ।
ରୋଧ ନାମେ ତୃତୀୟ ନରକ ପ୍ରଚଣ୍ଡରେ ॥ ୪ ॥
ଚତୁର୍ଥରେ ତାଳ ଯେ ପଞ୍ଚମେ ବିଶସନ ।
ମହାଜ୍ୱାଳନରକ ସପ୍ତମେ ଦୀପ୍ତିମାନ ॥ ୫ ॥
ଅଷ୍ଟମେ ତପ୍ତ କୁମ୍ଭ ଶ୍ୱସନ ନବମରେ ।
ବିମୋହନ ନରକ ଅଛି ଯେ ଦଶମରେ ॥ ୬ ॥
ରୁଧିରାନ୍ଧ ନାମରେ ନରକ ଏକାଦଶେ ।
ଦ୍ୱାଦଶେ ବୈତରଣୀ କୃମି ତ୍ରୟୋଦଶେ ॥ ୭ ॥
ପୁଣି କୃମିଭୋଜନ ନରକ ଚତୁର୍ଦ୍ଦଶେ ।
ତଦନ୍ତେ ଅସିପତ୍ର କାନନ ପଞ୍ଚଦଶେ ॥ ୮ ॥
ଷୋଡ଼ଶେ ଲାଳଭକ୍ଷ୍ୟ ଅତ୍ୟନ୍ତ ଭୟଙ୍କର ।
ପୂୟବହ ସପତଦଶରେ ମୁନିବର ॥ ୯ ॥
ଅଷ୍ଟାଦଶ ନରକ ବୋଲାଇ ବହ୍ନିଜ୍ୱାଳ ।
ଅଧଃଶିରା ଏକୋନବିଂଶରେ ବିକରାଳ ॥ ୧୦ ॥
ବିଂଶତି ନରକ ସନ୍ଦଶ ନାମେ ଖ୍ୟାତ ।
ଏକବିଂଶ ନରକ ବୋଲାଇ କାଳସୂତ୍ର ॥ ୧୧ ॥
ଦ୍ୱାବିଂଶରେ ତମ ଯେ ଅବୀଚି ତ୍ରୟୋବିଂଶେ ।
ତଦନ୍ତେ ଶ୍ୱଭୋଜନ ନରକ ଚତୁର୍ବିଂଶେ ॥ ୧୨ ॥
ପଞ୍ଚବିଂଶେ ଅପ୍ରତିଷ୍ଠ ଆବୀଚି ଷଡ଼ବିଂଶେ ।
ଏମନ୍ତେ ଯେତେ ନର୍କ କହିଲୁଁ ତୁମ୍ଭ ପାଶେ ॥ ୧୩ ॥
ଏହାଙ୍କୁ ଆଦି କରି ଅଛନ୍ତି ଆଉ ଯେତେ ।
ଅତ୍ୟନ୍ତ ଭୟଙ୍କର ଦିଶନ୍ତି ଅବିରତେ ॥ ୧୪ ॥
ଏ ଯଉଂ ନର୍କମାନେ କହିଲୁଁ ତପୋଧନ ।
ଶୁଣିମା ହୋଉ ଏବେ ଯାହାର ଯହିଁ ସ୍ଥାନ ॥ ୧୫ ॥
କପଟେ ସାକ୍ଷୀ ହୋଇ ଯେବଣ ମୂଢ଼ପ୍ରାଣୀ ।
ପକ୍ଷ ହୋଇ ସଭାରେ କହଇ ମିଥ୍ୟାବାଣୀ ॥ ୧୬ ॥

ସେ ଲୋକ ରଉରବ ନରକେ ବାସ କରି ।
ଅତି ଦୁଃଖେ ବଞ୍ଚଇ ଦିବସ ବିଭାବରୀ ॥ ୧୭ ॥
ଗର୍ଭ ନାଶ କରଇ ଯେବଣ ମୂଢ଼ ନର ।
ଯେ ଅବା ପୁରହନ୍ତା ଶୁଣ ହେ ମୁନିବର ॥ ୧୮ ॥
ଗୋହତ୍ୟା ଅରଜଇ ଯେବଣ ମୂଢ଼ଜନ ।
ଯେ ଅବା ପ୍ରାଣୀ ପ୍ରାଣ ଘେନଇଁ ପ୍ରତିଦିନ ॥ ୧୯ ॥
ରୋଧନାମ ନରକେ ନିମଜ୍ଜି ସେ ପୁରୁଷ ।
ନିରନ୍ତରେ ସହଇ ବିବିଧ ମତେ କ୍ଳେଶ ॥ ୨୦ ॥
ଯେବଣ ପ୍ରାଣୀମାନେ କରନ୍ତି ସୁରାପାନ ।
ବ୍ରହ୍ମହତ୍ୟା କରଇ ଯେବଣ ମୂର୍ଖଜନ ॥ ୨୧ ॥
ସୁବର୍ଣ୍ଣ ଅବା ଚୋରୀ କରନ୍ତି ଯେତେ ନର ।
ଶୂକର ନରକରେ ପଡ଼ନ୍ତି ନିରନ୍ତର ॥ ୨୨ ॥
ଏ ଯେଉଁ ପାପୀମାନେ କହିଲୁ ତପୋଧନ ।
ଏହାଙ୍କ ସଙ୍ଗେ ସଙ୍ଗୀ ହୁଅଇ ଯେଉଁ ଜନ ॥ ୨୩ ॥
ସେହି ମଧ ଶୂକର ନରକେ ନିମଜ୍ଜଇ ।
ଏଥିରେ ମହାଭାଗ ସନ୍ଦେହ କିଛି ନାହିଁ ॥ ୨୪ ॥
ଯାଗ କର୍ତ୍ତା ଯେବଣ କ୍ଷତ୍ରିୟ ବୈଶ୍ୟ ବେନି ।
ତାହାଙ୍କୁ ଯେଉଁ ନର ମାରଇ ଶସ୍ତ୍ର ଘେନି ॥ ୨୫ ॥
ଗୁରୁନାରୀ ସଙ୍ଗମ କରଇ ଯେଉଁ ନର ।
ତପ୍ତକୁମ୍ଭେ ଏମାନେ ପଡ଼ନ୍ତି ନିରନ୍ତର ॥ ୨୬ ॥
ଶାଶ୍ରୁ ତୁଲେ ଯେ ଅବା କରଇ ନିଧୁବନ ।
ରାଜଦୂତମାନଙ୍କୁ ମାରଇ ଯେଉଁ ଜନ ॥ ୨୭ ॥
ଅଙ୍ଗନା ବିକି ଧନ ଅର୍ଜଇ ଯେଉଁ ନର ।
ଯେ ଅବା କାରାଗୃହ ଜଗଇ ନିରନ୍ତର ॥ ୨୮ ॥
ଅଶ୍ୱ ବିକି ଯେ ଅବା ପୋଷଇ ଦାରାସୁତ ।
ତପ୍ତକୁମ୍ଭେ ଏମାନେ ପଡ଼ନ୍ତି ଅବିରତ ॥ ୨୯ ॥
ଅନୁଗତ ଜନଙ୍କୁ ଯେ ଅବା ନରଖଇ ।
ସେ ମଧ ତପ୍ତକୁମ୍ଭନରକେ ନିମଜ୍ଜଇ ॥ ୩୦ ॥
ସୁତାସ୍ୱସା ସଙ୍ଗମ କରଇ ଯେଉଁ ଜନ ।
ମହାଜ୍ୱାଳ ନରକେ ପଡ଼ଇ ପ୍ରତିଦିନ ॥ ୩୧ ॥
ଗୁରୁକୁ ସମ୍ଭାବନା ଯେ ଅବା ନ କରଇ ।
ପର ଅପବାଦକୁ ଯେ ଅବା ଉଚ୍ଚାରଇ ॥ ୩୨ ॥
ବେଦକୁ ନିରନ୍ତରେ ନିନ୍ଦଇ ଯେଉଁ ଜନ ।
ଅଗମ୍ୟ ନାରୀକି ଯେ କରଇ ନିଧୁବନ ॥ ୩୩ ॥

ଏ ଯେତେ ପାପୀମାନେ ସମସ୍ତେ ଅନ୍ତକାଳେ ।
ଶ୍ୱସନ ନରକରେ ପଡ଼ନ୍ତି ଅବହେଳେ ॥ ୩୪ ॥
ଚୌରମାନେ ବିମୋହନ ନରକେ ନିମଜ୍ଜନ୍ତି ।
ସେ ନର୍କ ବିନା ଆଉ ତାହାଙ୍କୁ ନାହିଁ ଗତି ॥ ୩୫ ॥
ମର୍ଯ୍ୟାଦାରେ ଦୂଷଣ ଦିଅଇ ଯେଉଁ ଜନ ।
ବିମୋହନ ନାମକ ନର୍କ ତାହାରି ମଧସ୍ଥାନ ॥ ୩୬ ॥
ବେଦ ବିନା ପିତୃଙ୍କୁ ଦୂଷଣ ଦେଲେ ପ୍ରାଣୀ ।
ଅଷ୍ଟରତ୍ନମାନଙ୍କୁ ନିନ୍ଦିଲେ ଜାଣିଜାଣି ॥ ୩୭ ॥
କୃମିଭକ୍ଷ୍ୟ ନରକେ ପଡ଼ନ୍ତି ଜନମାନେ ।
ଶୁଣ ଆହେ ମୈତ୍ରେୟ ଅତ୍ୟନ୍ତ ହୃଷ୍ଟମନେ ॥ ୩୮ ॥
ବିଫଳ ଯାଗମାନ କରନ୍ତି ଯେଉଁ ନରେ ।
କୃମି ନରକେ ସେ ଯେ ପଡ଼ନ୍ତି ଅବହେଳେ ॥ ୩୯ ॥
ପିତୃଦେବ ଅତିଥି ନପୂଜି ଯେଉଁମାନେ ।
ଭୋଜନ ଆଚରନ୍ତି ଅତ୍ୟନ୍ତ ହତଜ୍ଞାନେ ॥ ୪୦ ॥
ଲାଳଭକ୍ଷ ନରକ ମାତ୍ରକ ତାଙ୍କ ବାସ ।
ସେ ନରକେ ପଡ଼ି ସେ ଲଭନ୍ତି ନାନା କ୍ଲେଶ ॥ ୪୧ ॥
ଜୀବକୁ ଶରଘାତ କରଇ ଯେଉଁ ନର ।
ବେଧକ ନରକେ ସେ ପଡ଼ଇ ନିରନ୍ତର ॥ ୪୨ ॥
ଦୁଃସହ ଶରୀରପୀଡ଼ା ଦିଅନ୍ତି ଯେଉଁମାନେ ।
ଖଡ୍ଗଆଦି ପ୍ରହାର କରନ୍ତି ଯେଉଁ ଜନେ ॥ ୪୩ ॥
ବିଶସନ ନରକେ ହୁଅଇ ତାଙ୍କ ସ୍ଥାନ ।
ବିବିଧ ପରାଭବ ଲଭନ୍ତି ପ୍ରତିଦିନ ॥ ୪୪ ॥
କୁତ୍ସିତ ପ୍ରତିଗ୍ରହ କରଇ ଯେଉଁ ଦ୍ୱିଜ ।
ଅଧଃଶିରା ନରକେ ତୁଟଇ ତାର ତେଜ ॥ ୪୫ ॥
ମ୍ଳେଚ୍ଛର ଯାଗକର୍ତ୍ତା ହୁଅଇ ଯେଉଁ ଜନ ।
କ୍ଷତ୍ରିଙ୍କ ବୃତ୍ତି କି ଯେ କରଇ ପ୍ରତିଦିନ ॥ ୪୬ ॥
ସାହସ କର୍ମ କରି ବଞ୍ଚନ୍ତି ଯେଉଁମାନେ ।
ଏକା ହୋଇ ମିଷ୍ଟାନ୍ନ ଭୁଞ୍ଜନ୍ତି ପ୍ରତିଦିନେ ॥ ୪୭ ॥
ଲାକ୍ଷା ଲୋହ ଲବଣ ଆବର ତିଳ ମାଂସ ।
ଏମାନ ଯେଉଁ ଦ୍ୱିଜ ବିକଇ ମୁନି ହଂସ ॥ ୪୮ ॥
ସେ ଯେତେ ପାପୀମାନେ ସମସ୍ତେ ଅନ୍ତକାଳେ ।
ପୂୟବହ ନରକେ ପଡ଼ନ୍ତି ଅତି ଭୋଳେ ॥ ୪୯ ॥
କୁକ୍କୁଟ ଛାଗ ଅଶ୍ୱ ବିଡ଼ାଳ ବିହଙ୍ଗମ ।
ଏମାନଙ୍କୁ ପାଳିବା ଚରିତ ଯାର କର୍ମ ॥ ୫୦ ॥

ସେ ମଧ ପୂୟବହ ନରକେ ନିମଜ୍ଜଇ ।
ମୈତ୍ରେୟ ମହାମୁନି ଶୁଣହେ ମନଦେଇ ।। ୫୧ ।।
ନଟ ମଲ୍ଲ ବୃତ୍ତିରେ ବଞ୍ଚନ୍ତି ଯେଉଁମାନେ ।
ଧୀବର ବୃତ୍ତି କରି ଅଛନ୍ତି ଯେଉଁ ଜନେ ।। ୫୨ ।।
ଚଉଷଠି ପଳରେ ନିର୍ମିତ ଯେଉଁ ପାତ୍ର ।
ଚାରି ପ୍ରସ୍ଥ ରହିବା ବିସ୍ତାର ହେବ ମାତ୍ର ।। ୫୩ ।।
ସେ ପାତ୍ର ପୂର୍ଣ୍ଣ କରି ଭୁଞ୍ଜଇ ଯେଉଁ ଜନ ।
ରୁଧିରାନ୍ଧ ନରକେ ହୁଅଇ ତାର ସ୍ଥାନ ।। ୫୪ ।।
ପତି ଥିବା ଅସତୀ ଅଙ୍ଗନା ସୁତ ହସ୍ତେ ।
ଯେଉଁମାନେ ଭୋଜନ କରନ୍ତି ଅବିରତେ ।। ୫୫ ।।
ମହିଷ ବାଣିଜ୍ୟରେ ବଞ୍ଚନ୍ତି ଯେଉଁଜନେ ।
ଅସତୀ ହେଲେ ଭାର୍ଯ୍ୟା ସହନ୍ତି ଯେଉଁମାନେ ।। ୫୬ ।।
ପିଶୁନ ଆଚରଣ କରନ୍ତି ଯେତେ ନର ।
ପର୍ବଦିନେ ସ୍ତିରୀ ଯେ ରମନ୍ତି ନିରନ୍ତର ।। ୫୭ ।।
ଅତ୍ୟନ୍ତ ଲୋଭ ବଳେ ଅର୍ଜିବା ପାଇଁ ଧନ ।
ଅପର୍ବ ଦିନେ ପର୍ବ କରଇ ଯେଉଁ ଜନ ।। ୫୮ ।।
ଗୃହଦାହ କରଇ ଯେବଣ ପାପୀନର ।
ମିତ୍ରକୁ ନାଶଇ ଯେବଣ ଦୁରାଚାର ।। ୫୯ ।।
ପକ୍ଷୀ ବିକି ଜୀବନପୋଷଇ ଯେଉଁ ଜନ ।
ଗ୍ରାମେ ଗ୍ରାମେ ଯେ ଅବା କରଇ କର୍ମମାନ ।। ୬୦ ।।
ଏମନ୍ତେ ଯେତେ ପାପୀ ଶୁଣ ହେ ମୁନିବର ।
ରୁଧିରାନ୍ଧ ନରକେ ପଡ଼ନ୍ତି ନିରନ୍ତର ।। ୬୧ ।।
ସୋମ ଯାଗ ଯେ ଅବା ପରକୁ ସମର୍ପଇ ।
ସେ ମଧ ରୁଧିରାନ୍ଧ ନରକେ ନିମଜ୍ଜଇ ।। ୬୨ ।।
ମଧୁକୋଷ ଭାଙ୍ଗଇ ଯେବଣ ମୂଢ଼ଜନ ।
ଯେ ଅବା ଗ୍ରାମହନ୍ତା ଶୁଣ ହେ ତପୋଧନ ।। ୬୩ ।।
ଏମାନେ ବୈତରଣୀ ନରକେ ନିମଜ୍ଜନ୍ତି ।
ସେ ନରକ ବିନାରେ ତାହାଙ୍କୁ ନାହିଁ ଗତି ।। ୬୪ ।।
ରେତ ପାନ କରଇ ଯେବଣ ଦୁରାଚାର ।
ଗ୍ରାମର ସୀମା ଅବା ଲଙ୍ଘଇ ଯେଉଁ ନର ।। ୬୫ ।।
କୁହୁକ ବୃତ୍ତି କରି ବଞ୍ଚନ୍ତି ଯେଉଁମାନେ ।
କାଳସୂତ୍ର ନରକେ ପଡ଼ନ୍ତି ପ୍ରତିଦିନେ ।। ୬୬ ।।
ଅକାରଣେ କାନନ ଛେଦଇ ଯେଉଁ ଜନ ।
ଅସିପତ୍ର ବନରେ ହୁଅଇ ତାର ସ୍ଥାନ ।। ୬୭ ।।

ମେଷ ମୃଗ ବାଣିଜ୍ୟ କରଇ ଯେଉଁ ଲୋକ ।
ବହ୍ନିଜାଳ ନରକେ ହୁଅଇ ତାକୁ ଦୁଃଖ ॥ ୬୮ ॥
କୁମ୍ଭକାର ବୃତ୍ତରେ ବଞ୍ଚଇ ଯେଉଁ ଜନ ।
ବହ୍ନିଜ୍ୱାଳ ହୁଅଇ ତାହାର ମଧସ୍ଥାନ ॥ ୬୯ ॥
ଆରମ୍ଭି ଥିବା ବ୍ରତ ତେଜଇ ଯେଉଁ ନର ।
ଆଶ୍ରମ ଧର୍ମ ଗୋଟି କରଇ ଯେହୁ ଦୂର ॥ ୭୦ ॥
ଏ ଯେଉଁ ବେନି ପାପୀ କହିଲୁ ତପୋଧନ ।
ସନ୍ଦଂଶ ନାମ ନର୍କେ ହୁଅଇ ତା'ର ସ୍ଥାନ ॥ ୭୧ ॥
ଦିବସେ ନିଦ୍ରା କରି ଯେବଣ ମୂର୍ଖ ପ୍ରାଣୀ ।
ରେତକୁ ଉତ୍ସର୍ଗଇ ଆପଣେ ଜାଣିଜାଣି ॥ ୭୨ ॥
ପୁତ୍ରଠାରୁଁ ସ୍ୱାଧାୟ ପଢ଼ନ୍ତି ଯେଉଁମାନେ ।
ସେମାନେ ଅନ୍ତକାଳେ ପଡ଼ନ୍ତି ଶ୍ୱଭୋଜନେ ॥ ୭୩ ॥
ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ତୁମ୍ଭ ଆଗେ ଏ ଯେତେ ନରକ କଲୁଁ ଖ୍ୟାତ ॥ ୭୪ ॥
ଏ ବିନା ଶତ ଶତ ସଂଖ୍ୟାରେ ତପଚାରି ।
ନରକମାନେ ମଧ ଅଛନ୍ତି ନାନା ପରି ॥ ୭୫ ॥
କୁକର୍ମ ଆଚରନ୍ତି ଯେବଣ ପ୍ରାଣୀମାନେ ।
ସେହି ମାତ୍ର ନରକେ ପଡ଼ନ୍ତି ପ୍ରତିଦିନେ ॥ ୭୬ ॥
ଯେତେ ଯେତେ ପାତକ କହିଲୁଁ ତପଚାରି ।
ଏମନ୍ତେ ଆଉ ପାପ ଅଛନ୍ତି ଯେତେ ପରି ॥ ୭୭ ॥
ସେ ପାପ ଆଚରନ୍ତି ଯେବଣ ପ୍ରାଣୀମାନେ ।
କ୍ଷୁଦ୍ର ନରକରେ ସେ ପଡ଼ନ୍ତି ପ୍ରତିଦିନେ ॥ ୭୮ ॥
ନୃତ୍ୟ ଗୀତ ବ୍ୟସନ ସହିତେ ଯେତେ ବିଧି ।
ଏଥିରେ ଯେଉଁ ଦ୍ୱିଜ ବଞ୍ଚଇ ନିରବଧି ॥ ୭୯ ॥
ନରକରେ ସେ ଯାଇ ପଡ଼ଇ ଅନ୍ତକାଳେ ।
ସୁଗତି ଆଉ ତାର ନୁହଇ କେତେବେଳେ ॥ ୮୦ ॥
ନରକେ ଥିବା ପ୍ରାଣୀମାନଙ୍କୁ ସୁର ଗଣେ ।
ଆକାଶେ ଅଧୋମୁଖ ଦିଶନ୍ତି ଅନୁକ୍ଷଣେ ॥ ୮୧ ॥
ନରକ ମଧେ ପଡ଼ି ଅଛନ୍ତି ଯେତେ ଲୋକ ।
ସେ ସମସ୍ତେ ସହଜେ ସର୍ବଦା ଅଧୋମୁଖ ॥ ୮୨ ॥
ନରକୁମୁକ୍ତ ଯେବେ ହୁଅନ୍ତି ପ୍ରାଣୀମାନେ ।
ସ୍ଥାବର କଳେବର ବହନ୍ତି କେତେଦିନେ ॥ ୮୩ ॥
ତଦନ୍ତେ କୃମି ହୋଇ ଲଭନ୍ତି ନାନା କ୍ଲେଶ ।
ସାବଧାନେ ଶୁଣହେ ତପସ୍ୱୀ ଅବତଂସ ॥ ୮୪ ॥

ଜଳଜନ୍ତୁ ଯୋନିରେ ଜନ୍ମନ୍ତି ପୁଣି ସେହି ।
ତଦନ୍ତେ ନାନା ଦୁଃଖୀ ଲଭନ୍ତି ପକ୍ଷୀ ହୋଇ ।। ୮୫ ।।
ପଶୁ ହୋଇ ମାନବ ହୁଅନ୍ତି ପଛେ ପୁଣି ।
ଧାର୍ମିକ ତନୁ ପୁଣି ଲଭଇ ସେହି ପ୍ରାଣୀ ।। ୮୬ ।।
ତଦନ୍ତେ ଦେବ ତନୁ ଲଭନ୍ତି ପ୍ରତିଦିନ ।
ତେବେଯାଇଂ ପାପରୁଂ ତରନ୍ତି ସର୍ବଜନ ।। ୮୭ ।।
ମୈତ୍ରେୟ ମହାମୁନି ଶୁଣହେ ସାବଧାନେ ।
ଯେତେ ଯେତେ ଜନମ ଲଭନ୍ତି ପାପୀ ଜନେ ।। ୮୮ ।।
ସ୍ଥାବର ଜନ୍ମ ହେବା ପ୍ରତିକି ମହାମୁନି ।
ସହସ୍ର ଗୁଣରେ ଯେ ଅଧିକ କୃମି ଯୋନି ।। ୮୯ ।।
ପୁଣି ଯେ ଜଳ ଜନ୍ତୁ ହୁଅନ୍ତି ପାପ ବଶେ ।
କୃମିଠାରୁଂ ସହସ୍ରେ ଗୁଣରେ ଅଧିକ ସେ ।। ୯୦ ।।
ଜଳଜନ୍ତୁ ପ୍ରତିକି ସହସ୍ରେ ଗୁଣ ହୋଇ ।
ପକ୍ଷୀ ଜନ୍ମ ଅଧିକ ଶୁଣ ହେ ସାରଗ୍ରାହୀ ।। ୯୧ ।।
ପକ୍ଷି କି ପ୍ରତି ପଶୁ ପଶୁକୁ ପ୍ରତି ନର ।
ସହସ୍ରେ ଗୁଣରେ ସେ ଅଧିକ ମୁନିବର ।। ୯୨ ।।
ସେହିପରି ନରଙ୍କୁ ଧାର୍ମିକ ଜନମାନେ ।
ଧାର୍ମିକଙ୍କୁ ଦେବତା ଦେବଙ୍କୁ ମୁକ୍ତଜନେ ।। ୯୩ ।।
ଉତ୍ତରୋତ୍ତର ହୋଇ କ୍ରମରେ ଏ ଯେତେକ ।
ସହସ୍ରେ ଗୁଣେ ମାତ୍ର ବୋଲାନ୍ତି ଏ ଅଧିକ ।। ୯୪ ।।
ସର୍ଗପୁରେ ଅଛନ୍ତି ଯେତିକି ପ୍ରାଣୀମାନେ ।
ତେତିକି ପାପୀ ପ୍ରାଣୀ ଅଛନ୍ତି ପ୍ରତିଦିନେ ।। ୯୫ ।।
ପାପ କଲା ମନୁଷ୍ୟ ପଡ଼ଇ ନରକରେ ।
ଏମନ୍ତ ବୋଲି ଧାତା କହଇ ନିଗମରେ ।। ୯୬ ।।
ପାପକୁ ପ୍ରାୟଶ୍ଚିତ୍ତ କରନ୍ତି ଯେତେ ନର ।
ନରକେ ବାସ ଆଉ ନୁହଇ ତାହାଙ୍କର ।। ୯୭ ।।
ପାପକୁ ଅନୁରୂପ ଯେତେକ ପ୍ରାୟଶ୍ଚିତ୍ତ ।
ମୁନିଏ ତାହା କହିଅଛନ୍ତି ତପୋବନ୍ତ ।। ୯୮ ।।
ଗୁରୁଲଘୁ କ୍ରମରେ ଯେତେକ ପାପମାନ ।
ତହିଁକି ପ୍ରାୟଶ୍ଚିତ୍ତ ଶୁଣହେ ତପୋଧନ ।। ୯୯ ।।
ଯେବଣ ଦୁରିତକୁ ଯେମନ୍ତେ ନିବାରନ୍ତି ।
ସେ କଥା ସ୍ୱାୟମ୍ଭୁବ ମନୁଏ କହିଛନ୍ତି ।। ୧୦୦ ।।
ସଂସାରେ ପାପମାନ ହେବାକୁ ନିବାରି ।
ପ୍ରାୟଶ୍ଚିତମାନ ଯେ ଅଛନ୍ତି ନାନା ପରି ।। ୧୦୧ ।।

ସେମାନଙ୍କ ମଧରେ ବିଷ୍ଣୁଙ୍କ ରୂପ ଧ୍ୟାନ ।
ପ୍ରଧାନ ପ୍ରାୟଶ୍ଚିତ୍ତ ଅଟଇ ତପୋଧନ ॥ ୧୦୨ ॥
ପାପ କରି ନିର୍ବେଦ ହୁଅଇ ଯେଉଁ ଜନ ।
ତାହାକୁ ପ୍ରାୟଶ୍ଚିତ୍ତ କେବଳ ହରିଧ୍ୟାନ ॥ ୧୦୩ ॥
ପୂର୍ବାହ୍ନ ମଧାହ୍ନ ଅପରାହ୍ନ ନିଶା କାଳେ ।
ଶ୍ରୀବିଷ୍ଣୁ ରୂପ ଯାର ପଡ଼ଇ ହୃଦସ୍ଥଳେ ॥ ୧୦୪ ॥
ସେ ମାନବ ସକଳ ଦୁରିତ କ୍ଷୟ କରି ।
ବୈକୁଣ୍ଠ ପୁରେ ଯାଇ ଭେଟଇ ନରହରି ॥ ୧୦୫ ॥
ବିଷ୍ଣୁଙ୍କୁ ଧାନ କରି ବଞ୍ଚନ୍ତି ଯେତେ ନର ।
କ୍ଳେଶମାନେ ବିନାଶ ହୁଅନ୍ତି ତାହାଙ୍କର ॥ ୧୦୬ ॥
ବିଘ୍ନ ଆଉ ତାଙ୍କର ନୁହଇ କେତେବେଳେ ।
ସ୍ୱର୍ଗ ମୋକ୍ଷ ଏ ବେନି ରହଇ କରତଳେ ॥ ୧୦୭ ॥
ଜପ ହୋମ ଅର୍ଚ୍ଚନା ଏ ଯେତେ କର୍ମମାନ ।
ଏମାନଙ୍କେ ଶ୍ରୀବିଷ୍ଣୁ ଚରଣେ ଯାର ମନ ॥ ୧୦୮ ॥
ଶୁଣ ଆହେ ମୁନୀନ୍ଦ୍ର କୁମୁଦ ବନଚନ୍ଦ୍ର ।
ସେ ଲୋକ ବିଘ୍ନ ବୋଲି ମଣଇ ଇନ୍ଦ୍ରପଦ ॥ ୧୦୯ ॥
ବାସୁଦେବ ବୋଲିବା ଏ ଯେଉଁ ମନ୍ତ୍ରରାଜ ।
ମୁକ୍ତି ଲତା ଉତ୍ପନ୍ନ ହେବାର ମୂଳବୀଜ ॥ ୧୧୦ ॥
ଏହି ମନ୍ତ୍ର ଯାହାର ମୁଖରେ ଉଚ୍ଚରଇ ।
ସ୍ୱର୍ଗ ଭୋଗ ଆଉ ସେ ବାଞ୍ଛିବ କାହିଁପାଇଁ ॥ ୧୧୧ ॥
ପୁନରାବୃତ୍ତି ତାର ନୁହଇ କେତେବେଳେ ।
ବିଷ୍ଣୁଙ୍କ ପଦ ଏକା ଲଭଇ ଅନ୍ତକାଳେ ॥ ୧୧୨ ॥
ଶୁଣ ଆହେ ତପସ୍ୱୀ କୁଳର କଳାନିଧି ।
ବିଷ୍ଣୁରୂପ ଯେ ଅବା ଚିନ୍ତଇ ନିରବଧି ॥ ୧୧୩ ॥
ସକଳ ପାପ ତାର ତ୍ୱରିତେ ନାଶ ଯାଇ ।
ନରକ ଅବା ସେହୁ ଦେଖିବ କାହିଁପାଇଁ ॥ ୧୧୪ ॥
ସ୍ୱର୍ଗ ହେଲେ ଆନନ୍ଦ ହୁଅନ୍ତି ପ୍ରାଣୀମାନେ ।
ନରକ ହେଲେ କ୍ଳେଶ ଲଭନ୍ତି ପ୍ରତିଦିନେ ॥ ୧୧୫ ॥
ପାପ କଲେ ନରକ ସୁକୃତି କଲେ ସ୍ୱର୍ଗ ।
ଏହି ଅନୁକ୍ରମରେ ହୁଅଇ ସବୁ ଭୋଗ ॥ ୧୧୬ ॥
ଗୋଟିଏ ପଦାର୍ଥରୁ ଦେଖ ହେ ତପୋଧନ ।
ଦୁଃଖସୁଖ ଈର୍ଷା ହୁଅଇ ଉତପନ ॥ ୧୧୭ ॥
କ୍ରୋଧ ମଧ୍ୟ ମୁନି ହେ ତହିଁରୁ ଜନମଇ ।
କେବଳ ଦୁଃଖ ସୁଖ ପଦାର୍ଥ ଆଉ ନାହିଁ ॥ ୧୧୮ ॥

ପ୍ରଥମେ ପ୍ରୀତିକର ହୁଅଇ ସେହି ଦ୍ରବ୍ୟ ।
ଦୁଃଖ ପୁଣି ତଦନ୍ତେ ହୁଅଇ ଅନୁଭବ ॥ ୧୧୯ ॥
ସେପରି ଆଗ କ୍ରୋଧ ତଦନ୍ତେ ପ୍ରସନ୍ନତା ।
କଦାପି ସୁଖ କ୍ଷୟ ନୁହଇ ଦ୍ରବ୍ୟ କଥା ॥ ୧୨୦ ॥
ବୋଲନ୍ତି ପରାଶର ଶୁଣହେ ତପୋଧନ ।
ଦୁଃଖସୁଖେ ତନ୍ମୟ ହୁଅଇ ଏହିମନ ॥ ୧୨୧ ॥
ଜ୍ଞାନୀ ଜନ ମାତ୍ରକ ଜାଣନ୍ତି ଏ ବିଚାର ।
ଜ୍ଞାନ ଏକା ସର୍ବସ୍ୱ ମାନବମାନଙ୍କର ॥ ୧୨୨ ॥
ଜ୍ଞାନ ସେ ପରଂବ୍ରହ୍ମ ଜ୍ଞାନ ସେ ମୋକ୍ଷକାରୀ ।
ଅବିଦ୍ୟା ବିଦ୍ୟା ମଧ ଜ୍ଞାନ ହେ ତପଚାରି ॥ ୧୨୩ ॥
ଜ୍ଞାନମୟ କେବଳ ଅଟଇ ଏ ସଂସାର ।
ଜ୍ଞାନରୁ ବଡ଼ ଆଉ ନାହିଁ ହେ ମୁନିବର ॥ ୧୨୪ ॥
ଏ ଯେତେ ପରସ୍ତାବ କହିଲୁ ତୁମ୍ଭ ଆଗେ ।
ଶୁଣ ହେ ମଇତ୍ରେୟ ଅତ୍ୟନ୍ତ ଅନୁରାଗେ ॥ ୧୨୫ ॥
ବସୁଧାର ଲକ୍ଷଣ ପାତାଳପୁର ବାଣୀ ।
ନରକମାନଙ୍କର ଚରିତ ଯେତେ ପୁଣି ॥ ୧୨୬ ॥
ସମୁଦ୍ର ମହୀଧର ବରଷ ଦ୍ୱୀପ ନଦୀ ।
ଏମାନ ଯେ ବିସ୍ତାରି କହିଲୁଁ ବ୍ରହ୍ମବାଦି ॥ ୧୨୭ ॥
ଆଉ କି ପଚାରିବ ପଚାର ମୁନି ହଂସ ।
କ୍ରମରେ ଆସି ଷଷ୍ଠ ଅଧ୍ୟାୟ ହେଲା ଶେଷ ॥ ୧୨୮ ॥
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ପାତାଳମାନଙ୍କର ବର୍ଣ୍ଣନା ସମାପତ ॥ ୧୨୯ ॥
ଚିନ୍ତିଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୧୩୦ ॥

# ସପ୍ତମ ଅଧ୍ୟାୟ

ପରାଶର ବଚନେ ମୈତ୍ରେୟ ମୁନିବର ।
ଆନନ୍ଦେ ପଚାରନ୍ତି ମସ୍ତକେ ଦେଇ କର ॥ ୧ ॥
ଭୋ ମୁନି ସବୁହେଲେ କହିଲ ପରସ୍ତାବେ ।
ଭୁବର୍ଲୋକ ସହିତେ କହିବା ହୋଉ ଏବେ ॥ ୨ ॥
ସେପରି ଗ୍ରହ ସଂସ୍ଥା ପ୍ରମାଣମାନ କହି ।
ଅବହେଳେ ମୋହର ସନ୍ଦେହ ଦିଅ ଦହି ॥ ୩ ॥
ମୈତ୍ରେୟଙ୍କ ବଚନେ ବୋଲନ୍ତି ପରାଶର ।
ସାବଧାନେ ଶୁଣହେ ତପସ୍ୱୀ ଅଳଙ୍କାର ॥ ୪ ॥
ଯେତେଦୂର ପର୍ଯ୍ୟନ୍ତେ ଉଦ୍ଭଟ ହୋଇ କରି ।
ରବିଚନ୍ଦ୍ର କିରଣ ବ୍ୟାପିଛି ତପଚାରି ॥ ୫ ॥
ସାଗର ଗିରି ନଦୀ ସହିତେ ସେ ସମସ୍ତ ।
ବସୁନ୍ଧରା ବୋଲାଇ ନିଗମ ମତେ ଖ୍ୟାତ ॥ ୬ ॥
ପଞ୍ଚାଶକୋଟୀ ସଂଖ୍ୟା ଯୋଜନ ହୋଇକରି ।
ଅବନୀ ମଣ୍ଡଳ ଯେ ବ୍ୟାପିଛି ତପଚାରି ॥ ୭ ॥
ତାହାର ପ୍ରମାଣରେ ବିସ୍ତାର ଦୀର୍ଘ ହୋଇ ।
ଅନ୍ତରୀକ୍ଷ ମଣ୍ଡଳ ଊର୍ଦ୍ଧ୍ୱକୁ ଅଛି ରହି ॥ ୮ ॥
ଅବନୀଠାରୁଂ ଲକ୍ଷେ ଯୋଜନ ଦୂରହୋଇ ।
ଦିବାକର ମଣ୍ଡଳ ସର୍ବଦା ବିରାଜଇ ॥ ୯ ॥
ରବିଙ୍କଠାରୁଂ ଲକ୍ଷେ ଯୋଜନ ଯାଇ କରି ।
ସୁଧାକର ମଣ୍ଡଳ ଅଛି ହେ ତପଚାରି ॥ ୧୦ ॥
ଚନ୍ଦ୍ରଙ୍କଠାରୁଂ ଲକ୍ଷେ ଯୋଜନ ଦୂର ହୋଇ ।
ନକ୍ଷତ୍ର ମଣ୍ଡଳ ଯେ ଊର୍ଦ୍ଧ୍ୱକୁ ଅଛି ରହି ॥ ୧୧ ॥
ନକ୍ଷତ୍ର ମଣ୍ଡଳରୁଂ ଊର୍ଦ୍ଧ୍ୱକୁ ମୁନିବର ।
ବୁଧଗ୍ରହ ଦ୍ୱିଲକ୍ଷ ଯୋଜନେ ମନୋହର ॥ ୧୨ ॥
ବୁଧଠାରୁଂ ଦ୍ୱିଲକ୍ଷ ଯୋଜନେ ତପୋଧନ ।
ଶୁକ୍ରଗ୍ରହ ଦିଶନ୍ତି ଅତ୍ୟନ୍ତ ଶୋଭାବନ ॥ ୧୩ ॥
ଶୁକ୍ରଠାରୁଂ ଦ୍ୱିଲକ୍ଷ ଯୋଜନେ ଧରାସୁତ ।
ମନକୁ ସ୍ଥିର କରି ଶୁଣହେ ତପୋବନ୍ତ ॥ ୧୪ ॥
ଅବନୀସୁତଠାରୁଂ ଦ୍ୱିଲକ୍ଷ ଯୋଜନରେ ।
ଅମରପୁରୋହିତ ଅଛନ୍ତି ନିରନ୍ତରେ ॥ ୧୫ ॥
ଗୁରୁଠାରୁଂ ଦ୍ୱିଲକ୍ଷ ଯୋଜନେ ଶନିଶ୍ଚର ।
ସାବଧାନେ ଶୁଣହେ ମୈତ୍ରେୟ ମୁନିବର ॥ ୧୬ ॥

ଶନିକି ପ୍ରତି ଲକ୍ଷେ ଯୋଜନ ଠାରେ ରହି ।
ସପ୍ତଋଷି ମଣ୍ଡଳ ସର୍ବଦା ବିରାଜଇ ।। ୧୭ ।।
ଋଷିଙ୍କଠାରୁଂ ଲକ୍ଷେ ଯୋଜନେ ତପୋଧନ ।
ମେଧ୍ରି ପରି ଧ୍ରୁବ ଯେ ଦିଶନ୍ତି ଶୋଭାବନ ।। ୧୮ ।।
ପନ୍ଦରଲକ୍ଷ ସଂଖ୍ୟା ଯୋଜନେ ଥାଇ କରି ।
ସେ ଧ୍ରୁବ ଅତିଶୋଭା ଦିଶନ୍ତି ତପଚାରି ।। ୧୯ ।।
ସେ ଯଉଂ ପୁରମାନେ କହିଲୁଂ ତୁମ୍ଭପାଶେ ।
ଯାଗରଫଳ ଭୋଗ କରିବା ଭୁବନ ସେ ।। ୨୦ ।।
ଭରତଖଣ୍ଡେ ଏକା ହୁଅଇ ଯାଗ କର୍ମ ।
ଯଉଂ ଭୂମି ସୁକୃତମାନଙ୍କ ମନୋରମ ।। ୨୧ ।।
ବୋଲନ୍ତି ପରାଶର ଶୁଣହେ ତପୋଧନ ।
ଧ୍ରୁବଲୋକ ନାମରେ ଯେବଣ ଦିବ୍ୟସ୍ଥାନ ।। ୨୨ ।।
ସେ ସ୍ଥାନରୁ କୋଟିଏ ଯୋଜନ ଉଚ୍ଚହୋଇ ।
ମହ ଲୋକ ନାମରେ ଭୁବନ ବିରାଜଇ ।। ୨୩ ।।
କଳ୍ପେ ଯାଏ ତହିଂରେ ଅତ୍ୟନ୍ତ ହୃଷ୍ଟମନେ ।
ବିବିଧରଙ୍ଗେ କ୍ରୀଡ଼ା କରନ୍ତି ସାଧୁଜନେ ।। ୨୪ ।।
ମହଲୋକ ପ୍ରତିକି ଦ୍ୱିକୋଟୀ ଯୋଜନରେ ।
ଜନଲୋକ ଭୁବନ ବହିଛି ନିରନ୍ତରେ ।। ୨୫ ।।
ସନନ୍ଦ ଆଦିକରି ବ୍ରହ୍ମାଙ୍କ ସୁତ ମାନେ ।
ସେ ଭୁବନେ ବିହାର କରନ୍ତି ହୃଷ୍ଟମନେ ।। ୨୬ ।।
ସେ ଯଉଂ ଜନଲୋକ ତାଠାରୁଂ ମୁନିବର ।
ଆଠକୋଟୀ ଯୋଜନ ପ୍ରମାଣେ ହୋଇ ଦୂର ।। ୨୭ ।।
ତପଲୋକ ନାମରେ ଅଛି ଯେ ଏକ ସ୍ଥାନ ।
ବୈରାଜ ଗଣେ ତହିଂ ଦିଶନ୍ତି ଶୋଭାବନ ।। ୨୮ ।।
ବୈରାଜ ନାମେ ଖ୍ୟାତ ସେ ଯଉଂ ଦେବଗଣେ ।
ଅତ୍ୟନ୍ତ ଆନନ୍ଦରେ ବଞ୍ଚନ୍ତି ଅନୁକ୍ଷଣେ ।। ୨୯ ।।
ଦଇନ୍ୟ ପ୍ରଳୟରେ ସେମାନେ ମହାଯତି ।
ପ୍ରଳୟାଗ୍ନି ସନ୍ତାପ କିଞ୍ଚିତେ ନଜାଣନ୍ତି ।। ୩୦ ।।
ତପଲୋକମାନଙ୍କ ତପସ୍ୱୀ ଚୂଡ଼ାମଣି ।
ବାରକୋଟୀ ଯୋଜନେ ଭୁବନ ଅଛି ପୁଣି ।। ୩୧ ।।
ସତ୍ୟଲୋକ ନାମରେ ସେ ସ୍ଥାନ ଅତି ଖ୍ୟାତ ।
ତହିଂରେ ଥିବା ପ୍ରାଣୀ ନୁହନ୍ତି କେବେ ଚ୍ୟୁତ ।। ୩୨ ।।
ସେ ଯଉଂ ସତ୍ୟଲୋକ ତାଠାରୁ ମୁନିବର ।
ବ୍ରହ୍ମାଣ୍ଡକଟାହର ପର୍ଯ୍ୟନ୍ତେ ଯେତେ ଦୂର ।। ୩୩ ।।

ସେ ଅନ୍ତରାଳ ଗୋଟି ଅତ୍ୟନ୍ତ ଶୋଭାଦିଶେ ।
ଚଉଦ ଲକ୍ଷ ଊଣା ଦ୍ୱିକୋଟୀ ଯୋଜନ ସେ ।। ୩୪ ।।
ସୂର୍ଯ୍ୟଠାରୁଂ ବ୍ରହ୍ମାଣ୍ଡକଟାହ ତପୋଧନ ।
ପଞ୍ଚଶକୋଟୀ ସଂଖ୍ୟା ଯୋଜନ ବୋଲି ଜାଣ ।। ୩୫ ।।
ଅଧ ଉର୍ଦ୍ଧ୍ୱ ଦୁହିଂକି ସମାନ ଏ କଳନା ।
ଅନ୍ୟ ଜନ ଏହାକି ଜାଣିମ ତୁମ୍ଭବିନା ।। ୩୬ ।।
ପାଦରେ ମାତ୍ର ଗମ୍ୟ ଅଟଇ ଯେତେ ସ୍ଥାନ ।
ଭୂର୍ଲୋକ ବୋଲି ମୁନି ତାହାକୁ ମନେ ଘେନ ।। ୩୭ ।।
ସେ ଭୂର୍ଲୋକ ବିସ୍ତାର ଅତ୍ୟନ୍ତ ଅନୁରାଗେ ।
ମୁନିକୁଳ ତିଳକ କହିଲୁଂ ତୁମ୍ଭ ଆଗେ ।। ୩୮ ।।
ଭୂମି ସୂର୍ଯ୍ୟ ଦୁହିଂଙ୍କି ଅନ୍ତର ଯେଉଂ ସ୍ଥାନ ।
ତାହାକୁ ଭୁବର୍ଲୋକ ବୋଲି ହେ ତପୋଧନ ।। ୩୯ ।।
ସେ ଭୁବର୍ଲୋକ ଲକ୍ଷେ ଯୋଜନ ପ୍ରମାଣରେ ।
ଅତ୍ୟନ୍ତ ମନୋହର ଦିଶଇ ନିରନ୍ତରେ ।। ୪୦ ।।
ରବି ଧ୍ରୁବ ଦୁହିଂଙ୍କ ଅନ୍ତର ଯେଉଂ ସ୍ଥଳ ।
ସ୍ୱର୍ଲୋକ ନାମେ ଖ୍ୟାତ ଅଟଇ ସାଧୁଶୀଳ ।। ୪୧ ।।
ଚଉଦ ଲକ୍ଷ ସଂଖ୍ୟା ଯୋଜନ ପ୍ରମାଣରେ ।
ସ୍ୱର୍ଲୋକ ଅତି ଶୋଭା ଦିଶଇ ନିରନ୍ତରେ ।। ୪୨ ।।
ଏ ଯେଉଂ ଭୁର୍ଭୁବସ୍ୱ କୃତ୍ରିମ ଏହି ତିନି ।
ଅକ୍ଷୟଜନ ତପ ସତ୍ୟ ହେ ମହାମୁନି ।। ୪୩ ।।
କୃତ୍ରିମ ଅକୃତ୍ରିମ ମଧରେ ମହର୍ଲୋକ ।
ଯହିଂରେ ଥିଲେ ଜାଣି ନୁହଇ ଦୁଃଖ ସୁଖ ।। ୪୪ ।।
ଭୁର୍ଲୋକ ଭୁବର୍ଲୋକ ସ୍ୱର୍ଲୋକ ଏ ଯେ ତିନି ।
ଏମାନେ ଯେବେ ନାଶ ହୁଅନ୍ତି ମହାମୁନି ।। ୪୫ ।।
ଶୂନ୍ୟ ହୋଇ ମାତ୍ରକ ରହଇ ମହର୍ଲୋକ ।
ନିଃଶେଷ ହୋଇ ନାଶ ନୁହଇ ସବୁ ଯାକ ।। ୪୬ ।।
ଏମନ୍ତେ ଯେଉଂ ସାତପାତାଳ ସହିତରେ ।
ସାତ ଲୋକ କହିଲୁଂ ତୁମ୍ଭର ସମୀପରେ ।। ୪୭ ।।
ବ୍ରହ୍ମାଣ୍ଡ ମଧରେ ଏ ଦିଶନ୍ତି ମନୋହର ।
ସାବଧାନେ ଶୁଣହେ ତପସ୍ୱୀ ଅଳଙ୍କାର ।। ୪୮ ।।
କୋଟୀଏ ଯୋଜନର ପ୍ରମାଣେ ତପୋଧନ ।
ବ୍ରହ୍ମାଣ୍ଡକଟାହର ବହଳ ବୋଲି ଘେନ ।। ୪୯ ।।
ଅଧଉର୍ଦ୍ଧ୍ୱ ପାରୁଷମାନଙ୍କେ ମୁନିବର ।
ବ୍ରହ୍ମାଣ୍ଡ ମଧେ ଅଛି ବିବିଧମତେ ପୁର ।। ୫୦ ।।

କପୀଥି ଫଳ ମଧ୍ୟେ ଯେମନ୍ତେ ବୀଜ ଥାଇ ।
ବ୍ରହ୍ମାଣ୍ଡ ମଧ୍ୟେ ପୁର ତେମନ୍ତ ଅଛି ରହି ॥ ୫୧ ॥
ସେ ଯେବଣ ବ୍ରହ୍ମାଣ୍ଡ ତାହାକୁ ମୁନିବର ।
ଦଶଗୁଣେ ସଲିଳ ବେଢ଼ିଛି ନିରନ୍ତର ॥ ୫୨ ॥
ସେ ଜଳକୁ ଅନଳ ବେଢ଼ିଛି ଦଶଗୁଣେ ।
ମୈତ୍ରେୟ ମହାମୁନି ଶୁଣହେ ସାବଧାନେ ॥ ୫୩ ॥
ତା ତହୁଁ ଦଶଗୁଣ ପ୍ରମାଣେ ମୁନିବର ।
ଅନଳକୁ ପବନ ବେଢ଼ିଛି ନିରନ୍ତର ॥ ୫୪ ॥
ବାୟୁକୁ ଦଶ ଗୁଣେ ବେଢ଼ିଛି ଅନ୍ତରୀକ୍ଷ ।
ଶୁଣିମା ହୋଉ ଆହେ ତପସ୍ୱୀକୁଳମୁଖ୍ୟ ॥ ୫୫ ॥
ସେ ଯଉଂ ଅନ୍ତରୀକ୍ଷ ତାହାକୁ ତପଚାରି ।
ଦଶ ଗୁଣେ ଭୂତାଦି ରହିଛି ବେଢ଼ିକରି ॥ ୫୬ ॥
ସେହିପରି ଭୂତାଦି ପ୍ରତିକି ଦଶ ଗୁଣେ ।
ମହତତ୍ତ୍ୱ ଗୋଟି ଯେ ବେଢ଼ିଛି ପ୍ରତିକ୍ଷଣେ ॥ ୫୭ ॥
ତଦନ୍ତେ ମହତତ୍ତ୍ୱ ଗୋଟିକି ମୁନିବର ।
ବେଢ଼ି କରି ପ୍ରଧାନ ରହିଛି ନିରନ୍ତର ॥ ୫୮ ॥
ଏମନ୍ତେ ବ୍ରହ୍ମାଣ୍ଡର ସପତ ଆବରଣ ।
ମୈତ୍ରେୟ ମୁନିବର ନିଶ୍ଚଳମନେ ଶୁଣ ॥ ୫୯ ॥
ପ୍ରାନ୍ତରେ ପ୍ରଧାନ ଯେ ରହିଛି ବେଢ଼ିକରି ।
ତାହାକୁ ଅନ୍ତକରି ନୁହଇ ତପଚାରୀ ॥ ୬୦ ॥
ସମସ୍ତଙ୍କ କାରଣ ରୂପରେ ସେ ପ୍ରଧାନ ।
ବ୍ରହ୍ମାଣ୍ଡ ଯାକ ବ୍ୟାପୀ ରହିଛି ତପୋଧନ ॥ ୬୧ ॥
ଶତଶତ ସହସ୍ର ସହସ୍ର ସଂଖ୍ୟା ହୋଇ ।
ଯେତେ ଯେତେ ବ୍ରହ୍ମାଣ୍ଡକଟାହ ଅଛି ରହି ॥ ୬୨ ॥
ସମସ୍ତଙ୍କ ପ୍ରଧାନ ବ୍ୟାପିଛି ନିରନ୍ତର ।
ତାହାର ସଂଖ୍ୟା ଅବା ଜାଣିମ କାହାଛାର ॥ ୬୩ ॥
ସେ ଯଉଂ ପ୍ରକୃତି ସେ ତହିଁରେ ତପୋଧନ ।
ପୁରୁଷ ଯାଇ ଯୁକ୍ତ ହୋଇଛି ପ୍ରତିଦିନ ॥ ୬୪ ॥
ପ୍ରକୃତିରେ ଯୁକ୍ତ ଯେ ହୋଇଛି ସେ ପୁରୁଷ ।
ଚେତନାମୟ ହୋଇ ଇଚ୍ଛାରେ ପରକାଶ ॥ ୬୫ ॥
ଇନ୍ଧନରେ ଅନଳ ତିଳରେ ତୈଳପରି ।
ପ୍ରକୃତିରେ ପୁରୁଷ ଅଛି ହେ ତପଚାରି ॥ ୬୬ ॥
ପୁରୁଷ ପ୍ରଧାନ ଯେ ଅଟଇ ପଙ୍ଗୁ ଅନ୍ଧ ॥
ଦୁହିଁକି ବିଷ୍ଣୁ ଶକ୍ତି ଯଷ୍ଟି ହେ ମହାସିଦ୍ଧ ॥ ୬୭ ॥

ସକଳ ପ୍ରାଣୀଙ୍କର ପରମ ଆତ୍ମାରୂପେ ।
ଯେବଣ ବିଷ୍ଣୁରୂପେ ବିହରୁଅଛି ଆପେ ॥ ୬୮ ॥
ତାହାର ସହାୟରେ ଶୁଣହେ ତପୋଧନ ।
ପୁରୁଷ ପ୍ରକୃତି ଯେ ବଞ୍ଚନ୍ତି ପ୍ରତିଦିନ ॥ ୬୯ ॥
ସେ ଯଉଂ ବିଷ୍ଣୁ ଶକ୍ତି ପ୍ରଳୟ ସମୟରେ ।
ସେ ଦୁହିଙ୍କି ଅନ୍ତର କରଇ ପରସ୍ପରେ ॥ ୭୦ ॥
ସ୍ଥିତି କାଳେ ସଂଯୁତ କରଇ ପୁଣି ସେହି ।
ସର୍ଜନା ସମୟରେ କ୍ଷୋଭିତ କରୁଥାଇ ॥ ୭୧ ॥
ଯେମନ୍ତେ ସଲିଳରେ ଥିବାର ଶୈତ୍ୟଗୁଣ ।
କଣିକା ପରେ ହରି ଆଣଇଂ ସମୀରଣ ॥ ୭୨ ॥
ତାହାକୁ ଯଉଂ ରୂପେ ସେ ଜଳ ନଲାଗଇ ॥
ସେପରି ବିଷ୍ଣୁ ଶକ୍ତି ଜଗତେ ବିହରଇ ॥ ୭୩ ॥
ଯଉଂ ରୂପେ ପାଦପ ବୀଜରୁ ଅବତରି ।
ସ୍କନ୍ଧ ଶାଖାମାନଙ୍କୁ ବହଇ ନାନା ପରି ॥ ୭୪ ॥
ପୁଣି ସେହୁ ବୃକ୍ଷରୁ ଜନ୍ମନ୍ତି ବୀଜମାନେ ।
ସେ ବୀଜରୁ ପାଦପ ଜନ୍ମନ୍ତି ଭିନ୍ନେ ଭିନ୍ନେ ॥ ୭୫ ॥
ଜଗତେ ବୃକ୍ଷମାନେ ଜନ୍ମନ୍ତି ତପଚାରି ।
ସମସ୍ତେ ବିରାଜନ୍ତି ଅନେକ ରୂପଧରି ॥ ୭୬ ॥
ସେହିପରି ବିଷ୍ଣୁଙ୍କ ଅଂଶରୁ ହୋଇ ଜାତ ।
ମହଦାଦିମାନେ ଯେ ଜଗତେ ଅତିଖ୍ୟାତ ॥ ୭୭ ॥
ସୁରନର କିନ୍ନର ସହିତେ ଆଉ ଯେତେ ।
ପ୍ରଧାନଠାରୁଂ ଜାତ ଅଟନ୍ତି ସେ ସମସ୍ତେ ॥ ୭୮ ॥
ଯଉଂମାନେ ଉତ୍ପନ୍ନ ତାହାଙ୍କ ଅନ୍ୱୟରେ ।
ବ୍ରହ୍ମାଣ୍ଡ ଭାଣ୍ଡଯାକ ପୁରିଛି ନିରନ୍ତରେ ॥ ୭୯ ॥
ବୀଜରୁ ଯଉଂ ରୂପେ ପାଦପେ ହୋଇ ଜାତ ।
ବୀଜମାନେ ଉତ୍ପନ୍ନ କରଇ ଅବିରତ ॥ ୮୦ ॥
ସେପରି ଭୂତମାନେ ଭୂତଙ୍କ ସର୍ଜନାରେ ।
ଅତ୍ୟନ୍ତ ବୃଦ୍ଧି ହୋଇ ବ୍ୟାପନ୍ତି ନିରନ୍ତରେ ॥ ୮୧ ॥
ଯେମନ୍ତେ ପାଦପକୁ ଅବନୀ ଜଳ ବାତ ।
ତେଜ କାଳ ଆକାଶ ହେତୁହେ ତପୋବନ୍ତ ॥ ୮୨ ॥
ପ୍ରାଣୀଙ୍କ ପରିଣାମ ସମୟେ ସେହିପରି ।
କାରଣ ହୋଇ କ୍ରୀଡ଼ା କରନ୍ତି ଚକ୍ରଧାରୀ ॥ ୮୩ ॥
ବ୍ରୀହି ଯବ ଗୋଟିକେ ଯେମନ୍ତେ ମୁନିପୁତ୍ର ।
ହୁଅଇ ମୂଳ ନାଳ ଅଙ୍କୁର ପୁଷ୍ପପତ୍ର ॥ ୮୪ ॥

ସେହିପରି ବିଷ୍ଣୁଙ୍କ ଶକ୍ତିକି ପାଇ କରି ।
ଏ ଜଗତ ପ୍ରକାଶ ହୁଅଇ ତପଚାରି ।। ୮୫ ।।
ସୁରନର କିନ୍ନର ଏମନ୍ତେ ଆଉ ଯେତେ ।
ବିଷ୍ଣୁଶକ୍ତି ତହୁଁ ଜନ୍ମନ୍ତି ସେ ସମସ୍ତେ ।। ୮୬ ।।
ବିଷ୍ଣୁର ଶକ୍ତିରେ ଯେ ସଚରାଚର ବିଶ୍ୱ ।
ବିବିଧ କଉତୁକେ ହୋଇଛି ପରକାଶ ।। ୮୭ ।।
ସେ ଯଜ୍ଞ ବିଷ୍ଣୁଦେବ ସେହି ସେ ପରଂବ୍ରହ୍ମ ।
ଜଗତ ରୂପଧରି ସେହି ସେ ମନୋରମ ।। ୮୮ ।।
ବିଷ୍ଣୁ ଅଙ୍ଗେ ଜଗତ ସର୍ବଦା ଅଛି ରହି ।
ସେ ବିଷ୍ଣୁ ଅଙ୍ଗେ ଲୀନ ହୋଇଛି ପୁଣି ସେହି ।। ୮୯ ।।
ସେହି ସେ ପରଂଧାମ ସେହି ସେ ଆଦିକନ୍ଦ ।
ଅସତ ସତ ସେହି ସେହି ସେ ପରଂପଦ ।। ୯୦ ।।
ଯାହାଠାରୁ ଅଭିନ୍ନ ଅଟଇ ଚରାଚର ।
ସେ ପ୍ରଭୁଙ୍କ ମହିମା ମୁନିହେ କି ପଚାର ।। ୯୧ ।।
ଜଗତ ରୂପେ ବ୍ୟକ୍ତ ଅଟନ୍ତି ସେହିପରି ।
ସେହି ଏକା ପ୍ରକୃତି ଶୁଣହେ ତପଚାରି ।। ୯୨ ।।
ତାହାଙ୍କଠାରେ ଲୀନ ହୁଅଇ ଚରାଚର ।
ସେହି ଏକା ଆଧାର ଅଖିଳ ବ୍ରହ୍ମାଣ୍ଡର ।। ୯୩ ।।
କ୍ରିୟାର କର୍ତ୍ତା ସେହି ସେ ଏକା ଯୋଗକର୍ମ ।
ଯାଗର ଭୋକ୍ତା ସେହି ସେହି ସେ ପରଂବ୍ରହ୍ମ ।। ୯୪ ।।
ଯାଗଙ୍କର ଫଳ ସେ ଅନାଦି ନିରାକାର ।
ଯଜ୍ଞ ପ୍ରଭୁ ସାକ୍ଷାତ ଯାଗର ଉପହାର ।। ୯୫ ।।
ସେ ବିଷ୍ଣୁ ଠାରୁ ଭିନ୍ନ ନୁହଇ ଚତୁର୍ଦ୍ଦଶ ।
ସର୍ବ ଶୁଭେ ସପ୍ତମ ଅଧ୍ୟାୟ ହେଲା ଶେଷ ।। ୯୬ ।।
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ସପ୍ତଲୋକମାନଙ୍କ ପ୍ରମାଣ ସୁଚରିତ ।। ୯୭ ।।
ଚିନ୍ତିଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୯୮ ।।

# ଅଷ୍ଟମ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ବ୍ରହ୍ମାଣ୍ଡସ୍ଥିତି କଥା ଆମ୍ଭେ ଯେ କଲୁଂ ଖ୍ୟାତ ॥ ୧ ॥
ସେମାନ ସବୁ ଏବେ ଶୁଣିଲ ଅନୁରାଗେ ।
ସୂର୍ଯ୍ୟଙ୍କ ସ୍ଥିତି କଥା କହିବା ତୁମ୍ଭ ଆଗେ ॥ ୨ ॥
ଯେତେକ ପ୍ରମାଣରେ ଭ୍ରମନ୍ତି ଦିବାକର ।
ସେ କଥାକୁ ମୁନିହେ ମନକୁ ଏକକର ॥ ୩ ॥
ଆଦିତ୍ୟଙ୍କ ରଥରେ ଯେବଣ ବଡ଼ ଅଖ ।
ତାହାର କଥା ଶୁଣ ମୁନୀନ୍ଦ୍ର କୁଳମୁଖ୍ୟ ॥ ୪ ॥
ସାକ୍ଷାତ ବିଷ୍ଣୁଙ୍କର ତେଜରେ ଯୁକ୍ତ ହୋଇ ।
ସେ ବଡ଼ ଅଖ ଗୋଟି ସର୍ବଦା ବିରାଜଇ ॥ ୫॥
ପଞ୍ଚାଶତ ସହସ୍ର ଯୋଜନ ପ୍ରମାଣରେ ।
ମାନସୋତ୍ତରଗିରି ଅଛି ଯେ ଉତ୍ତୁଙ୍ଗରେ ॥ ୬ ॥
ମେରୁଙ୍କର ମୂର୍ଦ୍ଧାଠାରୁ ମାନସୋତ୍ତର ଯାଏ ।
ସେ ବଡ଼ ଅଖଗୋଟା ଅତ୍ୟନ୍ତ ଶୋଭାପାଏ ॥ ୭ ॥
ଜମ୍ବୁଦ୍ୱୀପ ମଧରୁଂ ପୁଷ୍କର ଦ୍ୱୀପ ମଧ ।
ଏ ମଧେ ଯେତେ ସ୍ଥାନ ଅଛି ହେ ମହାସିଦ୍ଧ ॥ ୮ ॥
ତେତିକି ଦୂର ଯାଏ ଦୀର୍ଘରେ ବ୍ୟାପିକରି ।
ସେ ବଡ଼ ଅଖଗୋଟି ଅଛି ହେ ତପଚାରି ॥ ୯ ॥
କୋଟିଏ ସତାବନ ଲକ୍ଷର ଅଙ୍କେ ଗୁଣି ।
ପଞ୍ଚାଶସହସ୍ରକୁ ମିଶାଇ ଯେତେ ଗଣି ॥ ୧୦ ॥
ତେତିକି ଯୋଜନରେ ସେ ଯଉଂ ବଡ଼ ଅଖ ।
ଦୀର୍ଘ ହୋଇ ବ୍ୟାପିଛି ତପସ୍ୱୀ କୁଳମୋକ୍ଷ ॥ ୧୧ ॥
ଉତ୍ତର ଅଗ୍ରତାର ମେରୁଙ୍କ ଶିଖେ ଥାଇ ।
ଦକ୍ଷିଣ ଅଗ୍ର ଅଛି ମାନସୋତ୍ତରେ ଯାଇ ॥ ୧୨ ॥
ଯଉଂ ଅଗ୍ର ରହିଛି ମାନସୋତ୍ତର ଶିରେ ।
ତହିଂରେ କାଳଚକ୍ର ଲାଗିଛି ନିରନ୍ତରେ ॥ ୧୩ ॥
ସେ ଯଉଂ କାଳଚକ୍ର କହିବୁ ତପୋଧନ ।
ତିନିଗୋଟି ନାଭି ଯେ ତହିଂରେ ଶୋଭାବନ ॥ ୧୪ ॥
ପୂର୍ବାହ୍ନ ଅପରାହ୍ନ ମଧାହ୍ନ ତିନିକାଳ ।
ତହିଂରେ ତିନି ନାଭି ଅଟନ୍ତି ସାଧୁଶୀଳ ॥ ୧୫ ॥

୬. (କ) (ଖ) ଶବନ, ବଧ, ୧୨. (କ) (ଖ) ଆବିଡ଼, ୧୩. (କ)(ଖ) ଦ୍ୱାବିଚି

ତଦନ୍ତେ ପଞ୍ଚବିଧ ବତ୍ସର ପାଞ୍ଚ ଅର ।
ଷଡ଼ଋତୁ ଛଗୋଟି ନେମିହେ ମୁନିବର ॥ ୧୬ ॥
ବାରମାସ ଯାକରେ ନିର୍ମାଣ ହୋଇ କରି ।
ସର୍ବଦା ଅକ୍ଷୟ ସେ ଶୁଣହେ ତପଚାରି ॥ ୧୭ ॥
ସେ ଯଉଂ କାଳଚକ୍ର ମାନସୋତ୍ତରଶିରେ ।
ସୂର୍ଯ୍ୟଙ୍କ ଗତି ବଶେ ଭ୍ରମଇଂ ନିରନ୍ତରେ ॥ ୧୮ ॥
ସେହି ବଡ଼ ଅଖର ଉତ୍ତର ଅଗ୍ର ଯାଇ ।
କନକ ପର୍ବତର ଶିଖେ ଯେ ଅଛି ରହି ॥ ୧୯ ॥
ତହିଁରେ ସାନ ଅଖ ଗୋଟିଏ ପୋତା ହୋଇ ।
ଦୀର୍ଘରେ ଏକା ବ୍ୟାପି ରହିଛି ଉର୍ଦ୍ଧ୍ୱେ ଯାଇ ॥ ୨୦ ॥
ପଞ୍ଚାଳିଶ ସହସ୍ର ପାଞ୍ଚସ ଯୋଜନରେ ।
ଉର୍ଦ୍ଧ୍ୱକୁ ସାନ ଅଖ ବ୍ୟାପିଛି ନିରନ୍ତରେ ॥ ୨୧ ॥
ଶୁଣହେ ମୁନିକୁଳ ମଧାହ୍ନ ମାରତଣ୍ଡ ।
ବଡ଼ ଅଖ ମଧରେ ଅଛି ଯେ ଇଶାଦଣ୍ଡ ॥ ୨୨ ॥
ସେ ଇଷାଦଣ୍ଡ ବଡ଼ଅଖର ଚରମରେ ।
ଅଛି ଚାରିସହସ୍ର ପାଞ୍ଚସ ଯୋଜନରେ ॥ ୨୩ ॥
ସେହି ବଡ଼ ଅଖର ଆଗକୁ ମହାଭାଗ ।
ଶୁଣହେ ଇଷାଦଣ୍ଡ ହୋଇଛି ଯେଡ଼େ ଦୀର୍ଘ ॥ ୨୪ ॥
ତ୍ରୟୋଦଶ ସହସ୍ର ପାଞ୍ଚସ ଯୋଜନରେ ।
ଦୀର୍ଘ ହୋଇ ଆଗକୁ ଅଛି ସେ ନିରନ୍ତରେ ॥ ୨୫ ॥
ଏମନ୍ତେ ଅଷ୍ଟାଦଶ ସହସ୍ର ଯୋଜନ ସେ ।
ସେ ଯଉଂ ଇଷାଦଣ୍ଡ ଅତ୍ୟନ୍ତ ଶୋଭାଦିଶେ ॥ ୨୬ ॥
ସେହି ଈଷାଦଣ୍ଡର ଅଗ୍ରରେ ମହାଭାଗ ।
ଅତ୍ୟନ୍ତ ଯତ୍ନେ ବନ୍ଧା ହୋଇଛି ବଡ଼ ଯୁଗ ॥ ୨୭ ॥
ବଡ଼ ଅଖ ସମାନ ଦୀର୍ଘରେ ତପୋଧନ ।
ସେ ବଡ଼ ଯୁଗ ଗୋଟି ଦିଶଇ ଶୋଭାବନ ॥ ୨୮ ॥
ସେହି ବଡ଼ ଯୁଗର ଦକ୍ଷିଣ ଅଗ୍ରଯାଇ ।
ମାନସୋତ୍ତରଗିରି ଶିଖରେ ବିହରଇ ॥ ୨୯ ॥
ସେଠାରେ ବନ୍ଧା ହୋଇଅଛନ୍ତି ସାତ ଅଶ୍ୱ ।
ତାହାଙ୍କ ନାମ ଶୁଣ ତପସ୍ୱୀ ଅବତଂଶ ॥ ୩୦ ॥
ଗାୟତ୍ରୀ ବୃହତୀ ଯେ ଉଷ୍ଣିକ ତିନିଛନ୍ଦ ।
ଜଗତୀ ତ୍ରିଷ୍ଟୁପ ଯେ ଏ ବେନି ମୁନିଚନ୍ଦ୍ର ॥ ୩୧ ॥
ଅନୁଷ୍ଟୁପ ପଂକ୍ତି ଏ ବେନି ମିଶିକରି ।
ଏମନ୍ତେ ସପ୍ତଛନ୍ଦ ଅଛି ଯେ ତପଚାରି ॥ ୩୨ ॥

ଏହିମାନେ କେବଳ ସପତ ଅଶ୍ୱ ତହିଁ ।
ବଡ଼ ଯୁଗପ୍ରାନ୍ତରେ ଅଛନ୍ତି ବନ୍ଧା ହୋଇ ।। ୩୩ ।।
ବଡ଼ ଯୁଗ ଦକ୍ଷିଣ ଅଗ୍ରରେ ଥାଇ ନିତି ।
ମାନସୋତ୍ତରଗିରି ଶିଖରେ ସଞ୍ଚରନ୍ତି ।। ୩୪ ।।
ସେହି ବଡ଼ ଯୁଗର ଉତ୍ତର ଅଗ୍ର ତହିଁ ।
ସାନଯୁଗ ଗୋଟିଏ ରହିଛି ପୋତା ହୋଇ ।। ୩୫ ।।
ସାନ ଅଖ ପ୍ରମାଣେ ଉତ୍ତୁଙ୍ଗ ହୋଇ କରି ।
ଉର୍ଦ୍ଧ୍ୱକୁ ବ୍ୟାପୀ ଅଛି ଶୁଣହେ ତପଚାରୀ ।। ୩୬ ।।
ବଡ଼ ଅଖ ମଧରେ ଯେବଣ ଈଷାଦଣ୍ଡ ।
ତା ମଧେ ରଥ ରଖିଅଛନ୍ତି ମାରତଣ୍ଡ ।। ୩୭ ।।
ମଣ୍ଡଳ ଆକୃତିରେ ସେ ରଥ ମନୋହର ।
ନସହସ୍ର ଯୋଜନ ଅଟଇ ତା ବିସ୍ତାର ।। ୩୮ ।।
ନ ସହସ୍ର ଯୋଜନ ପ୍ରମାଣେ ମାଡ଼ିକରି ।
ଈଷାଦଣ୍ଡ ମୂଳକୁ ଅଛି ଯେ ତପଚାରୀ ।। ୩୯ ।।
ସତାଇଶ ସହସ୍ର ଯୋଜନ ପ୍ରମାଣରେ ।
ଉର୍ଦ୍ଧ୍ୱକୁ ସେ ବିମାନ ରହିଛି ନିରନ୍ତରେ ।। ୪୦ ।।
ଶୁଣିମା ହୋଉ ଆହେ ମୈତ୍ରେୟ ମହାଭାଗ ।
ସାନ ଅଖ ସମାନେ ଅଛି ସେ ସାନ ଯୁଗ ।। ୪୧ ।।
ଯେ ଯଉଂ ଅଖଯୁଗ ତାହାଙ୍କ ଅଗ୍ରଯାଇ ।
ଉର୍ଦ୍ଧ୍ୱରେ ଲାଗିଅଛି ଶୁଣହେ ମନଦେଇ ।। ୪୨ ।।
ସେ ଦୁହିଁଙ୍କ ଅଗ୍ରରେ ପବନରଜ୍ଜୁ ବାନ୍ଧି ।
ସେ ରଜ୍ଜୁ ଧ୍ରୁବ ଧରି ଅଛନ୍ତି ନିରବଧି ।। ୪୩ ।।
ପବନର ରଜ୍ଜୁ ଧ୍ରୁବ ଓଟାରି ଥିବା ଘେନି ।
ମେରୁକୁ ବଡ଼ ଅଖ ଛାଡ଼ିଛି ମହାମୁନି ।। ୪୪ ।।
ମେରୁଠାରୁ ଷୋଡ଼ଶ ସହସ୍ର ଯୋଜନରେ ।
ଉର୍ଦ୍ଧ୍ୱକୁ ଦୂର ହୋଇ ଅଛି ସେ ନିରନ୍ତରେ ।। ୪୫ ।।
ସେହି ବଡ଼ ଅଖର ଦକ୍ଷିଣ ଅଗ୍ରଠାରେ ।
ପବନ ରଜ୍ଜୁ ବନ୍ଧା ହୋଇଛି ନିରନ୍ତରେ ।। ୪୬ ।।
ସେପରି ବଡ଼ ଯୁଗ ଦକ୍ଷିଣ ଅଗ୍ର ଯାଇ ।
ପବନର ରଜ୍ଜୁରେ ରହିଛି ବନ୍ଧା ହୋଇ ।। ୪୭ ।।
ସେ ବେନି ବାତରଜ୍ଜୁ ଅତ୍ୟନ୍ତ ଯତ୍ନେ ଧରି ।
ଆଧାର ହୋଇ ଧ୍ରୁବ ଅଛନ୍ତି ତପଚାରୀ ।। ୪୮ ।।
ଏମନ୍ତେ ରବିରଥ ଦିଶଇ ଶୋଭାବନ ।
ସାବଧାନେ ଶୁଣହେ ମୈତ୍ରେୟ ତପୋଧନ ।। ୪୯ ।।

ମାନସୋତ୍ତରଗିରି ପୂର୍ବରେ ମୁନିବର ।
ଇନ୍ଦ୍ରଙ୍କର ପୁରୀ ଯେ ଦିଶଇ ମନୋହର ॥ ୫୦ ॥
ଅମରାବତୀ ନାମେ ଖ୍ୟାତ ସେ ତ୍ରିଭୁବନେ ।
ବସୌ୍ୟକସାରା ମଧ ବୋଲନ୍ତି କଇଂମାନେ ॥ ୫୧ ॥
ମାନସୋତ୍ତରଗିରି ଦକ୍ଷିଣେ ତପୋଧନ ।
ଯମଙ୍କର ପୁରୀ ଯେ ଦିଶଇ ଶୋଭାବନ ॥ ୫୨ ॥
ସଂଯମନି ନାମରେ ସେ ପୁର ଅତିଖ୍ୟାତ ।
ଏକମନେ ଶୁଣହେ ତପସ୍ୱୀ ନିଶାକାନ୍ତ ॥ ୫୩ ॥
ମାନସୋତ୍ତରଗିରି ପଶ୍ଚିମେ ନିଶାକାନ୍ତ ।
ବରୁଣଙ୍କ ପୁରି ଯେ ବସିଛି ଅବିରତ ॥ ୫୪ ॥
ସୁଖା ନାମେ ସେ ପୁରୀ ଅତ୍ୟନ୍ତ ମନୋହର ।
ମନଦେଇ ଶୁଣହେ ତପସ୍ୱୀ ଅଲଂକାର ॥ ୫୫ ॥
ମାନସୋତ୍ତରଗିରି ଉତ୍ତରେ ତପୋଧନ ।
କୁବେରଙ୍କ ପୁରୀ ଯେ ଦିଶଇ ଶୋଭାବନ ॥ ୫୬ ॥
ବିଭାବରୀ ନାମରେ ସେ ପୁରୀ ମନୋହର ।
ଅଲକା ମଧ ତାକୁ ବୋଲନ୍ତି କେତେ ନର ॥ ୫୭ ॥
ଏମନ୍ତେ ଚାରି ପୁରୀ ହୋଇଛି ବିଦ୍ୟମାନ ।
ତା ଉପରେ ଆଦିତ୍ୟ ଭ୍ରମନ୍ତି ପ୍ରତିଦିନ ॥ ୫୮ ॥
ଅହୋରାତ୍ର ହେବାକୁ କାରଣ ଦିବାକର ।
ତାହାଙ୍କ ଗତି ଏବେ ଶୁଣହେ ମୁନିବର ॥ ୫୯ ॥
ଯେତେବେଳେ ମଧାହ୍ନ ହୁଅଇ ଇନ୍ଦ୍ରପୁରେ ।
ସେ କାଳରେ ଉଦୟ ଯମଙ୍କ ପୁରୀ ଠାରେ ॥ ୬୦ ॥
ବରୁଣଙ୍କ ଭୁବନେ ରଜନୀ ଦ୍ୱିପହର ।
କୁବେରପୁରେ ଅସ୍ତ ହୁଅନ୍ତି ଦିବାକର ॥ ୬୧ ॥
ଏହିପରି ଆଦିତ୍ୟ ଭ୍ରମନ୍ତି ସବୁପୁର ।
ଉଦୟ ଅସ୍ତ ଅବା କେଦେଲା ସୂର୍ଯ୍ୟଙ୍କର ॥ ୬୨ ॥
ଯେଉଂ ପୁରେ ଦିଶନ୍ତି ଛାୟାଙ୍କ ପ୍ରାଣପତି ।
ଉଦୟ ବୋଲି ତାକୁଂ ସେ ଲୋକେ ବିଚାରନ୍ତି ॥ ୬୩ ॥
ଯେଉଂ ପୁରେ ଅଦୃଶ୍ୟ ହୁଅନ୍ତି ଦିବାକର ।
ଅସ୍ତଜ୍ଞାନ ହୁଅଇ ସେ ଲୋକମାନଙ୍କର ॥ ୬୪ ॥
ଅସ୍ତ ଉଦୟ ଅବା କେ ଦେଲା ତାହାଙ୍କର ।
କିରଣରେ ଶୋଭା ଯେ ଦିଶନ୍ତି ପ୍ରଭାକର ॥ ୬୫ ॥
ଅଗ୍ରପୃଷ୍ଠ ପାରୁଷେ ସମାନ ହୋଇକରି ।
ରଶ୍ମିରେ ଦିଶନ୍ତି ସେ କଦମ୍ବ ପୁଷ୍ପପରି ॥ ୬୬ ॥

ସୂର୍ଯ୍ୟଙ୍କର କିରଣ ଉର୍ଦ୍ଧ୍ୱକୁ ଯାଇ କରି ।
ବ୍ରହ୍ମା ସଭା ପ୍ରଭାରୁ ଆସନ୍ତି ଅପସରି ।। ୬୭ ।।
ସୂର୍ଯ୍ୟକର ପଡ଼ିବା ସକାଶୁଁ ଦିବା ହୋଇ ।
ନିବର୍ତ୍ତିବା ସକାଶୁଁ ରଜନୀ ପ୍ରକଟଇ ।। ୬୮ ।।
ସେ ସଭାରେ ସର୍ବଦା ହୁଅଇ ଦିବାରାତି ।
ଏଥୁ ଉତ୍ତାରେ ତା ପୁଣି ଶୁଣ ମହାଯତି ।। ୬୯ ।।
ରଜନୀରେ କମଳ ବନ୍ଧୁଙ୍କ ପ୍ରଭା ଯାଇ ।
ଚତୁର୍ଥଅଂଶ ଅଗ୍ନି ମଧରେ ନିମଜ୍ଜଇ ।। ୭୦ ।।
ସେହିପରି ଦିବସ ହୋଇଲେ ଅଗ୍ନିପ୍ରଭା ।
ଦିବାକର ମଣ୍ଡଳେ ଦିଶଇ ଅତିଶୋଭା ।। ୭୧ ।।
ସହଜେ ଦିବାକର ଅତ୍ୟନ୍ତ ପ୍ରଭାବନ୍ତ ।
ତହିଁରେ ବହ୍ନି ପ୍ରଭା ହୁଅଇ ଯାଇ ସ୍ଥିତ ।। ୭୨ ।।
ଏ ଘେନି ଦିବସରେ ଅତ୍ୟନ୍ତ ଉଗ୍ର ହୋଇ ।
ଆକାଶରେ ବିହରନ୍ତି ଛାୟାଙ୍କ ପ୍ରାଣସାଇଁ ।। ୭୩ ।।
ସେହିପରି ସୂର୍ଯ୍ୟଙ୍କ ପ୍ରତିଭା ଥିବା ଘେନି ।
ନିଶାରେ ଅଗ୍ନି ତେଜ ବଢ଼ଇ ମହାମୁନି ।। ୭୪ ।।
ସୂର୍ଯ୍ୟଙ୍କ ଚତୁର୍ଥାଂଶ ରହଇ ଅଗ୍ନିଠାରେ ।
ଅଗ୍ନିରୁଁ ଚତୁର୍ଥାଂଶ ରହଇ ଦିବାକରେ ।। ୭୫ ।।
ବସୁମତୀ ମଣ୍ଡଳ ତିରିଶି ମୁହୂର୍ତ୍ତରେ ।
ଛାୟାପତି ଭ୍ରମଣ କରନ୍ତି ନିରନ୍ତରେ ।। ୭୬ ।।
ମନ ଦେଇ ଶୁଣହେ ମୁନୀନ୍ଦ୍ର ନିଶାପତି ।
କୁଲାଳଚକ୍ର ପରି ରବି ଯେ ଭ୍ରମୁଛନ୍ତି ।। ୭୭ ।।
ଉତ୍ତରାୟଣ ହେବା ଆଦ୍ୟରେ ମୁନିବର ।
ମକରକୁ ପ୍ରବେଶ ହୁଅନ୍ତି ପ୍ରଭାକର ।। ୭୮ ।।
କର୍କଟରାଶି କି ଚଳନ୍ତେ ବିକର୍ତ୍ତନ ।
ଦକ୍ଷିଣାୟନ କାଳ ହୁଅନ୍ତେ ବିଦ୍ୟମାନ ।। ୭୯ ।।
ମୀନର ତେର ଦିନେ କନ୍ୟାର ତେରଦିନେ ।
ରଜନୀ ଦିବସପୁଣି ରହଇ ସମାନେ ।। ୮୦ ।।
ସେ କାଳକୁ ଏକା ବିସୁବ ତ ବୋଲି କହି ।
ଏଥୁ ଅନନ୍ତରେ ଯେ ଶୁଣ ହୋ ତପୋଦେହୀ ।। ୮୧ ।।
ମିଥୁନ ତେରଦିନେ ଯେ ପରମ ଦିବସ ।
ପରମ ରାତ୍ରି ଧନୁ ତେର ଯେ ଦିବସ ।। ୮୨ ।।
ଏହି ରୂପେ ଷଡ଼ଋତୁ ଦ୍ୱାଦଶମାସରେ ।
ଭ୍ରମଣ କରନ୍ତି ରବି ବେନି ଅୟନରେ ।। ୮୩ ।।

ଏଥୁଁ ଉତ୍ତାରେଣ ତା' ପୁଣି ଆଉ ଏକ ପ୍ରତି ।
କହିବା ମନ ନିଶ୍ଚଳେ ଶୁଣ ମହାଯତି ॥ ୮୪ ॥
ପୂର୍ବଦିଗରେ ଉଦୟ ପର୍ବତ ଉପରେ ।
ତିନିଗୋଟି ଶୃଙ୍ଗ ଯେ ଅଛଇ ଉଇତରେ ॥ ୮୫ ॥
ସେହିପରି ପଶ୍ଚିମେ ଅଛି ଯେ ଅସ୍ତାଚଳ ।
ତାହାପରେ ତିନିଶୃଙ୍ଗ ଦିଶେ ସୁମଞ୍ଜୁଳ ॥ ୮୬ ॥
ବେନି ବେନି ଶୃଙ୍ଗ ଯେ ଉତ୍ତର ଦକ୍ଷିଣରେ ।
ବିସୁବତ ଶୃଙ୍ଗ ଯେ ରହିଛି ତା' ମଧରେ ॥ ୮୭ ॥
ଯଉଂ କାଳେ ଦିବାକର ଦକ୍ଷିଣ ଅୟନେ ।
ଗମନକୁ କରନ୍ତି ଅତ୍ୟନ୍ତ ସୁବିଧାନେ ॥ ୮୮ ॥
ଦିବସରେ ପୂର୍ବର ଦକ୍ଷିଣ ଶୃଙ୍ଗୁ ଯାଇଂ ।
ମିଳନ୍ତି ପଶ୍ଚିମର ଦକ୍ଷିଣ ଶୃଙ୍ଗ ତହିଁ ॥ ୮୯ ॥
ଏ ସକାଶୁଁ ଦିବସ ଯେ ଊଣାକୁ ଭଜଇ ।
ଏହା ନିଶ୍ଚୟ କରିଣ ଜାଣ ତପଦେହୀ ॥ ୯୦ ॥
ନିଶାରେ ପଶ୍ଚିମର ଦକ୍ଷିଣ ଶୃଙ୍ଗ ତହୁଂ ।
ପୂରୁବର ଦକ୍ଷିଣ ଶୃଙ୍ଗକୁ ଯାନ୍ତି ଯହୁଂ ॥ ୯୧ ॥
ଏଣୁ କରି ରଜନୀ ହୁଅଇ ଅତିଦୀର୍ଘ ।
ଦକ୍ଷିଣାୟନର ଏ ଶୁଣ ହେ ମହାଭାଗ ॥ ୯୨ ॥
ପୂର୍ବର ବିସୁବତ ଶୃଙ୍ଗରୁଂ ତହୁଂ ପୁଣି ।
ପଶ୍ଚିମ ମଧ ଶୃଙ୍ଗେ ଯାଆନ୍ତେ ଦିନମଣି ॥ ୯୩ ॥
ଦିବାରାତ୍ରି ଏ ଦୁହେଂ ସମାନ ହୋଇକରି ।
ସଂସାରେ ପ୍ରଚରନ୍ତି ଶୁଣ ହେ ତପଚାରୀ ॥ ୯୪ ॥
ପୂର୍ବୋତ୍ତର ଶୃଙ୍ଗରୁଂ ପଶ୍ଚିମୋତ୍ତର ଶୃଙ୍ଗେ ।
ଯଉଂକାଳେ ପ୍ରବେଶ ହୁଅନ୍ତି ରବି ବେଗେ ॥ ୯୫ ॥
ଉତ୍ତରାୟଣ ବୋଲି ତାହାକୁ ଏକା କହି ।
ଦିନପୁଣି ବଢ଼ଇ ରାତ୍ରି ଯେ କ୍ଷୀଣ ହୋଇ ॥ ୯୬ ॥
ଦିନ ରଜନୀ ଅଧିକ ଊଣା ଅନୁକ୍ରମେ ।
ଷଡ଼ଷଡ଼ ରାଶି ଭୋଗ କରେ ତା'ର ତମେ ॥ ୯୭ ॥
ଏ ରୂପେ ବାରରାଶି ଦିବସ ରାତ୍ରିରେ ।
ଭୋଗ କରନ୍ତି ଆଦିତ୍ୟ ପୁଣି ସର୍ବଦାରେ ॥ ୯୮ ॥
ଦକ୍ଷିଣାୟନେ ବାର ମୁହୂର୍ତ୍ତେ ଛାୟାଈଷ ।
ତେର ଋକ୍ଷ ଅଧିକେ ଦିବାରେ ପରବେଶ ॥ ୯୯ ॥
ରଜନୀରେ ଅଠର ମୁହୂର୍ତ୍ତେ ଛାୟାପତି ।
ଆନ ତେର ନକ୍ଷତ୍ର ଅଧିକେ ବିରାଜନ୍ତି ॥ ୧୦୦ ॥

ଉତ୍ତରାୟଣ ହେଲେ ଅଠର ମୁହୂର୍ତ୍ତରେ ।
ତେରରକ୍ଷ ଅଧିକେ ଭ୍ରମନ୍ତି ଦିବସରେ ॥ ୧୦୧ ॥
ରଜନୀରେ ଦ୍ୱାଦଶ ମୁହୂର୍ତ୍ତେ ତପୋଧନ ।
ତେରରକ୍ଷ ଅଧକେ ଭ୍ରମନ୍ତି ବିକର୍ତ୍ତନ ॥ ୧୦୨ ॥
ଦକ୍ଷିଣାୟନ ରାତ୍ରି ମାନଙ୍କେ ମନ୍ଦହୋଇ ।
ଦିବସ ଭାଗେ ଶୀଘ୍ରେ ଚଳନ୍ତି ଛାୟା ସାଇଂ ॥ ୧୦୩ ॥
ଉତ୍ତରାୟଣ ରାତ୍ରିମାନଙ୍କେ ଦୀର୍ଘଗାମୀ ।
ଦିବସେ ଅତି ମନ୍ଦ ପଙ୍କଜବନ ସ୍ୱାମୀ ॥ ୧୦୪ ॥
ରାତ୍ରି ଶେଷ ଉଷା ଯେ ଦିବସ ଶେଷ ବ୍ୟୁଷ୍ଟି ।
ଏ ଦୁହିଁଙ୍କ ପ୍ରାନ୍ତ ପୁଣି ସନ୍ଧ୍ୟା ଦୁଇ ଗୋଟି ॥ ୧୦୫ ॥
ସେ ପ୍ରାନ୍ତ ସନ୍ଧ୍ୟାରେ ଯେ ମନ୍ଦେହ ଦୈତ୍ୟମାନେ ।
ସୂର୍ଯ୍ୟଙ୍କୁ ଭକ୍ଷିବାକୁ ପାଞ୍ଚନ୍ତି ପ୍ରତିଦିନେ ॥ ୧୦୬ ॥
ପ୍ରଜାପତି ଶାପରେ ଅକ୍ଷୟ ହୋଇ କରି ।
ଦିବାରେ ଜନ୍ମନ୍ତି ସେ ରାତ୍ରିରେ ପ୍ରାଣହାରି ॥ ୧୦୭ ॥
ରବି ଉଦୟ ଅସ୍ତରେ ସେ ଯେ ଓଗାଳନ୍ତି ।
ତାଙ୍କ ତୁଲେ ମାର୍ତ୍ତଣ୍ଡ ସମର ଆଚରନ୍ତି ॥ ୧୦୮ ॥
ସେହି ସମୟରେ ଯେ ସମସ୍ତ ଦ୍ୱିଜମାନେ ।
ମନ୍ତ୍ର ଜଳାଞ୍ଜଳି ଯେ ଦିଅନ୍ତି ସୁବିଧାନେ ॥ ୧୦୯ ॥
ସନ୍ଧ୍ୟା କାଳେ ଦ୍ୱିଜଙ୍କ ଦେବାର ଜଳାଞ୍ଜଳି ।
ବଜ୍ର ହୋଇ କରଇ ମନ୍ଦେହ ଗଣଧୂଳି ॥ ୧୧୦ ॥
ସେହି କାଳେ ହୋମକୁ ଆଚରି ଦ୍ୱିଜମାନେ ।
ଆହୁତିମାନଙ୍କୁ ଯେ ଦିଅନ୍ତି ହୁତାଶନେ ॥ ୧୧୧ ॥
ପ୍ରଥମ ଆହୁତିରେ ବଢ଼ଇ ରବିତେଜ ।
ଏଥୁ ଓଁକାର ବିଧାନ ଶୁଣ ମହାଦ୍ୱିଜ ॥ ୧୧୨ ॥
ବ୍ରହ୍ମା ବିଷ୍ଣୁ ମହେଶ ରୂପୀ ହୋଇକରି ।
ଓଁକାର ଯେ ସାକ୍ଷାତ ବିଷ୍ଣୁ ହେ ତପଚାରୀ ॥ ୧୧୩ ॥
ତାହାକୁ ଉଚ୍ଚାରିବା ମାତ୍ରକେ ହୃଷ୍ଟ ମନେ ।
ଭସ୍ମୀଭୂତ ହୁଅନ୍ତି ମନ୍ଦେହ ଗଣମାନେ ॥ ୧୧୪ ॥
ଏ ଘେନି ସାୟଂକାଳ ସନ୍ଧ୍ୟାକୁ ଆଚରିବ ।
ନକଲେଟି ରବିଙ୍କି କରଇ ପରାଭବ ॥ ୧୧୫ ॥
ଏପରି ପ୍ରାତଃ ସନ୍ଧ୍ୟା ହୁଅଇ ମୁନିବର ।
ତାହାକୁ ଆଚରିବ ଉତ୍ତମ ବିପ୍ରବର ॥ ୧୧୬ ॥
ବାଳଖିଲ୍ୟା ସହିତେ ଯେତେକ ଦ୍ୱିଜମାନେ ।
ଏହି ରୂପେ ରବିଙ୍କି ରଖନ୍ତି ପ୍ରତିଦିନେ ॥ ୧୧୭ ॥

୧୦୧. (କ) ତପସ୍ୟା କର୍ମ ଦାନ ଏମନ୍ତ ହୋଇକରି

ଊଣା ଅବା ଅଧିକ ହୁଅଇ ଦିବାରାତି ।
ସନ୍ଧ୍ୟାର କ୍ଷୟବୃଦ୍ଧି ନାହିଁ ହେ ମହିପତି ॥ ୧୧୮ ॥
ଏମନ୍ତ ପ୍ରକାରେ ଯେ କହିଲୁ ସୂର୍ଯ୍ୟଗତି ।
ଏଥୁଁ ଅନ୍ତେ ପୁଣି ଯେ କହିବା ଆନପ୍ରତି ॥ ୧୧୯ ॥
ସମସ୍ତଙ୍କ ଉତ୍ତରେ ଅଛନ୍ତି ସପ୍ତଋଷି ।
ତାହାଙ୍କୁ କେତେ ଅବା କହିବା ପରଶଂସି ॥ ୧୨୦ ॥
ସେ ଋଷିଙ୍କ ଦକ୍ଷିଣେ ଅଇରାବତ ମାର୍ଗ ।
ତାହାର ଦକ୍ଷିଣକୁ ଶୁଣ ହେ ମହାଭାଗ ॥ ୧୨୧ ॥
ଜାରଦ୍ଗବ ନାମରେ ମାର୍ଗ ଯେ ଶୋଭାବନ ।
ତଦନ୍ତରେ ବୈଶ୍ୱାନର ନାମରେ ଅୟନ ॥ ୧୨୨ ॥
ଏ ଯେଉଂ ତିନିମାର୍ଗ ତୁମ୍ଭଙ୍କୁ ଦେଲୁଂ କହି ।
ମାର୍ଗକେ ତିନି ତିନି ବୀଥି ଯେ ଅଛି ତହିଁ ॥ ୧୨୩ ॥
ଐରାବତମାର୍ଗରେ ଯେବଣ ତିନିବୀଥି ।
କହିବା ଶୁଣ ତୁ ଏବେ ସେମାନଙ୍କ ସ୍ଥିତି ॥ ୧୨୪ ॥
ଅଶ୍ୱିନୀ ଭରଣୀ ଯେ କୃତ୍ତିକା ତିନିଋକ୍ଷ ।
ନାଗବିଥିମାନେ ଯେ ଅଟନ୍ତି ପ୍ରତ୍ୟକ୍ଷ ॥ ୧୨୫ ॥
ଆଦ୍ୟଭାଗେ ଏ ବୀଥି ଅତ୍ୟନ୍ତ ମନୋହର ।
ମଧ୍ୟେ ଗଜ ବୀଥିର ଯେ ଅଟଇ ପ୍ରଚାର ॥ ୧୨୬ ॥
ରୋହିଣୀ ମୃଗଶିରା ଆରର୍ଦ୍ରା ଯେ ତିନିତାରା ।
ଏମାନେ ଗଜବୀଥି ଅଟନ୍ତି ପରମ୍ପରା ॥ ୧୨୭ ॥
ପୁନର୍ବସୁ ପୁଷ୍ୟା ଯେ ଅଶ୍ଳେଷା ମିଶି ତିନି ।
ପ୍ରାନ୍ତରେ ଐରାବତ ବୀଥିଏ ମହାମୁନି ॥ ୧୨୮ ॥
ଏମନ୍ତେ ଐରାବତ ମାର୍ଗର ତିନି ବୀଥି ।
ଶୁଣ ଏବେ ଜାରଦ୍ଗବ ମାର୍ଗ ବୀଥିରୀତି ॥ ୧୨୯ ॥
ମଘା ପୂର୍ବାଫାଲଗୁନି ଉତ୍ତରା ଫାଲଗୁନି ।
ଏହାକୁଟି ଐରାବତ ବୀଥି ବୋଲି ଘେନି ॥ ୧୩୦ ॥
ହସ୍ତ ଚିତ୍ରା ସ୍ୱାତି ଯେ ମଧରେ ତିନି ତାରା ।
ଗୋବୀଥି ନାମେ ଖ୍ୟାତ ଅଟନ୍ତି ପରମ୍ପରା ॥ ୧୩୧ ॥
ବିଶାଖା ଅନୁରାଧା ଜ୍ୟେଷ୍ଠା ଯେ ତିନିଋକ୍ଷ ।
ପ୍ରାନ୍ତରେ ଏ ଜାରଦ୍ଗବ ବୀଥିଟି ପ୍ରତ୍ୟକ୍ଷ ॥ ୧୩୨ ॥
ଜାରଦ୍ଗବ ମାର୍ଗରେ ଏମନ୍ତେ ତିନି ବୀଥି ।
ବୈଶ୍ୱାନର ମାର୍ଗରେ ଶୁଣ ହେ ମହାପତି ॥ ୧୩୩ ॥
ମୂଳା ପୂର୍ବାଷାଢ଼ା ଯେ ଉତ୍ତରାଷାଢ଼ା ପୁଣି ।
ଆବିରେ ଅର୍କ ବୀଥି ବୋଲନ୍ତି ତାକୁ ଜାଣି ॥ ୧୩୪ ॥

ଶ୍ରବଣା ଧନିଷ୍ଠା ଯେ ଆବର ଶତଭିଷା ।
ମୃଗବୀଥି ବୋଲାଇ ଏହାଙ୍କ ପରଶଂସା ॥ ୧୩୫ ॥
ମଧ ଭାଗେ ଏ ବୀଥି ଅତ୍ୟନ୍ତ ମନୋହର ।
ବୈଶ୍ୱାନର ବୀଥିକି ଶୁଣ ହେ ମୁନିବର ॥ ୧୩୬ ॥
ପୂର୍ବଭାଦ୍ରପଦା ଯେ ଉତ୍ତର ଭାଦ୍ରପଦା ।
ରେବତୀ ମିଶି ପ୍ରାନ୍ତେ ବିହରୁଛନ୍ତି ସଦା ॥ ୧୩୭ ॥
ବୈଶ୍ୱାନର ବୀଥି ଏ ବୋଲାନ୍ତି ସବୁକାଳେ ।
ଶୁଣ ହେ ମଇତ୍ରେୟ ଅତ୍ୟନ୍ତ ପ୍ରେମଭୋଳେ ॥ ୧୩୮ ॥
ବୈଶ୍ୱାନର ମାର୍ଗରେ ଏ ଯେଉଂ ତିନି ବୀଥି ।
ସମସ୍ତଙ୍କ ଦକ୍ଷିଣେ ସର୍ବଦା ରହିଛନ୍ତି ॥ ୧୩୯ ॥
ସପ୍ତଋଷିମଣ୍ଡଳରୁଂ ଆରମ୍ଭି ସମସ୍ତେ ।
ଅଇରାବତ ବୀଥି ପର୍ଯ୍ୟନ୍ତେ ମାର୍ଗ ଯେତେ ॥ ୧୪୦ ॥
ଉତ୍ତରାୟଣ କାଳେ ଛାୟାଙ୍କ ପ୍ରାଣପତି ।
ତେତିକି ମାର୍ଗେ ଏକା ଆନନ୍ଦେ ସଂଚରନ୍ତି ॥ ୧୪୧ ॥
ସେ ଯେଉଂ ସପ୍ତଋଷି ତାହାଙ୍କଠାରୁ ପୁଣି ।
ନାଗବୀଥି ପର୍ଯ୍ୟନ୍ତେ ଯେତେକ ମାର୍ଗ ମୁନି ॥ ୧୪୨ ॥
ଦେବଯାନ ବୋଲାଇ ବିଖ୍ୟାତ ତାର ନାମ ।
ସେ ମାର୍ଗେ ଯୋଗୀମାନେ ଲଭନ୍ତି ପରଂଧାମ ॥ ୧୪୩ ॥
ଐରାବତ ବୀଥିରୁଂ ଶୁଣ ହେ ମହାଭାଗ ।
ବୈଶ୍ୱାନର ବୀଥି ପର୍ଯନ୍ତେ ଯେତେ ମାର୍ଗ ॥ ୧୪୪ ॥
ଦକ୍ଷିଣାୟନ କାଳେ କମଳବନକାନ୍ତ ।
ସେହି ମାର୍ଗେ ବିହାର କରନ୍ତି ଅବିରତ ॥ ୧୪୫ ॥
ଅଜନାମେ ବୀଥିରୁଂ ମୈତ୍ରେୟ ତପୋଧନ ।
ବଇଶ୍ୱାନର ବୀଥି ପର୍ଯ୍ୟନ୍ତେ ଯେତେ ସ୍ଥାନ ॥ ୧୪୬ ॥
ପିତୃଯାନ ନାମରେ ସେ ମାର୍ଗ ଅତି ଖ୍ୟାତ ।
ଉତ୍ପନ୍ନ ହେଲେ ମଲେ ସେ ମାର୍ଗେ ଗତାଗତ ॥ ୧୪୭ ॥
ସେ ଏକା ମୃଗବୀଥି ବୋଲାଇ ଏ ସଂସାରେ ।
ଶୁଣ ତାର ମହିମା କହିବା ତୁମ୍ଭଠାରେ ॥ ୧୪୮ ॥
ତହିଂରେ ଯେତେ ଋଷି ଅଛନ୍ତି ମୁନିବର ।
ଯାଗକର୍ମମାନଙ୍କେ ସମସ୍ତେ ଧୁରନ୍ଧର ॥ ୧୪୯ ॥
ପ୍ରବୃତ୍ତି ମାର୍ଗ ଖ୍ୟାତ କରଇ ଯେଉଂ ବେଦ ।
ତାହାକୁ ମାତ୍ରକ ସେ କରନ୍ତି ଅନୁବାଦ ॥ ୧୫୦ ॥
ଯାଗ ସଂଚରାଇବା କଥାରେ ଏ ଜଗତେ ।
ସେମାନେ ପ୍ରବୃତ୍ତିକ ହୁଅନ୍ତି ଅବିରତେ ॥ ୧୫୧ ॥

ଲୋକମାନେ ଉତ୍ପତ୍ତି ହୋଇବେ ଯଉଂପରି ।
ସେ କର୍ମ କରନ୍ତି ସେ ଦିବସ ବିଭାବରୀ ॥ ୧୫୨ ॥
ସନ୍ତତି ଶାସ୍ତ୍ର ତପ ମର୍ଯ୍ୟାଦା ନିମିତ୍ତରେ ।
ପିତାମାନେ ଜନମ ହୁଅନ୍ତି ପୁତ୍ରଠାରେ ॥ ୧୫୩ ॥
ଯଉଂ ପୁତ୍ରେ ପିତାର ଯେ ହୋଇଥାନ୍ତି ତାତ ।
ସେମାନେ ପୁଣି ତାହାଙ୍କ ଗର୍ଭେ ହୋନ୍ତି ଜାତ ॥ ୧୫୪ ॥
ପୁନରାବୃତ୍ତି ଅଛି ଏପରି ତାହାଙ୍କର ।
ଦେବଯାନ ଋଷିଙ୍କି ଶୁଣ ହେ ମୁନିବର ॥ ୧୫୫ ॥
ସପ୍ତର୍ଷିଙ୍କ ଦକ୍ଷିଣ ମାର୍ଗରେ ବିଦ୍ୟମାନ ।
ନାଗବୀଥି ଉପରେ ଅଛି ଯେ ଦେବଯାନ ॥ ୧୫୬ ॥
ଦେବଯାନ ନାମରେ ସେ ଯଉଂ ଦିବ୍ୟ ମାର୍ଗ ।
ତହିଁରେ ଯେତେ ଋଷି ଅଛନ୍ତି ମହାଭାଗ ॥ ୧୫୭ ॥
ସମସ୍ତେ ଉର୍ଦ୍ଧ୍ୱରେତା ସୁଶାନ୍ତ ମହାଯତି ।
ସୂର୍ଯ୍ୟଙ୍କର ଉତ୍ତର ପନ୍ଥାରେ ତାଙ୍କ ସ୍ଥିତି ॥ ୧୫୮ ॥
ଲୋଭଦ୍ୱେଷ ମୈଥୁନ କାମନା ଆଦି ଯେତେ ।
ଏମାନ କେତେବେଳେ ନଥାଇ ତାଙ୍କ ଚିତ୍ତେ ॥ ୧୫୯ ॥
କାହିଁରେ ଇଚ୍ଛା ଆଉ ନୁହଇଂ ତାହାଙ୍କର ।
ତନୟ ଉତ୍ପତ୍ତିରେ କେଦେଲା ବ୍ୟବହାର ॥ ୧୬୦ ॥
ରୂପ ରସ ରଶ ଶବଦ ଗନ୍ଧ ଯେତେ ।
ଏମାନ ନ ଜାଣନ୍ତି ସେମାନେ କଦାଚିତେ ॥ ୧୬୧ ॥
ଏଣୁ କରି ଦଇନ୍ୟ ପ୍ରଳୟ ପର୍ଯ୍ୟନ୍ତରେ ।
ଜୀବନ ମୁକ୍ତ ହୋଇ ବଞ୍ଚନ୍ତି ନିରନ୍ତରେ ॥ ୧୬୨ ॥
ସପ୍ତର୍ଷିଙ୍କ ଉତ୍ତର ଦିଗରେ ତପୋଧନ ।
ଉର୍ଦ୍ଧ୍ୱକୁ ଧ୍ରୁବଙ୍କର ଆଧାର ଯଉଂ ସ୍ଥାନ ॥ ୧୬୩ ॥
ତୃତୀୟ ବିଷ୍ଣୁପଦ ତାହାକୁ ଏକା କହି ।
ମୈତ୍ରେୟ ମହାମୁନି ଶୁଣହେ ମନଦେଇ ॥ ୧୬୪ ॥
ପାତକ ପଙ୍କ ଧୋଇ ଶ୍ରୀବିଷ୍ଣୁ ଭକ୍ତି ଜଳେ ।
ସଂଯତ ଆତ୍ମା ହୋଇ ବଞ୍ଚନ୍ତି ସବୁକାଳେ ॥ ୧୬୫ ॥
ସେ ଯଉଂ ଯତିମାନେ ତହିଁରେ ସ୍ଥାନକରି ।
ଆନନ୍ଦରେ ବଞ୍ଚନ୍ତି ଦିବସ ବିଭାବରୀ ॥ ୧୬୬ ॥
ଦୁଷ୍କୃତ ପୁଣ୍ୟେ କର୍ମ ଏମାନେ ହେଲେ କ୍ଷୟ ।
ତହିଁରେ ପ୍ରାଣୀମାନେ ବସନ୍ତି ମଇତ୍ରେୟ ॥ ୧୬୭ ॥
ଧ୍ରୁବ ଧର୍ମ ସହିତେ ଲୋକର ସାକ୍ଷୀ ହୋଇ ।
ଅତ୍ୟନ୍ତ ଆନନ୍ଦରେ ବିହରୁଛନ୍ତି ତହିଁ ॥ ୧୬୮ ॥

ଧର୍ମାଦିମାନଙ୍କରେ ସୁସାଧ୍ୟ ଯଉଂ ଯୋଗ ।
ତହିଂରେ ପ୍ରାପତ ସେ ଶୁଣହେ ମହାଭାଗ ॥ ୧୬୯ ॥
ସଚରାଚର ବିଶ୍ୱ ଉତ୍ପନ୍ନ ହୋଇ କରି ।
ଯହିଂରେ ଲୀନ ପୁଣି ହୁଅଇ ତପଚାରି ॥ ୧୭୦॥
ସମସ୍ତଙ୍କୁ ପ୍ରକାଶ କରିବା ବିଷୟରେ ।
ଯଉଂସ୍ଥାନ ବ୍ୟାପିଛି ଆଦିତ୍ୟ ପରକାରେ ॥ ୧୭୧ ॥
ବିବେକ ଜ୍ଞାନମାର୍ଗେ ଯାହାକୁ ଧ୍ୟାନକରି ।
ଯୋଗୀଜନେ ବଞ୍ଚନ୍ତି ଦିବସ ବିଭାବରୀ ॥ ୧୭୨ ॥
ସୂର୍ଯ୍ୟଙ୍କ ମେଢ଼ି ହୋଇ ଅଛନ୍ତି ଯହିଂ ଧ୍ରୁବ ।
ସେ ସ୍ଥାନର ମହିମା ବଚନେ କେ କହିବ ॥ ୧୭୩ ॥
ଧ୍ରୁବରେ ଜ୍ୟୋତିମାନେ ଅଛନ୍ତି ନିରନ୍ତର ।
ସେ ଜ୍ୟୋତି ବହିଅଛି ସକଳ ଜଳଧର ॥ ୧୭୪ ॥
ସେ ଯଉଂ ମେଘମାନେ ତାହାଙ୍କ ଠାରେ ପୁଣି ।
ସନ୍ତତ ହୋଇ ବୃଷ୍ଟି ଅଛି ହେ ମୁନିମଣି ॥ ୧୭୫ ॥
ବୃଷ୍ଟିରୁ ଜଳମାନେ ହୁଅନ୍ତି ଉତପନ ।
ସେ ଜଳ ସୁରନରେ କରନ୍ତି ସୁଖେ ପାନ ॥ ୧୭୬ ॥
ଜଳରୁଂ ଆଦ୍ୟାହୁତି ହୋଇଲେ ଉତପତି ।
ହବିର୍ଭୁକେ ତାହାକୁ ସର୍ବଦା ଭୁଞ୍ଜୁଥାନ୍ତି ॥ ୧୭୭ ॥
ହବିର୍ଭାଗ ଭୁଞ୍ଜନ୍ତି ସେ ଯଉଂ ଦେବମାନେ ।
ତାହାଙ୍କଠାରୁ ପ୍ରାଣୀ ଜନ୍ମନ୍ତି ପ୍ରତିଦିନେ ॥ ୧୭୮ ॥
ସାବଧାନେ ଶୁଣହେ ମାନସକରି ଧୀର ।
ସେ ବିଷ୍ଣୁ ପଦ କଥା ଅତ୍ୟନ୍ତ ଚମତ୍କାର ॥ ୧୭୯ ॥
ସକଳ ପ୍ରାଣୀଙ୍କର ଆଧାର ହୋଇ କରି ।
ସେ ଦିବ୍ୟସ୍ଥାନ ଗୋଟି ଅଛି ଯେ ତପଚାରି ॥ ୧୮୦ ॥
ସମସ୍ତ ପାପକ୍ଷୟ କରଇ ଯଉଂ ବାରି ।
ତହିରୁଂ ଏକା ସ୍ରବୁଛନ୍ତି ଯେ ସୁରେଶ୍ୱରୀ ॥ ୧୮୧ ॥
ବିଷ୍ଣୁଙ୍କ ବାମପାଦ ଅଙ୍ଗୁଷ୍ଠ ନଖ ତହୁଂ ।
ସର୍ବଦା ସ୍ରବ ହୋଇ ସଞ୍ଚରୁଛନ୍ତି ସେହୁ ॥ ୧୮୨ ॥
ଯାହାଙ୍କୁ ଧ୍ରୁବ ଧରି ଅଛନ୍ତି ସନ୍ତତରେ ।
ସେ ଗଙ୍ଗାର ମହିମା ଦୁର୍ଲ୍ଲଭ ଜଗତରେ ॥ ୧୮୩ ॥
ତଦନ୍ତେ ସେହି ଗଙ୍ଗାଜଳରେ ମୁନିବର ।
ସପ୍ତର୍ଷିମାନେ ସନ୍ଧ୍ୟା କରନ୍ତି ନିରନ୍ତର ॥ ୧୮୪ ॥
ଗଙ୍ଗାଙ୍କ ତରଙ୍ଗରେ ସେ ସପ୍ତଋଷିମାନେ ।
ଜଟା ଭାର କ୍ଷାଳନ କରନ୍ତି ପ୍ରତିଦିନେ ॥ ୧୮୫ ॥

ତାହାଙ୍କଠାରୁଂ ଯେବେ ପଡ଼ଇ ଗଙ୍ଗାବାରୀ ।
ଚନ୍ଦ୍ରବିମ୍ବକ୍ଷାଳିତ ହୁଅଇ ତପଚାରୀ ॥ ୧୮୬ ॥
ତେଣୁ କରି ଚନ୍ଦ୍ରମା କାନ୍ତିରେ ବିରାଜନ୍ତି ।
ଶୁଣିମା ହୋଉ ଆହେ ମୈତ୍ରେୟ ମହାଯତି ॥ ୧୮୭ ॥
ମେରୁ ପୃଷ୍ଠେ ସେ ଗଙ୍ଗା ପଡ଼ନ୍ତି ଯେତେବେଳେ ।
ଚତୁର୍ବିଧ ହୋଇ ସେ ବହନ୍ତି ତତକାଳେ ॥ ୧୮୮ ॥
ଅଳକନନ୍ଦା ସୀତା ବଂକ୍ଷୁ ଯେ ଭଦ୍ରାପୁଣି ।
ଏମନ୍ତେ ଚତୁର୍ବିଧା ଅମର ତରଙ୍ଗିଣୀ ॥ ୧୮୯ ॥
ଏକା ଗଙ୍ଗା ପୂରୁବ ସହିତେ ଚାରିଦିଶେ ।
ଚାରିଭାଗ ହୋଇ ସେ ବହନ୍ତି ଅତିତୋଷେ ॥ ୧୯୦ ॥
ଅଳକନନ୍ଦା ନାମେ ଦକ୍ଷିଣ ସୁରନଦୀ ।
ସର୍ବଦା କାଳେ ଶିରେ ବହନ୍ତି ସ୍ମରବାଦୀ ॥ ୧୯୧ ॥
ଶମ୍ଭୁଙ୍କର ଜଟାରୁ ପଡ଼ିଲା ମାତ୍ରକରେ ।
ଅସ୍ଥି ଚୂର୍ଣ୍ଣ କ୍ଷାଳିତ କରନ୍ତି ନିରନ୍ତରେ ॥ ୧୯୨ ॥
ସଗର ସୁତଙ୍କର ଅସ୍ଥିକି ଧୌତ କରି ।
ଅବହେଳେ ତାହାଙ୍କୁ ତାରିଲେ ସୁରେଶ୍ୱରୀ ॥ ୧୯୩ ॥
ଯାହାର ଜଳେ ଶିର ବୁଡ଼ାଇ ଦେବାମାତ୍ରେ ।
ପାତକ ନରହଇ ପାତକୀ ଜନଗାତ୍ରେ ॥ ୧୯୪ ॥
ଅପୂର୍ବ ପୁଣ୍ୟ ଆସି ହୁଅଇ ପରାପତ ।
ସାବଧାନେ ଶୁଣ ହେ ମୈତ୍ରେୟ ତପୋବନ୍ତ ॥ ୧୯୫ ॥
ଯଙ୍ଗ ଜଳ ତର୍ପଣ କରିବା ମାତ୍ରେ ପୁତ୍ର ।
ତିନିବର୍ଷ ସଂତୃପ୍ତ ହୁଅନ୍ତି ନିଜ ଗୋତ୍ର ॥ ୧୯୬ ॥
ଯହିଂରେ ଯାଗ କରି ନୃପତି ଦ୍ୱିଜମାନେ ।
ଯଜ୍ଞନାଥ ବିଷ୍ଣୁଙ୍କୁ ପୂଜନ୍ତି ତୋଷମନେ ॥ ୧୯୭ ॥
ତେଣୁ କରି ସମୃଦ୍ଧି ଲଭନ୍ତି ପ୍ରତିଦିନେ ।
ସେ ଗଙ୍ଗା ମହିମା କେହୁ କହିବ ବଚନେ ॥ ୧୯୮ ॥
ଯାହାର ଜଳେ ସ୍ନାନ କରିବା ମାତ୍ରେ ଯତି ।
ପାତକପଙ୍କମାନ କ୍ଷାଳିତ କରୁଛନ୍ତି ॥ ୧୯୯ ॥
କେଶବ ଶ୍ରୀଚରଣେ ନିବେଶି ସ୍ଥିରମନ ।
ଅବହେଳେ ଲଭନ୍ତି ନିର୍ବାଣପଦେ ସ୍ଥାନ ॥ ୨୦୦ ॥
ଯାହାର ନାମ ଶୁଣି ଯାହାକୁ ନେତ୍ରେ ଚାହିଁ ।
ଯାହାକୁ ପାନ କରିଂ ଯାହାର ଜଳଛୁଇଂ ॥ ୨୦୧ ॥
ଯା କୀର୍ତ୍ତନ ଉଚ୍ଚରେ ଉଚ୍ଚାରି ପ୍ରାଣୀମାନେ ।
ପାତକ ସମୁହରୁଂ ତରନ୍ତି ପ୍ରତିଦିନେ ॥ ୨୦୨ ॥

ଗଙ୍ଗା ଗଙ୍ଗା ଏମନ୍ତ ଉଚ୍ଚାରି ଦେବାମାତ୍ରେ ।
ତିନିଜନ୍ମ ପାତକ ରହଇ ନାହିଁ ଗାତ୍ରେ ।। ୨୦୩ ।।
ଏମନ୍ତ ବିଷ୍ଣୁ ପଦସ୍ଥଳରୁଂ ଅବତରି ।
ତ୍ରିଭୁବନ ପବିତ୍ର କରନ୍ତି ସୁରେଶ୍ୱରୀ ।। ୨୦୪ ।।
ସୂର୍ଯ୍ୟଙ୍କ ଚରିତ ଏ ଅପୂର୍ବ ସୁଧାରସ ।
ସର୍ବଶୁଭେ ଅଷ୍ଟମ ଅଧାୟ ହେଲା ଶେଷ ।। ୨୦୫ ।।
ଶ୍ରୀବିଷ୍ଣୁପୁରାଣାଙ୍କ ଦ୍ୱିତୀୟ ଅଂଶଗୀତ ।
ସୂର୍ଯ୍ୟଙ୍କ ଗତାଗତ ପ୍ରମାଣ ସୁଚରିତ ।। ୨୦୬ ।।
ଚିନ୍ତିଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୨୦୭ ।।

# ନବମ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ଶିଶୁମାର ଚକ୍ରକୁ କରିବା ଏବେ ଖ୍ୟାତ ॥ ୧ ॥
ବିଷ୍ଣୁଙ୍କ ତାରାମୟ ଆକୃତି ଶିଶୁମାର ।
ଅନ୍ତରୀକ୍ଷ ପ୍ରାଙ୍ଗଣେ ଭ୍ରମଇଂ ମୁନିବର ॥ ୨ ॥
ସେ ଯଉଂ ଭୁଜଙ୍ଗମ ତାହାର ପୁଚ୍ଛସ୍ଥାନେ ।
ନିବାସ କରି ଧ୍ରୁବ ଅଛନ୍ତି ପ୍ରତିଦିନେ ॥ ୩ ॥
ସେ ଶିଶୁମାର ଚକ୍ର ଭ୍ରମଇଂ ମୁନିବର ।
ତାତୁଲେ ଗ୍ରହମାନେ ଭ୍ରମନ୍ତି ନିରନ୍ତର ॥ ୪ ॥
ରବିଚନ୍ଦ୍ର ସହିତେ ସକଳ ଗ୍ରହମାନେ ।
ନକ୍ଷତ୍ରମାନେ ମଧ ଭ୍ରମନ୍ତି ପ୍ରତିଦିନେ ॥ ୫ ॥
ଧ୍ରୁବ ମଧ ତହିଂରେ ଭ୍ରମନ୍ତି ଚକ୍ରପରି ।
ସାବଧାନେ ଶୁଣିମା ହୋଉ ହେ ତପଚାରି ॥ ୬ ॥
ସୂର୍ଯ୍ୟଚନ୍ଦ୍ର ସହିତେ ଯେତେକ ଗ୍ରହଗଣ ।
ନକ୍ଷତ୍ରମାନେ ଯେତେ ତପସ୍ୱୀ ଆଭରଣ ॥ ୭ ॥
ଏ ସମସ୍ତେ ପବନମାନଙ୍କେ ବନ୍ଧ ହୋଇ ।
ଧ୍ରୁବରେ ନିରନ୍ତରେ ଅଛନ୍ତି ଯତ୍ନ ହୋଇ ॥ ୮ ॥
ସେ ଯଉଂ ବାୟୁରଜ୍ଜୁ ଅଟନ୍ତି ତପୋଧନ ।
ଶୁଣ ଏବେ କହିବା ତାହାଙ୍କ ନାମମାନ ॥ ୯ ॥
ଆବହ ପ୍ରବହ ଯେ ତଦନ୍ତେ ଅନୁବହ ।
ସଂବହ ବିବହ ଯେ ଆବର ପରାବହ ॥ ୧୦ ॥
ପରିବହ ସହିତେ ଏ ଯଉଂ ବାୟୁମାନେ ।
ଧ୍ରୁବରେ ଧୃତ ହୋଇ ଅଛନ୍ତି ସୁବିଧାନେ ॥ ୧୧ ॥
ଜ୍ୟୋତିମୟ ଅଟନ୍ତି ସେ ଯଉଂ ଶିଶୁମାର ।
ସେ ଚକ୍ରର ଆକୃତି ଶୁଣ ହେ ମୁନିବର ॥ ୧୨ ॥
ଆପଣେ ନାରାୟଣ ଆଧାର ହୋଇ କରି ।
ସେ ଶିଶୁମାର ହୃଦେ ଅଛନ୍ତି ତପଚାରି ॥ ୧୩ ॥
ନାରାୟଣ ଚରଣେ ଆରାଧି ତପୋଧନ ।
ଶିଶୁମାର ପୁଚ୍ଛରେ ଧ୍ରୁବର ହେଲା ସ୍ଥାନ ॥ ୧୪ ॥
ଧ୍ରୁବଙ୍କର ଆଧାର ଅଟଇ ଶିଶୁମାର ।
ଧ୍ରୁବପୁଣି ଆଧାର ଅଟନ୍ତି ସୂର୍ଯ୍ୟଙ୍କର ॥ ୧୫ ॥

ଜଗତର ଆଧାର ଅଟନ୍ତି ଛାୟାଈଶ ।
ସାବଧାନେ ଶୁଣ ହେ ତପସ୍ୱୀ ଅବତଂସ ॥ ୧୬ ॥
ଅଷ୍ଟମାସେ ଆଦିତ୍ୟ କିରଣମାନଙ୍କରେ ।
ସଲିଳମାନହରି ଆଣନ୍ତି ତୋଷ ଭରେ ॥ ୧୭ ॥
ସଲିଳମାନେ ନାନାପ୍ରକାର ଏ ଜଗତେ ।
ତଟିନୀରୁ ଆଦିତ୍ୟ ଆଣନ୍ତି କେତେକେତେ ॥ ୧୮ ॥
ଦେବଖାତ ସହିତେ ଅଛନ୍ତି ଆଉ ଯେତେ ।
ସେ ଜଳ ମଧ ହରି ଆଣନ୍ତି ହୃଷ୍ଟ ଚିତ୍ତେ ॥ ୧୯ ॥
ସମୁଦ୍ରରୁ ଆଦିତ୍ୟ ଆଣନ୍ତି କେତେଜଳ ।
ସେମାନେ ଭୌମ ସଂଜ୍ଞା ବହନ୍ତି ସାଧୁଶୀଳ ॥ ୨୦ ॥
ପ୍ରାଣୀଙ୍କଠାରୁ ହରି ଆଣନ୍ତି କେତେବାରି ।
ସାବଧାନେ ଶୁଣ ହେ ମୈତ୍ରେୟ ତପଚାରି ॥ ୨୧ ॥
ଚାରିଗୋଟି ମାସରେ ଛାୟାଙ୍କ ପ୍ରାଣପତି ।
ସେ ଜଳମାନ ସବୁ ମହୀରେ ବରଷନ୍ତି ॥ ୨୨ ॥
ସେ ଜଳ ବରଷିଲେ ହୁଅଇ ଅନ୍ନ ଜାତ ।
ସେ ଅନ୍ନରୁ ଉତ୍ପନ୍ନ ଅଟଇ ଏ ଜଗତ ॥ ୨୩ ॥
ଯଉଂ ରୂପେ ଆଦିତ୍ୟ ହରନ୍ତି ଜଳମାନ ।
ସେ ପ୍ରକାର କହିବା ଶୁଣ ହେ ତପୋଧନ ॥ ୨୪ ॥
କିରଣରେ ସଲିଳ ହରନ୍ତି ଦିବାକର ।
ସେ ସଲିଳରେ ପୁଷ୍ଟ ହୁଅନ୍ତି ଶଶଧର ॥ ୨୫ ॥
କିରଣମାନଙ୍କରେ ପଙ୍କଜବନପତି ।
ସେ ଜଳକୁ ଶଶାଙ୍କ ବିମ୍ବରେ ନିବେଶନ୍ତି ॥ ୨୬ ॥
ଏଣୁ କରି ଆକାଶେ ଅତ୍ୟନ୍ତ ପୁଷ୍ଟ ହୋଇ ।
କଳାକର ଅଛନ୍ତି ସର୍ବଦା କାଳେ ରହି ॥ ୨୭ ॥
ବାୟୁ ନାଡ଼ିମାନଙ୍କେ କୁମୁଦବନକାନ୍ତ ।
ମେଘରେ ଜଳପୂର୍ଣ୍ଣ କରନ୍ତି ଅବିରତ ॥ ୨୮ ॥
ମେଘଙ୍କର ସ୍ୱରୂପ ଶୁଣ ହେ ମୁନିବର ।
ଧୂମଜ୍ୟୋତି ପବନ ତାହାଙ୍କ କଳେବର ॥ ୨୯ ॥
ଧୂମଜ୍ୟୋତିପବନେ ନିର୍ମିତ ଯଉଂ ମେଘ ।
କାଳରେ ଏକା ବୃଷ୍ଟି କରନ୍ତି ମହାଭାଗ ॥ ୩୦ ॥
କାଳବିନା ତହିଁରୁ ପଡ଼ଇ ନାହିଁ ଜଳ ।
ସାବଧାନେ ଶୁଣ ହେ ମୈତ୍ରେୟ ସାଧୁଶୀଳ ॥ ୩୧ ॥
ଆଉ ଏକ ପ୍ରକାର ବରଷା ଏବେ ଶୁଣ ।
ତୁମ୍ଭ ଆଗେ କହିବା ତପସ୍ୱୀ ଆଭରଣ ॥ ୩୨ ॥

ସମରକ୍ଷମାନଙ୍କେ ଛାୟାଙ୍କ ପ୍ରାଣପତି ।
ଯେବଣ ଜଳ ଆଣି ମହୀରେ ବରଷନ୍ତି ।। ୩୩ ।।
ତାହାକୁ ସ୍ପରଶ କଲା ମାତ୍ରେ ପାପୀନର ।
ପାତକ ସମୁଦ୍ରରୁ ତରଇ ତତପର ।। ୩୪ ।।
ସ୍ୱର୍ଗଙ୍ଗାରୁ ସେ ଜଳ କିରଣେ ଘେନି ଆଣି ।
ମେଘ ବିନା ମହୀରେ ବର୍ଷନ୍ତି ଦିନମଣି ।। ୩୫ ।।
କୃତ୍ତିକାଦି ବିଷମ ନକ୍ଷତ୍ରେ ତପୋଧନ ।
ଯେତେବେଳେ ପ୍ରବେଶ ହୁଅନ୍ତି ବିକର୍ତ୍ତନ ।। ୩୬ ।।
ଦିଗ୍ଦନ୍ତିମାନେ ଶୁଣ୍ଡାଦଣ୍ଡରେ ଆଣିକରି ।
ମହୀରେ ବରଷନ୍ତି ଆକାଶ ଗଙ୍ଗାବାରି ।। ୩୭ ।।
ସେ ଜଳ ସ୍ପର୍ଶ ହେଲେ ନୁହଇ ନର୍କଗତି ।
ତାହାକୁ ଦିବ୍ୟସ୍ନାନ ବୋଲି ହେ ମହାଯତି ।। ୩୮ ।।
ସେ ଦିବ୍ୟସ୍ନାନ ବେନି ପ୍ରକାରେ ଏ ରୂପରେ ।
ମୁନିକୁଳ ମୁକୁଟ ଶୁଣ ହେ ତୋଷ ଭରେ ।। ୩୯ ।।
ଜଳଦମାନେ ଯଉଂ ସଲିଳ ବରଷନ୍ତି ।
ଔଷଧୀମାନେ ତହିଁ ପୁଷ୍ଟ ଯେ ହୋଉଥାନ୍ତି ।। ୪୦ ।।
ସେ ଯେବଣ ଔଷଧୀ ତହିଁରେ ତପୋଧନ ।
ଜୀବନକୁ ପାଳନା କରନ୍ତି ସର୍ବଜନ ।। ୪୧ ।।
ସେ ଔଷଧୀମାନଙ୍କେ ପଣ୍ଡିତ ପ୍ରାଣୀମାନେ ।
ବିବିଧ ଯାଗମାନ କରନ୍ତି ପ୍ରତିଦିନେ ।। ୪୨ ।।
ସେ ଯାଗରେ ସନ୍ତୋଷ ହୁଅନ୍ତି ସୁରଗଣ ।
ମୈତ୍ରେୟ ମୁନିବର ନିଶ୍ଚଳ ମନେ ଶୁଣ ।। ୪୩ ।।
ଏପରି ଦେବଯାଗ ବ୍ରାହ୍ମଣ ଆଦି ଯେତେ ।
ଏ ସମସ୍ତେ ଉତ୍ପନ୍ନ ହୁଅନ୍ତି ତୋଷଚିତ୍ତେ ।। ୪୪ ।।
ବୃଷ୍ଟିରୁଂ ଉତ୍ପତ୍ତି ଯେ ହୁଅନ୍ତି ଅନ୍ନମାନେ ।
ଅନ୍ନରେ ଏକାପ୍ରାଣ ପୋଷନ୍ତି ସର୍ବଜନେ ।। ୪୫ ।।
ଶୁଣିମା ହୋଉ ଆହେ ତପସ୍ୱୀ ଅବତଂଶ ।
ସର୍ବ ଶୁଭେ ନବମ ଅଧ୍ୟାୟ ହେଲା ଶେଷ ।। ୪୬ ।।
ଶ୍ରୀବିଷ୍ଣୁପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ଶିଶୁମାର ଚକ୍ରର ସଂସ୍ଥିତି ସୁଚରିତ ।। ୪୭ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୪୮ ।।

# ଦଶମ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣ ହେ ତପୋବନ୍ତ ।
ଗଗନ ମାର୍ଗରେ ଯେ ଭ୍ରମନ୍ତି ଛାୟାକାନ୍ତ ।। ୧ ।।
ସେ ରବିଙ୍କ ଉତ୍ତର ଦକ୍ଷିଣମାର୍ଗ ବେନି ।
ତା ମଧ୍ୟେ ଅଶୀଗୋଟି ମଣ୍ଡଳ ଅଛି ପୁଣି ।। ୨ ।।
ଉତ୍ତରାୟଣ ହେଲେ କମଳ ବନପତି ।
ଚାଳିଶମଣ୍ଡଳକୁ କ୍ରମରେ ଆରୋହନ୍ତି ।। ୩ ।।
ଦକ୍ଷିଣାୟନେ ଆର ଚାଳିଶ ମଣ୍ଡଳରେ ।
କର୍ମେ ଅବରୋହଣ କରନ୍ତି ନିରନ୍ତରେ ।। ୪ ।।
ବଡ଼ ଅଖେ କନିଷ୍ଠ ଅଖ ଯେ ମହାଭାଗ ।
ବଡ଼ ଯୁଗ ଉପରେ ସେପରି ସାନ ଯୁଗ ।। ୫ ।।
ସେ ଅଖ ସେ ଯୁଗର ଅଗ୍ରରେ ତପଚାରି ।
ବାତରଜ୍ଜୁ ବାନ୍ଧିଯେ ଅଛନ୍ତି ଧ୍ରୁବଧରି ।। ୬ ।।
ସେରଜ୍ଜୁକୁ ଅଳପ ଆକୃଷ୍ଟ କରୁଥିଲେ ।
ଆରୋହନ୍ତି ଆଦିତ୍ୟ ଚାଳିଶି ମଣ୍ଡଳରେ ।। ୭ ।।
ସେ ଯେଉଁ କାଳ ଗୋଟି ତପସ୍ୱୀ କୁଳସାଇଁ ।
ଉତ୍ତରାୟଣ ବୋଲି ତାହାକୁ ଏକା କହି ।। ୮ ।।
ଧ୍ରୁବ ଯେବେ ସେ ରଜ୍ଜୁକୁ କରନ୍ତି କ୍ରମେ ଶ୍ଳଥ ।
ଚାଳିଶି ମଣ୍ଡଳରେ ଖସଇ ରବି ରଥ ।। ୯ ।।
ଦକ୍ଷିଣାୟନ କାଳ ତାହାକୁ ଏକା ବୋଲି ।
ଏମନ୍ତେ ଆକାଶରେ ଭ୍ରମନ୍ତି କରମାଳୀ ।। ୧୦ ।।
ବରଷକେ ଅଶୀମଣ୍ଡଳ ଯାକରେ ଭ୍ରମି ।
ଗଗନେ ସଞ୍ଚରନ୍ତି ପଙ୍କଜବନସ୍ୱାମୀ ।। ୧୧ ।।
ଗନ୍ଧର୍ବ ଅପସରା ଆବର ଦିବାକର ।
ଗ୍ରାମଣି ମହୋରଗ ରାକ୍ଷସ ସର୍ବସୁର ।। ୧୨ ।।
ଏମନ୍ତେ ସପ୍ତଗଣ ସୂର୍ଯ୍ୟଙ୍କ ରଥେ ରହି ।
ପ୍ରତିମାସେ ଅଛନ୍ତି ଅତ୍ୟନ୍ତ ହୃଷ୍ଟ ହୋଇ ।। ୧୩ ।।
ବାସୁକି ହେତିଦୈତ୍ୟ ତୁମ୍ବୁରୁ ରଥକୃତ ।
ବିଧାତା କୃତସ୍ଥଳା ଯେ ଆବର ପୁଲସ୍ତ୍ୟ ।। ୧୪ ।।
ଏମାନେ ଚୈତ୍ରମାସେ ବସନ୍ତି ରବିରଥେ ।
ମୈତ୍ରେୟ ମହାମୁନି ଶୁଣ ହେ ତୋଷଚିତ୍ତେ ।। ୧୫ ।।

ଅର୍ଯ୍ୟମା ପ୍ରହେତି ଯେ ପୁଲହ କଛ ନୀର ।
ପୁଞ୍ଜିକସ୍ଥଳା ପୁଣି ରଥୌଜା ବିଷଧର ॥ ୧୬ ॥
ବୈଶାଖ ମାସେ ରବି ରଥରେ ବାସ କରି ।
ଆନନ୍ଦରେ ବଞ୍ଚନ୍ତି ଦିବସ ବିଭାବରୀ ॥ ୧୭ ॥
ମିତ୍ର ଅତ୍ରି ତକ୍ଷକ ମେନକା ପୌରୁଷେୟ ।
ହାହା ରଥସ୍ୱନ ଯେ ଋଷଭ ମଇତ୍ରେୟ ॥ ୧୮ ॥
ଜ୍ୟେଷ୍ଠମାସେ ଏମାନେ ରବିଙ୍କ ରଥେ ରହି ।
ଆନନ୍ଦେ ବିହରନ୍ତି ଶୁଣ ହେ ମନଦେଇ ॥ ୧୯ ॥
ବଶିଷ୍ଠ ସହଜନ୍ୟାବରୁଣ ହୂହୁ ରମ୍ଭା ।
ରଥଚିତ୍ର ପର୍ଜନ୍ୟ ବୁଧ ଏ ଅତିଶୋଭା ॥ ୨୦ ॥
ଆଷାଢ଼ରେ ଏମାନେ ବିହରି ରବି ରଥେ ।
ରାତ୍ରି ଦିବା ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟ ଚିତ୍ତେ ॥ ୨୧ ॥
ବିଶ୍ୱାବସୁ ବାସବ ସ୍ରୋତ ଯେ ଏଳାପତ୍ର ।
ପ୍ରମ୍ଳୋଚା ଅଙ୍ଗିରା ଯେ ଆବର ତପୋବନ୍ତ ॥ ୨୨ ॥
ଶ୍ରାବଣରେ ଏମାନେ ରବିଙ୍କ ବିମାନରେ ।
ନିବାସ କରି କାଳ ବଞ୍ଚନ୍ତି ଆନନ୍ଦରେ ॥ ୨୩ ॥
ଆପୂରଣ ଭୃଗୁ ଅନୁମ୍ଳୋଚା ଉଗ୍ରସେନ ।
ଶଙ୍ଖପାଳ ବ୍ୟାଘ୍ର ଯେ ତଦନ୍ତେ ବିବସ୍ୱାନ ॥ ୨୪ ॥
ଭାଦ୍ରପଦେ ଏମାନେ ରବିଙ୍କ ରଥେ ବସି ।
ଅତ୍ୟନ୍ତ ଆନନ୍ଦରେ ବଞ୍ଚନ୍ତି ଦିବାନିଶି ॥ ୨୫ ॥
ସୁରୁଚି ପୂଷା ବାଚ ଗୌତମ ଧନଞ୍ଜୟ ।
ଅଶ୍ୱଯୁକ୍ତ ଘୃତାଚୀ ସୁଷେଣ ମଇତ୍ରେୟ ॥ ୨୬ ॥
ଆଶ୍ୱିନରେ ବିହାର କରନ୍ତି ରବିରଥେ ।
ଶୁଣିମା ହୋଉ ମୁନି ଅତ୍ୟନ୍ତ ହୃଷ୍ଟଚିତେ ॥ ୨୭ ॥
ବିଶ୍ୱାବସୁ ପର୍ଜନ୍ୟ ଆବର ଐରାବ୍ରତ ।
ଭରଦ୍ୱାଜ ଆପ ଯେ ବିଶ୍ୱାଚୀ ସେନର୍ଜିତ ॥ ୨୮ ॥
କାର୍ତ୍ତିକରେ ଏମାନେ ମୈତ୍ରେୟ ମୁନିବର ।
ସୂର୍ଯ୍ୟଙ୍କ ବିମାନରେ କରନ୍ତି ଅଧିକାର ॥ ୨୯ ॥
ଅଂଶୁକ ଅଶ୍ୱପତି ଅର୍ଯ୍ୟମା ଚିତ୍ରସେନ ।
ବିଦ୍ୟୁତ ମହାପଦ୍ମ ଉର୍ବଶୀ ତପୋଧନ ॥ ୩୦ ॥
ମାର୍ଗଶିର ମାସରେ ଆଦିତ୍ୟ ରଥେ ରହି ।
ଦିନମାନ ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟ ହୋଇ ॥ ୩୧ ॥
କ୍ରତୁଭଗ ଊର୍ଣ୍ଣାୟୁ ସ୍ଫୂର୍ଜକ କର୍କୋଟକ ।
ଅରିଷ୍ଟନେମି ଆଦି ଏ ଯେତେ ଗଣଯାକ ॥ ୩୨ ॥

ପୂର୍ବ୍ବଚିତ୍ତି ଅପସରା ସହିତେ ତପୋଧନ ।
ପୁଷମାସେ କରନ୍ତି ରବିଙ୍କ ରଥେ ସ୍ଥାନ ।। ୩୩ ।।
ତ୍ୱଷ୍ଟା ଯମଦଗ୍ନି ଯେ କମ୍ବଳ ବ୍ରହ୍ମାପେତ ।
ଧୃତରାଷ୍ଟ୍ର ଋତଜୟେ ଯେତେ ତପୋବନ୍ତ ।। ୩୪ ।।
ତିଳୋତ୍ତମା ସହିତେ ମକର ମାସ ହେଲେ ।
ରବିଙ୍କ ବିମାନରେ ବସନ୍ତି ଅତିଭୋଳେ ।। ୩୫ ।।
ବିଷ୍ଣୁ ଅଶ୍ୱତରଜେ ଆବର ସତ୍ୟଜିତ ।
ରମ୍ଭା ବିଶ୍ୱାମିତ୍ର ଯେ ରାକ୍ଷସ ଯଜ୍ଞୋପେତ ।। ୩୬ ।।
ଫାଲ୍‌ଗୁନରେ ଏମାନେ ଆଦିତ୍ୟ ରଥେ ରହି ।
ରାତ୍ରିଦିବା ବଞ୍ଚନ୍ତି ଅତ୍ୟନ୍ତ ହୃଷ୍ଟ ହୋଇ ।। ୩୭ ।।
ସୂର୍ଯ୍ୟଙ୍କ ମଣ୍ଡଳରେ ଅଛି ଯେ ବିଷ୍ଣୁ ଶକ୍ତି ।
ସେ ଘେନି ସୂର୍ଯ୍ୟ ପାଦେ କରନ୍ତି ଜନେ ଭକ୍ତି ।। ୩୮ ।।
ସକଳ ମୁନିମାନେ ସୂର୍ଯ୍ୟଙ୍କୁ ସ୍ତୁତି କରି ।
ଆନନ୍ଦରେ ବଞ୍ଚନ୍ତି ଦିବସ ବିଭାବରୀ ।। ୩୯ ।।
ଗନ୍ଧର୍ବଗଣମାନେ ତୋଷନ୍ତି ରବିଚିତ୍ତ ।
ଅପ୍‌ସରାମାନେ ନୃତ୍ୟ କରନ୍ତି ଅବିରତ ।। ୪୦ ।।
ରାକ୍ଷସଗଣମାନେ ଆବର ନିଶାଚର ।
ପନ୍ନଗ ଗଣମଧ ବହନ୍ତି ତାଙ୍କ ଭାର ।। ୪୧ ।।
ଯକ୍ଷମାନେ ସଂଗ୍ରହ କରନ୍ତି ଇଷ୍ଟ କର୍ମ ।
ବାଳଖିଲ୍ୟା ପାଳନ୍ତି ସହଜ ସେବାଧର୍ମ ।। ୪୨ ।।
ଏ ଯଉଂ ସପ୍ତଗଣ ମାସକୁ ମାସ ସେବି ।
ନିରନ୍ତରେ ପ୍ରସନ୍ନ କରାଉଥାନ୍ତି ରବି ।। ୪୩ ।।
ହିମ ଉଷ୍ଣ ସଲିଳ ବୃଷ୍ଟିକି ହେତୁ ହୋଇ ।
ସର୍ବଦା ଅଛନ୍ତି ଆଦିତ୍ୟଙ୍କ ରଥେ ରହି ।। ୪୪ ।।
ସଂକ୍ଷେପରେ ସେମାନ କଲୁ ଯେ ପରକାଶ ।
ସର୍ବଶୁଭେ ଦଶମ ଅଧାୟ ହେଲା ଶେଷ ।। ୪୫ ।।
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ସୂର୍ଯ୍ୟଙ୍କର ପ୍ରୟାଣବର୍ଣ୍ଣନା ସୁଚରିତ ।। ୪୬ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୪୭ ।।

# ଏକାଦଶ ଅଧ୍ୟାୟ

ପରାଶର ବଚନେ ମୈତ୍ରେୟ ମୁନିବର ।
ଆନନ୍ଦେ ପଚାରନ୍ତି ଅଞ୍ଜଳି କରି କର ।। ୧ ।।
ରବିଙ୍କ ସପ୍ତଗଣମାନର କଥାମାନ ।
ଯାହା ଏବେ ମୋ ଆଗେ କହିଲ ତପୋଧନ ।। ୨ ।।
ହିମ ଉଷ୍ଣ ସଲିଳ ବୃଷ୍ଟିକି ହେତୁ ହୋଇ ।
ରବିଙ୍କ ଗଣମାନେ ଅଛନ୍ତି ସୁଖେ ରହି ।। ୩ ।।
ଏମନ୍ତ ବୋଲି ଯାହା କହିଲ ତପୋବନ୍ତ ।
ତୁମ୍ଭର କରୁଣାରୁ ଶୁଣିଲି ସେ ଚରିତ ।। ୪ ।।
ଗନ୍ଧର୍ବ ଋଷି ସପ୍ତରାକ୍ଷସ ବାଳଖିଲ୍ୟା ।
ଅପସରା ଆଦିକରି କରନ୍ତି ଯଉଂ ଲୀଳା ।। ୫ ।।
ତା ହି ମଧ ମୋ ଆଗେ କହିଲ ତପୋଧନ ।
ଶୁଣିମାରୁ ସଂଶୟ ଲାଗୁଛି ମୋର ମନ ।। ୬ ।।
ବିଷ୍ଣୁ ଶକ୍ତି ସକାଶୁଁ ଆତ୍ମାକୁ ବହିଂ କରି ।
ଯକ୍ଷଗଣମାନେ ଯେ ଅଛନ୍ତି ତପଚାରି ।। ୭ ।।
ସେମାନେ କି କି କର୍ମ କରନ୍ତି ରବି ରଥେ ।
ସେ କଥାମାନସରୁ କହିବା ହୋଉ ମୋତେ ।। ୮ ।।
ହିମ ଉଷ୍ଣ ସଲିଳମାନଙ୍କୁ ବୃଷ୍ଟି କରି ।
ସମସ୍ତ ଗଣମାନେ ଅଛନ୍ତି ତପଚାରି ।। ୯ ।।
ସୂର୍ଯ୍ୟଙ୍କଠାରୁ ବୃଷ୍ଟି ହୋଉଛି କି ରୂପରେ ।
ଏ ମୋହର ସଂଶୟ ଫେଡ଼ ହେ ସନ୍ତୋଷରେ ।। ୧୦ ।।
ରବିଯେ ଅଷ୍ଟ ମାସେ ଜଳକୁ ହରି ଆଣି ।
ଚାରିମାସେ ବର୍ଷଇ ତପସ୍ୱୀ ଚୂଡ଼ାମଣି ।। ୧୧ ।।
ଆଦିତ୍ୟ ସଂସପ୍ତକ ଗଣଏ ଦୁହିଂଙ୍କର ।
ସମାନ କର୍ମଟିକି କହହେ ପରାଶର ।। ୧୨ ।।
ବୋଲନ୍ତି ପରାଶର ଶୁଣହେ ତପୋଧନ ।
ସଂସପ୍ତକ ଗଣରେ ଯେମନ୍ତ ବିକର୍ତ୍ତନ ।। ୧୩ ।।
ସେହିପରି ସଂସାରେ ପ୍ରଧାନ ବିଷ୍ଣୁଶକ୍ତି ।
ଋଗ୍ ଯଜୁ ସାମ ତିନି ସଂଜ୍ଞାକୁ ସେ ବହନ୍ତି ।। ୧୪ ।।
ସେ ଯଉଂ ତିନି ଶକ୍ତି ପରମବ୍ରହ୍ମଙ୍କର ।
ସେହିମାତ୍ର ହରନ୍ତି ଅଶେଷ ଲୋକଭାର ।। ୧୫ ।।
ସେ ଯେ ଦଶଶକ୍ତି ସେ ସାକ୍ଷାତେ ବିଷ୍ଣୁ ସେହି ।
ଜଗତପାଳିବାକୁ ଅଛନ୍ତି ଜାତ ହୋଇ ।। ୧୬ ।।
ଯେ ଯଉଂ ତିନିଶକ୍ତି ସେ ଏକା ନିରନ୍ତର ।
ସୂର୍ଯ୍ୟବିମ୍ବ ମଧରେ ଅଛନ୍ତି ନିରନ୍ତର ।। ୧୭ ।।

ଯେଉଁ ମାସେ ଯେବଣ ଆଦିତ୍ୟ ବିହରନ୍ତି ।
ତାହାଙ୍କଠାରେ ଯାଇ ରହନ୍ତି ତିନିଶକ୍ତି ॥ ୧୮ ॥
ଋକଶକ୍ତି ପୂର୍ବାହ୍ନେ କରନ୍ତି ପରକାଶ ।
ମଧ୍ୟାହ୍ନେ ଯଜୁ ଶକ୍ତି ତପନ୍ତି ମୁନିହଂସ ॥ ୧୯ ॥
ସାୟାହ୍ନେ ସାମଶକ୍ତି ସୂର୍ଯ୍ୟଙ୍କଠାରେ ରହି ।
ଅସ୍ତାଚଳେ ପ୍ରବେଶ କରନ୍ତି ଆପେ ନେଇଁ ॥ ୨୦ ॥
ଋକ୍‌ଯଜୁ ସାମ ଯେ ଏ ଯେଉଁ ତିନିଶକ୍ତି ।
ବିଷ୍ଣୁଙ୍କର ଅଙ୍ଗସେ ଶୁଣହେ ମହାଯତି ॥ ୨୧ ॥
ଆଦିତ୍ୟ ମଣ୍ଡଳରେ ସେ ଯେଉଁ ତିନିଶକ୍ତି ।
କେବଳ ବିଷ୍ଣୁଙ୍କର ସ୍ୱରୂପ ସେ ନୁହନ୍ତି ॥ ୨୨ ॥
ବ୍ରହ୍ମା ବିଷ୍ଣୁ ଶଙ୍କର ସେ ଯେଉଁ ତିନି ଦେବ ।
ତିନିଶକ୍ତି ସ୍ୱରୂପେ ସୂର୍ଯ୍ୟରେ କଲେ ଠାବ ॥ ୨୩ ॥
ସର୍ଜନାରେ ବିଧାତା ଋଙ୍ମୟ ତନୁ ବହି ॥
ସୃଷ୍ଟିମାନ କରନ୍ତି ଶୁଣହେ ମନଦେଇ ॥ ୨୪ ॥
ସ୍ଥିତିକାଳେ ବିଷ୍ଣୁ ଯେ ଅଟନ୍ତି ଯର୍ଜୁମୟ ।
ତେଣୁ କରି ପାଳନା କରନ୍ତି ମଇତ୍ରେୟ ॥ ୨୫ ॥
ସାମମୟ ସ୍ୱରୂପୀ ଅଟନ୍ତି ମହେଶ୍ୱର ।
ଅବହେଳେ ସଂହାର କରନ୍ତି ଚରାଚର ॥ ୨୬ ॥
ଏହିପରି ସାତ୍ତ୍ୱିକ ଶକ୍ତି ସେ ବିଷ୍ଣୁଙ୍କର ।
ଛନ୍ଦତ୍ରୟୀ ସ୍ୱରୂପେ ହୋଇଛି ଅବତାର ॥ ୨୭ ॥
ସଂସପ୍ତକଗଣରେ ହୋଇଛି ବିକର୍ତ୍ତନ ।
ତାହାଙ୍କ ମଧେ ଶକ୍ତି କରିଛି ଯାଇ ସ୍ଥାନ ॥ ୨୮ ॥
ତିନିଶକ୍ତି ଥିବାରୁଂ ଅତ୍ୟନ୍ତ ତେଜ ବହି ।
କିରଣରେ ତମକୁ ନାଶନ୍ତି ଛାୟାସାଇଁ ॥ ୨୯ ॥
ସେ ଯେଉଁ ଦିବାକର ତାହାଙ୍କୁ ମୁନିମାନେ ।
ବିବିଧ ମତେ ସ୍ତୁତି କରନ୍ତି ପ୍ରତିଦିନେ ॥ ୩୦ ॥
ନୃତ୍ୟ ରଙ୍ଗେ ଅପସରା ତୋଷନ୍ତି ରବି ଚିତ୍ତ ।
ଗନ୍ଧର୍ବମାନେ ଗାନ କରନ୍ତି ଦିବ୍ୟଗୀତ ॥ ୩୧ ॥
ପନ୍ନଗଗଣମାନେ ବହନ୍ତି ତାଙ୍କ ଭାର ।
ଯକ୍ଷେ ଇଷ୍ଟ ସଂଗ୍ରହ କରନ୍ତି ନିରନ୍ତର ॥ ୩୨ ॥
ସକଳ ବାଳଖିଲ୍ୟା ସେବନ୍ତି ହୃଷ୍ଟଚିତ୍ତେ ।
ଏମନ୍ତେ ଦିବାକର ଭ୍ରମନ୍ତି ଅବିରତେ ॥ ୩୩ ॥
ଶକତିରୂପଧାରୀ ଯେବଣ ନରହରି ।
ଉଦୟ ଅସ୍ତ କେବେ ନୁହନ୍ତି ତପଚାରି ॥ ୩୪ ॥
ରବିଙ୍କ ଗଣମାନେ ବିଷ୍ଣୁଙ୍କଠାରୁ ଭିନ୍ନ ।
ସାବଧାନେ ଶୁଣହେ ମୈତ୍ରେୟ ତପୋଧନ ॥ ୩୫ ॥

ସ୍ତମ୍ଭରେ ଖଞ୍ଜି ଥିବା ମୁକୁର ପାଶେ ଥିଲେ ।
ନିଜ ରୂପ ତହିଁରେ ଦିଶଇ ଅବହେଳେ ।। ୩୬ ।।
ସେପରି ବିଷ୍ଣୁମୟ ଅଟନ୍ତି ଗଣମାନେ ।
ତପସ୍ୱୀ କଳାନିଧି ଶୁଣହେ ସାବଧାନେ ।। ୩୭ ।
ଏ ରୂପରେ ସେ ଯେଉଁ ବୈଷ୍ଣବଶକ୍ତି ଗୋଟି ।
ଦିବାକର ମଣ୍ଡଳ ମଧରେ ଅଛି ଘୋଟି ।। ୩୮ ।।
ପିତୃଦେବ ମନୁଷ୍ୟମାନଙ୍କୁ ତୋଷ କରି ।
ଦିବାକର ଭ୍ରମନ୍ତି ଦିବସ ବିଭାବରୀ ।। ୩୯ ।।
ସୁଷୁମ୍ନା ନାମେ ଯେଉଁ ରବିଙ୍କ ଏକକର ।
ତହିଁରେ ଅତିତୃପ୍ତ ହୁଅନ୍ତି ନିଶାକର ।। ୪୦ ।।
କୃଷ୍ଣପକ୍ଷେ ଚନ୍ଦ୍ରଙ୍କୁ ଆନନ୍ଦେ କରି ପାନ ।
ଦେବତାଏ ବଞ୍ଚନ୍ତି ଶୁଣହେ ତପୋଧନ ।। ୪୧ ।।
ଦେବତାଏ ପାନ ଯେ କରନ୍ତି କଳା ତେର ।
ତିନିକଳାମାତ୍ରକ ରହଇ ମୁନିବର ।। ୪୨ ।।
ତହୁଁ ବେନି କଳା ଯେ ପିଅନ୍ତି ପିତୃମାନେ ।
ଏମନ୍ତେ ଚନ୍ଦ୍ରମୟ ହୁଅନ୍ତି ଦିନେ ଦିନେ ।। ୪୩ ।।
ମହୀରେ ଥିବା ଜଳ କିରଣେ ହରି ଆଣି ।
ଶଶାଙ୍କ ମଣ୍ଡଳରେ ମୁଞ୍ଚନ୍ତି ଦିନମଣି ।। ୪୪ ।।
ସେ ଜଳ କିରଣରେ ଚନ୍ଦ୍ରମା ବରଷିଲେ ।
ସକଳ ଶସ୍ୟ ବୃଦ୍ଧି ହୁଅନ୍ତି ଅବହେଳେ ।। ୪୫ ।।
ସେ ଶସ୍ୟରେ ଜିଅନ୍ତି ଅଶେଷ ପ୍ରାଣୀମାନେ ।
ସୂର୍ଯ୍ୟ ଏଣୁ ପାଳନା କରନ୍ତି ପ୍ରତିଦିନେ ।। ୪୬ ।।
ପିତୃଦେବ ମନୁଷ୍ୟ ଏମନ୍ତେ ଯେତେ ଜନ ।
ସମସ୍ତଙ୍କୁ ସଂତୃପ୍ତ କରନ୍ତି ବିକର୍ତ୍ତନ ।। ୪୭ ।।
ପକ୍ଷେ ଯାଏ ଅମରେ ହୁଅନ୍ତି ଅତିତୋଷ ।
ମାସେ ଯାଏ ସଂତୃପ୍ତ ହୁଅନ୍ତି ପିତୃବଂଶ ।। ୪୮ ।।
ସବୁଦିନେ ସଂତୃପ୍ତ ହୁଅନ୍ତି ନରମାନେ ।
ମୈତ୍ରେୟ ମହାମୁନି ଶୁଣହେ ସାବଧାନେ ।। ୪୯ ।।
ଏ ଯେଉଁ ପରସ୍ତାବ ବିଚିତ୍ର ସୁଧାରସ ।
କୁଶଳେ ଏକାଦଶ ଅଧାୟ ହେଲା ଶେଷ ।। ୫୦ ।।
ଶ୍ରୀବିଷ୍ଣୁ ପୁରାଣ ଯେ ଦ୍ୱିତୀୟ ଅଂଶଗୀତ ।
ସୂର୍ଯ୍ୟଙ୍କର ମାହାତ୍ମ୍ୟ ବର୍ଣ୍ଣନା ହେଲା ଖ୍ୟାତ ।। ୫୧ ।।
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭନାରାୟଣ ମହାପାତ୍ର ।। ୫୨ ।।

# ଦ୍ୱାଦଶ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ତପୋବନ୍ତ ।
ରବିଙ୍କ ପରାୟେ ଯେ ଭ୍ରମନ୍ତି ନିଶାକାନ୍ତ ॥ ୧ ॥
ତାହାଙ୍କର ସ୍ୟନ୍ଦନ ଅତ୍ୟନ୍ତ ମନୋହର ।
ସାବଧାନେ ଶୁଣିମା ହୋଉ ହେ ମୁନିବର ॥ ୨ ॥
କୁନ୍ଦବୃନ୍ଦ ସମାନ ପ୍ରତିଭା ଅଙ୍ଗେ ବହି ।
ଦଶ ଅଶ୍ୱ ତହିଁରେ ଅଛନ୍ତି ବନ୍ଧାହୋଇ ॥ ୩ ॥
ଦକ୍ଷିଣ ବାମବେନି ଭାଗରେ ମୁନିବର ।
ସେହି ଦଶ ତୁରଙ୍ଗ ଅଛନ୍ତି ନିରନ୍ତର ॥ ୪ ॥
ନାଗବୀଥି ସହିତେ ଯେତେକ ବୀଥିମାନେ ।
ତହିଁରେ ତାଙ୍କ ରଥ ଭ୍ରମଇ ପ୍ରତିଦିନେ ॥ ୫ ॥
ତ୍ରିଚକ୍ର ଅଟଇ ସେ ଚନ୍ଦ୍ରଙ୍କ ଦିବ୍ୟରଥ ।
ସୂର୍ଯ୍ୟଙ୍କ ରଥ ପରି ହୁଅଇ ଗତାଗତ ॥ ୬ ॥
ରବିଙ୍କ ରଥ ବାତରଜ୍ଜୁରେ ବନ୍ଧା ହୋଇ ।
ଯେଉଂପରି ମୁନିହେ ସର୍ବଦା ସଞ୍ଚରଇ ॥ ୭ ॥
ତେମନ୍ତେ ଚନ୍ଦ୍ର ରଥ ଚଳଇ ନିରନ୍ତର ।
ହ୍ରାସ ବୃଦ୍ଧି ବିଷୟ ତାହାର ପରକାର ॥ ୮ ॥
ରବିଙ୍କ ପରି ମଧ କୁମୁଦବନପତି ।
ବିଥିରେ ଥିବା ଋକ୍ଷମାନଙ୍କେ ବିହରନ୍ତି ॥ ୯ ॥
ସୂର୍ଯ୍ୟଙ୍କ ଅଶ୍ୱପରି ଚନ୍ଦ୍ରଙ୍କ ଅଶ୍ୱମାନେ ।
କଳ୍ପେ ଯାଏ ସ୍ୟନ୍ଦନ ବହନ୍ତି ପ୍ରତିଦିନେ ॥ ୧୦ ॥
ସେ ଅଶ୍ୱମାନେ ସବୁ ଜଳରୁ ଉତପନ୍ନ ।
ସାବଧାନେ ଶୁଣହେ ମୈତ୍ରେୟ ତପୋଧନ ॥ ୧୧ ॥
ଦେବତା ପିତୃ ପାନ କରନ୍ତି କଳାକର ।
ତେଣୁକରି କ୍ଷୀଣ ଯେ ହୁଅନ୍ତି ବଳାକର ॥ ୧୨ ॥
ସକଳ କଳାକ୍ଷୟ ହୁଅନ୍ତେ ନିଶାପତି ॥
ଯେତେବେଳେ ଗୋଟିଏ କଳାରେ ସଞ୍ଚରନ୍ତି ॥ ୧୩ ॥
ସେ କାଳେ ଦିବାକର ସଲିଳ ହରି ଆଣି ।
ଚନ୍ଦ୍ରମାମଣ୍ଡଳକୁ ବଢ଼ାଉଥାନ୍ତି ପୁଣି ॥ ୧୪ ॥
ଦିନକୁ ଦିନ କ୍ଷୟ ହୁଅଇ କଳା ଯେତେ ।
କ୍ରମରେ ତେତେ କଳା ବଢ଼ାଉଥାନ୍ତି ନିତ୍ୟେ ॥ ୧୫ ॥

ପକ୍ଷକରେ ଅମୃତ ସଞ୍ଚନ୍ତି ଏହିପରି ।
ତେରକଳା ପାନ ଯେ କରନ୍ତି ତପଚାରି ।। ୧୬ ।।
ଏ ଘେନି ସୁଧାପାନେ ବଞ୍ଚନ୍ତି ଦେବତାଏ ।
ତାହାଙ୍କ ସଂଖ୍ୟା ମୁନି ଶୁଣହେ ଏକ ଲୟେ ।। ୧୭ ।।
ଛତିଶ ସହସ୍ରର ଉତ୍ତାରୁ ମୁନିବର ।
ତିନିସ ତ୍ରୟତ୍ରିଂଶ ସଂଖ୍ୟାରେ ଯେତେ ସୁର ।। ୧୮ ।।
ଏ ସମସ୍ତେ କୁମୁଦ ବନ୍ଧୁକୁ ପାନ କରି ।
ଅତିତୋଷେ ବଞ୍ଚନ୍ତି ଶୁଣହେ ତପଚାରି ।। ୧୯ ।।
ବେନି କଳା ପୁଣି ଯେ ପିଅନ୍ତି ପିତୃମାନେ ।
ବର୍ହିଷଦ ସୌମ୍ୟ ଅଗ୍ନିଷ୍ୱାତ୍ତା ପ୍ରତିଦିନେ ।। ୨୦ ।।
ଏକ କଳା କେବଳ ଶରୀରେ ବହିଥାନ୍ତି ।
ସେ କାଳେ ରବି ସଙ୍ଗେ ବସନ୍ତି ନିଶାପତି ।। ୨୧ ।।
ଅମାନାମେ ରଶ୍ମିରେ ବସନ୍ତି ନିଶାକାନ୍ତ ।
ଅମାବାସ୍ୟା ବୋଲିଣ ତିଥିଏ ଅତିଖ୍ୟାତ ।। ୨୨ ।।
ପ୍ରଥମେ ସଲିଳରେ ପ୍ରବେଶ ହୋଇକରି ।
ତଦନ୍ତରେ ଲତାରେ ବସନ୍ତି ତପଚାରି ।। ୨୩ ।।
ପଛେ ସୂର୍ଯ୍ୟମଣ୍ଡଳେ ହୁଅନ୍ତି ପରବେଶ ।
ଏହିପରି କ୍ରମରେ ଚଳନ୍ତି ଔଷଧୀଶ ।। ୨୪ ।।
ଏ ସକାଶୁଁ ଲତାରେ ଚନ୍ଦ୍ରମା ଥିବାକାଳେ ।
କଦାପି ନଛେଦିବ ବିତର୍କି ଜନକୁଳେ ।। ୨୫ ।।
ଏକ ପତ୍ର ଲତାରୁ ଛିନାଇଂ ଦେବାମାତ୍ରେ ।
ବ୍ରହ୍ମହତ୍ୟା ପାତକ ବସଇ ଆସିଗାତ୍ରେ ।। ୨୬ ।।
କୃଷ୍ଣପକ୍ଷର କଥା ଶୁଣହେ ତପୋଧନ ।
ଶୁକ୍ଳପକ୍ଷେ ସମସ୍ତେ ହୁଅନ୍ତି ହୃଷ୍ଟମନ ।। ୨୭ ।।
ଦିନକୁ ଦିନ ଚନ୍ଦ୍ର ବଢ଼ଇ ଶୋଭା ଦେଖି ।
ସଚରାଚରଯାକ ହୁଅନ୍ତି ମହାସୁଖୀ ।। ୨୮ ।।
ଔଷଧୀ ଲତାରୁଂ ଯେ ପିଅନ୍ତି ଯଙ୍ଗ ରସ ।
ତହିଂରେ କୀଟ ପଶୁ ମନୁଷ୍ୟେ ହୋନ୍ତି ତୋଷ ।। ୨୯ ।।
ଏଥୁ ବୁଧରଥ କଥା ଶୁଣିଣ ମୁନିବର ।
ଅଗ୍ନି ଜଳ ଦୁଇରେ ସେ ରଥ ଅବତାର ।। ୩୦ ।।
ଆଠ ଅଶ୍ୱ ତାହାଙ୍କ ପିଙ୍ଗଳବର୍ଣ୍ଣ ହୋଇ ।
ଚନ୍ଦ୍ରସୁତ ରଥରେ ଅଛନ୍ତି ନିତ୍ୟେ ରହି ।। ୩୧ ।।
ଭୂମିରୁଂ ଉତପନ୍ନ ଅଟନ୍ତି ଆଠ ଅଶ୍ୱ ।
ସେ ରଥେ ଅଛି ପୁଣି ବରୂଥ ଅନୁକର୍ଷ ।। ୩୨ ।।

ତୁଣୀର ଧନୁଶର ପତାକା ଆଦି ଯେତେ ।
ବୁଧଙ୍କ ରଥେ ଶୋଭାଦିଶନ୍ତି ଅବିରତେ ।। ୩୩ ।।
ଅଷ୍ଟକୋଣ ଅଟଇ ଶୁକ୍ରଙ୍କ ରଥବର ।
କାଞ୍ଚନମୟ ସେ ଯେ ଅତ୍ୟନ୍ତ ମନୋହର ।। ୩୪ ।।
ପଦ୍ମରାଗ ପରାୟେ ଆରକ୍ତବର୍ଣ୍ଣ ବହି ।
ମଙ୍ଗଳ ରଥେ ଅଶ୍ୱ ଅଛନ୍ତି ବନ୍ଧା ହୋଇ ।। ୩୫ ।।
ଅନଳରୁଂ ସମ୍ଭୂତ ସେ ଯତଂ ଅଶ୍ୱମାନେ ।
ମଙ୍ଗଳ ଗ୍ରହ ବହି ବଞ୍ଚନ୍ତି ପ୍ରତିଦିନେ ।। ୩୬ ।।
ସ୍ଫଟିକମଣି ପ୍ରାୟେ ଧବଳ ବର୍ଣ୍ଣ ବହି ।
ଗୁରୁଙ୍କର ଶନ୍ଦନରେ ଅଛନ୍ତି ଅଶ୍ୱେ ରହି ।। ୩୭ ।।
ଏମନ୍ତେ ଆଠ ଅଶ୍ୱ ତପସ୍ୱ କଳାକର ।
ବୃହସ୍ପତି ରଥରେ ଅଛନ୍ତି ନିରନ୍ତର ।। ୩୮ ।।
ସ୍ୱର୍ଣ୍ଣମୟ ରଥ ସେ ତହିଁରେ ବସି କରି ।
ବୃହସ୍ପତି ଭ୍ରମନ୍ତି ଦିବସ ବିଭାବରୀ ।। ୩୯ ।।
ରାଶିକେ ସମ୍ବତ୍ସର ଗୋଟିଏ କରି ଭୋଗ ।
ଆନନ୍ଦେ ଭ୍ରମନ୍ତି ସେ ଶୁଣହେ ମହାଭାଗ ।। ୪୦ ।।
ଶନିଶ୍ଚର ଗ୍ରହଙ୍କ ରଥରେ ତପୋଧନ ।
ଶବଳ ବର୍ଣ୍ଣ ଅଶ୍ୱ ଦିଶନ୍ତି ଶୋଭାବନ ।। ୪୧ ।।
ଆକାଶରୁଂ ସେ ଅଶ୍ୱ ଉତ୍ପନ୍ନ ହୋଇ କରି ।
ଶନିରଥ ବହନ୍ତି ଦିବସ ବିଭାବରୀ ।। ୪୨ ।।
ସେ ରଥକୁ ଆରୋହି ପଙ୍କଜ ବନ୍ଧୁସୁତ ।
ଅତି ମନ୍ଦେଗମନ କରନ୍ତି ଅବିରତ ।। ୪୩ ।।
ରାହୁଙ୍କ ରଥେ ଆଠ ଅଶ୍ୱ ଯେ ମୁନିବର ।
ଭ୍ରମର ପୁଞ୍ଜପରି ଦିଶନ୍ତି ମନୋହର ।। ୪୪ ।।
ରଥେ ବନ୍ଧା ହୋଇ ସେ ବହନ୍ତି ଅବିରତ ।
ଧୂମ୍ରବର୍ଣ୍ଣ ଦିଶଇ ରାହୁଙ୍କ ଦିବ୍ୟରଥ ।। ୪୫ ।।
ପର୍ବଦିନମାନଙ୍କେ ରବିଙ୍କ ଠାକୁ ଯାଏ ।
ସେହିପରି ରାହୁ ଯେ ଚନ୍ଦ୍ରମା ଠାରେ ହୋଏ ।। ୪୬ ।।
ଚନ୍ଦ୍ରଠାରୁଂ ସେରୂପେ ରବିଙ୍କ ସମୀପରେ ।
ମିଳଇ ବିଧୁନ୍ତୁଦ ଅତ୍ୟନ୍ତ କ୍ରୋଧ ଭରେ ।। ୪୭ ।।
ଶୁଣହେ ମୁନିକୁଳ କୁମୁଦବନ ନାଥ ।
କେତୁମହାଗ୍ରହଙ୍କ ଯେବଣ ଦିବ୍ୟରଥ ।। ୪୮ ।।
ଆଠ ଅଶ୍ୱ ତହିଁରେ ଅଛନ୍ତି ବନ୍ଧାହୋଇ ।
ବେନି ବର୍ଣ୍ଣେ ତାହାଙ୍କ ପ୍ରତିଭା ବିରାଜଇ ।। ୪୯ ।।

ପଲାଳଧୂମ ପରି ଦିଶନ୍ତି ଚାରିହୟ ।
ଆଉଚାରି ନିନ୍ଦନ୍ତି ଯାବକ ଦ୍ରବ୍ୟ ଚୟ ।। ୫୦ ।।
ଏ ଯେଉଁ ନବଗ୍ରହମାନଙ୍କ ନବରଥ ।
ଧ୍ରୁବରେ ବନ୍ଧାହୋଇ ଅଛନ୍ତି ଅବିରତ ।। ୫୧ ।।
ଗ୍ରହଋକ୍ଷତାରକା ସହିତେ ମୁନିବର ।
ବାତରଜ୍ଜୁ ବଳରେ ଭ୍ରମନ୍ତି ନିରନ୍ତର ।। ୫୨ ।।
ଯେତେ ତାରା ଅଛନ୍ତି ମୈତ୍ରେୟ ତପଚାରୀ ।
ତେତେ କି ବାତରଜ୍ଜୁ ଅଛନ୍ତି ଧ୍ରୁବଧରି ।। ୫୩ ।।
ଧ୍ରୁବଙ୍କୁ ଭ୍ରମାଇଂ ସେ ସମସ୍ତେ ଭ୍ରମୁଛନ୍ତି ।
ସାବଧାନେ ଶୁଣିମା ହୋଉ ହେ ମହାମତି ।। ୫୪ ।।
ତୈଳିକ ତୈଳଯନ୍ତ୍ର ଭ୍ରମନ୍ତି ଯେଉଂପରି ।
ସେପରି ଭ୍ରମନ୍ତି ସେ ଦିବସ ବିଭାବରୀ ।। ୫୫ ।।
ଅଲାତଚକ୍ର ପରି ଭ୍ରମନ୍ତି ଜ୍ୟୋତିର୍ଗଣ ।
ମୈତ୍ରେୟ ମୁନିବର ନିଶ୍ଚଳ ମନେ ଶୁଣ ।। ୫୬ ।।
ସେ ଯେଉଁ ଜ୍ୟୋତିର୍ଗଣ କହିଲୁଂ ତପଚାରି ।
ଭ୍ରମନ୍ତି ବାତଚକ୍ର ଉପରେ ବସିକରି ।। ୫୭ ।।
ଜ୍ୟୋତିର୍ଗଣ ବହିବା ସକାଶୁଂ ସେ ପବନ ।
ପ୍ରବହ ବୋଲି ଖ୍ୟାତି ଅଟଇ ତପୋଧନ ।। ୫୮ ।।
ଶିଶୁମାର ଚକ୍ରର ସ୍ୱରୂପ ଶୁଣ ଏବେ ।
ତୁମ୍ଭଆଗେ ସେ କଥା କହିବା ଆଜ ଆମ୍ଭେ ।। ୫୯ ।।
ସେ ଯେଉଁ ଶିଶୁମାର ଚକ୍ର ହେ ତପୋଧନ ।
ତାହାକୁ ଯେଉଁ ପ୍ରାଣୀ କରଇ ଦରଶନ ।। ୬୦ ।।
ଦିବାରେ କଲାପାପ ନିଶାରେ ନାଶ ଯାଇ ।
ପରମ ଆୟୁ ତା'ର ତ୍ୱରିତେ ପଲ୍ଲବଇ ।। ୬୧ ।।
ଯେତେ ତାରା ତହିଂରେ ଅଛନ୍ତି ତପୋଧନ ।
ଅଧିକ ତେତେ ବର୍ଷ ଜିଅଇଂ ସେହୁ ଜନ ।। ୬୨ ।।
ଭୁଜଙ୍ଗ ଆକୃତିରେ ସେ ଯେଉଂ ଶିଶୁମାର ।
ଉତ୍ତାନପାଦ ରାଜା ଉତ୍ତର ଖଣ୍ଡେ ତା'ର ।। ୬୩ ।।
ଯଜ୍ଞ ତାର ଅଧରେ ମୂର୍ଦ୍ଧନି ଦେଶେ ଧର୍ମ ।
ହୃଦରେ ନାରାୟଣ ସାକ୍ଷାତେ ପରଂବ୍ରହ୍ମ ।। ୬୪ ।।
ପୂର୍ବପାଦେ ଅଶ୍ୱିନୀ କୁମାର ଦୁହେଂ ସ୍ଥିତ ।
ବରୁଣ ଅର୍ଯମା ଯେ ଶକ୍ତିରେ ଉପଗତ ।। ୬୫ ।।
ଶିଶ୍ନରେ ସମ୍ବତ୍ସର ଗୁହିଦିରେ ମିତ୍ର ପୁଣି ।
ପୁଚ୍ଛେ ଧ୍ରୁବ ମହେନ୍ଦ୍ର କଶ୍ୟପ ମୁନି ଅଗ୍ନି ।। ୬୬ ।।

ଏମନ୍ତେ ଶିଶୁମାର ଚକ୍ରରେ ସ୍ଥାନ କରି ।
ଆନନ୍ଦେ ବଞ୍ଚନ୍ତି ସେ ଦିବସ ବିଭାବରୀ ॥ ୬୭ ॥
ଏମନ୍ତେ ଜ୍ୟୋତିର୍ଗଣ ପୃଥିବୀ ନଦୀ ଗିରି ।
ସାଗର ଦ୍ୱୀପ ବର୍ଷ ଏ ଯେତେ ତପଚାରୀ ॥ ୬୮ ॥
ଏ ଘେନି ବସୁମତୀ ଦିଶଇ ମନୋରମ ।
ବୁଧଙ୍କୁ ଆଭାଷଇ ସାକ୍ଷାତ ପଦ୍ମସମ ॥ ୬୯ ॥
ଗର୍ଭୋଦକ ସଲିଳେ ପାତାଳ ନାଳ ଅଛି ।
ତହିଁରେ ବସୁମତୀ ପଙ୍କଜ ବିରାଜୁଛି ॥ ୭୦ ॥
ଦ୍ୱିପବର୍ଷ ଏମାନେ ଅଟନ୍ତି ତା ଦଳ ।
ମଧରେ ରତ୍ନସାନୁ କର୍ଣ୍ଣିକା ସୁମଞ୍ଜୁଳ ॥ ୭୧ ॥
ଏମନ୍ତେ ବସୁନ୍ଧରା କମଳ ଶୋଭାବନ ।
ଏ ସମସ୍ତ ମୁନିହେ ଶ୍ରୀବିଷ୍ଣୁ ବୋଲି ଘେନ ॥ ୭୨ ॥
ଜ୍ୟୋତିର୍ଗଣ ବିଷ୍ଣୁ ଯେ ଭୁବନମାନେ ବିଷ୍ଣୁ ।
ବନମାନେ ବିଷ୍ଣୁ ଯେ ପର୍ବତମାନେ ବିଷ୍ଣୁ ॥ ୭୩ ॥
ସମୁଦ୍ର ଆଦି ନଦୀ ଯେ ଅଛି ଯାହା ନାହିଁ ।
ସମସ୍ତେ ବିଷ୍ଣୁ ବୋଲି ଜାଣ ହୋ ତୁଷ୍ଟ ହୋଇ ॥ ୭୪ ॥
ସାକ୍ଷାତ ଜ୍ଞାନରୂପୀ ଅଟନ୍ତି ଭଗବାନ ।
ଅଶେଷ ମୂର୍ତ୍ତିଧାରୀ ଅବ୍ୟୟ ନିରଞ୍ଜନ ॥ ୭୫ ॥
ସାଗର ଗିରିଆଦି କଳ୍ପନା ଯାର ସବୁ ।
ତାହାଙ୍କ ମହିମା କି ପଚାରୁ ଅଛ ବାବୁ ॥ ୭୬ ॥
କର୍ମକ୍ଷୟ ନିମିତ୍ତେ ସଚ୍ଚିଦାନନ୍ଦ ରୂପୀ ।
ସର୍ବଦା ଶୁଦ୍ଧ ସତ୍ତ୍ୱ ସ୍ୱରୂପୀ ସର୍ବବ୍ୟାପୀ ॥ ୭୭ ॥
ସମ୍ଭାବିତ ନିର୍ଦ୍ଦୋଷ ଅଶେଷ ଜ୍ଞାନମୟ ।
ତହୁଁ ବଡ଼ ଈଶ୍ୱର କେ ଅଛି ମଇତ୍ରେୟ ॥ ୭୮ ॥
ଶୁଦ୍ଧ ଜ୍ଞାନ ହୃଦରେ ହୋଇଲେ ଆବିର୍ଭୂତ ।
ଭେଦାଭେଦ ବିଚାର ଜାଣଇ ନାହିଁ ଚିତ୍ତ ॥ ୭୯ ॥
ସଂକଳ୍ପ ତରୁ ମଧ ଫଳଇ ନାହିଁ କେବେ ।
ମୈତ୍ରେୟ ତପୋଧନ ଶୁଣିମା ହୋଉ ଏବେ ॥ ୮୦ ॥
ଆଦ୍ୟନ୍ତ ମଧ ଶୂନ୍ୟ ଏମନ୍ତ ଯଉଂ ଦ୍ରବ୍ୟ ।
ଅଛି କି ବୋଲି ଅବା ଆପଣ ପଚାରିବ ॥ ୮୧ ॥
ଏକ ମିଛ ହେଲେ ସେ ଆଉ କିହେବ ତତ୍ତ୍ୱ ।
ସେ କଥା ଶୁଣ ଏବେ ମୈତ୍ରେୟ ତପୋବନ୍ତ ॥ ୮୨ ॥
ଅବନୀରୁ ଘଟ ଯେ କୁଲାଳ ନିର୍ମାଣଇଂ ।
କପାଳିକା ଦିଖଣ୍ଡ ତହିଁରୁ ସମ୍ଭବଇ ॥ ୮୩ ॥

କପାଳିକା ଭାଜିଲେ ହୁଅଇ ପୁଣି ଚୂର୍ଣ୍ଣ ।
ଚୂର୍ଣ୍ଣରୁ ରଜମାନେ ହୁଅନ୍ତି ତପୋଧନ ॥ ୮୪ ॥
ରଜରୁ ପୁଣି ଅଣୁ ହୁଅଇ ଉତପତି ।
ସେ ଅଣୁ ଏକା ନିତ୍ୟ ତାହା କେ ନ ଦେଖନ୍ତି ॥ ୮୫ ॥
ଏ ଘେନି ଜ୍ଞାନ ଥିଲେ ସେ କଥା ଜାଣିକରି ।
ଜ୍ଞାନରୁ ବଡ଼ ଦ୍ରବ୍ୟ ନାହିଁହେ ତପଚାରି ॥ ୮୬ ॥
ଅଜ୍ଞାନରେ ବିହ୍ୱଳ ହୁଅନ୍ତି ପ୍ରାଣୀମାନେ ।
ଭେଦବୁଦ୍ଧି କେବଳ କରନ୍ତି ନିଜ ମନେ ॥ ୮୭ ॥
ନିର୍ମଳ ଶୋକହୀନ ପରେଶ ଭଗବାନ ।
ଏମନ୍ତ ଯଉଂ ପ୍ରଭୁ ସେହି ସେ ତତ୍ତ୍ୱଜ୍ଞାନ ॥ ୮୮ ॥
ଉତ୍ତମ ଚରିତ ଏ କହିଲୁ ମୁନିବର ।
ମିଥ୍ୟାମାତ୍ର ଆଉ ଯେ ଅନେକ ବ୍ୟବହାର ॥ ୮୯ ॥
ଯଜ୍ଞପଶୁ ଅନଳ ଋତ୍ୱିକ ସ୍ୱର୍ଗକାମ ।
ସମ୍ବତ୍ସରମାନଙ୍କେ ନିର୍ମିତ ଯାଗ କର୍ମ ॥ ୯୦ ॥
ସେ କର୍ମରଫଳ ଯେ ଭୂରାଦି ସ୍ଥାନ ମାନେ ।
ଏ ଘେନି କର୍ମବଶ ହୁଅନ୍ତି ସର୍ବଜନେ ॥ ୯୧ ॥
ନିଶ୍ଚଳ ଏକ ରୂପ ଯେବଣ ବାସୁଦେବ ।
ସତ୍ୟ ବୋଲି କେବଳ ତାହାକୁ ମନେଭାବ ॥ ୯୨ ॥
ତତ୍ତ୍ୱଜ୍ଞାନ କଥାଏ ବିଚିତ୍ର ସୁଧାରସ ।
ସର୍ବଶୁଭେ ଦ୍ୱାଦଶ ଅଧ୍ୟାୟ ହେଲା ଶେଷ ॥ ୯୩ ॥
ଶ୍ରୀବିଷ୍ଣୁ ପୁରାଣ ଯେ ଦ୍ୱିତୀୟ ଅଂଶଗୀତ ।
ଶିଶୁମାରଚକ୍ର ଯେ ହୋଇଛି ଏଥେ ଖ୍ୟାତ ॥ ୯୪ ॥
ଚିନ୍ତି ଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୯୫ ॥

# ତ୍ରୟୋଦଶ ଅଧ୍ୟାୟ

ପରାଶର ବଚନେ ମୈତ୍ରେୟ ମୁନିବର ।
ଆନନ୍ଦେ ପଚାରନ୍ତି ମସ୍ତକେ ଦେଇ କର ।। ୧ ।।
ଭୋ ମୁନି ଯେତେ କଥା ପୁଚ୍ଛିଲି ଏବେ ମୁହିଁ ।
ସଂଶୟ ଫେଡ଼ି ମୋତେ ସମସ୍ତ ଦେଲ କହି ।। ୨ ।।
ସାଗର ଗିରିନଦୀ ବସୁଧା ଆଦି ଯେତେ ।
ସ୍ଥିତି ସଂଖ୍ୟା ମିଶାଇ କହିଲ ସବୁ ମୋତେ ।। ୩ ।।
ତ୍ରୈଲୋକ୍ୟର ଆଧାର ଅଟନ୍ତି ଭଗବାନ ।
ଏମନ୍ତ ବୋଲି ମଧ କହିଲ ତପୋଧନ ।। ୪ ।।
ପରମାର୍ଥ ବିଷୟ ଅତ୍ୟନ୍ତ କଉତୁକ ।
ସେକଥା ମଧ ମୋତେ କହିଲ ସବୁଯାକ ।। ୫ ।।
ସେ କଥାମାନ ସବୁ ଆନନ୍ଦ ମନେ କହି ।
ଏ ମୋହର ମନରୁ ସନ୍ଦେହ ଦେଲ ଦହି ।। ୬ ।।
ଭରତଙ୍କ ଚରିତ କହିବା ହୋଉ ଏବେ ।
ମୋଠାରେ ମହାମୁନି କରୁଣା କଲ ଯେବେ ।। ୭ ।।
ଭରତ ନୃପତି ଯେ ତପସ୍ୟା କରି ଗଲେ ।
ସାଳଗ୍ରାମ କ୍ଷେତ୍ରରେ ସର୍ବଦା ବାସ କଲେ ।। ୮ ।।
ଯୋଗରେ ଯୁକ୍ତ ହୋଇ ନୃପତି ଅଳଙ୍କାର ।
ବାସୁଦେବ ଚରଣ ଚିନ୍ତିଲେ ନିରନ୍ତର ।। ୯ ।।
ପ୍ରଥମ ଅଧ୍ୟାୟରେ ଯେ କହିଛ ଯାହା ଭୋଳେ ।
କାହିଁକି ନରନାଥ ମୁକ୍ତି କି ନ ପାଇଲେ ।। ୧୦ ।।
ବ୍ରାହ୍ମଣକୁଳେ ଯେବେ ଜନ୍ମିଲେ ନରପତି ।
କେମନ୍ତେ ଆଉ ତାଙ୍କୁ ପ୍ରାପତ ହେଲା ମୁକ୍ତି ।। ୧୧ ।।
ବ୍ରାହ୍ମଣ ହୋଇ ଅବା କି କର୍ମମାନ କଲେ ।
ଏ ସବୁ କହ ମୋତେ ଅତ୍ୟନ୍ତ ପ୍ରେମଭୋଳେ ।। ୧୨ ।।
ମଇତ୍ରେୟ ବଚନେ ବୋଲନ୍ତି ପରାଶର ।
ସାବଧାନେ ଶୁଣହେ ତପସ୍ୱୀ ନିଶାକର ।। ୧୩ ।।
ସାଳଗ୍ରାମ କ୍ଷେତ୍ରରେ ଭରତ ନରନାଥ ।
ବାସୁଦେବ ଚରଣପଙ୍କଜେ ଦେଇ ଚିତ୍ତ ।। ୧୪ ।।
ଅନେକ ଦିନ ଯାଏ ତପସ୍ୟା ଆଚରିଲେ ।
ସଂଯମ କ୍ରିୟା କରି ସଦ୍ଗତି ଅରଜିଲେ ।। ୧୫ ।।

ଅହିଂସା ଆଦିଗୁଣମାନଙ୍କେ ପୂର୍ଣ୍ଣ ହୋଇ ।
ଯୋଗ ଆଚରିଲେ ସେ ଯେ ଭରତ ନରସାଇଁ ॥ ୧୬ ॥
ନିରତେ ବିଷ୍ଣୁ ନାମ କରନ୍ତି ସେ ପଠନ ।
ବୋଲନ୍ତି ତ୍ରାହି କର ଭୋ ପ୍ରଭୁ ଭଗବାନ ॥ ୧୭ ॥
ଯଜ୍ଞେଶ ହେ ଅଚ୍ୟୁତ ଗୋବିନ୍ଦ ହେ ମାଧବ ।
ହେ କୃଷ୍ଣ ହେ ଅନନ୍ତ ହେ ବିଷ୍ଣୁ ହେ କେଶବ ॥ ୧୮ ॥
ହୃଷିକେଶ ଭୂତେଶ ଲୋକେଶ ଭଗବାନ ।
ବୋଲିଣ ନରପତି କରନ୍ତି ସେ କୀର୍ତ୍ତନ ॥ ୧୯ ॥
ଏ ବିନା ଆନ ନାମମାନଙ୍କୁ ନ ଉଚ୍ଚାରି ।
ରାତ୍ରି ଦିବା ବଞ୍ଚନ୍ତି ଭରତ ଦଣ୍ଡଧାରୀ ॥ ୨୦ ॥
ଇଷ୍ଟ କର୍ମ ନିମିତ୍ତେ ସମିଧ କୁଶ ପୁଷ୍ପ ।
ଆଣନ୍ତି କେବଳ ସେ ଭରତ ନରଈଶ ॥ ୨୧ ॥
ଏ ବିନା ଅନ୍ୟକର୍ମ କରନ୍ତି ନାହିଁ କେବେ ।
ନିରନ୍ତରେ ରାଜନ ବଞ୍ଚନ୍ତି ଶୁଦ୍ଧ ଭାବେ ॥ ୨୨ ॥
ଏକଦିନେ ନୃପତି ଅତ୍ୟନ୍ତ ହୃଷ୍ଟଚିତ୍ତେ ।
ମହାନଦୀ ତଟକୁ ଚଳିଲେ ସ୍ନାନ ଅର୍ଥେ ॥ ୨୩ ॥
ବେଦଶାସ୍ତ୍ର ପ୍ରମାଣେ ଜଳରେ ସ୍ନାନ ସାରି ।
ଯଥାକାଳ କ୍ରିୟାରେ ବସିଲେ ଦଣ୍ଡଧାରୀ ॥ ୨୪ ॥
ସେ କାଳେ ବନୁ ଏକ ଗର୍ଭିଣୀମୃଗୀ ଆସି ।
ସଲିଳ ପାନ କରୁଥିଲା ସେ ଜଳେ ପଶି ॥ ୨୫ ॥
ତୃଷା ଭରେ ମୃଗୀ ଯେ କରନ୍ତେ ଜଳପାନ ।
ସେ ସମୟେ ଶୁଭିଲା ସିଂହର ଘୋର ସ୍ୱନ ॥ ୨୬ ॥
ସେ ଘୋର ସିଂହସ୍ୱନ ଆପଣା କର୍ଣ୍ଣେ ଶୁଣି ।
ତଟିନୀ ତଟେ ଯାଇ ପଡ଼ିଲା ସେହୁ ଏଣୀ ॥ ୨୭ ॥
ତ୍ରାସ ପାଇ ମୃଗୀ ଯେ ପଡ଼ିଲା ଯେତେବେଳେ ।
ତାହାର ଗର୍ଭ ଖସିପଡ଼ିଲା ନଦୀକୂଳେ ।  ୮ ॥
ପୁତ୍ରେକ ଜାତ କରି ମୃଗୁଣୀ ନାଶଗଲା ।
ସମାହିତ ମନରେ ଶୁଣ ହେ ଋଷିବଳା ॥ ୨୯ ॥
ଅତ୍ୟନ୍ତ ମନୋହର ସେ ଯଙ୍ଗ ମୃଗବାଳ ।
ତାହାକୁ ଚାହିଁ ଦୁଃଖୀ ହୋଇଲେ ମହୀପାଳ ॥ ୩୦ ॥
ରକ୍ଷକ ନ ଥିବାରେ କୃପାରେ ଯୁକ୍ତ ହୋଇ ।
ମୃଗବାଳକ ପାସେ ମିଳିଲେ ନରସାଇଁ ॥ ୩୧ ॥
ତକ୍ଷଣେ କୁରଙ୍ଗର ବାଳକ ଗୋଟି ଧରି ।
ଆଶ୍ରମରେ ପ୍ରବେଶ ହୋଇଲେ ଦଣ୍ଡଧାରୀ ॥ ୩୨ ॥

ନୃପତି ଅଳଙ୍କାର ଭରତ ତଦନ୍ତରେ ।
ସେ କୁରଙ୍ଗ ଶିଶୁକୁ ପାଳନ୍ତି ସ୍ନେହଭରେ ।। ୩୩ ।।
ଶୁକ୍ଳପକ୍ଷ ଶଶାଙ୍କ ପରି ହେ ମହାଭାଗ ।
ଦିନକୁ ଦିନ ବୃଦ୍ଧି ହୁଅଇ ଶିଶୁ ମୃଗ ।। ୩୪ ।।
ଆଶ୍ରମ ନିକଟର କାନନେ ଭ୍ରମି କରି ।
ନିରନ୍ତରେ ଆସଇ କୋମଳ ମୃଗ ଚରି ।। ୩୫ ।।
ଦୂରକୁ ଅବା ଯେବେ ଚଳଇ ବାଳ ମୃଗ ।
ଶାର୍ଦ୍ଦୂଳ ଭୟେ ପୁଣି ଆସଇ ଅତିବେଗ ।। ୩୬ ।।
ପ୍ରଭାତକାଳୁ ଯାଇ ଭ୍ରମଇଂ କାନନରେ ।
ଆଦିତ୍ୟ ଅସ୍ତ ହେଲେ ମିଳଇ ଆଶ୍ରମରେ ।। ୩୭ ।।
ସେ ମୃଗ ଲାଳସାରେ ଭ୍ରମଇଂ ନରପତି ।
ପଲକ ପ୍ରାୟେ କରି ମଣନ୍ତି ଦିବାରାତି ।। ୩୮ ।।
ଭରତ ନୃପ ପାଶେ ନ ଥିଲେ ବାଳମୃଗ ।
ମୁହୂର୍ତ୍ତମାତ୍ର କାଳ ହୁଅଇ କୋଟୀ ଯୁଗ ।। ୩୯ ।।
ସେ ମୃଗ ଶିଶୁ ଗୋଟି ପାଶରେ ଥିବାବେଳେ ।
ତପସ୍ୟାବିଧି ମନେ ପଡ଼ଇ ନାହିଁ ତିଳେ ।। ୪୦ ।।
ତପସ୍ୟା କର୍ମେ ବର୍ତ୍ତି ନୃପତିକୁଳ ଇନ୍ଦୁ ।
ତେଜି ଥିଲେ କଳତ୍ର ତନୟ ମିତ୍ର ବନ୍ଧୁ ।। ୪୧ ।।
ତେମନ୍ତ ନରବର ଦୁର୍ଜ୍ଜୟ ପ୍ରେମ ଭୋଳେ ।
ମୋହର ମୃଗ ବୋଲି ବୋଲନ୍ତି ସବୁକାଳେ ।। ୪୨ ।।
ଦଣ୍ଡେ ଯେବେ ମୃଗକୁ ଦେଖନ୍ତି ନାହିଁ ନୃପ ।
ଅନେକ ମତେ ତାଙ୍କ ହୁଅଇ ମନସ୍ତାପ ।। ୪୩ ।।
ବୋଲନ୍ତି କାହିଁ ଅବା ଗଲା ସେ ମୃଗ ମୋର ।
ତା ବିନୁ ଆଶ୍ରମ ତ ଦିଶଇ ଅସୁନ୍ଦର ।। ୪୪ ।।
ପୁଣି ମନେ ବିଚାର କରନ୍ତି ମହାଭାଗ ।
ବୃକବାଶାର୍ଦ୍ଦୂଳ ଯେ ଭକ୍ଷିଲେ ମୋର ମୃଗ ।। ୪୫ ।।
ନୋହିଂଲେ ଅବା ସିଂହ ବିଦାରି ପକାଇଲା ।
କି ଗତି ହେବ ଏବେ କୁରଙ୍ଗ କାହିଂଗଲା ।। ୪୬ ।।
ଏପରି ନାନାମତେ ଭରତ ନରପତି ।
କୁରଙ୍ଗକୁ ଦେଖିବା ପର୍ଯ୍ୟନ୍ତେ ଭାଳୁଥାନ୍ତି ।। ୪୭ ।।
ମୃଗର ପାଦଚିହ୍ନ ଅନାଇଂ ବସୁଧାରେ ।
ତଳକୁ ଚାହୁଁଥାନ୍ତି ସେ ଅତ୍ୟନ୍ତ ସରଧାରେ ।। ୪୮ ।।
ଦଣ୍ଡେମାତ୍ର ବିଳମ୍ବ ହୋଇଲେ କୁରଙ୍ଗର ।
ନାନା ମତେ ବିଳାପ କରନ୍ତି ନିରନ୍ତର ।। ୪୯ ।।

କେତେବେଳେ ବୋଲନ୍ତି କାହିଁ ମୋ ବାଳମୃଗ ।
କେମନ୍ତେ ମୋର ଦେହ ସହିବ ତା ବିଯୋଗ ॥ ୫୦ ॥
ମୋ ପ୍ରୀତି ଅର୍ଥେ ଅଛି କୁରଙ୍ଗ ଦେହବହି ।
ଏବେ ସେ ମୃଗ ଶିଶୁ ଅନ୍ତର ହେଲା କାହିଁ ॥ ୫୧ ॥
ଶୃଙ୍ଗ ଅଗ୍ରେ କି ରଙ୍ଗେ କୁରଙ୍ଗ ଶିରୋମଣି ।
ବାହୁକଣ୍ଡୁ ମୋହର ହରଇ ମନଜାଣି ॥ ୫୨ ॥
କୁଶଳେ କାନନୁ ସେ ଆସିବ ଯେତେବେଳେ ।
କେଉଁ ତୋଷ ନୋହିବ ଏ ମୋର ବକ୍ଷସ୍ଥଳେ ॥ ୫୩ ॥
କୁଶ କାଶ ସହିତେ ଅଛନ୍ତି ଯେତେ ତୃଣ ।
ହୋଇଛନ୍ତି ତାହାର ମୃଦୁଳ ଦନ୍ତେ ଚିହ୍ନ ॥ ୫୪ ॥
ଏମନ୍ତେ ଶିଶୁ ମୃଗ ନ ଦେଖି ନରବର ।
ନାନା ମତେ ବିଳାପ କରନ୍ତି ନିରନ୍ତର ॥ ୫୫ ॥
ଯେତେବେଳେ ପାଶକୁ ଆସଇ ବାଳମୃଗ ।
ହୃଦୟରେ ବିକାଶ ହୁଅଇ ଅନୁରାଗ ॥ ୫୬ ॥
ମୋହର ମୃଗ ବୋଲି ନୃପତି କଳାନିଧି ।
ଆନନ୍ଦେ ରାତ୍ରି ଦିବା ବଞ୍ଚନ୍ତି ନିରବଧି ॥ ୫୭ ॥
ମୃଗରେ ମନଦେଇ ନୃପତି ଅବତଂସ ।
ତପଜପ ସମାଧି ସମସ୍ତ କଲେ ବିଷ ॥ ୫୮ ॥
ମୃଗକୁ ତାଙ୍କ ମନ ହୁଅଇ ଯେତେବେଳେ ।
ନୃପତି ଆନ୍ଦୋଳିତ ହୁଅନ୍ତି ଅବହେଳେ ॥ ୫୯ ॥
ଯେତେଦୂର ପର୍ଯ୍ୟନ୍ତେ ଚଳଇ ମୃଗବର ।
ତାହାର ପଛେ ପଛେ ଚଳନ୍ତି ଦଣ୍ଡଧର ॥ ୬୦ ॥
ଶିଶୁ ମୃଗ ବିଷୟେ ତଦ୍‌ଗତ କରିମନ ।
ଭରତ ନରନାଥ ବଞ୍ଚନ୍ତି ପ୍ରତିଦିନ ॥ ୬୧ ॥
କେତେକାଳ ଅନ୍ତରେ ସେ ଯେଉଁ ବାଳମୃଗ ।
ଦଇବର ବଶରୁଁ ହୋଇଲା ପ୍ରାଣତ୍ୟାଗ ॥ ୬୨ ॥
ହରିଣର ମରଣ ଅନାଇଁ ମହିପାଳ ।
ଆପଣା ପ୍ରାଣ ମଧ ତେଜିଲା ତତକାଳ ॥ ୬୩ ॥
ଯେତେବେଳେ ନୃପତି ରତ୍ନର ପ୍ରାଣଗଲା ।
ଚିତ୍ତଯାଇ ମୃଗରେ ନିମଗ୍ନ ହୋଇଥିଲା ॥ ୬୪ ॥
ଭାବନା ଅନୁରୂପେ ଭରତ ମହୀପତି ।
ମୃଗ ଗର୍ଭେ ଆପଣ ହୋଇଲେ ଉତପତି ॥ ୬୫ ॥
କାଳାଞ୍ଜିର ପର୍ବତ ଶିଖରେ ଯାଇ କରି ।
ମୃଗ ରୂପେ ସଞ୍ଚାର କଲେ ସେ ଦଣ୍ଡଧାରୀ ॥ ୬୬ ॥

ଜାତିସ୍ମର ପଣରେ ଉପ୍ତନ୍ନ ହେବା ଘେନି ।
ସଂସାରକୁ ଉଦ୍ବେଗ ଗଣିଲା ନୃପମଣି ॥ ୬୭ ॥
ସେ ଯଉଂ ମୃଗବର ପୂରୁବ ଜ୍ଞାନବଳେ ।
କଦାପି ନ ରହିଲା ଆପଣା ମାତା କୋଳେ ॥ ୬୮ ॥
ଶାଳଗ୍ରାମ କ୍ଷେତ୍ରକୁ ସେ ମୃଗ ଚଳିଗଲା ।
ଶୁଷ୍କ ତୃଣ ଆହାରେ ଜୀବନ ସମ୍ଭାଳିଲା ॥ ୬୯ ॥
ଶୁଷ୍କପର୍ଣ୍ଣମାନଙ୍କୁ ଭକ୍ଷଇଂ କେତେବେଳେ ।
ପୂର୍ବର ଜ୍ଞାନ ମାତ୍ର ଭାବଇଂ ହୃଦସ୍ଥଳେ ॥ ୭୦ ॥
ମୃଗ ହେବା କାରଣ ଜାଣି ସେ ନୃପବର ।
କ୍ରମରେ ଅତିଶୁଷ୍କ କରଇ କଳେବର ॥ ୭୧ ॥
କେତେଦିନ ଉତ୍ତାରୁଂ ଶୁଣହେ ତପଚାରୀ ।
ମୃଗ ତନୁ ତେଜିଲା ଭରତ ଦଣ୍ଡଧାରୀ ॥ ୭୨ ॥
ଶାଳଗ୍ରାମ କ୍ଷେତ୍ରରେ ଜୀବନ ଯିବା ଘେନି ।
ଦ୍ୱିଜକୁଳେ ଜନ୍ମିଲା ଭରତ ନୃପମଣି ॥ ୭୩ ॥
ଜାତିସ୍ମର ପଣରେ ସେ ଯଉଂ ନୃପବର ।
ଅନିତ୍ୟ ବୋଲି କରି ମଣନ୍ତି ଏ ସଂସାର ॥ ୭୪ ॥
ସଦାକାଳେ ଆଚରି ଉତ୍ତମ ଆଚରଣ ।
ଯୋଗମାର୍ଗେ ଉତ୍କଣ୍ଠା କରନ୍ତି ଅନୁକ୍ଷଣ ॥ ୭୫ ॥
ତତ୍ତ୍ୱଜ୍ଞାନମାନଙ୍କେ ସମ୍ପୂର୍ଣ୍ଣ ହୋଇକରି ।
ଅତି ତୋଷେ ବଞ୍ଚନ୍ତି ଦିବସ ବିଭାବରୀ ॥ ୭୬ ॥
ସମସ୍ତ ଶାସ୍ତ୍ର ଅର୍ଥ ଜାଣନ୍ତି ଦୃଢ଼ଚିତ୍ତେ ।
ବିଷ୍ଣୁଙ୍କ ଶ୍ରୀଚରଣ ଚିନ୍ତନ୍ତି ଅବିରତେ ॥ ୭୭ ॥
ପ୍ରକୃତିରୁ ଅନ୍ତର ମଣନ୍ତି ନିଜ ଆତ୍ମା ।
ସମଦର୍ଶୀ ହୋଇଣ ବଞ୍ଚନ୍ତି ମହାତମା ॥ ୭୮ ॥
ଆତ୍ମାରେ ଅଧିଗତ ଅଟଇ ତାଙ୍କ ଜ୍ଞାନ ।
ଉଦାସୀନ ପରାୟେ ବଞ୍ଚନ୍ତି ପ୍ରତିଦିନ ॥ ୭୯ ॥
ଗୁରୁଙ୍କ ଉପଦେଶ ଆଦି ଯେ ଶ୍ରୁତି ସ୍ମୃତି ।
ଘେନନ୍ତି ନାହିଂ ସେ ନ ପଢ଼ନ୍ତି ମହାମତି ॥ ୮୦ ॥
ଜାତିସ୍ମର ସକାଶୁଂ ସମସ୍ତ ହୋଏ ଜଣା ।
ଜ୍ଞାନମାର୍ଗେ ସେ ହେତୁଂ ନୁହନ୍ତି ଆଉ ବଣା ॥ ୮୧ ॥
କର୍ମରେ ଦୃଷ୍ଟିପାତ କରନ୍ତି ନାହିଂ କେବେ ।
ନ ବୁଝିଲା ପରାୟେ କହନ୍ତି ଜଡ଼ ଭାବେ ॥ ୮୨ ॥
ସେ ଜଡ଼ ବାକ୍ୟମାନ କହନ୍ତି ବିପ୍ରମଣି ।
ସମସ୍ତ ଅସଂସ୍କାର ସବୁହି ଗ୍ରାମ୍ୟବାଣୀ ॥ ୮୩ ॥

ନ ବାନ୍ଧନ୍ତି କେଶ ଯେ ପିନ୍ଧନ୍ତି ମ୍ଳାନ ଚିର ।
ସ୍ନାନ ବିନା ଧୂଳିରେ ଧୂସର କଳେବର ॥ ୮୪ ॥
ମୁଖରେ ଦନ୍ତାନ୍ତର ଅଟଇ ଯେତେ ସ୍ଥାନ ।
ସେମାନ ତାହାଙ୍କର ଦିଶଇ ଅତିକ୍ଳିନ୍ନ ॥ ୮୫ ॥
ନଗରଜନମାନେ ଅନାଇଁ ତାଙ୍କ ରୂପ ।
ବିବିଧ ପରକାରେ ଦିଅନ୍ତି ଉପତାପ ॥ ୮୬ ॥
କେହୁ ଭଲ ବୋଲଇ କେ ଅବା ଗାଳିଦିଏ ।
ତାହା କିଛି ଘେନନ୍ତି ନାହିଁ ହେ ମୁନି ରାୟେ ॥ ୮୭ ॥
ଯୋଗଯୁକ୍ତ ସକାଶୁଁ ଜାଣନ୍ତି ନାହିଁ ଆନ ।
ଅତ୍ୟନ୍ତ ହରଷରେ ବଞ୍ଚନ୍ତି ନିଶିଦିନ ॥ ୮୮ ॥
ଯଉଂ ଜନ ନ ଘେନେ ଲୋକର ନିନ୍ଦାସ୍ତୁତି ।
ଯୋଗର ସନ୍ଧିମାର୍ଗ ସେହି ହେ ମହାଯତି ॥ ୮୯ ॥
ଏ ହେତୁଂ ସାଧୁ ମତି ହୋଇଣ ଜଡ଼ ଜ୍ଞାନୀ ।
ଦିବାନିଶି ବଞ୍ଚନ୍ତି ମନରେ ମୋଦ ଘେନି ॥ ୯୦ ॥
ହିରଣ୍ୟଗର୍ଭ ବାକ୍ୟ ଚିତୋଇ ନିରନ୍ତରେ ।
ଉନ୍ମତ୍ତ ଜଡ଼ ବୁଦ୍ଧି କରନ୍ତି ଆତ୍ମାଠାରେ ॥ ୯୧ ॥
କଲ୍ମାଷଶାକ ନାନା ବର୍ଣ୍ଣରେ କସାଫଳ ।
ଅଥବା ଯେତେବେଳେ ମିଳେ ଯା କନ୍ଦମୂଳ ॥ ୯୨ ॥
ଯେବଣ କାଳେ ଯାହା ଲଭନ୍ତି ଦ୍ୱିଜବର ।
ଭକ୍ଷଣ କରି ତୃପ୍ତ କରନ୍ତି କଳେବର ॥ ୯୩ ॥
ଅଳଂକାରେ ସଂଯମ କରନ୍ତି ହୃଷ୍ଟ ଚିତ୍ତେ ।
କେତେବେଳେ ବିକଳ୍ପ ନ ଥାଇ ତାଙ୍କ ଚିତ୍ତେ ॥ ୯୪ ॥
ପିତୃ ଭ୍ରାତୃଭ୍ରାତୃବ୍ୟ ବାନ୍ଧବ ଯେତେ ଜନ ।
କୃଷିରେ ନିବେଶନ୍ତି ତାହାଙ୍କୁ ଯେବେ ପୁଣ ॥ ୯୫ ॥
ସେମାନଙ୍କ ବଚନ ପ୍ରମାଣେ ଯୁକ୍ତ ହୋଇ ।
ବୁଲନ୍ତି ମହାତମା ସଂଶୟ କେବେ ନାହିଁ ॥ ୯୬ ॥
ଅତ୍ୟନ୍ତ ରୁକ୍ଷ ବେଶେ ଭ୍ରମନ୍ତି ଅବିରତେ ।
ଭଲମନ୍ଦ ଏ ଦୁଇ ନଥାଇ ତାଙ୍କ ଚିତ୍ତେ ॥ ୯୭ ॥
ପ୍ରାଣୀର ଉପକାର ନିମିତ୍ତେ ବିପ୍ରବର ।
ଜଡ଼ର ପ୍ରାୟେ କର୍ମ କରନ୍ତି ନିରନ୍ତର ॥ ୯୮ ॥
ବେଳକମାତ୍ର ଏକା ଆହାର କରି ତୋଷେ ।
ବଞ୍ଚନ୍ତି ବିପ୍ରମଣି ଅତ୍ୟନ୍ତ ମ୍ଳାନବେଶେ ॥ ୯୯ ॥
କି କି ହୋଇ ସେ ଦ୍ୱିଜ ମୁକୁଟ ଏକଦିନେ ।
ସୌବୀର ରାଜା ଦ୍ୱାରେ ମିଳିଲେ ଅତି ମ୍ଳାନେ ॥ ୧୦୦ ॥

ଅତ୍ୟନ୍ତ ଅସଂସ୍କାର ଦିଶଇ ତାଙ୍କ ରୂପ ।
ଚେଷ୍ଟାରୁଂ ଆକୃତିରୁଂ ବୋଲାନ୍ତି ଏକା ବିପ୍ର ॥ ୧୦୧ ॥
ସେ ଦ୍ୱିଜକୁ ନୃପତି ଦେଲା ଯେ ମନ୍ଦେ ଚାହିଁ ।
ଅତ୍ୟନ୍ତ ମ୍ଲାନ ରୂପେ ଅଛନ୍ତି ଉଭା ହୋଇ ॥ ୧୦୨ ॥
ସେଦିନ ରାଜାଙ୍କର ହୋଇଛି ମନୋରଥ ।
ଆଜ ଆମ୍ଭେ ଦେଖିବା କପିଳ ତପୋବନ୍ତ ॥ ୧୦୩ ॥
ଦୁଃଖପ୍ରଦ ସଂସାରେ ପ୍ରାଣୀଙ୍କ ଶ୍ରେୟ କିସ ।
ଏ କଥା ପଚାରିଲେ କହିବେ ମୁନିହଂସ ॥ ୧୦୪ ॥
ମୋକ୍ଷ ଧର୍ମ ଜ୍ଞାତାସେ କପିଳ ତପଚାରୀ ।
ତାଙ୍କୁ ଯାଇ ପୁଛିବା ସଂଶୟ ଫେଡ଼ିକରି ॥ ୧୦୫ ॥
ଏମନ୍ତ ମନେ ପାଞ୍ଚି ନୃପତି ଶିରୋମଣି ।
ଶିବିକା ଆରୋହିବା କାମନା କଲେ ପୁଣି ॥ ୧୦୬ ॥
ତତକ୍ଷଣେ ଶିବିକା ଅଣାଇଂ ମହୀପାଳ ।
ଶିବିକା ବୁହାଙ୍କୁ ଯେ ଡାକିଲେ ତତକାଳ ॥ ୧୦୭ ॥
ଶିବିକାବୁହାମାନେ ଅଳପ ଥିଲେ ତହିଁ ।
ବହିବାକୁ ଗୋଟାଏ ଅଣ୍ଟିଲା ପୁଣି ନାହିଁ ॥ ୧୦୮ ॥
ତାହାଜାଣି ସେ କାଳେ ଶିବିକା ବୁହାକୁଳ ।
ଦ୍ୱିଜକୁ ବହ ବୋଲି ବୋଇଲେ ତତକାଳ ॥ ୧୦୯ ॥
ବଳହାରେ ଭରତ ବିପ୍ରଙ୍କୁ ଗଲେ ଘେନି ।
ଶିବିକାରେ ନିଯୁକ୍ତ କଲେକ ସେହିକ୍ଷଣି ॥ ୧୧୦ ॥
ବ୍ରାହ୍ମଣକୁ ଶିବିକା ବୁହାଇ ନରପତି ।
ଅତିତୋଷେ କପିଳ ଆଶ୍ରମେ ଚଳିଯାନ୍ତି ॥ ୧୧୧ ॥
ଶିବିକା ବହିଛନ୍ତି ଯେତେକ ପ୍ରାଣୀମାନେ ।
ତାହାଙ୍କ ମଧେ ବିପ୍ର ଅଛନ୍ତି ହୃଷ୍ଟମନେ ॥ ୧୧୨ ॥
ସର୍ବଜ୍ଞାନମାନଙ୍କ ସ୍ଥାନ ସେ ଦ୍ୱିଜବର ।
ଦୁରିତ କ୍ଷୟ କାମୀ ସୁଜାଣ ଜାତିସ୍ମର ॥ ୧୧୩ ॥
ସେ ଦ୍ୱିଜ ନୃପତିଙ୍କ ଶିବିକା ବହିକରି ।
ଅତିମନ୍ଦେ ଚାଲନ୍ତି ବାତୁଳ ଜନପରି ॥ ୧୧୪ ॥
କ୍ଷୁପକ ପ୍ରମାଣରେ ପଥକୁ ଦୃଷ୍ଟି ଦେଇ ।
ଧର୍ମଶାସ୍ତ୍ର ମତରେ ଚାଲନ୍ତି ମନ୍ଦହୋଇ ॥ ୧୧୫ ॥
ଆଉ ଯେତେ ଶିବିକା ବହିବା ଲୋକମାନ ।
ସେ ସର୍ବେ ଅତିଶୀଘ୍ରେ ଚାଲନ୍ତି ଘନଘନ ॥ ୧୧୬ ॥
ଜଡ଼ ମନ୍ଦ ମନ୍ଦ ଯେ ଗମନ କଲା ଯହୁଁ ।
ସମାନରେ ଶିବିକା ଚଳିଲା ନାହିଁ ଆଉ ॥ ୧୧୭ ॥

ଶିବିକା ସୁଧିରରେ ଯହୁଁ ସେ ନଚଳିଲା ।
ତା' ଦେଖି ନରନାଥ ବହୁତ କୋପ କଲା ॥ ୧୧୮ ॥
ବୋଲେ ନୃପ ଆରେ ଶିବିକା ବୁହାମାନେ ।
ସମାନରେ ନ ଚାଲି ଚାଲୁଛ ଅସମାନେ ॥ ୧୧୯ ॥
ଏମନ୍ତ ବୋଲି ରାଜା କରନ୍ତେ ତରଜନ ।
ଶିବିକା ବୁହାମାନେ କହିଲେ କରି ଯତ୍ନ ॥ ୧୨୦ ॥
କେତେ ଯତ୍ନେ ବହିଲେ ଶିବିକା ସମାନରେ ।
ଚଳିଲା ନାହିଁ ଜଡ଼ ଗମନ ସକାଶରେ ॥ ୧୨୧ ॥
ତାଦେଖି ପୁଣି କୋପେ ବୋଲଇ ନରବର ।
ଶିବିକା ବୁହାୟେରେ କି ରୀତି ଏ ତୁମ୍ଭର ॥ ୧୨୨ ॥
ଭିନ୍ନେ ପରିଗମନ କରୁଛ ଆଜ ତୁମ୍ଭେ ।
ଏମନ୍ତ ପ୍ରକାର ତ ନ ଥିଲା ଆଉ କେବେ ॥ ୧୨୩ ॥
ନୃପତି ବଦନରୁ ଏମନ୍ତ କଥା ଶୁଣି ।
ଶିବିକା ବୁହାମାନେ କହନ୍ତି ମୃଦୁବାଣୀ ॥ ୧୨୪ ॥
ଆମ୍ଭର ଦୋଷ ନାହିଁ ନୃପତିବର ଶୁଣ ।
ଅତି ମନ୍ଦେ ଚାଲଇ ଯେ ଏ ଜଡ଼ମୂଢ଼ ଜନ ॥ ୧୨୫ ॥
ଏମନ୍ତ ଭୃତ୍ୟଙ୍କର ବଚନ ଶୁଣି କରି ।
ଜଡ଼ମୁଖ ଅନାଇଂ ବୋଲଇ ଦଣ୍ଡଧାରୀ ॥ ୧୨୬ ॥
କାହିଁକିହୋ ଅଧମ ବିଳମ୍ବେ ଚାଲୁ ତୁହି ।
ଏଡ଼େ ସୁକୁମାର ଯେ ହୋଇଲୁ କିସ ପାଇଂ ॥ ୧୨୭ ॥
ଅଳପବାଟ ଆସି ହୋଇଲୁ କିକେ ଶ୍ରାନ୍ତ ।
ଭଲେ ନ ଚାଲୁ କିପାଂ ତୋ ପରି ବଳବନ୍ତ ॥ ୧୨୮ ॥
ଅତ୍ୟନ୍ତ ପୃଥୁଳତ ଦିଶଇ କଳେବର ।
ଆୟାସ ମଧ ସହିପାରୁ ତୁ ନିରନ୍ତର ॥ ୧୨୯ ॥
ଏବଚନେ ବ୍ରାହ୍ମଣ ବୋଲଇ ମନ୍ଦେ ହସି ।
କାହୁଁ କିସ କହୁଛ ନୃପତି ପୂର୍ଣ୍ଣ ଶଶୀ ॥ ୧୩୦ ॥
ପୃଥୁଳ ନୁହଇ ମୁ ଶିବିକା ବହି ନାହିଁ ।
ଶ୍ରାନ୍ତ ଅବା କାହିଁକି ହେବି ହେ ନରସାଇଂ ॥ ୧୩୧ ॥
ଶିବିକାବୁହା ଯେହୁ ଶିବିକା ବହେଂ ତୋର ।
ଏଥିପାଂରେ ଶ୍ରମ ଯେ ହୋଇବ କିପାଂ ମୋର ॥ ୧୩୨ ॥
ଜଡ଼ ମୁଖୁଁ ଏମନ୍ତ ଶୁଣିଣ ନୃପବର ।
ବୋଲଇ ଆରେ ଜଡ଼ ଜ୍ଞାନ କି ନାହିଁ ତୋର ॥ ୧୩୩ ॥
ପ୍ରତ୍ୟକ୍ଷରେ ଶିବିକା ବହିଛୁ ମୋର ତୁହି ।
ସ୍କନ୍ଧରେ ଅଛି ବୋଝ ବୋଲୁଛୁ ନାହିଁ ନାହିଁ ॥ ୧୩୪ ॥

ଯେବେ ଭାର ନୁହନ୍ତା ଲଭନ୍ତୁ କିପାଂ ଶ୍ରମ ।
ଏତେବୋଲି ମଉନ ହୋଇଲେ ନୃପୋତ୍ତମ ॥ ୧୩୫ ॥
ନରପତି ବଚନେ ବୋଲଇ ଦ୍ୱିଜବର ।
ଭୋରାଜା କି ବୁଝିଲୁ କହିଲୁ କି ଉତ୍ତର ॥ ୧୩୬ ॥
ଦେଖ ପାଦ ଦୁହିଙ୍କି ବହିଛି ଏହୁ ମହୀ ।
ସେ ପାଦ ପୁଣି ଜଙ୍ଘା ଦୁଇକି ଅଛି ବହି ॥ ୧୩୭ ॥
ଜଙ୍ଘା ଦୁହେଂ ବହି ଯେ ଅଛନ୍ତି ଉରୁବେନି ।
ଉରୁଯୁଗଳଟିକି ବହିଛି ନୃପମଣି ॥ ୧୩୮ ॥
କଟି ପୁଣି ସର୍ବଦା ବହିଛି ଉଦରକୁ ।
ଉଦର ବହିଅଛି ହୃଦୟ ପ୍ରଦେଶକୁ ॥ ୧୩୯ ॥
ହୃଦୟ ଯେ ସ୍କନ୍ଧକୁ ବହିଛି ନିରନ୍ତର ।
ସେ ସ୍କନ୍ଧରେ ଶିବିକା ଅଛି ହେ ନରବର ॥ ୧୪୦ ॥
କେ କାହାକୁ ବୋହିଲେ କାହାର କିସ ଗଲା ।
ମୋତେ ଅବା କାହିଁକି ବହିବା ଶ୍ରମ ହେଲା ॥ ୧୪୧ ॥
ତୁ ବୋଲିବୁ ମୁହିଂ ଯେ ବସିଛି ଶିବିକାରେ ।
ତୁ ବହି ଅଛୁ ସ୍କନ୍ଧେ ସେବକ ପରକାରେ ॥ ୧୪୨ ॥
ସେଠାରେ ଅଛୁ ତୁହି ଏଠାରେ ଅଛି ମୁହିଂ ।
ଏମନ୍ତ ବୋଲି ଯାହା ବୋଲୁ ତୁ ନରସାଇଂ ॥ ୧୪୩ ॥
ଏ କଥା କେତେବେଳେ ନୁହଇ ରାଜାଶୁଣ ।
ଶିବିକାରେ ବସିଛି ଗୋଟିଏ ଦେହଜାଣ ॥ ୧୪୪ ॥
ତୁହି ମୁହିଂ ଆଉ ଯେ ଅଛନ୍ତି ଏ ଜଗତେ ।
ସମସ୍ତେ ନିରନ୍ତରେ ବସନ୍ତି ପଞ୍ଚଭୂତେ ॥ ୧୪୫ ॥
ସେ ପଞ୍ଚଭୂତମାନେ ତ୍ରିଗୁଣ ପ୍ରବାହରେ ।
ପଡ଼ିକରି ଯାଉ ସେ ଅଛନ୍ତି ନିରନ୍ତରେ ॥ ୧୪୬ ॥
ସେ ଯଉଂ ତ୍ରିଗୁଣ କର୍ମର ବଶୀଭୂତ ।
ଅବିଦ୍ୟାରେ ସେ କର୍ମଟି ହୋଇଛି ସଞ୍ଚିତ ॥ ୧୪୭ ॥
ସକଳ ପ୍ରାଣୀଠାରେ ସେ କର୍ମ ଅଛି ପୁଣି ।
ପରମାତ୍ମା କେବଳ ଶୁଦ୍ଧ ହେ ନୃପମଣି ॥ ୧୪୮ ॥
ପ୍ରକୃତିଙ୍କୁ ପର ସେ ଅକ୍ଷର ଅତି ଶାନ୍ତ ।
କ୍ଷୟବୃଦ୍ଧି ଏ ଦୁଇ କଥାଙ୍କୁ ବିବର୍ଜିତ ॥ ୧୪୯ ॥
ସମସ୍ତ ପ୍ରାଣୀରେ ଯେ ଅଟଇ ଏକ ସେହି ।
ସର୍ବଦା ସମତାକୁ କିଛିହିଂ ନ ଲାଗଇ ॥ ୧୫୦ ॥
ଏ ହେତୁଂ ବୁହାଇବା ବହିବା କଥା ସେହି ।
ତାହାର ଠାରେ ରାଜା ହୋଇବ ଆଉ କାହିଁ ॥ ୧୫୧ ॥

ବୃଦ୍ଧି କ୍ଷୟ ଦୁଇ ଯେ ନାହିଁଟି ପୁଣି ଯାର ।
ତାକୁ ସ୍ଥୂଳ କିପାଇଁ ବୋଇଲେ ନୃପବର ॥ ୧୫୨ ॥
ମହୀପାଦ ଉରୁ ଯେ ଜଘନ କଟୀ କୁକ୍ଷି ।
ଉରସ୍କନ୍ଧାଦି ଯାକୁ ଯେ କ୍ରମେ ବହିଛନ୍ତି ॥ ୧୫୩ ॥
ମୋଠାରେ ତାହା ଅଛି ତୋ ଠାରେ ଏହୁମାନେ ।
ନାହାନ୍ତି କି ହୋ ରାଜା ବିଚାରୁ ନାହୁଁ ମନେ ॥ ୧୫୪ ॥
ସମାନରେ ଯେବେ ହୋ ଅଛି ଏ ସମସ୍ତର ।
ଏକା ମୋତେ କିପାଇଁ ହୋଇଲା ଏହା ଭାର ॥ ୧୫୫ ॥
ସେ ଭାର ସମସ୍ତଙ୍କ ନୋହିଲା କାହିଁପାଇଁ ।
ଏହା ବୁଝଇ ମୋତେ କହ ହୋ ନରସାଇଁ ॥ ୧୫୬ ॥
ଶିବିକାଭାର ଏକା ବୋଲୁଛ କାହିଁପାଇଁ ।
ତରୁଗିରି ସାଗର ମନ୍ଦିର ଦ୍ୱିପ ମହୀ ॥ ୧୫୭ ॥
ଏମନ୍ତେ ଆଉ ଯେତେ ଅଛନ୍ତି ଏ ଜଗତେ ।
ସବୁ ଭାର ମଧ ଲାଗୁଥିବ ତୋତେ ମୋତେ ॥ ୧୫୮ ॥
ଗୋଟାକ ଭାର ଯେବେ ହୁଅଇ ଗୋଟା କର ।
ସବୁ ଭାର ହୋଇବ ସମସ୍ତ ଲୋକଙ୍କର ॥ ୧୫୯ ॥
ଶିରକର ଚରଣ ସହିତେ ନରବର ।
ଆଉ ଯେତେ ପ୍ରାକୃତ ଇନ୍ଦ୍ରିୟ ପୁରୁଷର ॥ ୧୬୦ ॥
ସେମାନେ ଭିନ୍ନ ଭିନ୍ନ ହୋଇବେ ଯେତେବେଳେ ।
ଭାର ବହି ଆଉକେ ଚାଲିବ ମହୀ ତଳେ ॥ ୧୬୧ ॥
ଏ ଶିବିକା ଯେବଣ ଦ୍ରବ୍ୟ ହୋ ନରସାଇଁ ।
ଭୂତ ସଂଗ୍ରହ ସେହି ଭାବରେ ଜାଣ ତୁହି ॥ ୧୬୨ ॥
ତୋତେ ମୋତେ ମିଶାଇଁ ଆଉ ଯେ ପ୍ରାଣୀମାନେ ।
ମୋର ବୋଲି ତୁଛାରେ ଭ୍ରମୁଛୁ ଜ୍ଞାନହୀନେ ॥ ୧୬୩ ॥
ଏତେ ବୋଲି ମଉନ ହୋଇଲେ ଦ୍ୱିଜବର ।
ତାହାଶୁଣି ଶିବିକା ତେଜିଲା ନୃପବର ॥ ୧୬୪ ॥
ବିପ୍ରର ପାଦ ଧରି ବୋଲଇ ମହୀପତି ।
ମୋ ଅପରାଧ କ୍ଷମା କର ହେ ମହାମତି ॥ ୧୬୫ ॥
ଭୋ ବିପ୍ରବର ବେଗେ ଶିବିକା ରଖ ତଳେ ।
ତୁମ୍ଭ କନ୍ଧେ ବସିଲି ମୁଁ ପାପୀ ଅବହେଳେ ॥ ୧୬୬ ॥
କେ ଅବା କହ ତୁମ୍ଭେ ବ୍ରାହ୍ମଣ ଶିରୋମଣି ।
ଯଉଂ ରୂପେ ଜଗତେ ବିହରୁ ଅଛ ପୁଣି ॥ ୧୬୭ ॥
କେ ଆପଣ ଏଥି ଆସି ଅଛ ଦ୍ୱିଜବର ।
ସେ କଥା ସବୁ କହି ସଂଶୟ ଫେଡ଼ ମୋର ॥ ୧୬୮ ॥

ଏମନ୍ତ ନୃପ ମୁଖୁଁ ଶୁଣିଣ ଦ୍ୱିଜବର ।
ବୋଲଇ ସାବଧାନେ ବୁଝହୋ ନୃପବର ॥ ୧୬୯ ॥
କେ ଅବା ଅଟ ତୁମ୍ଭେ ବୋଲି ଯା ପଚାରିଲ ।
କେ ବୋଲି ମୁହିଁ ଏବେ କହିବି ମହୀପାଳ ॥ ୧୭୦ ॥
କହିବାକୁ ମୋହର ସାମର୍ଥ୍ୟ ନାହିଁ କିଛି ।
କର୍ମ ଭୋଗ ନିମିତ୍ତେ ଗମନ କରୁଅଛି ॥ ୧୭୧ ॥
ଦୁଃଖ ସୁଖ ଏ ଦୁହେଁ ଅଟନ୍ତି କର୍ମଫଳ ।
ସମସ୍ତେ ତାହା ଭୋଗ କରନ୍ତି ମହୀପାଳ ॥ ୧୭୨ ॥
ଦେଶ କାଳେ ଯାହାବା ଅର୍ଜନ୍ତି ପ୍ରାଣୀମାନେ ।
ସେ ଦୁଃଖ ସୁଖଫଳ ଭୁଞ୍ଜନ୍ତି ପ୍ରତିଦିନେ ॥ ୧୭୩ ॥
ଦୁଃଖସୁଖ ଭୁଞ୍ଜିବା ପାଇଁ ହୋ ନରବର ।
ଦେଶାନ୍ତର ଗମନ କରନ୍ତି ସର୍ବନର ॥ ୧୭୪ ॥
ପ୍ରାଣୀଙ୍କର କାରଣ ଅଧର୍ମ ଧର୍ମ ବେନି ।
କାରଣ ବୋଲି କିସ ପଚାର ନୃପମଣି ॥ ୧୭୫ ॥
ବ୍ରାହ୍ମଣ ମୁଖୁଁ ଶୁଣି ବୋଲଇ ଦଣ୍ଡଧର ।
ଉଚିତ ଏକା ତୁମ୍ଭେ କହିଲ ଦ୍ୱିଜବର ॥ ୧୭୬ ॥
ସବୁ କାର୍ଯେ କାରଣ ଅଧର୍ମ ଧର୍ମ ଦୁଇ ।
ଦେଶାନ୍ତର ଗମନ କେବଳ ଭୋଗ ପାଇଁ ॥ ୧୭୭ ॥
ମୁହିଁକେ କହିବାକୁ ସାମର୍ଥ୍ୟ ନାହିଁ ମୋର ।
ଏମନ୍ତ ବୋଲି ଯାହା କହିଲ ବିପ୍ରବର ॥ ୧୭୮ ॥
ସେ କଥା ପଚାରୁଛି କହିବା ହୋଉ ଏବେ ।
ଯେ ଆମ୍ଭେ ସେହି ବୋଲି ନ କହ କିପାଁ ତୁମ୍ଭେ ॥ ୧୭୯ ॥
ନରପତି ବଚନେ ବୋଲଇ ଦ୍ୱିଜବର ।
ଶୁଣିମା ହୋଉ ଆହେ ନୃପତି ଅଳଙ୍କାର ॥ ୧୮୦ ॥
ଆମ୍ଭେ ବୋଲି କେମନ୍ତେ ବୋଲନ୍ତି ନୃପୋତ୍ତମ ।
ବୋଇଲେ ତ ଦେହରେ ହୋଇଛି ଆତ୍ମାଭ୍ରମ ॥ ୧୮୧ ॥
ଅଧର ଦନ୍ତ ତାଳୁ ଏ ତିନି ଘେନି କରି ।
ରସନାସିନା ଆମ୍ଭେ ବୋଲଇ ଦଣ୍ଡଧାରୀ ॥ ୧୮୨ ॥
ବଚନ ଏକା ଆମ୍ଭେ ବୋଲୁଛି ନୃପୋତ୍ତମ ।
ସେ କଥା ବୋଲିବାର କଦାପି ନୋହେ ଧର୍ମ ॥ ୧୮୩ ॥
ଚରଣ ଶିରପାଣି ସହିତେ ଯେତେ ଅଙ୍ଗ ।
ସେ ଯେବେ ଭିନ୍ନଭିନ୍ନ ହୋଇବେ ମହାଭାଗ ॥ ୧୮୪ ॥
ଆମ୍ଭେ ବୋଲି କାହାକୁ ବୋଲିବ ତେତେବେଳେ ।
ଶୁଣହୋ ନରନାଥ ଅତ୍ୟନ୍ତ ପ୍ରେମଭୋଳେ ॥ ୧୮୫ ॥

ଆଉ କେ ଥିଲେ ସିନା ମୋଠାରୁ ଭିନ୍ନ ହୋଇ ।
ତୁମ୍ଭେ ବୋଲି ବୋଲନ୍ତି ନୃପତି କୁଳସାଇଁ ।। ୧୮୬ ।।
ଏକ ଆତ୍ମା ସକଳ ପ୍ରାଣୀଙ୍କ ଦେହେ ସ୍ଥିତ ।
ଆମ୍ଭେ ବୋଲି କାହାକୁ ବୋଲିବି ନରନାଥ ।। ୧୮୭ ।।
ତୁ ରାଜା ଏ ଶିବିକା ବହିବା ଲୋକ ଆମ୍ଭେ ।
କେହି ନିତ୍ୟ ନୋହିଟି ଶୁଣିମା ହୋଉ ଏବେ ।। ୧୮୮ ।।
ବୃକ୍ଷରୁ ଦାରୁହେଲା ସେ ଦାରୁ ଏ ଶିବିକା ।
ବୃକ୍ଷ କି ଦାରୁ ବୋଲି ନୁହଇଁ ଏଥି ଶଙ୍କା ।। ୧୮୯ ।।
ଦାରୁମାନେ ରଚନା କରିବା ଘେନି ଏବେ ।
ଶିବିକା ବୋଲି ସଂଜ୍ଞା ଦେଇଛ ସିନା ତୁମ୍ଭେ ।। ୧୯୦ ।।
ଏ କାଷ୍ଠ ଖଣ୍ଡମାନ ହୋଇଲେ ଭିନ୍ନ ଭିନ୍ନ ।
କାହାକୁ ଶିବିକା ତୁ ବୋଲିବୁ ହୋ ରାଜନ ।। ୧୯୧ ।।
ଶଳାକାମାନେ ଛତ୍ର ହୋଇଛି ସିନା ତୋର ।
ସେ ଭାଜି ଗଲେ ଛତ୍ର କାହିଁ ହୋ ଦଣ୍ଡଧର ।। ୧୯୨ ।।
ସ୍ତ୍ରୀ ପୁଂସପକ୍ଷୀ ଖର କୁଞ୍ଜର ବାଜିଦ୍ରୁମ ।
ଲୋକ ସଂଜ୍ଞା ସକାଶୁଁ ଭିନ୍ନ ଏ ସବୁ ନାମ ।। ୧୯୩ ।।
କର୍ମର କାରଣ ଏ ନୃପତି କଳାକର ।
ସମସ୍ତେ ଏକ ଏଥି ନ ଘେନ ଅଭ୍ୟନ୍ତର ।। ୧୯୪ ।।
ପୁରୁଷ ଦେବ ପଶୁ ମନୁଷ୍ୟ ବୃକ୍ଷ ଯେତେ ।
ଆକୃତି ଅଙ୍ଗଭେଦେ ଅଛନ୍ତି ସେ ସମସ୍ତେ ।। ୧୯୫ ।।
ରାଜାଏ ସେବକ ଏ ଏ ଯେଉଁ ସଙ୍କଳ୍ପନା ।
ବିଚାରିଲେ ନୃପତି କେବଳ ମିଛସିନା ।। ୧୯୬ ।।
ସବୁକାଳେ  ଯେବଣ ସମାନ ବସ୍ତୁ ପୁଣି ।
ଯାହାର ଆନ ସଂଜ୍ଞା ନଥାଏ ନୃପମଣି ।। ୧୯୭ ।।
ତାହାକୁ ଏକା ନିତ୍ୟ ବୋଲନ୍ତି ସାଧୁଜନେ ।
ନୃପତି କଳାକର ଶୁଣହେ ତୋଷମନେ ।। ୧୯୮ ।।
ଲୋକଙ୍କର ରାଜାତୁ ପୁତ୍ରର ପିତା ପୁଣି ।
ପତ୍ନୀର ପତି ଅଟୁ ନୃପତି ଶିରୋମଣି ।। ୧୯୯ ।।
ଶତ୍ରୁଙ୍କର ଶତ୍ରୁ ଯେ ପିତାର ପୁତ୍ର ତୁହି ।
କହଏବେ କି ବୋଲି ବୋଲିବି ତୋତେ ମୁହିଁ ।। ୨୦୦ ।।
କର ଶିର ଚରଣ ସହିତେ ଯେତେ ଅଙ୍ଗ ।
ଏ ସମସ୍ତ ମୁହିଁ ଯେ ବୋଲୁଛୁ ମହାଭାଗ ।। ୨୦୧ ।।
କି ଅବା ଶିର ତୁହି ତୋହର ଅବା ଶିର ।
ଉଦର ଅବା ତୋର ତୁ ଅବା ଉଦରର ।। ୨୦୨ ।।

ପାଦାଦି ଅବା ତୋର ତୁ ଅବା ପାଦ ପାଣି ।
କାହାକୁ ଅବା ତୋତେ ବୋଲିବା ନୃପମଣି ॥ ୨୦୩ ॥
ଅଙ୍ଗରୁ ଭିନ୍ନ ହେଲେ ତୋହର ନାମ କିସ ।
ଏ ସବୁ ଅନୁମାନ କର ହେ ନରଈଶ ॥ ୨୦୪ ॥
ଶ୍ରୀବିଷ୍ଣୁ ପୁରାଣ ଏ ଦ୍ୱିତୀୟ ଅଂଶଗୀତ ।
ଭରତ ଉପାଖ୍ୟାନ ତ୍ରିଦଶଅଧା ଖ୍ୟାତ ॥ ୨୦୫ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୨୦୬ ॥

# ଚତୁର୍ଦ୍ଦଶ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ତପଚାରୀ ।
ଦ୍ୱିଜର ବାକ୍ୟ ଶୁଣି ସୌବୀର ଦଣ୍ଡଧାରୀ ।। ୧ ।।
ଭକ୍ତିରେ ନମ୍ର ହୋଇ କହଇ ମୃଦୁବାଣୀ ।
ଶୁଣିମା ହୋଉ ଆହେ ବ୍ରାହ୍ମଣ ଶିରୋମଣି ।। ୨ ।।
ପରମାର୍ଥ ବିଷୟ କହିଲ ଯାହା ମୋତେ ।
ଶୁଣିମାରୁ ହୋଇଛି ମୋର ଚିତ୍ତେ ।। ୩ ।।
ସର୍ବପ୍ରାଣୀଠାରେ ତା' ଦେଖାଅ ବିପ୍ରମଣି ।
ହୃଷ୍ଟମନେ କହିଲ ଯେବଣ ଜ୍ଞାନବାଣୀ ।। ୪ ।।
ପ୍ରକୃତିରୁ ଅନ୍ତର ପରି ସେ ମହାଜ୍ଞାନ ।
ଉତ୍ତମ କରି କହି ତୋଷ ହେ ମୋର ମନ ।। ୫ ।।
ଶିବିକା ବହି ନାହିଁ ମୋଠାରେ କି ଶିବିକା ।
ଏମନ୍ତ ବୋଲିବାରୁଁ ହୋଇଲି ମୁଁ ତାଟକା ।। ୬ ।।
ପୁଣି ବୋଇଲି ଶିବିକାକୁ ଯେ କଳେବର ।
ବହିଛି ମହାତମା ଏ ବଡ଼ ଚମତ୍କାର ।। ୭ ।।
ସେ ଯେଉଁ ଶରୀର ଯେ ମୋଠାରୁଁ ଅଟେ ଭିନ୍ନ ।
ବୋଇଲ ଯା ଆଶ୍ଚର୍ଯ୍ୟ ମଣିଲି ଭୋ ବ୍ରାହ୍ମଣ ।। ୮ ।।
ଆଉ ପୁଣି ବୋଇଲ ଶୁଣ ତୁ ନୃପବର ।
ଗୁଣ ଯେବେ ପ୍ରବୃତ୍ତି ହୁଅଇ ବାରମ୍ବାର ।। ୯ ।।
ତେଣେ ପ୍ରାଣୀମାନଙ୍କ ପ୍ରବୃତ୍ତି ହୋଏ ପୁଣ ।
ସେ ପ୍ରବୃତ୍ତି କର୍ମର ପ୍ରେରିତ ବିଧାନେଣ ।। ୧୦ ।।
ଏ ସମସ୍ତ କେବଳ ଗୁଣର ପ୍ରବର୍ତ୍ତନ ।
ମୋହର ବୋଲି କିପାଇଁ ବୋଇଲୁ ତୁ ରାଜନ ।। ୧୧ ।।
ଏମନ୍ତ ବୋଲି ଯାହା ବୋଇଲ ଦ୍ୱିଜବର ।
ଶୁଣି କରି ବିହ୍ୱଳ ହୋଉଛି ଚିତ୍ତ ମୋର ।। ୧୨ ।।
ପରମାର୍ଥ କଥାକୁ ଉତ୍କଣ୍ଠା କରି ମୁହିଁ ।
କପିଳ ଋଷିଠାକୁ ଅଇଲି ଆଜ ଧାଇଁ ।। ୧୩ ।।
ଏବେ ଯେ ତୁମ୍ଭ ମୁଖୁଁ ଶୁଣିଲି ପରମାର୍ଥ ।
ତୁମ୍ଭର କରୁଣାରୁଁ ଜୀବନ କଲି ସାର୍ଥ ।। ୧୪ ।।
ଏବେ ମୋ ଅଭିଳାଷ ବଳିଛି ତୁମ୍ଭଠାରେ ।
ପରମାର୍ଥଚରିତ କହହେ ସନ୍ତୋଷରେ ।। ୧୫ ।।

ସାକ୍ଷାତ ବିଷ୍ଣୁଙ୍କର ଅଂଶରେ ଅବତରି ।
ବିଶ୍ୱମୋହନାଶକ୍ତି କପିଳ ତପଚାରୀ ॥ ୧୬ ॥
ସେ କପିଳ କେବଳ ଆପଣ ଅଟ ତୁମ୍ଭେ ।
ମୋହର ହିତ ଅର୍ଥେ ଦର୍ଶନ ଦେଲ ଏବେ ॥ ୧୭ ॥
ନାନା ଜ୍ଞାନ ତରଙ୍ଗମାନଙ୍କେ ପୂର୍ଣ୍ଣ ହୋଇ ।
ସମୁଦ୍ର ପରି ଅଟ ବ୍ରାହ୍ମଣ କୁଳସାଇଁ ॥ ୧୮ ॥
ଏବେ ମୁହିଁ ପ୍ରଣାମ କରୁଛି ବାରମ୍ବାର ।
ପରମଶ୍ରେୟ କଥା ମୋ ଆଗେ ଆଜ୍ଞାକର ॥ ୧୯ ॥
ନୃପତି ବଦନରୁ ଏମନ୍ତ କଥା ଶୁଣି ।
କହନ୍ତି ଦ୍ୱିଜବର ଅତ୍ୟନ୍ତ ମୃଦୁବାଣୀ ॥ ୨୦ ॥
ହେ ରାଜା ପରମାର୍ଥ ବିଷୟ ନ ପଚାରି ।
ଶ୍ରେୟ କଥା ପଚାରୁ କେବଣ କାର୍ଯ୍ୟେ କରି ॥ ୨୧ ॥
ଅନେକ ମତେ ଶ୍ରେୟ ଅଛି ହେ ନରନାଥ ।
ଏକ ବିନା ଅନେକ ନୁହଇ ପରମାର୍ଥ ॥ ୨୨ ॥
ଦେବତା ପୂଜା କରି ଯେବଣ ପ୍ରାଣୀମାନେ ।
ଧନ ଜନ ସମ୍ପଦ ବାଞ୍ଛନ୍ତି ପ୍ରତିଦିନେ ॥ ୨୩ ॥
ରାଜ୍ୟ ପୁତ୍ର କଳତ୍ର ନୋହିଲେ ମନାସନ୍ତି ।
ତାହାକୁ ଏକା ଶ୍ରେୟ ବୋଲି ହୋ ନରପତି ॥ ୨୪ ॥
ସ୍ୱର୍ଲୋକ ଫଳ ଦାତା ଯେବଣ ଯାଗକର୍ମ ।
ତାହାକୁ ଶ୍ରେୟ ବୋଲି ହୋ ନୃପୋତ୍ତମ ॥ ୨୫ ॥
ନିଷ୍କାମ ଯାଗ କର୍ମ ବୋଲଇ ମଧ ଶ୍ରେୟ ।
ଶୁଣହୋ ନରନାଥ ଅପୂର୍ବ ଜ୍ଞାନମୟ ॥ ୨୬ ॥
ଯୋଗବଳେ ଯୋଗୀ ଯେ ପରମଆତ୍ମା ଠାରେ ।
ଜୀବଆତ୍ମା ନିଯୁକ୍ତ କରନ୍ତି ତୋଷ ଭରେ ॥ ୨୭ ॥
ତାହାକୁ ମଧ ଶ୍ରେୟ ବୋଲନ୍ତି ସାଧୁଜନେ ।
ସୌବୀର ନରନାଥ ଶୁଣହୋ ତୋଷମନେ ॥ ୨୮ ॥
ଏପରି ଶ୍ରେୟମାନେ ଅଛନ୍ତି ନାନା ମତେ ।
ନିର୍ଣ୍ଣୟ କରି ମୁହିଁ କହିବି ଅବା କେତେ ॥ ୨୯ ॥
ଏକ ବିନା ଅନେକ ନୁହଇ ପରମାର୍ଥ ।
ନିଶ୍ଚଳମନେ ଏବେ ଶୁଣହେ ନରନାଥ ॥ ୩୦ ॥
ଧନକୁ ପରମାର୍ଥ ବୋଇଲେ ନରସାଇଁ ।
ଧର୍ମରେ ଏକା ଧନ କଦାପି ନ ଲାଗଇ ॥ ୩୧ ॥
ଚନ୍ଦନସ୍ରକ ବାମା ଏମନ୍ତେ ଯେତେ ଭୋଗ ।
ତହିଁରେ ମଧ ଧନ ଲାଗଇ ମହାଭାଗ ॥ ୩୨ ॥

ପୁତ୍ରକୁ ପରମାର୍ଥ ବୋଇଲେ ନରନାଥ ।
ପୁତ୍ରର ପୁତ୍ର ଯହୁଁ ସେ ହେବ ପରମାର୍ଥ ।। ୩୩ ।।
ଏକ ଯେ ପରମାର୍ଥ ଅନେକ ହୋଇ ଜୀବ ।
ଏଣୁ ପରମାର୍ଥର ଏ ନିୟମ ନ ରହିବ ।। ୩୪ ।।
ଏ ଘେନି ପରମାର୍ଥ ସଂସାରେ ଆଉ ନାହିଁ ।
ଏବେ ଯେତେ ତୁମ୍ଭଙ୍କୁ କହିଲେ ନରସାଇଁ ।। ୩୫ ।।
ସବୁ ପରମାର୍ଥର କାର୍ଯ୍ୟ ଏ ନରନାଥ ।
ଏମାନେ କେହି ଆଉ ନୁହନ୍ତି ପରମାର୍ଥ ।। ୩୬ ।।
ରାଜ୍ୟକୁ ଆଦି କରି ଐଶ୍ୱର୍ଯ୍ୟମାନେ ଯେତେ ।
ପରମାର୍ଥରେ କିସେ ମିଳନ୍ତି ଏ ଜଗତେ ।। ୩୭ ।।
ଋକ୍ ଯଜୁ ସାମ ମିଶି ଏ ଯଜ୍ଞ ତିନି ଶ୍ରୁତି ।
ଏଥିରେ ଯଜ୍ଞ ଯାଗକର୍ମ ହୋ ନରପତି ।। ୩୮ ।।
ପରମାର୍ଥ ଭୂତ ସେ ତଥାପି ଶୁଣ ଏବେ ।
ନିର୍ଣ୍ଣୟ କରି ତୋତେ କହିବା ସବୁ ଆମ୍ଭେ ।। ୩୯ ।।
ମୃତ୍ତିକାରେ କୁଲାଳ ଯେ ଘଟ ନିର୍ମାଣଇ ।
ମୃତ୍ତିକାରୁ ଆଉ ସେ ଭିନ୍ନ କି ନରସାଇଁ ।। ୪୦ ।।
ସେପରି କୁଶ ଆଜ୍ୟ ସମିଧମାନ ଯେତେ ।
ବିନାଶି ଦ୍ରବ୍ୟ ତାକୁ ବୋଲନ୍ତି ଯେ ଜଗତେ ।। ୪୧ ।।
ବିନାଶି ଯେହ୍ନୁ ଦ୍ରବ୍ୟ ତହିଁରେ ଯଜ୍ଞ ଯାଗ ।
ସେହି ମଧ ବିନାଶି ସିନା ହୋ ମହାଭାଗ ।। ୪୨ ।।
ଅବିନାଶୀ କେବଳ ଅଟଇ ପରମାର୍ଥ ।
ଏମନ୍ତ ବୋଲି କହି ଅଛନ୍ତି ସୁପଣ୍ଡିତ ।। ୪୩ ।।
ମୁକ୍ତି ସାଧନ ଭୂତ ଯେ ଅଟେ ନୃପବର ।
ସେ ପରମାର୍ଥ କଥା ଶ୍ରବଣ ତୁହି କର ।। ୪୪ ।।
ଆତ୍ମାକୁ ଏକ ମନେ କରିବ ଯେବେ ଧ୍ୟାନ ।
ତାହାକୁ ପରମାର୍ଥ ବୋଲନ୍ତି ବୁଜନ ।। ୪୫ ।।
ପରମାର୍ଥ କଥାରୁ ଇତର ଯେତେ କର୍ମ ।
ତାହାଙ୍କ ଭେଦ ଅଛି ଶୁଣହେ ନୃପୋତ୍ତମ ।। ୪୬ ।।
ଅଭେଦ ଦ୍ରବ୍ୟ ଏକା ଅଟଇ ପରମାର୍ଥ ।
ସାବଧାନେ ଶୁଣହେ ନୃପତି କଳାନାଥ ।। ୪୭ ।।
ଜୀବାତ୍ମା ପରମାତ୍ମା ଦୁହିଁ ଯଜ୍ଞ ଯୋଗ ।
ତାହାକୁ ପରମାର୍ଥ ବୋଲି ହେ ମହାଭାଗ ।। ୪୮ ।।
ଏଥିରୁଂ ଆନ ଯେତେ ତାହାଙ୍କୁ ଦ୍ରବ୍ୟ କହି ।
ପରମାର୍ଥ ଦ୍ରବ୍ୟ ଯେ ନୁହଇ ନରସାଇଁ ।। ୪୯ ।।

ଶ୍ରେୟମାନେ ସଂସାରେ ଅଛନ୍ତି ନାନାମତେ ।
ପରମାର୍ଥ କହିବା ଶୁଣହୋ ଶୁଦ୍ଧଚିତ୍ତେ ।। ୫୦ ।।
ସ୍ୱ ଜାତୀୟ ପଦାର୍ଥ ତାହାର କିଛି ନାହିଁ ।
ଆକାଶ ପରି ଯେହ୍ନୁ ସଂସାରେ ଅଛି ରହି ।। ୫୧ ।।
ଅଧିକ ଊଣା ବେନି ଯାହାର ନାହିଁ କିଛି ।
ରାଗାଦି ଦୋଷରୁ ଯେ ଅନ୍ତର ହୋଇ ଅଛି ।। ୫୨ ।।
ସତ୍ତ୍ୱ ରଜ ତମ ଯେ ତ୍ରିଗୁଣ ଯା'ର ନାହିଁ ।
ଏ ଘେନି ପ୍ରକୃତିରୁ ଅନ୍ତର ଅଛି ହୋଇ ।। ୫୩ ।।
ଜନ୍ମବୃଦ୍ଧି ସହିତେ ସ୍ୱଭାବ ଶୂନ୍ୟ ପୁଣି ।
ସେ କଥା ଅବା କିସ ପଚାରୁ ନୃପମଣି ।। ୫୪ ।।
ଆତ୍ମା ରୂପେ ସକଳ ଜୀବରେ ଯା'ର ସ୍ଥିତି ।
ଯଉଂ ପ୍ରଭୁ ଦେହର ଧର୍ମରୁ ଶୂନ୍ୟ ଅତି ।। ୫୫ ।।
ନାମ ଜତି ମାନ କିଛି ହିଁ ନାହିଁ ତାର ।
ନିରନ୍ତରେ ଯାହାର ସ୍ୱତନ୍ତ୍ର ବ୍ୟବହାର ।। ୫୬ ।।
ଯୋଗବନ୍ତ ନୁହଇ ନୁହଇ ମଧ ଯୁକ୍ତ ।
ଯୁକ୍ତ ପୁଣି କରଇ ନାହିଁହେ ନରନାଥ ।। ୫୭ ।।
ସ୍ୱତଃସିଦ୍ଧ ଏକ ସେ ବିବିଧରୂପ ଧରି ।
ଭେଦ ଭ୍ରମ କରାଉଅଛି ହୋ ଦଣ୍ଡଧାରୀ ।। ୫୮ ।।
ଏମନ୍ତ ଯଉଂ ପ୍ରଭୁ ସେହି ସେ ପରମାର୍ଥ ।
ଏ ଘେନି ଅଦ୍ୱିତୀୟ ବୋଲି ହୋ ନରନାଥ ।। ୫୯ ।।
ଏକ ସିନା ପବନ ଦ୍ୱିତୀୟ ନାହିଁ ତାର ।
ସେ ପୁଣି ବେଣୁରନ୍ଧ୍ରେ ହୁଅଇ ନାନା ସ୍ୱର ।। ୬୦ ।।
କେ ବୋଲଇ ଷଡ଼ଜ ଋଷଭ କେ ବୋଲଇ ।
ସେପରି ଏକ ଆତ୍ମା ଅନେକ ଅଛି ହୋଇ ।। ୬୧ ।।
ବାହ୍ୟକର୍ମ ଜନ୍ୟ ସେ ବିବିଧ ଦେହ ଧରି ।
ଅଭେଦ ଏକା ଭେଦ ହୋଇଛି ଦଣ୍ଡଧାରୀ ।। ୬୨ ।।
ବ୍ରହ୍ମଜ୍ଞାନ ବାଣୀ ଏ ବିଚିତ୍ର ସୁଧାରସ ।
କୁଶଳେ ଚତୁର୍ଦ୍ଦଶ ଅଧ୍ୟାୟ ହେଲା ଶେଷ ।। ୬୩ ।।
ଶ୍ରୀବିଷ୍ଣୁ ପୁରାଣଙ୍କ ଦ୍ୱିତୀୟ ଅଂଶଗୀତ ।
ଭରତ ସଉବୀର ସମ୍ବାଦ ସୁଚରିତ ।। ୬୪ ।।
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ।। ୬୫ ।।

# ପଞ୍ଚଦଶ ଅଧ୍ୟାୟ

ବୋଲନ୍ତି ପରାଶର ଶୁଣହେ ମୁହାମୁନି ।
ବ୍ରାହ୍ମଣ ବଦନରୁ ଏମନ୍ତ କଥା ଶୁଣି ॥ ୧ ॥
ଅତ୍ୟନ୍ତ ଚିନ୍ତାଭରେ ମଉନ ହୋଇକରି ।
ତଳମୁଖ ହୋଇଣ ରହିଲା ଦଣ୍ଡଧାରୀ ॥ ୨ ॥
ତା' ଦେଖି ରାଜାକୁ ସେ ବୋଲଇ ବିପ୍ରବର ।
ସାବଧାନେ ଶୁଣିମା ହୋଉ ହେ ଦଣ୍ଡଧର ॥ ୩ ॥
ନିଦାଘ ମୁନିଙ୍କର ଉତ୍ତମଜ୍ଞାନ ପାଇ ।
ଋଭୁ ଯାହା ପୂରୁବ କାଳରେ ଥିଲେ କହି ॥ ୪ ॥
ସେ କଥାମାନ ସବୁ କହିବା ତୋର ଆଗେ ।
ଶୁଣିମା ହୋଉ ରାଜା ଅତ୍ୟନ୍ତ ଅନୁରାଗେ ॥ ୫ ॥
ଋଭୁ ନାମେ ବ୍ରହ୍ମାଙ୍କ ନନ୍ଦନ ହେଲେ ଜାତ ।
ସେ ମୁନିକୁଳଚନ୍ଦ୍ର ଜାଣନ୍ତି ସର୍ବତତ୍ତ୍ୱ ॥ ୬ ॥
ନିଦାଘ ନାମେ ଯଉଂ ପୁଲସ୍ତ୍ୟମୁନି ସୁତ ।
ଋଭୁଙ୍କର ଶିଷ୍ୟ ସେ ଶୁଣହେ ନରନାଥ ॥ ୭ ॥
ସେ ଯଉଂ ଋଭୁ ନାମେ ପରମ ତପୋଧନ ।
ନିଦାଘଙ୍କୁ କହିଲେ ବିବିଧମତେ ଜ୍ଞାନ ॥ ୮ ॥
ଯେତେ ଜ୍ଞାନ କହିଲେ ସେ ଋଭୁ ମୁନିବର ।
ଅଦ୍ୱୈତ ଜ୍ଞାନ ଆଉ ନୋହିଲା ଶିଷ୍ୟଙ୍କର ॥ ୯ ॥
ଶିଷ୍ୟଙ୍କର ସେ ରୀତି ତରକି ତପୋଧନ ।
ଅନେକ ମତେ ଚିନ୍ତା କରନ୍ତି ପ୍ରତିଦିନ ॥ ୧୦ ॥
ସହସ୍ରେ ଦିବ୍ୟ ବର୍ଷ ଉତ୍ତାରୁଂ ଏକ ଦିନେ ।
ଶିଷ୍ୟଙ୍କ ଗୃହେ ମୁନି ମିଳିଲେ ତୋଷମନେ ॥ ୧୧ ॥
ପୁର ନାମେ ନଗର ଏକ ହୋ ନରବର ।
ଦେବିକା ନଦୀ ତଟେ ଦିଶେ ସେ ମନୋହର ॥ ୧୨ ॥
ସେ ନଦୀ ପୁଳିନରେ ଥିଲା ଯେ ଏକ ବନ ।
ବିବିଧ ତରୁଲତାମାନଙ୍କେ ହୋଇ ପୂର୍ଣ୍ଣ ॥ ୧୩ ॥
ସେ ଉପବନ ମଧ୍ୟେ ଆଶ୍ରମ ଏକ କରି ।
ଆନନ୍ଦେ ରହିଥିଲେ ନିଦାଘ ତପଧାରୀ ॥ ୧୪ ॥
ସେଠାରେ ଋଭୁମୁନି ହୋଇଲେ [illegible]
ଗୁରୁଙ୍କୁ ଅନାଇଂ ସେ ହୋଇଲେ ଅତି [illegible]

ନିର୍ମଳ ଅର୍ଘ୍ୟଜଳ ସତ୍ୱରେ ଆଣି ଦେଲେ ।
ଚରଣ ଧୋଇ ଋଭୁ ମନିରେ ଯାଇ ହେଲେ ॥ ୧୬ ॥
ଋଭୁଙ୍କୁ ଗୃହେ ଦେଖି ନିଦାଘ ତପୋଧନ ।
ବିନୟନମ୍ର ହୋଇ ବୋଲନ୍ତି ଏ ବଚନ ॥ ୧୭ ॥
ଭୋ ଗୁରୁ ବୈଶ୍ୱଦେବ ବଢ଼ିଛି ଏବେ ମୋର ।
ଆନନ୍ଦେ ମୋର ପୁରେ ଭୋଜନ ତୁମ୍ଭେ କର ॥ ୧୮ ॥
ନିଦାଘଙ୍କ ବଦନୁ ଏମନ୍ତ କଥା ଶୁଣି ।
ମଧୁର ମୁଖେ ହସି ବୋଲନ୍ତି ଋଭୁମୁନି ॥ ୧୯ ॥
ଭୋଜନ କର ବୋଲି ବୋଲୁଛ ମୋତେ ଯେବେ ।
କୁତ୍ସିତ ଅନ୍ନ ମୁହିଁ ଭୁଞ୍ଜାଇ ନାହିଁ କେବେ ॥ ୨୦ ॥
ଏ ବଚନେ ବୋଲନ୍ତି ନିଦାଘ ମୁନିବର ।
ଯାହା ଅବା ରୁଚିବ ଭୋଜନ ତୁମ୍ଭେ କର ॥ ୨୧ ॥
ଯବାକ କନ୍ଦମୂଳ ପିଷ୍ଟକ ଆଦି ଯେତେ ।
ମୋ ସଦନେ ମୁନିହେ ଅଛନ୍ତି ଏ ସମସ୍ତେ ॥ ୨୨ ॥
ନିଦାଘ ତପସ୍ୱିଙ୍କ ବଦନୁ ଏହା ଶୁଣି ।
ବିସ୍ମୟ ହେଲା ପରି ବୋଲନ୍ତି ଋଭୁମୁନି ॥ ୨୩ ॥
ଯେତେ ଦ୍ରବ୍ୟ ମୋ ଆଗେ କହିଲ ଆହେ ବାବୁ ।
ଏ କେମନ୍ତେ ରୁଚିବ କୁତ୍ସିତ ଅନ୍ନ ସବୁ ॥ ୨୪ ॥
ମଧୁର ଦଧିଅନ୍ନ ପିଷ୍ଟକ ଅଟକାଳି ।
ଫେଣି ଆଦି ଏମାନ ଆଣ ହେ ଶୁଦ୍ଧଶାଳୀ ॥ ୨୫ ॥
ଗୁରୁଙ୍କ ବଦନରୁ ଏମନ୍ତ ବାଣୀ ଶୁଣି ।
ଭାର୍ଯ୍ୟାଙ୍କୁ ଡାକ ଦେଲେ ନିଦାଘ ମହାମୁନି ॥ ୨୬ ॥
ଆଗୋ ଆଗୋ ଶାଳିନୀ ଯେ ଅଛି ଆମ୍ଭ ଘରେ ।
ଉତ୍ତମ ଭକ୍ଷ୍ୟ ସବୁ ସଜାଡ଼ ତୋଷ ଭରେ ॥ ୨୭ ॥
କାନ୍ତର ଏ ବଚନେ ସେ ଯଉଂ ଋଷିନାରୀ ।
ମିଷ୍ଟାନ୍ନ ସଜାଡ଼ିଲେ ଅତ୍ୟନ୍ତ ଯତ୍ନ କରି ॥ ୨୮ ॥
ସେ ଅନ୍ନ ଆଣି ମୁନି ଗୁରୁଙ୍କୁ ସମର୍ପିଲେ ।
ଆନନ୍ଦ ମନେ ଋଭୁ ଭୋଜନ ତାହା କଲେ ॥ ୨୯ ॥
ଭୋଜନ କଲାବେଳେ ନିଦାଘ ମୁନିବର ।
ଗୁରୁଙ୍କୁ ଓଳଗିଲେ ମସ୍ତକେ ଯୋଡ଼ିକର ॥ ୩୦ ॥
ମିଷ୍ଟାନ୍ନ ଭୁଞ୍ଜିଲ ଯେ ତପସ୍ୱୀ ନିଶାପତି ।
ସତ କହ ତୁମ୍ଭର ହେଲା କି ଅତି ତୃପ୍ତି ॥ ୩୧ ॥
କଉଂଠାରେ ନିବାସ କରିଛ ଅବା ତୁମ୍ଭେ ।
କଉଂଠାକୁ ଅଥବା ଆପଣ ଯିବ ଏବେ ॥ ୩୨ ॥

କେତେକ ବିଷୟରେ ଆସିଛ ତାହା କହ ।
ମୋଠାରେ ଅଛି ଯେବେ ଭୋ ଗୁରୁ ତୁମ୍ଭ ସ୍ନେହ ।। ୩୩ ।।
ଏ ବଚନେ ସେ କାଳେ ବୋଲନ୍ତି ଋଭୁମୁନି ।
ସାବଧାନେ ଶୁଣିମା ହୋଉ ହେ ମହାଜ୍ଞାନୀ ।। ୩୪ ।।
ଯାହାର ଯଉଂ ଅନ୍ନ ତାହାର ତହିଁ ତୃପ୍ତି ।
ତୃପ୍ତି କଥା କାହିଁକି ପଚାରୁ ମହାଯତି ।। ୩୫ ।।
ତଥାପି ନିଦାଘ ହେ ମୋହର କ୍ଷୁଧା ନାହିଁ ।
କି ବୋଲି ତୁମ୍ଭ ଆଗେ କହିବି ତାହା ମୁହିଁ ।। ୩୬ ।।
ଜଠରେ ଥିବା ଅଗ୍ନି ଅନ୍ନକୁ ପାନ କରି ।
ଧାତୁଙ୍କୁ ଯେବେ ପାକ କରଇ ତପଚାରି ।। ୩୭ ।।
ସେ କାଳେ ଯାଇ କ୍ଷୁଧା ହୁଅଇ ଉତପନ୍ନ ।
ସାବଧାନେ ଶୁଣହେ ମୈତ୍ରେୟ ତପୋଧନ ।। ୩୮ ।।
ସଲିଳ ଯେବେ ପାକ ହୁଅଇ ତପଚାରୀ ।
ତୃଷା ମଧ ପ୍ରବଳ ହୁଅଇ କ୍ଷୁଧା ପରି ।। ୩୯ ।।
କ୍ଷୁଧା ତୃଷା ଏ ଦୁହେଂ ଦେହର ଧର୍ମ ସିନା ।
ମୋତେ କିପାଂ ତପସ୍ୱୀ ପଚାର ହେତୁ ବିନା ।। ୪୦ ।।
କ୍ଷୁଧାତୃଷା ଏ ଦୁହେଂ ନୁହନ୍ତି ଯେଣୁ ମୋର ।
ତୃପ୍ତି ଅବା କାହିଁକି ନଥିବ ନିରନ୍ତର ।। ୪୧ ।।
ସୁସ୍ଥତା ତୁଷ୍ଟି ବୋଲି ଅଛନ୍ତି ଯଉଂ ବେନି ।
ମାନସର ଧର୍ମ ସେ ନିଦାଘ ମହାମୁନି ।। ୪୨ ।।
ଚିତ୍ତକୁ ପଚାରିଲେ ସେ ଅବା ଦେବ କହି ।
ସୁସ୍ଥତା ତୁଷ୍ଟି ମୋତେ ପଚାର କାହିଁ ପାଇଂ ।। ୪୩ ।।
କାହିଂ ଯିବ କାହିଂକି ଅଇଲ ସାଧୁଶୀଳ ।
କଉଂଠାରୁ ଆସିଲ ବୋଲି ଯା ପଚାରିଲ ।। ୪୪ ।।
ସେ କଥା ଶୁଣ ଏବେ ଅତ୍ୟନ୍ତ ଅନୁରାଗେ ।
ମୁନୀନ୍ଦ୍ର କଳାକର କହିବା ତୁମ୍ଭ ଆଗେ ।। ୪୫ ।।
ସର୍ବବ୍ୟାପୀ ପୁରୁଷ ଆକାଶ ପରା ହୋଇ ।
ସବୁଠାରେ ସର୍ବଦା ସମାନେ ଅଛି ରହି ।। ୪୬ ।।
କଉଂଠାରୁ ଅଇଲ କାହିଂକି ଯିବ ଏବେ ।
ଏମନ୍ତ ବୋଲି କିପାଂ ପଚାରୁଅଛ ତୁମ୍ଭେ ।। ୪୭ ।।
ଆତ୍ମା ବୋଲି ଯାହାକୁ ସେ ଏକା ଏବେ ମୁହିଂ ।
ଆସିବା ଯିବା ବେନି ବିଷୟ ମୋର ନାହିଂ ।। ୪୮ ।।
ନିଶ୍ଚଳ ହୋଇ ଠାବେ ରହଇ ନାହିଂ କେବେ ।
ମୋହର ପରି ମଧ ତୋତେ ତୁ ଜାଣ ଏବେ ।। ୪୯ ।।

ତୁ କେବେ ତୁହି ନୋହୁ ମୁ ମଧ ନୋହେ ମୁହିଁ ।
ଆନକୁ ଆନ ଅବା ବୋଲିବା କାହିଁ ପାଇଁ ॥ ୫୦ ॥
ମିଷ୍ଟାନ୍ନ ବୋଲି ଯାହା ପୁଛିଲ ତପୋଧନ ।
ଅମୃଷ୍ଟ ମୃଷ୍ଟବେନି ଅଭିନ୍ନ ବୋଲି ଘେନ ॥ ୫୧ ॥
କ୍ଷୁଧା ଥିଲେ ଅସ୍ୱାଦୁ ଅତ୍ୟନ୍ତ ସ୍ୱାଦୁତର ।
କ୍ଷୁଧାବିନା ଅମୃତ ଲାଗଇ ଅମଧୁର ॥ ୫୨ ॥
ଅମୃଷ୍ଟ ମୃଷ୍ଟ ବେନି ଉଦ୍‌ବେଗ ଦେବାପାଇଁ ।
ଆଦି ଅନ୍ତ ମଧରେ ରୋଚକ କେ ନୁହଇ ॥ ୫୩ ॥
ମୃର୍ତ୍ତିକାମୟ ଗୃହେ ମୃର୍ତ୍ତିକା ଲେପିଦେଲେ ।
ସେ ଯେମନ୍ତ ସୁନ୍ଦର ଦିଶଇ ସବୁକାଳେ ॥ ୫୪ ॥
ସେପରି ଏ ପାର୍ଥିବ ଶରୀର ତପୋଧନ ।
ପାର୍ଥିବ ପରମାଣୁ ମାନଙ୍କେ ଶୋଭାବନ ॥ ୫୫ ॥
ଗୋଧୂମ ଯବ ମୁଦ୍ଗ ସହିତେ ଆଉ ଯେତେ ।
ପାର୍ଥିବ ପରମାଣୁ ବୋଲାନ୍ତି ସେ ସମସ୍ତେ ॥ ୫୬ ॥
ଘୃତ ଦଧି ଦୁଧ ଯେ ତଇଳ ଗୁଡ଼ ଫଳ ।
ପାର୍ଥିବ ପରମାଣୁ ଏ ସବୁ ସାଧୁଶୀଳ ॥ ୫୭ ॥
ମୃଷ୍ଟା ମୃଷ୍ଟ ବିଚାର କରୁଛି ଯଉଂମନ ।
ତାହାକୁ ସମ ଏବେ କର ହେ ତପୋଧନ ॥ ୫୮ ॥
ମନକୁ ସମ କଲେ ଉତ୍ତମ ମୁକ୍ତି ପାଇ ।
ନିଦାଘ ମହାମୁନି ଶୁଣହେ ମନ ଦେଇ ॥ ୫୯ ॥
ବୋଲଇ ଦ୍ୱିଜବର ଶୁଣହେ ନରପତି ।
ନିଦାଘ ଆଗେ ଯାହା କହିଲେ ଋଭୁଯତି ॥ ୬୦ ॥
ଗୁରୁଙ୍କର ବଦନୁ ଶୁଣି ଏ ଦିବ୍ୟଜ୍ଞାନ ।
ପାଦେ ପଡ଼ି ବୋଲନ୍ତି ନିଦାଘ ତପୋଧନ ॥ ୬୧ ॥
ପ୍ରସନ୍ନ ହୁଅ ଗୁରୁ ଏଥର ମୋହଠାରେ ।
ମୋହର ହିତ କଥା କହିଲ ତୋଷ ଭରେ ॥ ୬୨ ॥
ଯଉଂ କଥା କହିଲ ସାକ୍ଷାତ ସୁଧାରସ ।
ମୋହର ମୋହ ତୁମ୍ଭ ସକାଶୁଁ ଗଲା ନାଶ ॥ ୬୩ ॥
ଏ ବଚନେ ତପସ୍ୱୀ ବୋଲନ୍ତି ହୃଷ୍ଟ ହୋଇ ।
ଋଭୁ ଆମ୍ଭେ ଅଇଲୁଂ ତୁମ୍ଭର ଜ୍ଞାନ ପାଇ ॥ ୬୪ ॥
ପରମାର୍ଥ ଚରିତ କହିଲୁଂ ତୁମ୍ଭ ଆଗେ ।
ଆମ୍ଭଙ୍କୁ ଯାଅ ବୋଲ ଅତ୍ୟନ୍ତ ଅନୁରାଗେ ॥ ୬୫ ॥
ପରମାତ୍ମା ଅଟନ୍ତି ସେ ଯଉଂ ବାସୁଦେବ ।
ଅଭେଦ କରି ମୁନି ତାହାଙ୍କୁ ମନେ ଭାବ ॥ ୬୬ ॥

୫୯. (କ) ମୃଗ ମନ ଚଞ୍ଚଳ ହୁଅଇ ଯେତେବେଳେ

ହୋଉ ବୋଲି ନିଦାଘ ପଡ଼ିଲେ ଗୁରୁପାଦେ ।
ସେଠାରୁ ଋଭୁମୁନି ଚଳିଲେ ଅତି ମୋଦେ ॥ ୬୭ ॥
ବୋଲନ୍ତି ଦ୍ୱିଜବର ଶୁଣହେ ନରଈଶ ।
ଋଭୁ ନିଦାଘ ସମ୍ବାଦ ମହାଜ୍ଞାନ ରସ ॥ ୬୮ ॥
ଶ୍ରୀବିଷ୍ଣୁ ପୁରାଣ ଯେ ଦ୍ୱିତୀୟ ଅଂଶଗୀତ ।
କୁଶଳେ ପଞ୍ଚଦଶ ଅଧ୍ୟାୟ ହେଲା ଖ୍ୟାତ ॥ ୬୯ ॥
ଚିନ୍ତିଶ୍ରୀ ଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୭୦ ॥

# ଷଷ୍ଠଦଶ ଅଧ୍ୟାୟ

ବୋଲଇ ବିପ୍ରବର ଶୁଣହେ ନରସାଇଂ ।
ଋଭୁମୁନି ଗଲେ ଯେ ଶିଷ୍ୟଙ୍କୁ ଜ୍ଞାନଦେଇଂ ॥ ୧ ॥
ତଦନ୍ତରେ ସହସ୍ରେ ବରଷ ଅନ୍ତେ ପୁଣି ।
ସେହି ପୁରେ ମିଳିଲେ ମୁନୀନ୍ଦ୍ର ଚୂଡ଼ାମଣି ॥ ୨ ॥
ନିଦାଘ ତପସ୍ୱୀଙ୍କୁ ଦେବାକୁ ଦିବ୍ୟଜ୍ଞାନ ।
ଆନନ୍ଦ ମନେ ତହିଂ ମିଳିଲେ ତପୋଧନ ॥ ୩ ॥
ଦେଖିଲେ ଯେ ନଗର ବାହାରେ ଥାଇ କରି ।
ଆସିପାରି ନାହାନ୍ତି ନିଦାଘ ତପଚାରୀ ॥ ୪ ॥
ସେ ଯେବଣ ନଗର ତାହାର ନରପତି ।
ସପରିବାର ହୋଇ ପୁରକୁ ଯାଉଛନ୍ତି ॥ ୫ ॥
ସୈନ୍ୟଙ୍କର ଗହଳ ସକାଶୁଁ ଦୂରେ ରହି ।
ନିଦାଘ ତପୋବନ୍ତ ଅଛନ୍ତି ଉଭାହୋଇ ॥ ୬ ॥
ହସ୍ତକେ ଅଛି କୁଶ ହସ୍ତକେ ଅଛି କାଷ୍ଠ ।
କ୍ଷୁଧାରେ ଅତି ଶୁଷ୍କ ହୋଇଛି କଣ୍ଠ ଓଷ୍ଠ ॥ ୭ ॥
ଏମନ୍ତେ ସେ ନିଦାଘ ମୁନିଙ୍କି ଚାହିଂ କରି ।
ପାଶରେ ଉପଗତ ହୋଇଲେ ଶୀଘ୍ର କରି ॥ ୮ ॥
ପଚାରିଲେ ଏକାନ୍ତେ କାହିଂକି ଅଛ ତୁମ୍ଭେ ।
ଶୁଣି ତାହା ନିଦାଘ ବୋଲନ୍ତି ନମ୍ରଭାବେ ॥ ୯ ॥
ଦେଖ ହେ ଦ୍ୱିଜବର ସକଳ ସୈନ୍ୟ ସଙ୍ଗେ ।
ପୁରକୁ ନରପତି ଚଳଇ ଅତିରଙ୍ଗେ ॥ ୧୦ ॥
ଲୋକଙ୍କର ସକାଶୁ ଗହଳ ଭୟ ପାଇ ।
ପଛେ ଯିବି ବୋଲି ମୁଁ ରହିଛି ଉଭା ହୋଇ ॥ ୧୧ ॥
ଏ ବଚନେ ବୋଲନ୍ତି ସେ ଋଭୁ ତପୋବନ୍ତ ।
କେତେଲୋକ ଏଥିରେ ନୃପତି କେତେଭୃତ୍ୟ ॥ ୧୨ ॥
ବୋଲୁଛନ୍ତି ନିଦାଘ ଶୁଣହେ ମୁନିବର ।
ଗଜ ଆରୋହିଛି ଯେ ସେ ଏକା ନରେଶ୍ୱର ॥ ୧୩ ॥
ତହିଁରୁଂ ଆନ ଯେତେ ସେମାନେ ସବୁ ଭୃତ୍ୟ ।
ଏହାଶୁଣି ବୋଲନ୍ତି ସେ ଋଭୁ ତପୋବନ୍ତ ॥ ୧୪ ॥
ଗଜ ନୃପ ଦୁହିଂକି କହିଲ ଏକା କାଳେ ।
କେ ଗଜ କେ ନୃପତି କହିବା ହୋଉ ବେଳେ ॥ ୧୫ ॥
ବୋଲୁଛନ୍ତି ନିଦାଘ ତଳରେ ଅଛି ଗଜ ।
ଉପରେ ଅଛି ନୃପ ଦେଖିବା ହୋଉ ଦ୍ୱିଜ ॥ ୧୬ ॥

ବହିବା ବୁହାଂଇଂବା ସମ୍ବନ୍ଧ ସର୍ବେ ଜାଣି ।
ଏ କଥା କାହିଂପାଇଂ ପଚାର ମୁନିମଣି ॥ ୧୭ ॥
ଏ ବଚନେ ସେ କାଳେ ବୋଲନ୍ତି ଋଭୁମୁନି ।
ଯଉଂ ରୂପେ ଜାଣିମି କହହେ ସେହି ବାଣୀ ॥ ୧୮ ॥
ତଳ ବୋଲି କାହାକୁ ବୋଇଲ ଅବା ତୁମ୍ଭେ ।
ଉପରକେ ଅଥବା ସେ କଥା କହ ଏବେ ॥ ୧୯ ॥
ଏମନ୍ତ କଥା ଶୁଣି ନିଦାଘ ମୁନିବର ।
ଋଭୁ କନ୍ଧେ କ୍ରୋଧରେ ବସିଲେ ତତପର ॥ ୨୦ ॥
କନ୍ଧରେ ବସି ମୁନି ବୋଲନ୍ତି ଶୁଣ ଦ୍ୱିଜ ।
ମୁ ଏକା ନରପତି ଆପଣ ଏକା ଗଜ ॥ ୨୧ ॥
ତୁମ୍ଭେ ଜାଣିମାକୁ ଯେ କହିଲି ଏ ରୂପରେ ।
ସେ କଥା ଶୁଣି ଋଭୁ କହନ୍ତି ସେ କାଳରେ ॥ ୨୨ ॥
ତୁ ଯେବେ ନୃପମଣି ମୁଁ ଯେବେ ଗଜପରି ।
ତୁହିକେ ମୁଁ ଅବାକେ କହ ହୋ ତପଚାରୀ ॥ ୨୩ ॥
ଋଭୁଙ୍କର ବଦନୁ ଅଦ୍ୱୈତ ଜ୍ଞାନ ଶୁଣି ।
ପାଦତଳେ ପଡ଼ିଲେ ନିଦାଘ ମହାମୁନି ॥ ୨୪ ॥
ବୋଇଲେ ଆହେ ଦ୍ୱିଜ ଆଚାର୍ଯ୍ୟ ଏକା ତୁମ୍ଭେ ।
ଇତର ଜନ ପରି ମଣିଛି ମୁହିଂ ଏବେ ॥ ୨୫ ॥
ତୁମ୍ଭ ବିନା ଅଦ୍ୱୈତ ଜ୍ଞାନରେ ଶୁଦ୍ଧ ହୋଇ ।
ଏ ଜଗତ ମଧରେ ଇତର ଜନ ନାହିଂ ॥ ୨୬ ॥
ଏ କଥା ଶୁଣି ଋଭୁ ବୋଲନ୍ତି ଆହେ ଦ୍ୱିଜ ।
ତୁମ୍ଭ ଗୁରୁ ଆମ୍ଭେ ଯେ ପ୍ରବେଶ ହେଲୁଂ ଆଜ ॥ ୨୭ ॥
ଆମ୍ଭର ନାମ ଋଭୁ ତୁମ୍ଭର ଜ୍ଞାନ ଅର୍ଥେ ।
ଉପଦେଶ ଦେବାକୁ ଅଇଲୁଂ ହୃଷ୍ଟ ଚିତ୍ତେ ॥ ୨୮ ॥
ପରମାର୍ଥ କଥା ଏ କହିଲୁଂ ତପୋଧନ ।
ଅଦ୍ୱୈତ ବିଷୟରେ ନିଶ୍ଚଳ କର ମନ ॥ ୨୯ ॥
ଏତେ ବୋଲି ସେ ଋଭୁ ଚଳିଲେ ତତପର ।
ଅଦ୍ୱୈତ ଜ୍ଞାନ ହେଲା ନିଦାଘ ମୁନିଙ୍କର ॥ ୩୦ ॥
ଅଭେଦ କରି ସର୍ବଭୂତଙ୍କୁ ନିରେଖିଲେ ।
ସେଠାରୁଂ କେତେଦିନେ ବ୍ରହ୍ମରେ ଲୀନ ହେଲେ ॥ ୩୧ ॥
ବୋଲନ୍ତି ଦ୍ୱିଜବର ଶୁଣ ହୋ ନରସାଇଂ ।
ଏକ ବୋଲି ସମସ୍ତ ଜନଙ୍କୁ ଦେଖ ତୁହି ॥ ୩୨ ॥
ସମସ୍ତ ଠାରେ ବ୍ୟାପୀ ଅଛନ୍ତି ଭଗବାନ ।
ତହିଂରୁଂ ଏ ସଂସାରେ ନୁହନ୍ତି କେହି ଭିନ୍ନ ॥ ୩୩ ॥
ଧବଳ ନୀଳବର୍ଣ୍ଣ ଆକାଶ ଯଉଂପରି ।
ଭିନ୍ନ ଭିନ୍ନ ସ୍ୱରୂପେ ଦିଶଇ ଦଣ୍ଡଧାରୀ ॥ ୩୪ ॥

ସେପରି ଏକ ଆତ୍ମା ଦିଶଇ ଭିନ୍ନ ଭିନ୍ନ ।
ଏ କଥା ନୃପତି କର ହୋ ଏକ ମନ ॥ ୩୫ ॥
ଏ ସଂସାର ମଧ୍ୟରେ ଅଛନ୍ତି ନର ଯେତେ ।
ଅଚ୍ୟୁତ ଏକା ବୋଲି ଜାଣ ହୋ ସେ ସମସ୍ତେ ॥ ୩୬ ॥
ସେ ତୁହି ସେହି ମୁହିଂ ସମସ୍ତେ ସେହି ପୁଣି ।
ଭେଦକୁ ବୁଦ୍ଧି ତେଜ ନୃପତି ଶିରୋମଣି ॥ ୩୭ ॥
ବୋଲନ୍ତି ପରାଶର ଶୁଣ ହୋ ତପୋଧନ ।
ବ୍ରାହ୍ମଣଠାରୁଂ ଶୁଣି ଅଦ୍ୱୈତଜ୍ଞାନମାନ ॥ ୩୮ ॥
ପରମାର୍ଥ ଦୃଷ୍ଟିରେ ଅଭେଦ ବୁଦ୍ଧିକରି ।
ଅପବର୍ଗ ପାଇଲେ ସୌବୀର ଦଣ୍ଡଧାରୀ ॥ ୩୯ ॥
ଏ ଭରତ ଚରିତ କହଇ ଯଉଂ ନର ।
ଯେ ଅବା ଏ ଚରିତ ଶୁଣଇଂ ନିରନ୍ତର ॥ ୪୦ ॥
ଯେ ଅବା ସ୍ମରଣ କରଇ ଏ ଚରିତ ।
ଅଶେଷ ମୋହକୁ ସେ କରଇ ହେଳେ ହତ ॥ ୪୧ ॥
ଉତ୍ତମ ମୁକ୍ତି ତାକୁ ମିଳଇ ଅବହେଳେ ।
ଦୁର୍ଗତି ଆଉ ତା'ର ନୁହଇ କେତେବେଳେ ॥ ୪୨ ॥
ଅଦ୍ୱୈତ ଚରିତ ଏ ନିର୍ମଳ ସୁଧାରସ ।
ସୌବୀର ରାଜା ମୁକ୍ତି ପ୍ରସ୍ତାବ ହେଲା ଶେଷ ॥ ୪୩ ॥
ଶ୍ରୀବିଷ୍ଣୁ ପୁରାଣଯେ ଦ୍ୱିତୀୟ ଅଂଶଗୀତ ।
ସୌବୀର ମୁକତି ଷଷ୍ଟଦଶ ଅଧ୍ୟା ଖ୍ୟାତ ॥ ୪୪ ॥
ନନ୍ଦପୁର ଶ୍ରୀବିକ୍ରମଦେବ ମହୀପତି ।
ତାଙ୍କ ମନ୍ତ୍ରୀ ରାମଚନ୍ଦ୍ର ପାତ୍ର ଧୀରମତି ॥ ୪୫ ॥
ତାଙ୍କ କୁଳ ମଣ୍ଡନ ଏକଇ ଦିବ୍ୟ ପୁତ୍ର ।
ଯା ନାମ ବଲ୍ଲଭ ନାରାୟଣ ମହାପାତ୍ର ॥ ୪୬ ॥
ତାହା କୃତ ଗ୍ରନ୍ଥ ଏ ଯେ ହୋଇଲା ସମାପ୍ତ ।
ସଜ୍ଜନ ହିତରେ ସଂସାରରେ ହେବ ଖ୍ୟାତ ॥ ୪୭ ॥
ଚିନ୍ତି ଶ୍ରୀଶିବରାମ ଚରଣ ଶତପତ୍ର ।
କହଇ ବଲ୍ଲଭ ନାରାୟଣ ମହାପାତ୍ର ॥ ୪୮ ॥

**॥ ଶ୍ରୀ ବିଷ୍ଣୁ ପୁରାଣ ସମାପ୍ତ ॥**

**॥ ସଦାଶିବ ଶରଣଂ ॥**

